# ଆଚାର୍ଯ୍ୟ

ପ୍ରଫେସର ଡଃ. ସୁଦର୍ଶନ ଆଚାର୍ଯ୍ୟଙ୍କ ଷଷ୍ଟିପୂର୍ତ୍ତି ଅଭିନନ୍ଦନ ଗ୍ରନ୍ଥ

ଓଡ଼ିଆ ଭାଷା-ସାହିତ୍ୟ ଆଲୋଚନାର
ଅନୁପମ ସମ୍ଭାର

ସଂପାଦକ

*ଅଧ୍ୟାପକ କହ୍ନୁପାଣି ସାମନ୍ତ*

# ଆଚାର୍ଯ୍ୟ

## ପ୍ରଫେସର ଆଚାର୍ଯ୍ୟ-ଅଭିନନ୍ଦନ ଗ୍ରନ୍ଥ

**ସଂପାଦକ :**
*ଅଧ୍ୟାପକ କନ୍ନୂପାଣି ସାମନ୍ତ*
ଜଗନ୍ନାଥ ଭବନ, ଲଣ୍ଡେଇସାହି,
ଭଂଜନଗର, ଗଂଜାମ- ୭୬୧୧୨୬

**ପ୍ରକାଶିକା :**
ଶ୍ରୀମତୀ ଶୈଳବାଳା ସାମନ୍ତ
ଲଣ୍ଡେଇସାହି, ଭଂଜନଗର - ଗଂଜାମ

**ପ୍ରଚ୍ଛଦ :**
ଡକ୍ଟର ଦୀନନାଥ ପାଠୀ

**ମୁଦ୍ରଣ :**
ନ୍ୟାସନାଲ ଗ୍ରାଫିକ୍ସ
ରେଡକ୍ରସ୍ ରୋଡ
ଭଂଜନଗର, ଗଂଜାମ

**ପ୍ରକାଶକାଳ :**
ଜାନୁୟାରୀ ୧୯୯୯

**ମୂଲ୍ୟ : ଟ ୧୫୦.୦୦**
*(ଏକଶତ ପଚାଶ ଟଙ୍କା ମାତ୍ର)*

# ACHARYA

**(A Felicitation Volume for Prof. Dr. Sudarsan Acharya)**

**Edited by :**
Prof. K.P.Samanta
Jagannath Bhaban
Landeisahi, Bhanjanagar.

**Published by :**
Smt. Sailabala Samanta
Landeisahi, Bhanjanagar.

**Cover Design :**
Dr. Dinanath Pathy

**Printed at :**
**National Graphics**
R.C.Road, Bhanjanaga.

**1st Edition - 1999**
**Price : Rs 150/-**
(One Hundred Fifty only)

**ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ**
**ପ୍ରଫେସର ପଡ଼ା,**
**କଟକ ।**

ଅଧ୍ୟାପକ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ଷଷ୍ଟି ପୂର୍ତ୍ତି ଉପଲକ୍ଷେ, ଅଭିନନ୍ଦନ ଗ୍ରନ୍ଥ ପ୍ରକାଶନ ସମ୍ବାଦ ଶୁଣି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କାଳରୁ ସୁଦର୍ଶନ ମୋର ପ୍ରିୟଛାତ୍ର । ଅନ୍ୟଛାତ୍ରଙ୍କ ତୁଳନାରେ ସୁଦର୍ଶନ ପ୍ରତି ମୋର ନିବିଡ଼ ସ୍ନେହ ଥାଏ । ସେ ଛାତ୍ରାବସ୍ଥାରୁ ହିଁ ଅତ୍ୟନ୍ତ ନମ୍ର ସ୍ୱଭାବର । ଶୀଳ ଓ ସାଧନା ତାଙ୍କ ଚରିତ୍ରର ବଡ ଗୁଣ । ଓଡିଶାର ବିଖ୍ୟାତ ସଂସ୍କୃତ ପଣ୍ଡିତ ଓ ଲେଖକ ସ୍ୱର୍ଗତ ଯତିରାଜ ଆଚାର୍ଯ୍ୟଙ୍କର ସେ ସୁପୁତ୍ର । ନୂତନସ୍ଥାପିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡିଆ ବିଭାଗରେ ପ୍ରଫେସର ଭାବରେ ୧୯୬୯ରେ ମୁଁ ଯୋଗଦେଲି । ସଂଯୋଗ ବଶତଃ ଶ୍ରଦ୍ଧେୟ ସୁଦର୍ଶନ ସେହି ବିଭାଗରେ ଅଧ୍ୟାପକ ଭାବେ ନିଯୁକ୍ତ ହେଲେ । ସେଠାରେ ମୋର କାର୍ଯ୍ୟକାଳ ମଧ୍ୟରେ ସୁଦର୍ଶନ ମତେ ଯଥେଷ୍ଟ ଶ୍ରଦ୍ଧା ଭକ୍ତି ଓ ସହଯୋଗ ପ୍ରଦାନ କରିଥିଲେ । ଜଣେ ଗବେଷକ ଓ ସୁଅଧ୍ୟାପକ ଭାବରେ ସୁଦର୍ଶନ ଓଡିଶାରେ ଯେଉଁ ପ୍ରଶଂସାର ଅଧିକାରୀ ହୋଇ ପାରିଛନ୍ତି, ସେ ସଂବନ୍ଧରେ ବିଭିନ୍ନ ସମୟରେ ଶୁଣି ମୁଁ ଗର୍ବ ଓ ଆନନ୍ଦ ଅନୁଭବ କରିଥାଏ ।

ସମୟର ଗତି ବଡ଼ ପ୍ରଖର । ଏଇ ମାତ୍ର କାଲିପରି ଲାଗୁଛି, ସୁଦର୍ଶନ ମୋର ଛାତ୍ର ଓ ସହକର୍ମୀ ଥିଲେ । ଏବେ ତାଙ୍କର ଷଷ୍ଟିପୂର୍ତ୍ତି ପାଳନପାଇଁ ଆୟୋଜନ ହେଉଛି ।

କଲ୍ୟାଣୀୟ ସୁଦର୍ଶନଙ୍କୁ ମୁଁ ଆଶୀର୍ବାଦ କରୁଛି ସେ ଦୀର୍ଘଜୀବୀ ହୁଅନ୍ତୁ । ତାଙ୍କୁ ସଂବର୍ଦ୍ଧନା ଜଣାଇବା ପାଇଁ ଯେଉଁ ସାଧୁ ଉଦ୍ୟମ ହେଉଛି, ତାର ମଧ୍ୟ ସଫଳତା କାମନା କରୁଛି ।

*୨୭.୧୨.୯୮.* *ସ୍ୱା. ଡ଼.କୁଞ୍ଜ ବିହାରୀ ତ୍ରିପାଠୀ*

ଡକ୍ଟର ବେଣୀମାଧବ ପାଢ଼ୀ,
ଚନ୍ଦ୍ରପ୍ରଭା ସାହି,
ବ୍ରହ୍ମପୁର ।

ବଡ଼ଆନନ୍ଦର କଥା, କଲ୍ୟାଣୀୟ ଡଃ. ସୁଦର୍ଶନ ଆଚାର୍ଯ୍ୟଙ୍କ ଷଷ୍ଠିପୂର୍ତ୍ତି ଉପଲକ୍ଷେ ସମାରୋହର ଆୟୋଜନ କରାହେଉଛି ଏବଂ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ପାଉଛି । ଆମ ଦେଶରେ ବିଶେଷ କରି ଓଡିଶାରେ ଗୁଣୀବ୍ୟକ୍ତିଙ୍କ ଗୁଣ ଗ୍ରହଣକରି ତାଙ୍କୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦର୍ଶନ କରିବା ଏକ ଦୁଃସ୍ୱପ୍ନ ...ଲି କହିଲେ ଚଳେ; ଯାହା ଜାତିପକ୍ଷରେ କଦାପି କାମ୍ୟନୁହେଁ । ସେ ଅଭ୍ୟାସର ବ୍ୟତିକ୍ରମ ଘଟାଇ ...ରି ଏକ ଆୟୋଜନ ସର୍ବଥା ପ୍ରଶଂସାର୍ହ । ଡଃ.ଆଚାର୍ଯ୍ୟ ମୋ ଅପେକ୍ଷା ବୟସରେ ପୁତ୍ର ପ୍ରତିମ ହେଲେ ସୁଦ୍ଧା ସେ ଯେଉଁ ସାହିତ୍ୟିକ ସମାଲୋଚନା ଓ ଗବେଷଣା କ୍ଷେତ୍ରରେ ନୂତନ ଆଦର୍ଶ ଉପସ୍ଥାପନା କରିଯାଇଛନ୍ତି ତାହା ତାଙ୍କର ଗୁଣଗ୍ରାହୀ ବନ୍ଧୁ ଓ ଛାତ୍ରମାନଙ୍କୁ ବିଶେଷ ଆକୃଷ୍ଟ କରିପାରିଛି, ଏହା ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଶ୍ରଦ୍ଧେୟ ସୁଦର୍ଶନ କେବଳ ଓଡିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ସଂସ୍କୃତ ଭାଷା ଉପରେ ମଧ ଦକ୍ଷତା ହାସଲ କରି ଗ୍ରନ୍ଥ ରଚନା କାଳରେ ସେ ସବୁର ଯଥାର୍ଥ ବିନିଯୋଗ କରିବାରେ ବିଶେଷ ଧୂରନ୍ଧର, ଯାହା ତାଙ୍କ ବଂଶାନୁଗତ । କେବଳ ରଚନା କ୍ଷେତ୍ରରେ ନୁହେଁ, ବନ୍ଧୁପ୍ରୀତି, ଛାତ୍ର ବତ୍ସଳତା, ଗୁରୁଜନଙ୍କ ପ୍ରତି ଅଗାଧ ଭକ୍ତି, ଅନାବିଳ ସରଳତା ସର୍ବୋପରି କର୍ତ୍ତବ୍ୟନିଷ୍ଠା ତାଙ୍କର ଜନ୍ମଗତ ସ୍ୱଭାବ ; ଏକଥା ତାଙ୍କ ସଂପର୍କରେ ଆସିଥିବା ଯେ କେହି ହୃଦୟଙ୍ଗମ କରିଥିବେ । ଏହିପରି ଜଣେ ସାଧୁ, ସଙ୍କୋଚ ତଥା ସାଧକଙ୍କ ଷଷ୍ଠିପୂର୍ତ୍ତି ଉପଲକ୍ଷେ ଏକ ଗ୍ରନ୍ଥ ପ୍ରକାଶନ ସର୍ବତୋଭାବେ ଅଭିନନ୍ଦନୀୟ । ମୋର ବିଶ୍ୱାସ, ସେ ବୃତ୍ତିଗତ ଜୀବନରୁ ଅବସର ନେଲେ ମଧ ବିଶେଷକରି ଓଡିଆ ସାହିତ୍ୟର ଅଭ୍ୟୁନ୍ନତି କରିବାରେ ନିବିଡଭାବେ ମନପ୍ରାଣ ଢ଼ାଳି ନେବେ, ଯାହା ତାଙ୍କର ସ୍ୱାଭାବିକ ଗୁଣ । ଏ ଅବସରରେ ମୁଁ ତାଙ୍କର ଶୁଭକାମନା କରିବା ସଙ୍ଗେ ସଙ୍ଗେ ଆଶୀର୍ବାଦ କରୁଛି, ସେ ଶତାୟୁରହି ଆହୁରି ନିଜକୁ ପ୍ରତିଷ୍ଠିତ କରିବେ ଏବଂ ମୌଳିକ ରଚନାବଳୀ ଦ୍ୱାରା ସାହିତ୍ୟର ସର୍ବାଙ୍ଗ ଉନ୍ନତି ସାଧନ କରିବେ । ଜଗନ୍ନାଥ କରନ୍ତୁ ସେ ଦୀର୍ଘଜୀବୀ ହୁଅନ୍ତୁ ଓ ତାଙ୍କର ଲେଖନୀ ସର୍ବଦା ଚଳଚଞ୍ଚଳ ରହୁ ।

*୩.୧.୧୯୯୯* *ସ୍ୱା. ବେଣୀମାଧବ ପାଢ଼ୀ*

ପ୍ରଫେସର୍ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି
'ଗୀତିକା'
ଜୟଦେବନଗର, ଭୁବନେଶ୍ୱର ।

ସମସ୍ତଙ୍କ ଅଗୋଚରରେ ଓ ଅଲକ୍ଷ୍ୟରେ ସମୟ ତା'ର ପରିବର୍ତ୍ତନ ଘଟାଇ ଚାଲିଛି । ବ୍ୟକ୍ତି ଓ ଜାତିର ଜୀବନରେ ଘଟୁଛି ଉତ୍‌ଥାନ ପତନର ବିବିଧ ପର୍ଯ୍ୟାୟ । ଆମେ ସମସ୍ତେ ନିମିତ୍ତ ମାତ୍ର; କାଳହସ୍ତର କ୍ରୀଡନକ ସଦୃଶ । ଶ୍ରୀମାନ ସୁଦର୍ଶନଙ୍କ ଜୀବନରେ ସମୟ ସେହିପରି ଆଣିଛି ବହୁ ପରିବର୍ତ୍ତନ । ପରିବର୍ତ୍ତନର ପ୍ରବାହକୁ ସେ ଧୈର୍ଯ୍ୟ ଓ ନମ୍ରତାର ସହିତ ସ୍ୱୀକାର କରିନେଇଛନ୍ତି ; ଅବିଚଳିତ ଭାବେ ଆପଣାର କର୍ତ୍ତବ୍ୟ ସମ୍ପାଦନ କରିଯାଇଛନ୍ତି । ଏହି ଦୃଷ୍ଟିରୁ ତାଙ୍କର ଜୀବନ ସଫଳ ଓ ଆଦର୍ଶ ସ୍ଥାନୀୟ ବୋଲି ମୁଁ ମନେକରେ । ଅନ୍ୟମାନଙ୍କ ପକ୍ଷେ ଏହା ଅନୁସରଣୀୟ ହୋଇ ରହିବ ବୋଲି ମୋର ବିଶ୍ୱାସ ।

ଷଷ୍ଠିପୂର୍ତ୍ତି ଅବସରରେ ମୁଁ ତାଙ୍କର ନିରାମୟ ଦୀର୍ଘଜୀବନ କାମନା କରୁଛି । ତାଙ୍କର ଜୀବନ ପୂର୍ବପରି କର୍ମମୟ ଓ କଲ୍ୟାଣପ୍ରଦ ହେଉ- ଏହା ହିଁ ମୋର ଏକାନ୍ତ କାମନା ।

*ସ୍ୱା. ଜାନକୀ ବଲ୍ଲଭ ମହାନ୍ତି*

**ପ୍ରଫେସର ଡକ୍ଟର ଆଦିତ୍ୟପ୍ରସାଦ ପାଢ଼ୀ,**
**କୁଳପତି,**
**ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।**

ଓଡିଆ ଭାଷା-ସାହିତ୍ୟର ସୁନାମଧନ୍ୟ ଗବେଷକ ଏବଂ ସମାଲୋଚକ ତଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡିଆ ବିଭାଗର ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ଷଷ୍ଠିପୂର୍ତ୍ତି ଅବସରରେ ଏକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ପାଉଥିବା ଶୁଣି ମୁଁ ଆନନ୍ଦିତ ହେଲି । ଜଣେ ଶିକ୍ଷାବିତ୍ ଭାବରେ ପ୍ରଫେସର ଆଚାର୍ଯ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହକରିଛନ୍ତି । ଏଇସୂତ୍ରେ ମୁଁ ତାଙ୍କୁ ଅନେକ ଦିନରୁ ଜାଣେ । ବର୍ତ୍ତମାନ ମୁଁ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କଲାପରେ ତାଙ୍କର ସାରସ୍ୱତ ସାଧନା ଏବଂ ବହୁମୁଖୀ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସି ମୁଗ୍ଧ ହୋଇଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାବେଳଠୁ ଏ ଯାବତ୍ ଦୀର୍ଘ ତିରିଶ ବର୍ଷ ଏହି ଅନୁଷ୍ଠାନର ବିକାଶ ସହିତ ବିଭିନ୍ନ କ୍ଷେତ୍ରରେ ସେ ନିଜକୁ ଜଡିତ କରିଛନ୍ତି । ଅଧ୍ୟାପନା ନିପୁଣତା ଏବଂ ଛାତ୍ର ବତ୍ସଳତା ପାଇଁ ସେ ସୁଖ୍ୟାତ । ତାଙ୍କର ଉତ୍ତର ଷାଠିଏ ଜୀବନ କାଳ ଦୀର୍ଘ ଓ ନିରାମୟ ହେବା କାମନା କରୁଛି । ସାରସ୍ୱତ ସାଧନାରେ ବ୍ରତୀରହି ଆମ ଭାଷା ସାହିତ୍ୟକୁ ସେ ଅଧିକତର ସମୃଦ୍ଧ କରିବେ ବୋଲି ଆଶାକରୁଛି ।

*୩୧.୧୨.୯୮* *ସ୍ୱା. ଆଦିତ୍ୟପ୍ରସାଦ ପାଢ଼ୀ*

# ସଂପାଦକୀୟ

ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଓଡିଆ ଭାଷା ସାହିତ୍ୟ କ୍ଷେତ୍ରରେ ଏକ ସୁପରିଚିତ ନାମ । ସାହିତ୍ୟ ସମାଲୋଚନା, ଗବେଷଣା, ସଂପାଦନା, ଅନୁବାଦ, ପୋଥି-ପାଣ୍ଡୁଲିପି ସଂଗ୍ରହ ଓ ସଂରକ୍ଷଣ ଏବଂ ପାଠୋଦ୍ଧାର ତଥା ଶୁଦ୍ଧପାଠ ଏବଂ, ସର୍ବୋପରି ଗୁରୁଜନ ଭକ୍ତି, ବନ୍ଧୁପ୍ରୀତି, ଛାତ୍ରବତ୍ସଳତା ଓ ଉତ୍ତମ ଅଧ୍ୟାପନା ନିମନ୍ତେ ସେ ସ୍ୱନାମଧନ୍ୟ । ଜଣେ ଶିକ୍ଷାବିତ୍ ଭାବରେ ଜାତୀୟସ୍ତରରେ ସେ ବିଭିନ୍ନକ୍ଷେତ୍ରରେ ପ୍ରଶଂସାଭାଜନ ହୋଇପାରିଛନ୍ତି । ସାହିତ୍ୟ-ସଂସ୍କୃତି ସଂଗଠନ କରିବା, ଏଭଳି ଅନ୍ୟସଂସ୍ଥାମାନଙ୍କୁ ଦିଗ୍‌ଦର୍ଶନ ଦେବା, ପାଠଚକ୍ର, କର୍ମଶାଳା ପ୍ରଭୃତିର ଆୟୋଜନ ଏବଂ ଅନ୍ୟତ୍ର ଆୟୋଜକମାନଙ୍କୁ ପ୍ରୋତ୍ସାହିତକରିବା ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ପରିଚାୟକ । ନିନ୍ଦା-ପ୍ରଶଂସା-ପୁରସ୍କାର ଇତ୍ୟାଦି ଜାଗତିକ ବିଷୟପ୍ରତି ନିର୍ଲିପ୍ତ ରହି ପ୍ରାୟ ଚାରିଟି ଦଶନ୍ଧିର ଅଧ୍ୟାପକ ଜୀବନକାଳକୁ ସେ ବିଶୁଦ୍ଧ ସାରସ୍ୱତ ସାଧନାର କର୍ମଯୋଗରେ ବ୍ୟତୀତ କରିଛନ୍ତି । ଚାକିରୀ ଜୀବନର ରୁଟିନ୍‌ବଂଧା, ସଂଘର୍ଷଶୀଳ ପରିଧି ଭିତରେ ରହି ମଧ୍ୟ, ନୀରବ ଓ ଶୁଦ୍ଧସାଧନାର ସେ ଏକ ବିରଳ ଦୃଷ୍ଟାନ୍ତ । ପାରିବାରିକ ସଂସ୍କାର ଏବଂ ଛାତ୍ରାବସ୍ଥାରୁ ଅନେକ ଗୁଣୀ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସି ଅନେକ ସଦ୍‌ଗୁଣ ସଂପନ୍ନ ହୋଇ ବ୍ୟକ୍ତିଗତ ଓ ବୃତ୍ତିଗତ-- ଉଭୟ ଜୀବନକ୍ଷେତ୍ରରେ ଅନ୍ୟମାନଙ୍କ ପାଇଁ ସେ ଆଦର୍ଶ ହୋଇପଡିଛନ୍ତି । ମୋଟ ଉପରେ ସୁଦର୍ଶନ ଆଚାର୍ଯ୍ୟଙ୍କ ପରିଚୟ ହେଉଛି - ସେ ସୁଦର୍ଶନ ଆଚାର୍ଯ୍ୟ । ତାଙ୍କୁ ଚିହ୍ନାଇବା ପାଇଁ ଯଥା, ପରି, ଭଳି ପ୍ରଭୃତି ଶବ୍ଦର ବିନିଯୋଗ ନିମନ୍ତେ ଅବକାଶ ଦୁର୍ଲଭ ।

ଏହି ଆଦର୍ଶ ପୁରୁଷଙ୍କୁ, ଷଷ୍ଠି ପୂର୍ତ୍ତି ଅବସରରେ ଅଭିନନ୍ଦିତ କରିବା ପାଇଁ ସ୍ୱତଃ ଜାଗ୍ରତ ଅଭିଳାଷର କାର୍ଯ୍ୟାନ୍ୱୟନ ଉଦ୍ଦେଶ୍ୟରେ ବର୍ଷକ ତଳୁ ଉଦ୍ୟମ ଆରମ୍ଭ ହେଲା । ଏଇ ଅବକାଶରେ ଓଡିଆ-ସାହିତ୍ୟ ସଂସ୍କୃତି ସଂବନ୍ଧିତ ଆଲୋଚନା ଗ୍ରନ୍ଥଟିଏ ସଂକଳିତ କରି ତାଙ୍କ ଅବଦାନ ପ୍ରତି ଯଥାର୍ଥ ଶ୍ରଦ୍ଧା ନିବେଦନର ପରିକଳ୍ପନା ରଖାଗଲା । ଓଡିଆ ଭାଷା-ସାହିତ୍ୟ ଆଲୋଚନାର ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ଅର୍ଜିଥିବା ବିଦ୍ୱାନ୍‌ମାନଙ୍କୁ ପ୍ରବଂଧଟିଏ ପାଇଁ ଅନୁରୋଧ କରାଗଲା । ଆମର ଉଦ୍ୟମ ପ୍ରତି ସବୁଆଡୁ ସାଦର ସ୍ୱୀକୃତି ଓ ପ୍ରଚୁର ପ୍ରୋତ୍ସାହନ ମିଳିଲା । ଏଇ ଉଦ୍ୟମକାଳୀନ ଅଭିଜ୍ଞତା ବଡ ମଧୁର ଓ ପୁଲକପ୍ରଦ । କିଛି ତିକ୍ତ ଅନୁଭୂତି ମଧ୍ୟ ଆସିଛି । ଏ ସମସ୍ତର କଷଟିରେ ଅଧିକତର ମହନୀୟ ପ୍ରତିଭାତ ହୋଇଛନ୍ତି ପ୍ରଫେସର ଆଚାର୍ଯ୍ୟ । ତାଙ୍କର ଜୀବନାଦର୍ଶ ଆମ ଅଭିଲକ୍ଷ୍ୟର ଚଲାପଥକୁ ଅଧିକ ବଳଯୋଗାଇଛି ।

ପ୍ରଫେସର ଆଚାର୍ଯ୍ୟଙ୍କଠାରେ କୌଣସି ବିଷୟ ନଜାଣିଥିବାଭଳି ହୀନମନ୍ୟତା ନାହିଁ । ସବୁ ଜାଣିଥିବାର ଔଦ୍ଧତ୍ୟ ବି ନାହିଁ । ଅଥବା, ''ମୁଁ ଯାହା ଜାଣିଛି, ତାହାହିଁ ସବୁ କିଛି''ର ଅହଙ୍କାର ନାହିଁ । ସ୍ଥିର ଲକ୍ଷ୍ୟରେ ଗତିଶୀଳ ତାଙ୍କର ଜୀବନ ପ୍ରବାହ ଶିଳା-ସଂକୁଳ-ଶଯ୍ୟାରେ ବି ପଦ୍ଧତି ହରାଇନି । ଜୀବନରେ ଯାହାଯେତେବେଳେ ମିଳିଛି ବା ହଜିଛି-- ସବୁକିଛିକୁ ସମାନ ଭାବରେ, ସ୍ମିତବଦନରେ ଗ୍ରହଣ କରିନେବା ଭଳି ଋଷିସୁଲଭ ସ୍ଥୈର୍ଯ୍ୟ ତାଙ୍କ ଚରିତ୍ରର ବିଶେଷତ୍ୱ । ପାଣ୍ଡିତ୍ୟରେ ଅପରର ଅସ୍ମିତା ବିସ୍ମୃତ ହେବାଭଳି ଆ-ବ୍ୟୋମ ବିସ୍ତାରିତ ଆଶଙ୍କା ନାହିଁ । ପଦବୀର ଘଟାଟୋପ ସେଠାରୁ ସଂପୂର୍ଣ୍ଣ ବହିଷ୍କୃତ । ଜ୍ଞାନଗର୍ଭ ତାଙ୍କର ଅନ୍ତର୍ଲୋକ ଯେମିତି ସୁନ୍ଦର, ବହିଃ ପ୍ରକାଶ ସେମିତି ମଧୁର । ଏମିତି ସାତ୍ତ୍ୱିକତା - ସମଗ୍ର ଆଦର୍ଶଟିଏକୁ ଆଜିର ଜଟିଳ ସାମାଜିକ ସଂସ୍ଥିତିରେ ମଧ୍ୟ ଧରି ରଖିହୁଏ, ପୁଣି ଇଚ୍ଛାକଲେ ତାକୁ ଅନୁସରଣକରି ବାଟ ଚାଲିହୁଏ - ଏଇ ବିଶ୍ୱାସ ଉପରେ ବିଶ୍ୱାସ ସ୍ଥାପନରେ କିଛି ଅସୁବିଧା ନାହିଁ ।

ପୂଜ୍ୟପୂଜନ ଏବଂ ବିଦ୍ୱତ୍ତାପ୍ରତି ଶ୍ରଦ୍ଧା ନିବେଦନର ଏଇ ମହତ୍ କାର୍ଯ୍ୟଟି ସୁସଂପାଦିତ ହୋଇପାରିଥିବା ହେତୁ ମନରେ ଅପାର ଆନନ୍ଦ ଜାତ ହେଉଛି । ପ୍ରଫେସର ଆଚାର୍ଯ୍ୟଙ୍କ ବିଦ୍ୱତ୍ତା, ଶ୍ରଦ୍ଧାଶୀଳତା ଓ ସାଧନାପୂତ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସିଥିବା ବହୁ ବ୍ୟକ୍ତିଙ୍କ ସଦିଚ୍ଛା ଓ ସହଯୋଗ ଆମକୁ ପଦେ ପଦେ ଅଗ୍ରସର କରାଇଛି । ଡକ୍ଟର ବେଣୀମାଧବ ପାଢ଼ୀ, ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି, ଡକ୍ଟର ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ଡକ୍ଟର ଖଗେଶ୍ୱର ମହାପାତ୍ର, ଡକ୍ଟର କୃଷ୍ଣଚରଣ ବେହେରା, ପ୍ରଫେସର ହୃଦାନନ୍ଦ ରାୟ, ଡକ୍ଟର ବ୍ରହ୍ମାନନ୍ଦ ସିଂହ, ଡକ୍ଟର କିଶୋର ଚନ୍ଦ୍ର ମିଶ୍ର, ଡକ୍ଟର କାଳୀଚରଣ ରଥ, ଡକ୍ଟର ଆଦିକନ୍ଦ ସାହୁ, ଡକ୍ଟର କଇଳାଶ ପଟ୍ଟନାୟକ, ଡକ୍ଟର ବାଉରୀବନ୍ଧୁ କର, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଡକ୍ଟର ଦୁର୍ଗାମାଧବ ନନ୍ଦ, ଡକ୍ଟର ଦେବେନ୍ଦ୍ର କୁମାର ଦାଶ, ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ସମେତ ବିଭିନ୍ନ ପ୍ରାନ୍ତରୁ ବହୁ ଗୁଣଗ୍ରାହୀଙ୍କର ଶୁଭେଚ୍ଛା, ସତ୍‌ପରାମର୍ଶ ଓ ପ୍ରୋତ୍ସାହନକୁ ପାଥେୟ କରି ଆମକାର୍ଯ୍ୟଟି ସଂପନ୍ନ ହୋଇଛି । ବ୍ୟକ୍ତିଗତ ଭାବେ ସେ ସମସ୍ତଙ୍କୁ ମୁଁ କୃତଜ୍ଞତା ଓ ସାଧୁବାଦ ଜଣାଉଛି । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଚିତ୍ରଶିଳ୍ପୀ ଡକ୍ଟର ଦୀନନାଥ ପାଠୀ ସ୍ୱତଃ ପ୍ରବୃତ୍ତ ଭାବେ ଗ୍ରନ୍ଥଟିର ପ୍ରଚ୍ଛଦ ଅଙ୍କନ କରିଥିବା ହେତୁ ମୁଁ କୃତଜ୍ଞ ।

ଭଂଜନଗର ନ୍ୟାସନାଲ କମ୍ପ୍ୟୁଟର କେନ୍ଦ୍ରର ସ୍ୱତ୍ତ୍ୱାଧିକାରୀ ଶ୍ରଦ୍ଧେୟ ପ୍ରିୟାନନ୍ଦ ଆଗୁଖ ଏବଂ ତାଙ୍କର ସହଯୋଗୀମାନେ ଗ୍ରନ୍ଥଟିର ମୁଦ୍ରଣ କାର୍ଯ୍ୟ ନିଷ୍ଠାର ସହ ସମାପନ କରିଛନ୍ତି । ବିଶେଷତଃ ଶ୍ରୀ ଅରୂପାନନ୍ଦ ପ୍ରଧାନଙ୍କ ସହ ଅବିଶ୍ରାନ୍ତ ଶ୍ରମ ଯୋଗୁଁ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଗ୍ରନ୍ଥଟି ମୁଦ୍ରିତ ହୋଇପାରିଛି । ପ୍ରୁଫ୍ ସଂଶୋଧନ ଭଳି ସମୟ ସାପେକ୍ଷ ଓ ବିରକ୍ତି ଉତ୍ପାଦକ ଦାୟିତ୍ୱ ସଂପୂର୍ଣ୍ଣ ବହନ କରି ସୁଲେଖକ ଶ୍ରୀମାନ ରାଜେନ୍ଦ୍ର ଷଡଙ୍ଗୀ ମୋତେ ନିଶ୍ଚିନ୍ତ କରିଛନ୍ତି । ତାଙ୍କର ସହଧର୍ମିଣୀ କଲ୍ୟାଣୀୟା ସୁଷମା କୁମାରୀ ନନ୍ଦ ଏଥିରେ ତାଙ୍କୁପୂର୍ଣ୍ଣ ସହଯୋଗ ଦେଇଛନ୍ତି । ଏ କ୍ଷେତ୍ରରେ ଶିକ୍ଷକ ଶ୍ରୀ କୈଳାଶଚନ୍ଦ୍ର ଦାଶଙ୍କ ସହଯୋଗ ଭୁଲିବାର ନୁହେଁ । ଶ୍ରୀ ନାରାୟଣ ପ୍ରଧାନ ଏବଂ ସୁଶ୍ରୀ ଅର୍ଚ୍ଚନା ରଥ ଏ ପରିକଳ୍ପନାର ଆରମ୍ଭରୁ ପ୍ରୁଫ ସଂଶୋଧନ ପର୍ଯ୍ୟନ୍ତ ନିବିଡ଼ ସଂପୃକ୍ତ । କଲ୍ୟାଣ ଭାଜନ ସିଦ୍ଧାର୍ଥ ପାଢ଼ୀ, ରାଜେନ୍ଦ୍ର କୁମାର ତ୍ରିପାଠୀ, ଶରତ ଜେନା ଏବଂ ଆହୁରି ଅନେକ ନାନାମତେ ସହଯୋଗ ପ୍ରଦାନ କରିଛନ୍ତି । ରଷିକୁଲ୍ୟା କଲେଜ, ସୋରଡାର ଅଧକ୍ଷ ପ୍ରଫେସର୍ ନିରାନନ୍ଦ ପାତ୍ର ମୋତେ ସଂପାଦନା କାଯ୍ୟରେ ଯଥେଷ୍ଟ ଉତ୍ସାହିତ କରିଛନ୍ତି । ମୋର ପତ୍ନୀ ଶ୍ରୀମତୀ ଶୈଳବାଳା ଓ ପୁତ୍ରଗଣ ଗୁରୁପୂଜନ କ୍ଷେତ୍ରରେ ଯେଉଁ ପ୍ରେରଣା ଦେଇଛନ୍ତି ତାହା ଏଠାରେ ସ୍ମର୍ତ୍ତବ୍ୟ । ସମସ୍ତଙ୍କର ସହଯୋଗକୁ ସ୍ମରଣ କରି ସେମାନଙ୍କ ଭିତରେଥିବା ସାହିତ୍ୟିକ ଅଭିରୁଚିର ଉତ୍ତରୋତ୍ତର ଅଭିବୃଦ୍ଧି କାମନା କରୁଛି ।

ପ୍ରଫେସର ଆଚାର୍ଯ୍ୟଙ୍କ ଗୁଣମୁଗ୍ଧ ଅନେକ ବ୍ୟକ୍ତିଙ୍କୁ ହୁଏତ ମୁଁ ଯୋଗାଯୋଗ କରିପାରିନାହିଁ । ଗ୍ରନ୍ଥ ବାହୁଲ୍ୟ ଓ ସମୟାଭାବ କାରଣରୁ କେତେକ ଲେଖା ଏଥିରେ ସ୍ଥାନିତ କରିପାରିନାହିଁ । ଉଦ୍ଦେଶ୍ୟ ରହିତ ଓ ଅନିଚ୍ଛାକୃତ ଏହି ତ୍ରୁଟି ପାଇଁ କ୍ଷମାଚାହୁଁଛି । ଆଜିର ଅଭିନନ୍ଦନ ସମାରୋହ ଏବଂ ଗ୍ରନ୍ଥଉନ୍‌ମୋଚନର ଆୟୋଜନ କରିଥିବା ହେତୁ ବ୍ରହ୍ମପୁର କଳିଙ୍ଗ ସାହିତ୍ୟ ସମାଜକୁ ମୋର କୃତଜ୍ଞତା ନିବେଦନ କରୁଛି ।

ଆଗ୍ରହୀ ପାଠକ ମହଲରେ ଗ୍ରନ୍ଥଟି ଆଦୃତି ଲାଭ କରିବ ବୋଲି ବିଶ୍ୱାସ ।

***ଭଞ୍ଜନଗର*** — ***ଜମ୍ବୁପାଣି ସାମନ୍ତ***
***ତା - ୨୮.୧.୯୯*** — ***ଗ୍ରନ୍ଥ ସଂପାଦକ***

# ସୂଚୀପତ୍ର


ଆଶୀର୍ବାଣୀ ଓ ଶୁଭେଚ୍ଛା
ସଂପାଦକୀୟ


## ପ୍ରଥମ ଭାଗ

### ଆଚାର୍ଯ୍ୟ ବୃତ୍ତାନ୍ତ


ଜୀବନାୟନ — କ - ଝ
କୃତି ଓ କୃତିତ୍ୱ — ଞ - ଦ


## ଦ୍ୱିତୀୟ ଭାଗ

### ପ୍ରବଂଧ ଓ ସମାଲୋଚନା


| | | |
|---|---|---|
| ୧ . ଚମତ୍କାରବାଦ | ପ୍ରଫେସର ଡଃ. ଦାଶରଥି ଦାସ | ୧ |
| ୨ . ମଙ୍ଗଳଗୀତ | ପ୍ରଫେସର ଡଃ. ଜାନକୀବଲ୍ଲଭ ମହାନ୍ତି | ୧୪ |
| ୩ . ଲୋକକଥା ଉପାଖ୍ୟାନ | ପ୍ରଫେସର ଡଃ. ବିୟଦ୍‌କେଶ ତ୍ରିପାଠୀ | ୧୮ |
| ୪ . ଊନବିଂଶ ଶତାବ୍ଦୀର ଓଡିଆ ଉପନ୍ୟାସ | ଡଃ. ବ୍ରହ୍ମାନନ୍ଦ ସିଂହ | ୨୩ |
| ୫ . କଥାସରିତ ସାଗର | ଡଃ. କିଶୋରଚନ୍ଦ୍ର ମିଶ୍ର | ୩୭ |
| ୬ . ଓଡିଶାର ପୋଥି ସଂପାଦନା : ସୀମା ଓ ସମ୍ଭାବନା | ଡଃ. ଭଗବାନ ପଣ୍ଡା | ୪୬ |
| ୭ . ଲୋକସାହିତ୍ୟ ଅଧ୍ୟୟନର ପଦ୍ଧତି | ଡଃ. ଶ୍ୟାମସୁନ୍ଦର ମହାପାତ୍ର | ୫୭ |
| ୮ . ପ୍ରାବଂଧିକ ରାମଚନ୍ଦ୍ର ଆଚାର୍ଯ୍ୟ | ପ୍ରଫେସର ଡଃ. ବାଉରୀବନ୍ଧୁ କର | ୬୨ |
| ୯ . ଉତ୍ତର ବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସମାଲୋଚନା ପଦ୍ଧତି | ଡଃ. ଆଦିକନ୍ଦ ସାହୁ | ୭୦ |
| ୧୦. ଭଞ୍ଜୀୟ କାବ୍ୟରେ ଶୃଙ୍ଗାର ଭାବନା | ଡଃ. ବନମାଳୀ ବାରିକ | ୮୧ |
| ୧୧. ସାହିତ୍ୟରେ ଔଚିତ୍ୟ ବିଚାର | ପ୍ରଫେସର ଡଃ. ଗଙ୍ଗାଧର ବଳ | ୯୧ |
| ୧୨. ଉନବିଶ ଶତକରେ ଭଞ୍ଜ ସାହିତ୍ୟ ଆଲୋଚନା | ଡଃ. ପୂର୍ଣ୍ଣଚନ୍ଦ୍ର ମିଶ୍ର | ୧୦୭ |
| ୧୩. ମଧ୍ୟଯୁଗୀୟ ଓଡିଆ କାବ୍ୟକଳାରେ ଚମତ୍କାର ଚେତନା | ଡଃ. କାଳୀଚରଣ ରଥ | ୧୨୩ |
| ୧୪. ଓଡିଶାରେ ଲୋକସାହିତ୍ୟ ଅଧ୍ୟୟନର ଧାରା | ଡଃ. କଇଳାଶ ପଟ୍ଟନାୟକ | ୧୩୪ |
| ୧୫. ଓଡିଆ ଅଭିଧାନ : ପ୍ରସ୍ତୁତି ଓ ପରିଚିତି | ଶ୍ରୀ ରାଜେନ୍ଦ୍ର ଷଡ଼ଙ୍ଗୀ | ୧୪୩ |
| ୧୬. ଭଞ୍ଜ ସାହିତ୍ୟରେ ସଂଯୋଜକ ଚରିତ୍ର | ଡଃ. ଅଶୋକ କୁମାର ତ୍ରିପାଠୀ | ୧୬୧ |
| ୧୭. ବୈଦେହୀଶବିଳାସରେ ଆଇନର ଆଲେଖ୍ୟ | ଶ୍ରୀ କିଶୋରଚନ୍ଦ୍ର ମିଶ୍ର | ୧୭୬ |
| ୧୮. ମଧ୍ୟଯୁଗୀୟ ଓଡିଆ କାବ୍ୟର ଅନୁବାଦ ଯୋଗ୍ୟତା | ଡଃ. ଦୁର୍ଗାମାଧବ ନନ୍ଦ | ୧୮୩ |
| ୧୯. ଲୋକକଳାର ବାଙ୍ମୟ ପ୍ରକାଶ :ମୁରୁଜ:ଏକ ଆଲୋଚନା | ଡଃ. ସୀମାଞ୍ଚଳ ପ୍ରଧାନ | ୧୯୦ |

## ତୃତୀୟ ଭାଗ

## ଆଚାର୍ଯ୍ୟ-ପ୍ରତିଭା-ପ୍ରଭା


| | | |
|---|---|---|
| ୧ . ଓଡିଆ କାବ୍ୟ କୌଶଳର ବିଷୟ ବିମର୍ଷ | ଡଃ. ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା | ୧୯୫ |
| ୨ . ସାହିତ୍ୟ ସମୀକ୍ଷକ ଡଃ. ସୁଦର୍ଶନ ଆଚାର୍ଯ୍ୟ | ଡଃ. କୃଷ୍ଣ ଚନ୍ଦ୍ର ପ୍ରଧାନ | ୨୦୬ |
| ୩ . ପ୍ରଫେସର ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନ କୌଶଳ | ଡଃ. ଅଶୋକକୁମାର ପଟ୍ଟନାୟକ | ୨୨୩ |
| ୪ . ପ୍ରଫେସର ଆଚାର୍ଯ୍ୟଙ୍କ ଅଧ୍ୟାପନା କୌଶଳ | ଅଧ୍ୟାପକ ଧରଣୀଧର ପଣ୍ଡା | ୨୨୯ |
| ୫ . ପ୍ରଫେସର ଆଚାର୍ଯ୍ୟଙ୍କ ସଂଗ୍ରହ କୌଶଳ | ଅଧ୍ୟାପକ କମ୍ବୁପାଣି ସାମନ୍ତ | ୨୩୨ |
| ୬. ପ୍ରଫେସର ଆଚାର୍ଯ୍ୟଙ୍କ ପୋଥିପ୍ରୀତି | ଶ୍ରୀ ଅଶୋକ କୁମାର ପଣ୍ଡା | ୨୩୫ |


## ଚତୁର୍ଥ ଭାଗ

## ମୋ ଦୃଷ୍ଟିରେ ପ୍ରଫେସର ଆଚାର୍ଯ୍ୟ


| | | |
|---|---|---|
| ୧. ପାଖୁଡାଏ ସ୍ମୃତି | ଡଃ. ଜାନକୀ ବଲ୍ଲଭ ମହାନ୍ତି | ୨୩୮ |
| ୨. ବନ୍ଧୁ ସୁଦର୍ଶନ- ସୁଦର୍ଶନ | ଡଃ. ହରିହର ଦାସ | ୨୪୧ |
| ୩ . ଜ୍ଞାନ ଦର୍ଶନରେ ସୁଦର୍ଶନୀୟ 'ଡଃ. ସୁଦର୍ଶନ' | ପଣ୍ଡିତ ନାରାୟଣ ପାଢ଼ୀ | ୨୪୩ |
| ୪ . ସୁନ୍ଦର ଶ୍ରୀ ସୁଦର୍ଶନ: ଗମ୍ଭୀର ଆଚାର୍ଯ୍ୟ | ଡଃ. ନିଶାକର ପାଢ଼ୀ | ୨୪୬ |
| ୫. ସୁବର୍ଣ୍ଣ ପୁରର ଶୁଦ୍ଧ ସୁବର୍ଣ୍ଣ | ଡଃ. ପଦ୍ମନାଭ ସାହୁ | ୨୪୮ |
| ୬. କହ୍ନାଇର ଗୋପଦାଣ୍ଡ | ଅଧ୍ୟାପକ ମନ୍ମଥ ରଣା | ୨୫୦ |
| ୭. Prof. Sudarsana Acharya | ଡଃ. ସୁବାସ ଚନ୍ଦ୍ର ପାତ୍ର | ୨୫୨ |
| ୮. ଗୌତମ-ଦୁଗ୍ଧ - ଜଳଧେ, ଲୀଳାୟିତ ମୃଗେନ୍ଦ୍ର | ଡଃ. ଶରତ ଚନ୍ଦ୍ର ବିଷୋୟୀ | ୨୫୩ |
| ୯. ଚନ୍ଦନ ବୃକ୍ଷର ଅଂଗେ ଅଂଗେ ବାସ୍ନା | ଅଧ୍ୟାପକ ନାରାୟଣ ପ୍ରଧାନ | ୨୫୮ |
| ୧୦. ଆଚାର୍ଯ୍ୟ ପ୍ରବର | ଡଃ. ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ | ୨୬୧ |
| ୧୧. ଚକ୍ଷୁରୁନ୍ମୀଳିତଂୟେନ | ଡଃ. କାଳୀଚରଣ ରଥ | ୨୬୪ |
| ୧୨. ମାଟିଦ୍ରୋଣ | ସୁଶ୍ରୀ ଅର୍ଚ୍ଚନା ରଥ | ୨୬୬ |
| ୧୩. ପେଶା ଓ ନିଶାର ସେତୁବନ୍ଧ | ଅଧ୍ୟାପକ ରାଜେନ୍ଦ୍ର ପାଢ଼ୀ | ୨୬୭ |
| ୧୪. ସ୍ୱପ୍ନ ତୀର୍ଥର ତପସ୍ୱୀ | ଡଃ. କୃଷ୍ଣ କୁମାର ପଟ୍ଟନାୟକ | ୨୬୯ |
| ୧୫. ପ୍ରଶାଂତ ପୁଳିନ-ପରିବ୍ୟାପ୍ତ ପରିଧି | ଅଧ୍ୟାପକ ହୃଷୀକେଶ ପଣ୍ଡା | ୨୭୧ |
| ୧୬. ବିନମ୍ର କୃତଜ୍ଞତା | ଡଃ. ସୂଚନା ପାଢ଼ୀ | ୨୭୫ |
| ୧୭. ନୀରବ ସାଧକ | ଶ୍ରୀ ସୂର୍ଯ୍ୟମଣି ସାମନ୍ତରାୟ | ୨୭୬ |

# ଜୀବନାୟନ

ଆଧୁନିକ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ପୂର୍ବରୁ ପ୍ରାୟ ତିନିଶତାବ୍ଦୀ ଧରି ଓଡ଼ିଶାର ଦକ୍ଷିଣ ପ୍ରାନ୍ତ ଥିଲା ଓଡ଼ିଆ ଭାଷା-ସାହିତ୍ୟର ଲୀଳାଭୂମି । ଏ ଅଞ୍ଚଳର ଛୋଟବଡ ପ୍ରାୟ ସମସ୍ତ ଜମିଦାରୀର ମହାରାଜା, ରାଜା ଓ ଜମିଦାର ମାନେ ଥିଲେ ବିଦ୍ୟୋତ୍ସାହୀ । ସେମାନଙ୍କର ରାଜସଭା ଗୁଣୀ-ଜ୍ଞାନୀ ଓ କବି -ପଣ୍ଡିତଙ୍କ ସମ୍ମେଳନରେ କଳକୂଜିତ ହେଉଥିଲା । ରାଜାମାନଙ୍କର ପ୍ରୋତ୍ସାହନ ଓ ସମାଦର ଲାଭକରି ଦେଶର ବିଭିନ୍ନ ପ୍ରାନ୍ତରୁ ଆସି ନାନା ଶାସ୍ତ୍ର ପ୍ରବୀଣ ପଣ୍ଡିତମାନେ ଏଠାରେ ସ୍ୱବିଦ୍ୟା ବିଭାସନ ପାଇଁ ଅପୂର୍ବ ସୁଯୋଗ ପାଇଥିଲେ । ସଂସ୍କୃତ ଭାଷାରେ ମଧ ସାହିତ୍ୟ ଓ ଜ୍ଞାନ ବିଜ୍ଞାନର ବିବିଧ ବିଷୟକ ଗ୍ରନ୍ଥମାନ ଏହି ପଣ୍ଡିତମାନେ ରଚନା କରି ଓଡ଼ିଶାରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ପରଂପରାକୁ ସମୃଦ୍ଧ କରିଯାଇଛନ୍ତି । ଓଡ଼ିଆ ସାହିତ୍ୟର ଅଭ୍ୟୁତ୍‌ଥାନ ପର୍ଯ୍ୟାୟରେ ଏହି ରାଜପରିଷଦ ଗୁଡିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି ।

ଓଡ଼ିଶାର ଦକ୍ଷିଣ ପ୍ରାନ୍ତରେ 'ଜରଡା' ତନ୍ମଧ୍ୟରୁ ଏକ କ୍ଷୁଦ୍ର ଜମିଦାରୀ ହେଲେ ମଧ ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ଏହାର ଦାନ ବିପୁଳ । ଓଡ଼ିଆ ସାହିତ୍ୟ ସଂସ୍କୃତିର ଏକ ପ୍ରଧାନ ପୀଠ ରୂପେ ଜରଡା ସମସ୍ତଙ୍କର ଦୃଷ୍ଟିପ୍ରିୟ ହୋଇପାରିଥିଲା । ସୁନାଖଳାର ପଣ୍ଡିତ ରାଧାମାଧବ ପାଠୀଶର୍ମା 'ସୁଦର୍ଶନ ଯଜ୍ଞ ପଦ୍ଧତି' (ଜରଡାର ପଣ୍ଡିତରାୟ ଯତିରାଜାଚାର୍ଯ୍ୟଙ୍କ ପ୍ରଣୀତ) ଗ୍ରନ୍ଥର କର୍ତ୍ତାଙ୍କ ପରିଚୟ ଦେବା ଅବସରରେ ଜରଡା ସଂପର୍କରେ ଯେଉଁ ଉଲ୍ଲେଖ କରିଛନ୍ତି , ତାହା ସଂକ୍ଷିପ୍ତ ହେଲେବି ସୂଚନାଦୀପ୍ତ, -

''ମହୀୟ ସ୍ୟୁକୂଳେ ଯାମ୍ୟେ ସକୂଲାଭିରଳଂକୃତେ ।
ଆସ୍ତେ ଗିରିବରଃ ସୌମ୍ୟୋ ଜରାସନ୍ଧଃ ଇତି ଶ୍ରୁତଃ ।୧।
ଯୋଜନ ତ୍ରୟ ବିସ୍ତାର୍ଣ୍ଣୋ ମହେନ୍ଦ୍ରସ୍ୟନୁଜୋପମଃ ।
ନାନା ଦ୍ରୁମୈଃ ସମାକ୍ରାର୍ଣ୍ଣଃ ଫଳ ପୁଷ୍ପୈର୍ବିକ ସ୍ୱରୈଃ ।୨।
ଯଦୁତ୍ସଙ୍ଗେ ଚ ଧରଣୀ ବହୁଦୃଶ୍ୟ ମନୋହରା ।
ରାଜତେ ଜରଡା ଭିଖ୍ୟା ଜନନାବ ଜନୁଷ୍ଟୁତାମ୍ ।୩।
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ବିଭବୋଜ୍ଜ୍ୱଳା ।
ତାୟତେ ହି ଜରା ଯସ୍ୟାସ୍ତଦାୟଂ ଜରଡୋଚ୍ୟତେ ।୪।''

-(ମହାଯଶା ଉତ୍କଳର ଦକ୍ଷିଣ ଭାଗରେ ଜନଶ୍ରୁତିରେ ଜରାସନ୍ଧ ନାମା ପର୍ବତ ବିଦ୍ୟମାନ, ତିନି ଯୋଜନ ବିସ୍ତୃତ ଏ ଗିରିବର, କୁଳାଚଳ 'ମହେନ୍ଦ୍ର'ର ଅନୁଜତୁଲ୍ୟ । ବିବିଧ ଦ୍ରୁମରାଜି ପରିପୂର୍ଣ୍ଣ ଏବଂ ନାନାବିଧ ଫଳପୁଷ୍ପଙ୍କ ବିକାଶରେ ଏ ପର୍ବତ ଧରଣୀକୁ ମନୋହର ଦୃଶ୍ୟରେ ସଜ୍ଜିତ କରିଛି । ଜରଡା ନାମରେ ଆଖ୍ୟାତ ଜଳାଳଙ୍କୃତ ଏ ଭୂଖଣ୍ଡରେ ତାହା ଜନନୀ କ୍ରୋଡାସ୍ପଦ ତୁଲ୍ୟ ଶୋଭମାନ । ସୁଜଳା-ସୁଫଳା-ଶସ୍ୟ ଶ୍ୟାମଳା ଜରଡା ସ୍ୱବିଭବ ପାଇଁ ଉତ୍କଳ ଯଶର ଅଧିକାରିଣୀ, ବାସ୍ତବିକ୍ ଜରାଅପହାରକ ହେତୁ ଏ ଭୂମିକୁ ଜରଡା କୁହାଯାଏ ।)

ଜରଡା ରାଜ୍ୟର ପ୍ରତିଷ୍ଠାତା ହେଉଛନ୍ତି ବୀରଭଦ୍ର ସାମନ୍ତରାୟ । ପାର୍ଥସାରଥି ଜରଡାର ପ୍ରସିଦ୍ଧ ଦେବତା । ଜରଡା ରାଜ ପରିବାର ସାହିତ୍ୟ ଚର୍ଚ୍ଚା ଓ ଗୁଣଗ୍ରାହିତା ନିମନ୍ତେ ଓଡିଶାରେ ବେଶ୍ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଏଠାରେ ପଣ୍ଡିତ ମାନଙ୍କ ଦ୍ୱାରା ବହୁ ସଂସ୍କୃତ ଗ୍ରନ୍ଥର ରଚନା ହୋଇଛି, ଓଡିଆ ଭାଷାରେ ମଧ କାବ୍ୟ-ପୁରାଣ-ସଙ୍ଗୀତ ଇତ୍ୟାଦି ରଚିତ ହୋଇ ଓଡିଆ ସାହିତ୍ୟର ପୁଷ୍ଟିବିଧାନ ହୋଇଛି । ଭକ୍ତରାମ ଦାସ ଓ ବାଳକ ରାମଦାସଙ୍କ ରଚିତ ଶ୍ରୀରାମ ଭକ୍ତି ରତ୍ନାବଳୀ, ସୀତାଚରଣଙ୍କ ରଚିତ ଭକ୍ତିରସାର୍ଣ୍ଣବ ରାମାୟଣ ଏବଂ ରାମଗୁଣ ସାଗର ତଥା ରଘୁମଣି ମହାପାତ୍ରଙ୍କ ରଘୁମଣି ରାମାୟଣ ପ୍ରଭୃତି ଗ୍ରନ୍ଥମାନ ଜରଡାର ସାରସ୍ୱତ ପରିବେଶର ସାକ୍ଷ୍ୟ ବହନ କରେ । ରଘୁମଣି ରାମାୟଣର ରଚୟିତା ସ୍ୱଗ୍ରନ୍ଥକୁ ତତ୍‌କାଳୀନ ଜରଡାରାଜା ରଘୁନାଥ ସାମନ୍ତରାୟଙ୍କ ନିକଟରେ ଉପସ୍ଥାପନ କରି ଛ'ଟଙ୍କା ପୁରସ୍କାର ପାଇଥିଲେ । ଜରଡାର ରଘୁନାଥ ମଠ ବିଶିଷ୍ଟାଦ୍ୱୈତ ଦର୍ଶନର ଏକ ପ୍ରଧାନ କେନ୍ଦ୍ର ଥିଲା । ରାଜପୃଷ୍ଠ ପୋଷକତାରେ ପ୍ରତିଷ୍ଠିତ ସଂସ୍କୃତ ଟୋଲ୍‌ରେ ବିଦ୍ୱାନ ପଣ୍ଡିତମାନେ ଅଧ୍ୟାପନା କାର୍ଯ୍ୟ ନିର୍ବାହ କରୁଥିଲେ । ସ୍ୱାତଂତ୍ର୍ୟ ମଣ୍ଡିତ ପାର୍ଥସାରଥିଙ୍କ ପୂଜାର୍ଚ୍ଚନା, ମଠମନ୍ଦିର । ବିଦ୍ୟାଳୟ, କବି-ପଣ୍ଡିତଙ୍କ ସମାଗମ, ପ୍ରାକୃତିକ ପରିବେଶ, ଶାନ୍ତିପ୍ରିୟ ପ୍ରଜାମଣ୍ଡଳୀ ଓ ପୁରୁଷାନୁକ୍ରମେ ପ୍ରଜାପ୍ରିୟ - ଗୁଣଗ୍ରାହୀ ବିଦ୍ୟୋତ୍ସାହୀ ରାଜାଙ୍କ ସମବାୟରେ ବିଭବୋଜ୍ଜ୍ୱଳ ଜରଡା ପାଇଁ ଉପେନ୍ଦ୍ର ଭଞ୍ଜଙ୍କ ପଙ୍‌କ୍ତିଟିଏ ପ୍ରୟୋଗ କରିହେବ - ''ମହୀ ମଧ୍ୟେ ସ୍ୱର୍ଗ ସେ ହୋଇଛି ଉତପତ୍ତି ।'' ଏ ରାଜ୍ୟର ସ୍ଥାନ ଭୌଗଳିକ ବିଚାରରେ ବିରାଟ ନୋହି ମଧ ସାଂସ୍କୃତିକ ଓଡିଶାର ସୁବୃହତ ।

ଜରଡା ଗଡର ଅନତିଦୂରରେ ସୁବର୍ଣ୍ଣପୁର ଗ୍ରାମ ଅବସ୍ଥିତ । ଏହି ଗ୍ରାମର ପ୍ରସିଦ୍ଧ ଅଚାର୍ଯ୍ୟ ପରିବାରେ ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ଜନ୍ମ । ଆଚାର୍ଯ୍ୟ ପରିବାରର ଉପଲବ୍‌ଧ ବଂଶବୃକ୍ଷରୁ ଜଣାଯାଏ, ଏ ବଂଶର ପୂର୍ବ ପୁରୁଷ ଯାଜପୁର ଅଥବା ପୁରୀରୁ ଆସି ଜରଡାରେ ଅବସ୍ଥାନ କରିଥିଲେ । ପୂର୍ବପୁରୁଷ ପୀତାମ୍ବରଧର ମିଶ୍ର ଯଜ୍ଞରେ ଅଧ୍ୱର୍ଯ୍ୟୁ କାର୍ଯ୍ୟ ନିର୍ବାହକରି ରାଜଦତ୍ତ 'ଆଚାର୍ଯ୍ୟ' ଉପାଧି ପ୍ରାପ୍ତ ହୋଇଥିଲେ । ଅତଏବ ତାଙ୍କର ଉତ୍ତରବଂଶଜ ମାନେ ଏହି ଆଚାର୍ଯ୍ୟ ସଂଜ୍ଞାରେ ହିଁ ପରିଚିତ ହେଲେ । ପୀତାମ୍ବରଙ୍କ ଠିକ୍ ପରକେତେ ପୁରୁଷ ଗଞ୍ଜାମର

ବିଭିନ୍ନ ଗଡଜାତରେ ଜୀବିକା ଅନ୍ୱେଷଣ କରି ପରିଶେଷରେ ଜରଡାର ସୁବର୍ଣ୍ଣପୁରରେ ସ୍ଥାୟୀଭାବେ ନିବାସ କରିଥିବା ବିଶ୍ୱାସ କରାଯାଏ । ସଂପ୍ରତି ଶ୍ରୀ ନାରାୟଣାଚାର୍ଯ୍ୟଙ୍କ ଠାରୁ ଧାରାବାହିକ ବଂଶଲତା ଉପଲବ୍ଧ । ନିମ୍ନ ସାରଣୀରେ ଏହା ପ୍ରଦତ୍ତ ହେଲା ।



ଏହି ଆଚାର୍ଯ୍ୟ ପରିବାର ପୁରୁଷାନୁକ୍ରମେ ପାଣ୍ଡିତ୍ୟ ନିମନ୍ତେ ପ୍ରସିଦ୍ଧ । ଏମାନଙ୍କ ଭିତରୁ ଅନେକ ନାନାବିଧ ସଂସ୍କୃତ ଗ୍ରନ୍ଥର ପ୍ରଣେତା । କିନ୍ତୁ କାଳ କବଳିତ ହେତୁ ସେ ସମସ୍ତର ଯଥାର୍ଥ ଏବଂ ପ୍ରାମାଣିକ ବିବରଣୀ ଉପଲବ୍ଧ ହେଉନାହିଁ । କେବଳ ଶ୍ରୀକରାଚାର୍ଯ୍ୟଙ୍କ ଠାରୁହିଁ ଏମାନେଙ୍କ ସୃଷ୍ଟି ସଂପର୍କରେ ଅପୂର୍ଣ୍ଣ ସୂଚନା ପ୍ରାପ୍ତ ହୋଇଥାଏ । ଶ୍ରୀକର ଆଚାର୍ଯ୍ୟ ସାତ୍ୱତ ବ୍ରହ୍ମସଂହିତା, ସୁଭାଷିତ ରତ୍ନଭାଣ୍ଡାଗାର କବୀନ୍ଦ୍ରବଚନସମୁଚ୍ଚୟ ପ୍ରଭୃତି ରଚନା କରିଥିବା ଜଣାଯାଏ । ଶ୍ରୀକରଙ୍କ ପୁତ୍ର ନାରାୟଣ ଆଚାର୍ଯ୍ୟଥିଲେ ଜଣେ ବିଖ୍ୟାତ ପଣ୍ଡିତ । ସେ ଜରଡାରାଜା କୃଷ୍ଣଚରଣ ସାମନ୍ତରାୟଙ୍କ ଠାରୁ 'ପଣ୍ଡିତରାୟ' ଉପାଧି ପାଇଥିଲେ ଏବଂ ତାଙ୍କର ସଭାପଣ୍ଡିତ ହୋଇପାରିଥିଲେ । ପଣ୍ଡିତ ରାୟ ନାରାୟଣ ହୟଗ୍ରୀବ ମନ୍ତ୍ର ସାଧନାରେ ପ୍ରବୃତ୍ତ ହୋଇଥିଲେ । ଦୈବ ପ୍ରତିକୂଳତା ହେତୁ ଏଥିରେ ସିଦ୍ଧି ଲଭିନଥିଲେ ହେଁ ମନ୍ତ୍ର ପ୍ରଭାବରେ ସେ ବିଭିନ୍ନ ଗ୍ରନ୍ଥ ରଚନା ପାଇଁ ସମର୍ଥ ହୋଇଥିବା ବିଶ୍ୱାସ କରାଯାଏ । ତାଙ୍କର ବହୁ ରଚନା ମଧ୍ୟରୁ ବର୍ତ୍ତମାନ ଲଘୁଚନ୍ଦ୍ରିକା, ସାରସଂଗ୍ରହ, ପାର୍ଥସାରଥିସ୍ତବ, ମଠାମ୍ନାୟ, ଷଡ଼ଜୟନ୍ତୀ ବିଧାନ ଓ ନୃସିଂହାର୍ଚ୍ଚନ ଚନ୍ଦ୍ରିକା ଉପଲବ୍ଧ । ତଦୀୟ ସୁପୁତ୍ର ମୋହନାଚାର୍ଯ୍ୟ ଲଘୁଚନ୍ଦ୍ରିକାର ସୁବୋଧିନୀ ଟୀକା ରଚନା କରିଥିଲେ ।

ଆଚାର୍ଯ୍ୟ ପରିବାରର ଏହି ପାଣ୍ଡିତ୍ୟ-ପ୍ରକର୍ଷକୁ ଋଦ୍ଧିମନ୍ତ କରିଥିଲେ ପଣ୍ଡିତ ଯତିରାଜ ଆଚାର୍ଯ୍ୟ । ୧୯୦୦ ମସିହାରେ ତାଙ୍କର ଜନ୍ମ । ଶିକ୍ଷକତା, ଯଜ୍ଞକାର୍ଯ୍ୟ ନିର୍ବାହ, ଆୟୁର୍ବେଦ ଚିକିତ୍ସା ଓ ନାନାବିଧ ସଂସ୍କୃତ ଗ୍ରନ୍ଥରଚନା ପ୍ରଭୃତି ବହୁକାର୍ଯ୍ୟରେ ସେ ନିଜକୁ ନିୟୋଜିତ ରଖି ଯଶସ୍ୱୀ ହୋଇଥିଲେ । ଜରଡା, ମଞ୍ଜୁଷା, ଚିକିଟି ଓ ପରିଶେଷରେ ନୂଆପଡା ଉଚ୍ଚ ବିଦ୍ୟାଳୟରେ ସେ ଅଧ୍ୟାପନା କରିଛନ୍ତି । ପିତାମହ ପଣ୍ଡିତ ରାୟ ନାରାୟଣ ହୟଗ୍ରୀବ ମନ୍ତ୍ର ସାଧନାରେ ପୂର୍ଣ୍ଣସିଦ୍ଧି ଲଭି ନପାରିଥିବା ଅବଶୋଷକୁ ପୌତ୍ର ଯତିରାଜଙ୍କଠାରେ ସିଦ୍ଧି ହେବା ଆଶା କରିଥିଲେ । ସେ ଯତିରାଜଙ୍କ ଜିଭରେ ଏମନ୍ତ ଲେଖିଦେଲେ । ଦୈବ ଅନୁକମ୍ପା ଓ ସାଧନା ବଳରେ ଯତିରାଜ ଏମନ୍ତ୍ରରେ ସିଦ୍ଧି ଅର୍ଜନ କଲେ । ପରେ ବହୁଗ୍ରନ୍ଥ ପ୍ରଣୟନ କରି ଓଡିଶାର ଜଣେ ବିଶିଷ୍ଟ ସଂସ୍କୃତ ବିଦ୍ୱାନ ଭାବେ ସେ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । ତାଙ୍କର ପ୍ରସିଦ୍ଧ 'ମାଧବ ବିଳାସ' ମହାକାବ୍ୟରେ ନିଜର ପରିଚୟ ଦେବାକୁ ଯାଇ ଲେଖିଛନ୍ତି -

''ଆସୀତ୍ ଗୌତମ ବଂଶ-ଦୁଗ୍ଧ-ଜଳଧେର୍ମୁଗ୍ଧେନ୍ଦୁ ଲୀଳାୟିତ,
ଶ୍ରୀ ନାରାୟଣ-ସୂରିରାୟ- ଶ୍ରୀ ମୋହନାଚାର୍ଯ୍ୟ ଜଃ
ବିସ୍ଫୂର୍ଜ୍ଜରଡା-ନରେଶ-ପରିଷଦ-ବିଦ୍ବରୋ ଭୂସୁରଃ ।
ଶୂରଃ ଶ୍ରୀ ଯତିରାଜ- ପଣ୍ଡିତବରଃ ଶ୍ରୀଶ-ପ୍ରପଦ୍ୟାଦରଃ ।
ସାହିତ୍ୟ-ତ୍ରିବିଧାଗମାନ୍ତ- ନିଗମାଚାରୋକ୍ତି - ଶବ୍ଦାଶ୍ରୟା
ବାଣୀକୋଣଭୂଜୀଟ ଯସ ବଦନେ ସ୍ୱୈରଂ ନରୀ ନୃତ୍ୟତେ !

(ଗୌତମ ଗୋତ୍ର ରୂପକ ଦୁଗ୍ଧ ସମୁଦ୍ରରେ ସୁନ୍ଦର ଓ ଲୀଳାୟିତ ଚନ୍ଦ୍ର ସଦୃଶ୍ୟ ଶ୍ରୀ ନାରାୟଣ ପଣ୍ଡିତ ରାୟ - ତାଙ୍କ ପୁତ୍ର ଶ୍ରୀ ମୋହନାଚାର୍ଯ୍ୟଙ୍କ ଆତ୍ମଜ, ଭରତୀ ନରେଶଙ୍କ ସଭା ପଣ୍ଡିତ ଓ ଶ୍ରୀ ବିଷ୍ଣୁଙ୍କ ଚରଣାଶ୍ରିତ ପଣ୍ଡିତ ପ୍ରବର, କୁଳୀନ ବ୍ରାହ୍ମଣ ଶ୍ରୀ ଯତିରାଜ ଆଚାର୍ଯ୍ୟ ସାହିତ୍ୟ ବିଦ୍ୟା, ତ୍ରୟବେଦ, ନିଗମାଦି ଶାସ୍ତ୍ର ଓ ଶଦାଶ୍ରୟା ବାଣୀ ଯାହାଙ୍କ ରସନା ନର୍ତ୍ତକୀ...........)

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆଧୁନିକ ସାହିତ୍ୟ ସର୍ଜନା ଦ୍ୱାରା ଓଡ଼ିଆ ଭାଷା- ସାହିତ୍ୟ ଋଦ୍ଧିମନ୍ତ ହେଉଥିଲା ବେଳେ ପଣ୍ଡିତ ଯତିରାଜାଚାର୍ଯ୍ୟ ସଂସ୍କୃତ ଭାଷାରେ ବହୁଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି । ଓଡ଼ିଶାରେ ସଂସ୍କୃତ ଗ୍ରନ୍ଥ ରଚନାର ଗରିଷ୍ଠ ପରଂପରାର ଯତିରାଜ ଶେଷ ଦୀପଶିଖା କହିଲେ ଅସଙ୍ଗତ ହେବ ନାହିଁ । ନିର୍ବାପନ ପୂର୍ବରୁ ପରଂପରାର ଏ ଦୀପଶିଖା ଯତିରାଜଙ୍କ ଲେଖନରେ ତୀବ୍ର ପ୍ରଜ୍ୱଳିତ ହୋଇଛି । ଡକ୍ଟର ବେଣୀମାଧବ ପାଢ଼ୀଙ୍କ ଭାଷାରେ "ସେ ଓଡ଼ିଶା, ବିଶେଷ କରି ଗଞ୍ଜାମରେ ଜନ୍ମ ନ ହୋଇ ଅନ୍ୟ ଦେଶବାସୀ ହୋଇଥିଲେ ତାଙ୍କ ଆସନ ଯେ କେତେ ଉଚ୍ଚରେ ରହନ୍ତା, କଳନା କରି ହୁଏ ନାହିଁ ।"

ଯତିରାଜାଚାର୍ଯ୍ୟଙ୍କ ରଚିତ ସମସ୍ତ ଗ୍ରନ୍ଥ ଉପଲବ୍ଧ ନୁହେଁ । ରାଜଅନୁରୋଧ, ପରିସ୍ଥିତିର ପ୍ରଚୋଦନା ଏବଂ ସ୍ୱତଃ ସ୍ଫୁରଣ-ସୃଷ୍ଟ ତାଙ୍କର ରଚନାମାନଙ୍କ ମଧ୍ୟରୁ ନିମ୍ନ ଗ୍ରନ୍ଥ ଗୁଡ଼ିକ ଉପଲବ୍ଧ । ଏ ମଧ୍ୟରୁ ଅଳ୍ପ କେତୋଟି ମାତ୍ର ପ୍ରକାଶିତ, କାବ୍ୟ, ନାଟକ , ନାଟିକା, ଅଳଂକାର, ବ୍ୟାକରଣ, ସ୍ମୃତି ଶାସ୍ତ୍ର, ଚିକିତ୍ସା ଶାସ୍ତ୍ର, ଜ୍ୟୋତିଷ ଇତ୍ୟାଦି ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରିଥିବା ଏଇ ତାଲିକାରୁ ଜାଣିହେବ ।

୧. ମାଧବ ବିଳାସ କାବ୍ୟ

୨. ଶ୍ରୀକୃଷ୍ଣ ଚରିତ କାବ୍ୟ

୩. କଳାକର ବିଳାସ

୪. କଂସ ନିସୂଦନ ବ୍ୟାୟୋଗ

୫. ସ୍ୟମନ୍ତକାଭ୍ୟୁଦୟ

୬. ବିଦଗ୍ଧ ବଲ୍ଲଭ (ଅଳଂକାର)

୭. ଭାଷଗ୍ ବିନୋଦ

୮. ହଂସଦୂତ

୯. ଘଣ୍ଟାପଥ

୧୦. ଲଘୁସିଦ୍ଧାନ୍ତ ଚନ୍ଦ୍ରିକା

୧୧. ମନ୍ତ୍ରରନ୍ ପ୍ରଦୀପ

୧୨. ସଂପ୍ରଦାୟ ପ୍ରଦୀପ

୧୩. ପରମାର୍ଥ ପ୍ରଦୀପ

୧୪. ସୁଦର୍ଶନ ଯଜ୍ଞ ପଦ୍ଧତି

୧୫. ପ୍ରତିଷ୍ଠା ସରଣୀ

୧୬. ବ୍ୟାକରଣ ଜୀବାତୁ ।

ଏହା ବ୍ୟତୀତ ସେ ଆହୁରି ୨୦ରୁ ଉର୍ଦ୍ଧ୍ୱ ଗ୍ରନ୍ଥ ରଚନା କରିଥିବା ସୂଚନା ମଳେ । ୧୯୭୯ ମସିହା ନଭେମ୍ବର ୨୬ ତାରିଖରେ ଏଇ ପ୍ରବାଦ ପୁରୁଷ, ପଣ୍ଡିତ- କବିଙ୍କର ଦେହାବସାନ ଘଟିଛି ।

ଏହି ପ୍ରସିଦ୍ଧ ପଣ୍ଡିତ ପରିବାରରେ ୧୯୩୯ ମସିହା, ଜାନୁୟାରୀ ୨୮ ତାରିଖ, ମାଘ ଶୁକ୍ଳ ସପ୍ତମୀ ତିଥିରେ ସୁଦର୍ଶନ ଆଚାର୍ଯ୍ୟଙ୍କର ଜନ୍ମ । ଓଡିଶାର ବିଖ୍ୟାତ ପଣ୍ଡିତ ବସୁପ୍ରହରାଜଙ୍କର ବଂଶଧର ରଙ୍ଗନାଥ ପାଢ଼ୀଙ୍କ କନ୍ୟା ରୁକ୍ମିଣୀ ଦେବୀଙ୍କୁ ଯତିରାଜ ବିବାହ କରିଥିଲେ । ବିବାହର ଅନେକ ବର୍ଷ ପର୍ଯ୍ୟନ୍ତ ତାଙ୍କର କୌଣସି ସନ୍ତାନ ସନ୍ତତି ଉତ୍ପନ୍ନ ହେଲେ ନାହିଁ । ଜଗଡାର ମହନ୍ତ ପରାଙ୍କୁଶ ଦାସଙ୍କୁ ସ୍ୱପ୍ନାଦେଶ ହେଲା ଯେ, ପଣ୍ଡିତ ଆଚାର୍ଯ୍ୟ ଆଞ୍ଜନେୟ ଉପାସନା କଲେ ସନ୍ତାନ ଲାଭ କରିପାରିବେ । ତଦନୁସାରେ ଯତିରାଜାଚାର୍ଯ୍ୟ ସ୍ୱଗୃହରେ 'ପୌଷ୍ଟିକ' ଯଜ୍ଞର ଆୟୋଜନ କଲେ । ଏହି ଯଜ୍ଞାନୁଷ୍ଠାନ ପରେ ସତକୁ ସତ ସେ ପୁତ୍ରବାନ୍ ହେଲେ । ପୁଅର ନାଁ ରଖାଗଲା ସୁଦର୍ଶନ । ଏତିକିବେଳକୁ ଯତିରାଜ ମଞ୍ଜୁଷାଠାରେ ଅବସ୍ଥାନ କରୁଥାନ୍ତି । ପୁତ୍ର ଜନ୍ମର ପାଞ୍ଚ ବର୍ଷ ପରେ ସୁବର୍ଣ୍ଣପୁରକୁ ସେ ପ୍ରତ୍ୟାବର୍ତ୍ତନ କରିଥିଲେ । ଏଠାରେ ପିତାଙ୍କ ତତ୍ତ୍ୱାବଧାନରେ ସୁଦର୍ଶନ ଆଚାର୍ଯ୍ୟଙ୍କର ସଂସ୍କୃତ ଶିକ୍ଷା ଆରବ୍ଧ ହେଲା । ଶିକ୍ଷାର ତତ୍‌କାଳୀନ ବିଧି ଅନୁସାରେ ବ୍ୟାକରଣ ଓ କୋଷଗ୍ରନ୍ଥ ତାଙ୍କୁ ଅଧ୍ୟୟନ କରିବାକୁ ପଡିଲା । ଅମର କୋଷ ଓ ପିତାଙ୍କ ବ୍ୟାକର ପୁସ୍ତକ ଲଘୁସିଦ୍ଧାନ୍ତ ଚନ୍ଦ୍ରିକା ଏବଂ ପରେ ପରେ ସଂସ୍କୃତ ଷଟ୍‌କାବ୍ୟ ସେ ଅନୁଶୀଳନ କଲେ । ଚାଟଶାଳୀରେ କିଛି ଦିନ ଅଧ୍ୟୟନ ପରେ ପିତାଙ୍କର ନୂଆପଡା ଉଚ୍ଚବିଦ୍ୟାଳୟରେ ନିଯୁକ୍ତି ହେତୁ ସେଠାକୁ ସ୍ଥାନାନ୍ତରିତ ହେଲେ ଏବଂ ନୂଆପଡା ଉଚ୍ଚବିଦ୍ୟାଳୟରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲେ । ଦୁଇବର୍ଷ ପରେ ପିତାଙ୍କର ଜରଡା ବଦଳି ହେତୁ ଚିକିଟି ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କଲେ । କିନ୍ତୁ ବର୍ଷକ ପରେ ପିତାଙ୍କର ନୂଆପଡା ବଦଳି ହେତୁ ସୁଦର୍ଶନ ଆଚାର୍ଯ୍ୟ ମଧ୍ୟ ସେଠାରେ ରହି ଅବଶିଷ୍ଟ ମାଧ୍ୟମିକ ଶିକ୍ଷା ସମାପନ କରି ୧୯୫୪ ମସିହାରେ କୃତିତ୍ୱର ସହ ମାଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତିକି ବେଳେ ନୂଆପଡା ହାଇସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି ଆଦିକନ୍ଦ ରଥ । ହରିହର ମହାପାତ୍ର, ହରିହର ପଣ୍ଡା ପ୍ରମୁଖ ସହକାରୀ ଶିକ୍ଷକ ଏହି ସ୍ୱନାମଧନ୍ୟ ଶିକ୍ଷାଗୁରୁମାନଙ୍କ ଶୁଭାଶିଷ ଓ ପ୍ରତ୍ୟକ୍ଷ ପ୍ରେରଣା ସୁଦର୍ଶନଙ୍କ

ଉପରେ ଗଭୀର ପ୍ରଭାବପାତ କରିଥିଲା । ତାଙ୍କର ନୀତିନିଷ୍ଠ ଓ ସାଧନାପୁଷ୍ଟ ଜୀବନନିର୍ମାଣରେ ଏଇ ଆଦର୍ଶଶିକ୍ଷକମାନଙ୍କର ଭୂମିକା ଅନ୍ତର୍ନିହିତ । ହାଇସ୍କୁଲ ଶିକ୍ଷା ସମାପ୍ତିବେଳକୁ ସୁଦର୍ଶନ ଆଚାର୍ଯ୍ୟଙ୍କ ନିର୍ମାଣମୁଖୀ ପ୍ରତିଭା ବହୁଦିଗନ୍ତର ବିଚିତ୍ର ବର୍ଣ୍ଣ-ସଂସ୍ପର୍ଶରେ ଆସିସାରିଥିଲା ।

ଉଚ୍ଚଶିକ୍ଷା ପାଇଁ ନୂଆପଡାରୁ ଆସି ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ନାମଲେଖାଇଥିଲେ । ତତ୍‌କାଳୀନ ଓଡିଶାରେ ଖଲ୍ଲିକୋଟ କଲେଜ ଗୋଟିଏ ଉନ୍ନତ ଶିକ୍ଷାନୁଷ୍ଠାନ ଭାବରେ ସୁଖ୍ୟାତ ଥାଏ । ଏଠାରେ ଗୁଣୀ-ଜ୍ଞାନୀ-ଅଧ୍ୟକ୍ଷ/ଅଧ୍ୟାପକ ମାନେ ଶିକ୍ଷାଦାନରେ ନିୟୋଜିତ ଥାଆନ୍ତି । ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ପରବର୍ତ୍ତୀ କାଳରେ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । ମଞ୍ଜୁଷା-ସୁବର୍ଣ୍ଣପୁର-ଚିକିଟି-ନୂଆପଡାର ଗଡଜାତ ଓ ଗ୍ରାମ୍ୟ ପରିବେଶରୁ ଆସି ସୁଦର୍ଶନ ଆଚାର୍ଯ୍ୟ ବ୍ରହ୍ମପୁର ସହରରେ କଲେଜ ଶିକ୍ଷାରେ ସଂପୂର୍ଣ୍ଣ ମନୋନିବେଶ କଲେ, । ଏଠାରେ ତାଙ୍କର ଦୃଷ୍ଟି ପ୍ରସାର ଓ ଚିନ୍ତବିସ୍ତାର ଘଟିଲା । ଗଣିତ ଏବଂ ଓଡିଆ ଇଚ୍ଛାଧୀନ ବିଷୟଭାବେ ରଖି ୧୯୫୮ ରେ ଖଲ୍ଲିକୋଟ କଲେଜରୁ ସ୍ନାତକ ଶିକ୍ଷା ସମାପ୍ତ କଲେ । ସେତେବେଳେ ଏଠାର ଓଡିଆ ଅନର୍ସ ପାଠ ପଢ଼ିବା ବ୍ୟବସ୍ଥା ନଥିଲା । ୧୯୬୨ ମସିହାରେ ପ୍ରଥମକରି ଓଡିଆ ଅନର୍ସ ବିଭାଗ ଖୋଲିଲା । ସ୍ନାତକୋତ୍ତର ଶିକ୍ଷାନିମନ୍ତେ ସେ ରେଭେନ୍‌ସା କଲେଜରେ ଯୋଗଦେଲେ । ସେଠାରୁ ୧୯୬୦ ମସିହାରେ ଦ୍ୱିତୀୟ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ । ଏହିବର୍ଷ ପ୍ରଥମ ଶ୍ରେଣୀ କାହାକୁ ଦିଆଯାଇ ନଥିଲା । ରେଭେନ୍‌ସା କଲେଜର ଓଡିଆ ବିଭାଗରେ ଅଧ୍ୟୟନ କାଳରେ ହିଁ ଜଣେ ସାହିତ୍ୟସାଧକ ଭାବରେ ନିଜକୁ ସେ ପ୍ରତିଷ୍ଠିତ କରିପାରିଥିଲେ । ଏତିକି ବେଳେ ତାଙ୍କର ଗବେଷଣାତ୍ମକ ପ୍ରବଂଧମାନ କୋଣାର୍କ, ଝଙ୍କାର, ରେଭେନ୍‌ସାଭିଆନ୍, ନିର୍ଭୀକ ପ୍ରଭୃତି ପତ୍ରିକାରେ ପ୍ରକାଶପାଇ ବହୁ ପ୍ରଶଂସିତ ହେଲା ।

ସ୍ନାତକୋତ୍ତର ଶିକ୍ଷା ସମାପ୍ତି ପରେ ପରେ ସେ ୧୯୬୦ ରୁ ୧୯୬୨ ପର୍ଯ୍ୟନ୍ତ ଶ୍ରୀକାକୁଲମ ଗଭର୍ଣ୍ଣମେଣ୍ଟ ଆର୍ଟସ କଲେଜରେ ଅଧ୍ୟାପନା ଦାୟିତ୍ୱ ନିର୍ବାହ କଲେ । ବିଚ୍ଛିନ୍ନାଞ୍ଚଳର ଗୋଟିଏ ମହାବିଦ୍ୟାଳୟରେ ଓଡିଆ ଅଧ୍ୟାପକ ଭାବରେ ତାଙ୍କର ଗୁରୁଦାୟିତ୍ୱକୁ ସେ ସୂଚାରୁରୂପେ ସଂପାଦନ କରି ସମସ୍ତଙ୍କର ପ୍ରଶଂସା ଭାଜନ ହୋଇପାରିଥିଲେ । ତାଙ୍କର ଯୁବସୁଲଭ କର୍ମ ପ୍ରବଣତା ଓ ଅମାୟିକ ବ୍ୟବହାର ପାଇଁ ସେ ଉଭୟ ଓଡିଆ ଓ ତେଲୁଗୁ ଛାତ୍ର ଓ କର୍ମଚାରୀମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ତା ସତ୍ତ୍ୱେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ନିଯୁକ୍ତି ସୁଯୋଗପାଇ ସେ ଶ୍ରୀକାକୁଲମ୍ ପରିତ୍ୟାଗ କରି ୧୯୬୨ ମସିହା ଡିସେମ୍ବର ମାସରେ ଏଠାରେ ଓଡିଆ ବିଭାଗରେ ଯୋଗଦେଲେ । ମାତ୍ର ଚାରିବର୍ଷ ତଳେ ଏଠାରୁ ସେ ସ୍ନାତକ ଶିକ୍ଷା ସମାପନ କରିଥିବା ହେତୁ ସେହି ମହାବିଦ୍ୟାଳୟର ଓଡିଆ ବିଭାଗରେ ଅଧ୍ୟାପକ ଭାବେ ଯୋଗଦେବା ତାଙ୍କ ପକ୍ଷରେ ଥିଲା ଏକ ଗୌରବର ବିଷୟ । ପୁଣି

ସେହି ବର୍ଷ ହିଁ ନୂତନଭାବେ ଖଲ୍ଲିକୋଟ କଲେଜରେ ଓଡ଼ିଆରେ ଅନର୍ସ ପାଠ୍ୟକ୍ରମ ଆରମ୍ଭ ହୋଇଥାଏ । ଏଠାରେ ବୃହତ୍ ଓ ପରିଚିତ ପରିବେଶ ଭିତରେ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ପ୍ରତିଭାର ବହୁମୁଖୀ ବିକାଶ ସମ୍ଭବ ହୋଇପାରିଲା । ମହାବିଦ୍ୟାଳୟର ସାହିତ୍ୟ ସମାଜ, ନାଟ୍ୟ ସଂସଦ ଓ ସାଂସ୍କୃତିକ ପରିଷଦର ସେ ଜଣେ ସକ୍ରିୟ ଉପଦେଷ୍ଟା ଭାବରେ କାର୍ଯ୍ୟ କରିଥିବଲେ । ତାଙ୍କର ତାରୁଣ୍ୟଭରା ଦିଗ୍‌ଦର୍ଶନରେ ବିଭିନ୍ନ ସାହିତ୍ୟ-ସଂସ୍କୃତି ସଂଗଠନମାନ ଚଳଚଞ୍ଚଳ ହୋଇ ଉଠିଲେ । ଏହାଛଡ଼ା ବ୍ରହ୍ମପୁର ସହରର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କ ସହ ସେ ନିବିଡ଼ ସଂପୃକ୍ତ ଥିଲେ । ଗଞ୍ଜାମ କଳାପରିଷଦରେ ସେତେବେଳେ ନିୟମିତ ନାଟକାଭିନୟ ହେଉଥିଲା । ଓଡ଼ିଆ ନାଟ୍ୟସାହିତ୍ୟରେ ବିଶିଷ୍ଟ ସ୍ଥାନ ଲଭିଥିବା ବହୁ ନାଟକ ପ୍ରଥମେ ଗଂଜାମ କଳା ପରିଷଦରେ ଅଭିନୀତ ହୋଇଛି । ଶ୍ରୀଯୁକ୍ତ ଆଚାର୍ଯ୍ୟ ଏ ଭିତରୁ ଅନେକ ନାଟକ ଅଭିନୟର ଆୟୋଜକ ଥିଲେ । ଏପରିକି ଦୁଇତିନୋଟି ନାଟକରେ ସେ ଅଭିନୟ ମଧ କରିଛନ୍ତି । ଖଲ୍ଲିକୋଟ କଲେଜରେ ୧୯୬୮ ମସିହା ଡିସେମ୍ବର ମାସ ପର୍ଯ୍ୟନ୍ତ କାର୍ଯ୍ୟକଲାପରେ ୧୯୬୯ ଜାନୁୟାରୀ ମାସରେ ନୂତନ ପ୍ରତିଷ୍ଠିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦେଲେ । ପ୍ରକାଶ ଯୋଗ୍ୟଯେ, ଏହି ବର୍ଷ ସେ ବିଶ୍ୱବିଦ୍ୟାଳୟରେ ଆନୁଷ୍ଠାନିକ ନିଯୁକ୍ତି ପାଇଲେ ମଧ ତତ୍‌ପୂର୍ବରୁ ଖଲ୍ଲିକୋଟ କଲେଜର ବିଭାଗୀୟ ବିରତି ସମୟରେ ଯାଇ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଶ୍ରେଣୀରେ ଅବୈତନିକ ଶିକ୍ଷାଦାନ କରୁଥିଲେ । ଏତିକି ବେଳେ ବିଶ୍ୱବିଦ୍ୟାଳୟ କାର୍ଯ୍ୟ ସହର ଭିତରେ ଭଡ଼ାଘରେ ଚାଲିଥାଏ ।

ନବଜାତ ବିଶ୍ୱବିଦ୍ୟାଳୟ ଶୈଶବାବସ୍ଥାରୁ ହିଁ ଏହାର ସ୍ୱାବଲମ୍ବନ ପାଇଁ ଶ୍ରୀଯୁକ୍ତ ଆଚାର୍ଯ୍ୟ ନିଜକୁ ଗଭୀର ନିୟୋଜିତ କରିଥିଲେ । କେବଳ ଓଡ଼ିଆ ବିଭାଗ ନୁହେଁ, ବିଶ୍ୱବିଦ୍ୟାଳୟର ସାମଗ୍ରିକ ବିକାଶ ଓ ରୂପରେଖ ସଂରଚନାରେ କୁଳପତିଙ୍କ ସମେତ ପ୍ରଶାସନିକ ଓ ଶିକ୍ଷାଦାନୀ ବିଭାଗର କର୍ମଚାରୀ ମାନେ ତାଙ୍କର ସହଯୋଗ କାମନା କରୁଥିଲେ । ବିଶେଷତଃ ଓଡ଼ିଆ ବିଭାଗ ଓ କେନ୍ଦ୍ରୀୟ ଗ୍ରନ୍ଥାଗାର ଆଜି ଯେଉଁ ସ୍ତରରେ ପହଞ୍ଚିଛି, ତାର ମୂଳଦୁଆ ହେଉଛି ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ମାନସ ପ୍ରସୂତ । ସହରର ଭଡ଼ାଘରୁ ଭଞ୍ଜବିହାର ପରିସରକୁ ବିଶ୍ୱବିଦ୍ୟାଳୟ ସ୍ଥାନାନ୍ତରିତ ହେଲାପରେ ପ୍ରଶାସନିକ ଭବନର ପ୍ରବେଶ ମୁଖରେ ଉପେନ୍ଦ୍ରଭଂଜଙ୍କ ପ୍ରତିମୂର୍ତ୍ତି ସ୍ଥାପନ, ବିଶ୍ୱବିଦ୍ୟାଳୟ ମ୍ୟୁଜିୟମର ସ୍ଥାପନା ଓ ଏହାର ପ୍ରବିଧିବଦ୍ଧ ବିକାଶ, ଆଞ୍ଚଳିକ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ପ୍ରଭୃତି ବହୁକାର୍ଯ୍ୟରେ ସେ ନିଜକୁ ନିୟୋଜିତ ରଖିଛନ୍ତି । ବିଶ୍ୱବିଦ୍ୟାଳୟର ପ୍ରଥମ ସମାବର୍ତ୍ତନ ଉତ୍ସବ ଆୟୋଜନ କାଳରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିବସ ଉତ୍ସବମାନଙ୍କରେ ଫୁଲମାଳ ସଂଗ୍ରହ କରିବାଠୁ ଆରମ୍ଭ କରି ଯାବତୀୟ କାର୍ଯ୍ୟ ସଂପନ୍ନ କରି ସମସ୍ତଙ୍କ ଦୃଷ୍ଟି -କେନ୍ଦ୍ର ପାଇଟିଛନ୍ତି ।

୧୯୭୯ ମସିହାରେ ''ଓଡିଆ କାବ୍ୟ କୌଶଳ - ୧୫୦୦-୧୮୫୦'' ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ.ଡି ଉପାଧି ଭୂଷିତ ହୋଇଛନ୍ତି । ୧୯୮୨ ରେ ଓଡିଆ ବିଭାଗରେ ପ୍ରାଧ୍ୟାପକ ଭାବରେ ପଦୋନ୍ନତି ଓ ୧୯୮୭ ରୁ ପ୍ରଫେସର ଭାବେ ନିଯୁକ୍ତି ହୋଇ ଏ ପର୍ଯ୍ୟନ୍ତ କାର୍ଯ୍ୟକରି ଆସୁଛନ୍ତି । ୟୁଜିସିଙ୍କ ସହାୟତାରେ ପ୍ରତିଷ୍ଠିତ ଆଞ୍ଚଳିକ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ରୂପେ ୧୯୮୯ ରୁ ଅତିରିକ୍ତ ଦାୟିତ୍ୱ ନିର୍ବାହ କରି ଆସୁଛନ୍ତି ।

ଦିଗପହଣ୍ଡି ନିକଟବର୍ତ୍ତୀ ସିଦ୍ଧେଶ୍ୱର ଗ୍ରାମ ନିବାସୀ ଶ୍ରୀଯୁକ୍ତ ରାମଚନ୍ଦ୍ର ପଣ୍ଡାଙ୍କ କନ୍ୟା ବିନୋଦିନୀ ଦେବୀଙ୍କ ସହ ୧୯୬୨ ମସିହାରେ, ତାଙ୍କର ବିବାହ ସଂପନ୍ନ ହୋଇଥିଲା । ବିନୋଦିନୀ ହେଉଛନ୍ତି ଜରଡା ଜୟନ୍ତୀପୁରର ପ୍ରସିଦ୍ଧ ସାଧୁ ଓ ପଣ୍ଡିତ ତଥା ବିରଣାଙ୍କା ଭୁବନେଶ୍ୱର ବକ୍ସି ମହାପାତ୍ରଙ୍କ ନାତୁଣୀ । ପ୍ରଫେସର ଆଚାର୍ଯ୍ୟଙ୍କର ସାରସ୍ୱତ ସାଧନା କ୍ଷେତ୍ରରେ ସେ ଯଥେଷ୍ଟ ପ୍ରେରଣା ଓ ସହଯୋଗ ପ୍ରଦାନ କରି ଆସିଛନ୍ତି । ଆଚାର୍ଯ୍ୟ ଦମ୍ପତିଙ୍କର ଦୁଇଟି କନ୍ୟା ଏବଂ ଏକମାତ୍ର ପୁତ୍ର ସନ୍ତାନ ।

୧୯୭୪ ମସିହାରୁ ବ୍ରହ୍ମପୁର ସହରର ଅଶୋକନଗର ଠାରେ ନିଜର ସ୍ଥାୟୀ ବାସଗୃହ ''ଯତିରାଜ ନିକେତନ'' ନିର୍ମାଣ କରି ସେଠାରେ ଅବସ୍ଥାନ କରୁଛନ୍ତି ।

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ବହୁମୁଖୀ ପ୍ରତିଭା ତାଙ୍କୁ ଜଣେ ବ୍ୟକ୍ତିର ଉର୍ଦ୍ଧ୍ୱକୁ ନେଇ ଏକ ଅନୁଷ୍ଠାନରେ ପରିଣତ କରିପାରିଛି । ଏହି ମହାନ ପ୍ରତିଭାର ବିବିଧ ବୈଚିତ୍ର୍ୟ ଏହି ଗ୍ରନ୍ଥର ଦ୍ୱିତୀୟ, ଚତୁର୍ଥ ଓ ପଞ୍ଚମ ପର୍ଯ୍ୟାୟରେ ସ୍ୱତନ୍ତ୍ର ଭାବେ ସନ୍ନିବେଶିତ ହୋଇଛି ।



# କୃତି ଓ କୃତିତ୍ୱ

ପୁରୁଷାନୁକ୍ରମେ ପାଣ୍ଡିତ୍ୟ ପାଇଁ ପ୍ରସିଦ୍ଧ ଏକ ପରିବାରର ଯଥାର୍ଥ ଉତ୍ତରଦାୟାଦ ହେଉଛନ୍ତି ସୁଦର୍ଶନ ଆଚାର୍ଯ୍ୟ । ବରଂ ପାଣ୍ଡିତ୍ୟ ପରଂପରାର ଏମିତି ଝଲସିତ ଉତ୍ତର ପୁରୁଷ ଅନେକତ୍ର ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସତେ ଯେମିତି ପୂର୍ବବର୍ତ୍ତୀ ସପ୍ତପୁରୁଷର ପଣ୍ଡିତ ମାନଙ୍କର ସମସ୍ତ ସତ୍‌ଭାବନ, ସତ୍‌କର୍ମ, ପୁରୁଷାର୍ଥ ଓ ଅର୍ଜିତ ପୁଣ୍ୟର ମୂର୍ତ୍ତିମାନ ବିଗ୍ରହ ହେଉଛନ୍ତି ସୁଦର୍ଶନ ଆଚାର୍ଯ୍ୟ । ସତ୍ୟବାଦୀର ପଞ୍ଚସଖାଙ୍କ ଶପଥ ବିଷୟରେ ପଣ୍ଡିତ ନୀଳକଣ୍ଠ ଦାସ କହିଛନ୍ତି - ''ଆମେ ଜନ୍ମ ବେଳେ ମାତୃଭୂମିକୁ ଯେମିତି ଦେଖିଥାଉଁ, ମଲାବେଳେ ତାହାଠୁ ଅଧିକ ଉନ୍ନତ ଦେଖିମରିବା । '' ତେବେ, ଅନୁନ୍ନତ ଓ ସମସ୍ୟା ବିଜଡିତ ପରିବେଶରେ କିଛି ଉନ୍ନତି ହାସଲ କରିବା ଭିନ୍ନ କଥା । କିନ୍ତୁ ଏକ ଉନ୍ନତ ପରିବେଶକୁ ସମୁନ୍ନତି କରିବା କିଛି କମ୍ କଥା ନୁହେଁ । ପ୍ରଫେସର ଆଚାର୍ଯ୍ୟ ଯେଉଁ ବିପୁଳ ସାରସ୍ୱତ ସାଧନା ଓ ସମ୍ମାନର ଉତ୍ତରାଧିକାରୀ, ତାହାକୁ ଦିଗନ୍ତ ପ୍ରସାରୀ କରିପାରିଛନ୍ତି - ଏହା କମ୍ ସାଧନା ସାପେକ୍ଷନୁହେଁ, ତାଙ୍କ ସାଧନାର ଦିଗନ୍ତକୁ ଚିହ୍ନି ଚିହ୍ନେଇବା ଏକ ଦୁରୂହ ବ୍ୟାପାର ମନେହୁଏ । ଅନୁଭବୀ ଓ ଉପଭୋକ୍ତାହିଁ ଏଇ ବ୍ୟକ୍ତିତ୍ୱର ଯଥାର୍ଥ ସାକ୍ଷୀ । ତାର ସଠିକ୍ ପରିସ୍ଫୁଟନ ପାଇଁ ଶବ୍ଦ ଅସମର୍ଥ । ତଥାପି, ଏଠାରେ ସୂଚନା ମାଧମରେ କେତେକ ପରିଚିତି ଉପସ୍ଥାପନ କରାଯାଉଛି ।

**ସାହିତ୍ୟ ସାଧନା :**

ବାଲ୍ୟକାଳରୁ ପଣ୍ଡିତ ପିତା ଓ ବିଦ୍ୱାନ ପରିବେଶ ଲାଳିତ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ସର୍ଜନଶୀଳ ପ୍ରତିଭାର ଆଦ୍ୟସ୍ଫୁରଣ ଘଟେ ଦଶମ ଶ୍ରେଣୀରେ ଅଧ୍ୟୟନ ବେଳେ । ଏହିବର୍ଷ ତାଙ୍କର ପ୍ରବଂଧ ''ପିତା ସ୍ୱର୍ଗ'' ନୂଆପଡା ଉଚ୍ଚବିଦ୍ୟାଳୟର ମୁଖପତ୍ର 'ବାହୁଦା' ରେ ପ୍ରକାଶ ପାଇଲା । କଲେଜରେ ଅଧ୍ୟୟନ ବେଳେ କିଛି ଗଳ୍ପ ଓ କବିତା ମଧ୍ୟ ସେ ସୃଷ୍ଟି କରିଛନ୍ତି । କେତେକ ଛୋଟ ଛୋଟ ଗଳ୍ପ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଏଇ 'ହାତବଜା' ରଚନାମାନଙ୍କ ମଧ୍ୟରୁ ଅଧିକାଂଶ ସଂପ୍ରତି ଆୟାସ ଲଭ୍ୟ । ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କାଳରେ ହିଁ ଗବେଷଣାତ୍ମକ ପ୍ରବଂଧ ରଚନାର ଆରମ୍ଭ । ଏତିକି ବେଳକୁ ତାଙ୍କର ସନ୍ଧାନ-ସ୍ନାତ-ମନୀଷା ବେଶ୍ ସ୍ୱନିର୍ଭର ହୋଇ ସାରିଲାଣି । ପ୍ରଚୁର ଅଧ୍ୟୟନ, ପାରିବାରିକ ସଂସ୍କାର, ଗଭୀର ମନନଶୀଳତା ଓ ଯୁକ୍ତି ଆଧାରିତ ଅନ୍ତର୍ଦୃଷ୍ଟିର ସମବାୟରେ ଓଡିଆ ଭାଷା ସାହିତ୍ୟର ଉପାଦାନ-ପ୍ରାଚର୍ଯ୍ୟ ଏକ ଗବେଷଣାଗାର ତାଙ୍କ ଭିତରେ ସୃଷ୍ଟି ହୋଇସାରିଲାଣି । ତାଙ୍କର ପ୍ରବଂଧ ''ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ'' କୋଣାର୍କ ପତ୍ରିକାରେ ପ୍ରକାଶ ପାଇଲା । ପାଠକ ମହଲରେ ଏ ପ୍ରବନ୍ଧର ପ୍ରଚୁର ପ୍ରଶଂସା ଶୁଣାଯାଏ, କେହି କେହି ତଥାକଥିତ 'ପ୍ରବୀଣ'

ସାହିତ୍ୟିକ କୋଣାର୍କ ଭଳି ସଂଭ୍ରାନ୍ତ ପତ୍ରିକାରେ ଜଣେ ଛାତ୍ରର ଲେଖା ପ୍ରକାଶ ଘେନି ଆପତ୍ତି ଉଠାଇଥିଲେ । କିନ୍ତୁ ଲେଖକ ଅପେକ୍ଷା ଲେଖାର ଗୁଣାତ୍ମକ ମାନ ପ୍ରତି ସମାଦର କରୁଥିବା ତତ୍‌କାଳୀନ ପତ୍ରିକା ସଂପାଦକ ମାନେ ସୁଦର୍ଶନ ଆଚାର୍ଯ୍ୟଙ୍କ ପ୍ରବଂଧମାନ ସ୍ୱପତ୍ରିକାରେ ସ୍ଥାନିତ କରିବା ପାଇଁ ଆଦୌ କୁଣ୍ଠିତ ହୋଇ ନଥିଲେ । ଏଣୁ କୋଣାର୍କ, ଝଙ୍କାର, ନିର୍ଭୀକ, ରେଭେନ୍‌ସାଭିଆନ ଆଦି ଅନେକ ପତ୍ରିକାରେ ତାଙ୍କର ପ୍ରବଂଧ ସବୁ ପ୍ରକାଶ ପାଇଲା । ଓଡିଆ ସାହିତ୍ୟର ବହୁ ଅନାଲୋଚିତ କବି ଓ ଗ୍ରନ୍ଥମାନଙ୍କୁ ସେ ପ୍ରଥମ କରି ଲୋକଲୋଚନକୁ ଆଣିଲେ । ଦେଖାଯାଇଛି ଯେ, ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଉପସ୍ଥାପିତ ତଥ୍ୟକୁ ଭିତ୍ତିକରି ସେହି ଲେଖକମାନେ ପରବର୍ତ୍ତୀ କାଳରେ ରଚିତ ଓଡିଆ ସାହିତ୍ୟର ଇତିହାସ ଗ୍ରନ୍ଥ ମାନଙ୍କରେ ସ୍ଥାନଲାଭ କରିଛନ୍ତି । ଅଧ୍ୟାପକ ଜୀବନରେ ପ୍ରଥମ କେତେବର୍ଷ ସୁଦ୍ଧା ସେ ଲେଖିଥିବା ପ୍ରବଂଧ ମାନ ପରବର୍ତ୍ତୀ କାଳରେ ''ସାହିତ୍ୟ ଓ ସାହିତ୍ୟିକ'' ଏବଂ ''ସ୍ରଷ୍ଟା ଓ ସୃଷ୍ଟି'' ଗ୍ରନ୍ଥରେ ସଂକଳିତ ହୋଇଛି । ଓଡିଆ ସାହିତ୍ୟର ଜଣେ ବିଶିଷ୍ଟ ଆଲୋଚକ ଭାବରେ ଏଇ ପ୍ରବଂଧଗୁଡିକ ତାଙ୍କପାଇଁ ସ୍ଥାନଟିଏ ନିର୍ଦ୍ଦିଷ୍ଟ କରି ଦେଇଛନ୍ତି । ୧୯୬୬ ମସିହାରେ 'ଝଙ୍କାର' ର ବିଷୁବ ମିଳନରେ ଶ୍ରେଷ୍ଠ ପ୍ରାବନ୍ଧିକ ପୁରସ୍କାର ପ୍ରାପ୍ତି ତାଙ୍କ ପ୍ରତିଭାର ଯଥାର୍ଥ ସ୍ୱୀକୃତି । ସ୍ନାତକୋତ୍ତର ଶ୍ରେଣୀରେ ଆଧୁନିକ ଓଡିଆ ସାହିତ୍ୟକୁ ସ୍ୱତନ୍ତ୍ରପତ୍ର ଭାବେ ଅଧ୍ୟୟନ କରିମଧ ଡକ୍ଟର ନଟବର ସାମନ୍ତରାୟଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ମଧ ଯୁଗୀୟ ଓଡିଆ ସାହିତ୍ୟ ଗବେଷଣାରେ ସେ ମନୋନିବେଶ କରିଛନ୍ତି । ବିଚ୍ଛନ୍ଦ ଚରଣ ପଟ୍ଟନାୟକ, କେଦାରନାଥ ମହାପାତ୍ର ଓ ଗୌରୀକୁମାର ବ୍ରହ୍ମାଙ୍କ ସାହଚର୍ଯ୍ୟ ଓ ଶୁଭାଶିଷ ଲଭି ଗବେଷଣା କାର୍ଯ୍ୟରେ କୃତିତ୍ୱ ଅର୍ଜନ କରିଛନ୍ତି ।

ଆମ ସାହିତ୍ୟ ଓ ସମାଲୋଚନା କ୍ଷେତ୍ରରୁ ଔପନିବେଶିକ ମନୋବୃତ୍ତିର ପରିହାର ଆବଶ୍ୟକ । ଆମ ସମାଲୋଚନା ପାଶ୍ଚାତ୍ୟ ପଦ୍ଧତିର ଅନ୍ଧାନୁକରଣ ନହୋଇ ଆମ ସାହିତ୍ୟକୁ ହିଁ ଭିତ୍ତିକରି ଗଢ଼ି ଉଠିବା ଦରକାର - ଏଇ ଆଭିମୁଖ୍ୟକୁ ନେଇ ପ୍ରଫେସର ଆଚାର୍ଯ୍ୟଙ୍କ ଜୀବନ ବ୍ୟାପୀ ସାହିତ୍ୟ ସାଧନା ଉତ୍ସର୍ଗୀକୃତ ।

**ସାହିତ୍ୟିକ କୃତି :-**

**କ) ସମାଲୋଚନା :** ସାହିତ୍ୟ ଓ ସାହିତ୍ୟିକ , ସ୍ରଷ୍ଟା ଓ ସୃଷ୍ଟି ।

ଏ ଗ୍ରନ୍ଥଦ୍ୱୟ ସୁଧୀସମାଜର ଅତ୍ୟନ୍ତ ପରିଚିତ ଏଣୁ ଟୀପ୍ପଣୀ ଅନାବଶ୍ୟକ । ଏହାବ୍ୟତୀତ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ଅର୍ଦ୍ଧଶତାଧିକ ପ୍ରବଂଧ ସଂକଳିତ ହେବା ଅପେକ୍ଷାରେ ।

**ଖ) ଗବେଷଣା ନିବନ୍ଧ :** ଓଡିଆ କାବ୍ୟ କୌଶଳ ।

ସାର୍ଦ୍ଧ ତିନିଶତ ବର୍ଷର ମଧ୍ୟକାଳୀନ ଓଡିଆ ସାହିତ୍ୟର ବିବିଧ ରୂପ କୌଶଳ ସଂବଂଧିତ ଏକ ଅନୁପମଗ୍ରନ୍ଥ ମଧ୍ୟକାଳୀନ କାବ୍ୟସାହିତ୍ୟର ଆଲୋଚନାରେ ଏ ଗ୍ରନ୍ଥର ଅନୁଶୀଳନ ଅପରିହାର୍ଯ୍ୟ । ଚଳିତ ଗ୍ରନ୍ଥର ଚତୁର୍ଥଭାଗରେ ଏହାର ସ୍ୱତଂତ୍ର ଆଲୋଚନା ଦ୍ରଷ୍ଟବ୍ୟ ।

**ଗ) ଅନୁବାଦ :**

କଥା ସରିତ ସାଗର

ସୋମଦେବଙ୍କ କଥା ସରିତ ସାଗରରେ ବିଶ୍ବସ୍ତ ଅନୁବାଦ , ଏ ଯାବତ ତିନୋଟି ଭାଗ ପ୍ରକାଶିତ ।

ଜୟଦେବ :

ଏସ୍.କେ.ଚାଟାର୍ଜୀଙ୍କର ମୂଳ ଇଂରାଜୀ ଗ୍ରନ୍ଥର ଅନୁବାଦ କେନ୍ଦ୍ର ସାହିତ୍ୟ ଏକାଡେମୀଙ୍କ ଦ୍ଵାରା ପ୍ରକାଶ ଅପେକ୍ଷାରେ ।

ତେଲୁଗୁ ସାହିତ୍ୟର ଇତିହାସ :

ଏହା ମଧ୍ୟ କେନ୍ଦ୍ର ସାହତ୍ୟ ଏକାଡେମୀ ନିମନ୍ତେ ଇଂରାଜୀରୁ ଅନୁଦିତ, ପ୍ରକାଶ ଅପେକ୍ଷାରେ ।

ନିସର୍ଗ :

ପ୍ରସିଦ୍ଧ କନ୍ନଡ ସାହିତ୍ୟିକ ଶିବରାମ କରନ୍ଥଙ୍କ ଉପନ୍ୟାସର ଅନୁବାଦ, ନ୍ୟାସନାଲ ବୁକ୍‌ଟ୍ରଷ୍ଟଙ୍କ ଦ୍ଵାରା ପ୍ରକାଶ ଅପେକ୍ଷାରେ ।

ପୁରୁଷ ସୂକ୍ତ ଓ ସ୍ତ୍ରୀ ସୂକ୍ତ :

ପଣ୍ଡିତ ଯତିରାଂଙ୍କ ଆଚାର୍ଯ୍ୟଙ୍କ ପ୍ରଣୀତ ଦୁଇଟି ସଂସ୍କୃତ ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶିତ ।

**ଘ) ସଂପାଦନା :-**

ପ୍ରଫେସର ଆଚାର୍ଯ୍ୟ ଆମ ସମୟର ଜଣେ ବଶିଷ୍ଟ ଗ୍ରନ୍ଥ ସଂପାଦକ । ସାହିତ୍ୟ ସମାଲୋଚନା ଅନେକ କରୁଛନ୍ତି ବା ଭବିଷ୍ୟତରେ କରିପାରିବେ, କିନ୍ତୁ ଗ୍ରନ୍ଥ ସଂପାଦନାଭଳି ଆୟାସ ସାଧ୍ୟ କାର୍ଯ୍ୟ ନିମନ୍ତେ ଅନୁସନ୍ଧିତ୍ସୁ ଓ ନିଷ୍ଠାବାନ୍ ତଥା ଉତ୍ସର୍ଗୀକୃତ ଉଦ୍ୟମର ଅପେକ୍ଷାରଖେ । ପ୍ରଫେସର ଆଚାର୍ଯ୍ୟ ଆଲୋଚନା ମୂଳକ ଗ୍ରନ୍ଥର ସଂଖ୍ୟା ବୃଦ୍ଧିରେ ମନୋନିବେଶ ନକରି ସଂପାଦନା କାର୍ଯ୍ୟରେ ବେଶ୍ କିଛି ବର୍ଷ ଧରି ନିୟୋଜିତ ଅଛନ୍ତି । ତାଙ୍କ ସଂପାଦିତ ଗ୍ରନ୍ଥକୁ ତିନୋଟି ପର୍ଯ୍ୟାୟରେ ଲକ୍ଷ୍ୟ କରାଯାଇପାରେ ।

୧ - ପ୍ରକାଶିତ ଅଥଚ ଦୁର୍ଲ୍ଲଭ ରଚନାର ସଂପାଦନା-

ରାମଚନ୍ଦ୍ର ଗ୍ରନ୍ଥାବଳୀ :

-ଏଯାବତ ବ୍ରହ୍ମପୁର ବିଶ୍ବବିଦ୍ୟାଳୟଙ୍କ ଦ୍ଵାରା ତିନୋଟି ଭାଗ ପ୍ରକାଶିତ, ପ୍ରଥମ ଖଣ୍ଡର ମୁଖବନ୍ଧରେ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଜୀବନୀ ଆଲୋଚିତ, ତୃତୀୟ ଖଣ୍ଡରେ ପ୍ରତିଭାର ଆକଳନ କରାଯାଇଛି ।

ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ :

-ଏହା ମଧ୍ୟ ବ୍ରହ୍ମପୁର ବିଶ୍ବବିଦ୍ୟାଳୟ କର୍ତ୍ତୃକ ପ୍ରକାଶିତ ।

ଇନ୍ଦ୍ରଧନୁ

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ଯେଉଁ ଭଳି ଓଡ଼ିଶାର ସାହିତ୍ୟିକ ବାତାବରଣକୁ ଆନ୍ଦୋଳିତ କରିଥିଲ, ଉତ୍ତର ପୁରୁଷ ସେହି ପତ୍ରିକା ଗୁଡ଼ିକୁ ଦେଖିବା ପାଇଁ କୌତୁହଳୀ ହେବା ସ୍ଵାଭାବିକ । ବହୁ ଆୟାସ ସ୍ଵୀକାର କରି ପ୍ରଫେସର

ଆଚାର୍ଯ୍ୟ ଇନ୍ଦ୍ରଧନୁର କେତେକ ସଂଖ୍ୟା ସଂଗ୍ରହ ଓ ସଂକଳିତ କରିଛନ୍ତି । ଏହାର ପାଣ୍ଡିତ୍ୟ ପୂର୍ଣ୍ଣ ମୁଖବଂଧ ଓଡିଆ ଗବେଷଣା ସାହିତ୍ୟ ପାଇଁ ଅତ୍ୟନ୍ତ ଉପାଦେୟ ତଥ୍ୟ ସଂବଳିତ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ,ଏହାକୁ ପ୍ରକାଶ କରିଛନ୍ତି ।

ରାମାୟଣ

-ଫକୀର ମୋହନଙ୍କ ରାମାୟଣର ବାଳକାଣ୍ଡର ସଂପାଦନା ପ୍ରକାଶିତ ।

ଜୀବନ ଚରିତ :

-ଫକୀର ମୋହନଙ୍କ ରଚନା, ୧୮୬୬ରେ ପ୍ରଥମେ ପ୍ରକାଶିତ, ଈଶ୍ୱର ଚନ୍ଦ୍ରଙ୍କ ମୂଳ ବଂଗଳା ପୁସ୍ତକ, ଯାହା ୧୮୪୯ରେ ପ୍ରକାଶ ପାଇଥିଲା, ତାକୁ ଫକୀର ମୋହନ ଅନୁବାଦ କରିଛନ୍ତି, ଏହି ଦୁଷ୍ପ୍ରାପ୍ୟ ପୁସ୍ତକଟିକୁ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଉପାଦେୟ ମୁଖବଂଧ ସହ ବ୍ରହ୍ମପୁର ତାରା ତାରିଣୀ ପୁସ୍ତକାଳୟ ପ୍ରକାଶ କରିଛନ୍ତି ।

ଊନବିଂଶ ଶତାବ୍ଦୀର ପାଞ୍ଚଟି ଅପୂର୍ଣ୍ଣ ଉପନ୍ୟାସ

ଏଇ ନିକଟରେ ପ୍ରକାଶ ପାଉଛି ।

ପୋଥି ସଂପାଦନା

ସ୍ନାତକ ଶ୍ରେଣୀରେ ଅଧ୍ୟୟନ କାଳରୁ ହିଁ ଡକ୍ଟର ଆଚାର୍ଯ୍ୟ ପୋଥିସଂଗ୍ରହ ପ୍ରତି ଆଗ୍ରହୀ ଥିଲେ । ପରବର୍ତ୍ତୀ କାଳରେ ପୋଥି ସଂଗ୍ରହ ଯେମିତି ତାଙ୍କ ଜୀବନର ଏକ ଅଂଶ ପାଲଟିଛି । କେତେକ ପୋଥିର ସଂପାଦନା କାର୍ଯ୍ୟ ସମାପନ କରିଛନ୍ତି । ଏହି ସଂପାଦିତ ଗ୍ରନ୍ଥ ଗୁଡିକ ଖୁବ୍ ଶୀଘ୍ର ପ୍ରକାଶ ପାଇବ ।

| | | |
|---|---|---|
| . ଚିତ୍ରଲେଖା | - | ଲୋକନାଥ ବିଦ୍ୟାଧର |
| . ରସକଳା | - | ଲୋକନାଥ ବିଦ୍ୟାଧର |
| . ଶଶିସେଣା | - | ନରେନ୍ଦ୍ର ଯୁବତୀ |
| . ଅନୁରାଗବତୀ | - | ରାମଚନ୍ଦ୍ର ପଟ୍ଟନାୟକ |
| . ସୁଲକ୍ଷଣା | - | ଚମ୍ପତି ସିଂ |
| . ବାସୁଦେବ ବିଳାସ | - | ନୃସିଂହ ପଟ୍ଟନାୟକ |
| . କୃଷ୍ଣ ବିଳାସ | - | ଚକ୍ରପାଣି |
| . ଜାନକୀଶ ବିଳାସ | - | ଭକ୍ତରାମ ଦାସ |
| . କଳକୀ ପୁରାଣ | | କୃଷ୍ଣଚରଣ ପଟ୍ଟନାୟକ, |

ପାଠ୍ୟପୁସ୍ତକ ସଂପାଦନା

ପାଠ୍ୟ ପୁସ୍ତକ ସଂପାଦନାରେ ତାଙ୍କ ଦୃଷ୍ଟିଭଙ୍ଗୀ ଅଭିନବ, ଏଇ ଅଭିନବତ୍ୱ ହେଉଛି ତାଙ୍କ ପାଠ୍ୟ ପୁସ୍ତକ ସଂପାଦନାର ବିଶେଷତ୍ୱ। ଅନ୍ୟଥା, ପରମ୍ପରିକ ଓ ବ୍ୟବସାୟିକ ଦୃଷ୍ଟିରୁ ସେ ଏଥିରେ ମନୋନିବେଶ କରନ୍ତସ ନାହିଁ, ଉଦାହରଣତଃ 'ନବକଳିକା'- ପ୍ରଥମ ଓ ଦ୍ୱିତୀୟ ଭାଗକୁ ନିଆଯାଇ ପାରେ । ପ୍ରାଚୀନ ଓ ଆଧୁନିକ ଓଡିଆ କବିତାର ୯ଟି ଲେଖା ଏଁ ପ୍ରଭୃପ ନିର୍ଦ୍ଧାରଣ କରି ଏଥିରେ କବିତାମାନ ସଂକଳିତ । ପ୍ରତ୍ୟେକ ପ୍ରଭୃପର ଯେଉଁ ଲାକ୍ଷଣିକ ଏବଂ ଐତିହାସିକ ପରିଚୟ ପ୍ରଦତ୍ତ, ତାପା ଓଡିଆ ଆଲୋଚନା ସାହିତ୍ୟର ଅମୂଲ୍ୟ ସଂପଦ ।

## (ଙ) ମୁଖବଂଧ ଓ ଅଗ୍ରଲେଖ-

ପ୍ରଫେସର ଆଚାର୍ଯ୍ୟଙ୍କ ସଂପାଦିତ ଗ୍ରନ୍ଥ ମାନଙ୍କର ମୁଖବଂଧ ଗୁଡିକରେ ତାଙ୍କର ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ଏଣୁ ଏଗୁଡିକ ଓଡିଆ ଆଲୋଚନା ସାହିତ୍ୟର ଅମୂଲ୍ୟ ସଂପଦ, ଯେଉଁ ଗ୍ରନ୍ଥଟି ହାତକୁ ନେଇଛନ୍ତି, ମୁଖବଂଧରେ ସେ ସଂପର୍କରେ ପୁଙ୍ଖାନୁ ପୁଙ୍ଖ ବିଶ୍ଳେଷଣ କରି ଏକ ପୂର୍ଣାଙ୍ଗ ଓ ସ୍ୱୟଂ ସଂପୂର୍ଣ ବିବରଣୀ ଉପସ୍ଥାପନ କରିଛନ୍ତି । ଏତଦ୍‌ଭିନ୍ନ ବହୁ ଲେଖକଙ୍କ ପ୍ରକାଶିତ ପୁସ୍ତକ ମାନଙ୍କରେ ଅଗ୍ରଲେଖ ପ୍ରସ୍ତୁତ କରି ଯେଉଁ ପାଣ୍ଡିତ୍ୟ ପୂର୍ଣ ଅଭିମତ ପ୍ରଦାନ କରିଥାଆନ୍ତି ତାହା ନିବିଡ ଗବେଷଣା ଧର୍ମୀ ସାହିତ୍ୟ କୃତି ଭଳି ଉଚ୍ଚ କୋଟିର ।

ତତ୍ତ୍ୱାବଧାନ

ପ୍ରଫେସର ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ବହୁ ଗବେଷକ ଏମ୍.ଫିଲ୍. ଓ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଛନ୍ତି, ଆହୁରି ଅନେକେ ଗବେଷଣାରତ । ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବା ସୁଯୋଗ ପ୍ରାପ୍ତିକୁ ଏକ ସୌଭାଗ୍ୟ ଓ ଗୌରବର ବିଷୟ ବୋଲି ସମସ୍ତେ ମନେ କରିଥାଆନ୍ତି । ଠିକ୍ ସେମିତି ଶ୍ରମକାତର ଏବଂ ଆଶୁ କାର୍ଯ୍ୟାଭିଳାଷୀ ଗବେଷକମାନେ ଅଳ୍ପ ଦିନରେ ହିଁ ତାଙ୍କ ପାଖରୁ ଛତ୍ର ଭଙ୍ଗ ଦେଇଥାଆନ୍ତି । ଗବେଷଣାନାମରେ ସମାଲୋଚନା ଅଥବା ରଚନା ଗୁଡିଏ ଲେଖିଦେଇ ତାଙ୍କ ଦୃଷ୍ଟିରୁ କେହି ଖସିଯାଇ ପାରନ୍ତିନି । ବିଷୟ ନିର୍ବାଚନ, ଅଧ୍ୟୟନ, ଆହରଣ, ଅନୁଶୀଳନ, ସମୀକରଣ ଓ ଉପସ୍ଥାପନ - ଗବେଷଣାର ଏଇ ସମସ୍ତ ପର୍ଯ୍ୟାୟକୁ ସେଟିକିନିଖି ଦୃଷ୍ଟିଦେଇ ମାର୍ଗ ଦର୍ଶାଇଥାଆନ୍ତି । ପ୍ରାଚୀନରୁ ଆଧୁନିକ ପର୍ଯ୍ୟନ୍ତ ତାଙ୍କର ଦୃଷ୍ଟିର ଚାରଣ ଭୂମି । ଏ ପର୍ଯ୍ୟନ୍ତ ତାଙ୍କ ତତ୍ତ୍ୱାବଧାନରେ ପ୍ରସ୍ତୁତ ନିବନ୍ଧମାନଙ୍କର ବିଷୟ ଶୀର୍ଷକ ଗୁଡିକୁ ଲକ୍ଷ୍ୟକଲେ ତାଙ୍କର ବହୁମୁଖୀ ସାହିତ୍ୟିକ ଦିଗନ୍ତର ଅଭିଜ୍ଞତା ମିଳି ପାରିବ ।

## (କ) ପିଏଚ୍.ଡି. ନିବନ୍ଧ -

. ଓଡିଆ ସାହିତ୍ୟ ଓ ରାଜପୁତ୍ କାହାଣୀ
. ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସମ୍ଭାରରେ ବକ୍ରୋକ୍ତି
. ଓଡିଆ ଲୋକ ଗଳ୍ପରେ ବର୍ଣନାତ୍ମକ ମୋଟିଫ୍
. ଓଡିଆ କୃଷ୍ଣ କାବ୍ୟରେ ସଂଯୋଜକ ଚରିତ୍ର
. ନନ୍ଦ କିଶୋରଙ୍କ ସାହିତ୍ୟରେ ସମାଜଚିତ୍ର
. ଓଡିଆ ସାହିତ୍ୟକୁ ଡାଲଟେରର ଦାନ
. ଓଡିଆ ଲୋକ ସାହିତ୍ୟରେ ନାରୀ
. ଲାବଣ୍ୟବତୀ : ଏକ ଅଧ୍ୟୟନ
. ଭଞ୍ଜ କାବ୍ୟର ନାୟିକା
. ସାରଳା ମହାଭାରତର ରାଜନୈତିକ ଦର୍ଶନ
. କବି ବିଷ୍ଣୁ ଦାସ

. ଓଡ଼ିଆ ସାମାଜିକ ଉପନ୍ୟାସରେ ଜୀବନ ବୋଧ
. ସୀତାବିଳାସ ରାମାୟଣ : ସଂପାଦନା ଓ ଆଲୋଚନା
. ରାଧାମୋହନ ରାଜେନ୍ଦ୍ର ଦେବ
. ସାରଳା ମହାଭାରତର ଉପକଥା
. ଓଡ଼ିଆ ସାମ୍ବାଦିକତା ଓ ଉତ୍କଳ ଦୀପିକା

(ଖ) ଏମ୍.ଫିଲ୍.ନିବନ୍ଧ -

. ମହାପୁରୁଷ ଶ୍ରୀ ଅରକ୍ଷିତ ଦାସ
. ନାଟ୍ୟକାର ପଦ୍ମନାଭ ନାରାୟଣଦେବ
. ଔପନ୍ୟାସିକ କୃଷ୍ଣ ପ୍ରସାଦ
. କାବ୍ୟଶିଳ୍ପୀ ବେଣୁଧର ରାଉତ
. ରାଜକବି ଜଗନ୍ନାଥ ଦେବ ବର୍ମା
. ଶିଶୁ ସାହିତ୍ୟିକ ବାଳକୃଷ୍ଣ କର
. ସାହିତ୍ୟିକ ତାରିଣୀ ଚରଣ ରଥ
. ଘନଶ୍ୟାମ ମିଶ୍ର କବିଭୂଷଣ
. ଓଡ଼ିଆ କୃଷ୍ଣ କାବ୍ୟରେ ସଂଯୋଜକ ଚରିତ୍ର
. ଓଡ଼ିଆ ଲୋକ ସାହିତ୍ୟରେ ନାରୀ
. ସାରଳା ମହାଭାରତରେ ପଞ୍ଚୁପାଣ୍ଡବ
. ଓଡ଼ିଆ ସାହିତ୍ୟରେ ରାମ କଥାର ପରଂପରା
. ଓଡ଼ିଆ ଆତ୍ମଜୀବନୀ ସାହିତ୍ୟ
. ଓଡ଼ିଆ ନାଟ୍ୟ ସାହିତ୍ୟର ଗୋଟିଏ ଦଶକ
. ଗୋଟିଏ ଦଶନ୍ଧିର ଆଧୁନିକ ଓଡ଼ିଆ କବିତା
. ସାରଳା ମହାଭାରତର ଉପକଥା
. ସୁଭଦ୍ରା ପରିଣୟ : ଏକ ଅଧ୍ୟୟନ
. ଭଞ୍ଜ ସାହିତ୍ୟରେ ଯମକ ଅଳଂକାର
. ଭଞ୍ଜଙ୍କ କାଳ୍ପନିକ କାବ୍ୟରେ ପୌରାଣିକ ପ୍ରଭାବ
. ଉପେନ୍ଦ୍ରଭଞ୍ଜଙ୍କ ଚଉତିଶା ସମ୍ଭାର
. ଉପେନ୍ଦ୍ରଙ୍କ ମଙ୍ଗଳାଚରଣ - ଏକ ଅଧ୍ୟୟନ
. ଭଞ୍ଜୀୟ କାବ୍ୟ ନାୟିକାର ଜନ୍ମ ରହସ୍ୟ
. ଭଞ୍ଜଙ୍କ ଉପାସ୍ୟ ଦେବତା ଶ୍ରୀ ରଘୁନାଥ
. ମହାନାଟକ ଓ ବୈଦେହୀଶ ବିଳାସ : ଏକ ତୁଳନାତ୍ମକ ଅଧ୍ୟୟନ
. ସୁବର୍ଣ୍ଣରେଖା : ସଂପାଦନା ଓ ଅନୁଶୀଳନ
. କାଳୀଚରଣଙ୍କ ସାମାଜିକ ନାଟକ
. ମନୋରଞ୍ଜନଙ୍କ ନାଟକରେ ସାମାଜିକ ସମସ୍ୟା

. ଅଶ୍ୱିନୀ କୁମାରଙ୍କ ଐତିହାସିକ ନାଟକ
. ସାଂପ୍ରତିକ ଓଡିଆ ନାଟକ
. ରାଧାନାଥଙ୍କ କାବ୍ୟଶିଳ୍ପ
. ସତ୍ୟବାଦୀ ସାହିତ୍ୟରେ ଇତିହାସର ପଦଧ୍ୱନି
. ଓଡିଶାର ପ୍ରାଚୀନତମ ଆଦିବାସୀ
. ରାମାୟଣରତ୍ନମାଳା - ଏକ ସାହିତ୍ୟିକ ବିଶ୍ଳେଷଣ
. ଓଡିଆଣୀର ଦିନଚର୍ଯ୍ୟା
. ଉତ୍କଳ ସାହିତ୍ୟରେ ଫଳିତଜ୍ୟୋତିଷ ବିଚାର
. ଫକୀରମୋହନଙ୍କ ଉପନ୍ୟାସରେ ଗୌଣନାରୀ ଚରିତ୍ର
. ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସରେ ହାସ୍ୟରସ
. କାହ୍ନୁ ଚରଣଙ୍କ ଉପନ୍ୟାସରେ ସାମାଜିକ ସମସ୍ୟା

ଏବଂ ଆହୁରି ଅନେକ, ଓଡିଆ ସାହିତ୍ୟାଲୋଚନାର ଏକ ବିସ୍ତୃତ ଦିଗନ୍ତ ଏଇ ବିଷୟ ଶୀର୍ଷକ ମାନଙ୍କରୁ ସୂଚିତ ହେଉଛି ।

**ସାହିତ୍ୟ ସଂଗଠନ :**

ଖଲ୍ଲିକୋଟ କଲେଜରେ ଅଧ୍ୟୟନ କାଳରେ ହିଁ ପ୍ରଫେସର ଆଚାର୍ଯ୍ୟ ସଂଗଠନାତ୍ମକ କାର୍ଯ୍ୟରେ ସଂପୃକ୍ତ ଥିଲେ । ଏତିକିବେଳେ ଯୁଗସାହିତ୍ୟ ସଂସଦର ପ୍ରତିଷ୍ଠା ତାଙ୍କ ଉଦ୍ୟମରେ ହୋଇଥିଲା । ଏଠାରେ ଅଧ୍ୟାପକ ଭାବରେ କାର୍ଯ୍ୟକାଳ ମଧ୍ୟରେ 'ସ୍ରଷ୍ଟା ଓ ସୃଷ୍ଟି' ସଂସ୍ଥାର ଆରମ୍ଭ ହୋଇଥିଲା । ଏହି ସଂସ୍ଥା ତରଫରୁ ଜାପାନୀବାବୁଙ୍କ ପ୍ରଥମ ଗଳ୍ପ ସଂକଳନ ପ୍ରକାଶ ପାଇଥିଲା । ଓଡିଶାର ବିଶିଷ୍ଟ କବି / ଲେଖକଙ୍କ ସମ୍ପର୍କରେ ଏକକ ଆଲୋଚନାମୂଳକ ପୁସ୍ତକ ପ୍ରକାଶନ ପାଇଁ ଡକ୍ଟର ଆଚାର୍ଯ୍ୟଙ୍କ ଉଦ୍ୟମ ଓ ଆଭିମୁଖ୍ୟ ସେତେବେଳେ ଓଡିଶାର ସୁଧୀମହଲରେ ଦୃଷ୍ଟି ଆକର୍ଷଣ କରିଥିଲା । ଡକ୍ଟର କ୍ଷେତ୍ରବାସୀ ନାୟକ, ଡକ୍ଟର ନାରାୟଣ ଶତପଥୀ, ଡକ୍ଟର ବ୍ରହ୍ମାନନ୍ଦ ସିଂହ ପ୍ରମୁଖ ବିଶିଷ୍ଟ ଆଲୋଚକମାନେ ଡ. ଆଚାର୍ଯ୍ୟଙ୍କ ସହ ଏହି ମହତ୍ ଆଭିମୁଖ୍ୟରେ ସାମିଲ୍ ହୋଇଥିଲେ । ୧୯୭୨ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଏବଂ ୟୁଜିସି ଙ୍କ ଆର୍ଥିକ ସହାୟତାରେ ଭଞ୍ଜସାହିତ୍ୟ ସଂପର୍କରେ ଏକ ପାଠଚକ୍ରର ସେ ଆୟୋଜନ କରିଥିଲେ । ୧୯୮୮ ରେ ପୁନଶ୍ଚ ୟୁଜିସି ଆନୁକୂଲ୍ୟରେ 'ଭଞ୍ଜ ସାହିତ୍ୟ ଆଲୋଚନା : ସୀମା ଓ ସମ୍ଭାବନା' ସଂପର୍କରେ ଦୁଇଦିନିଆ ସଂପାନର ଆୟୋଜନ କରିଥିଲେ । ଭଞ୍ଜନଗର କଲେଜରେ ଗତ ଦଶବର୍ଷଧରି ଅନୁଷ୍ଠିତ ହେଉଥିବା ବାର୍ଷିକ ଭଞ୍ଜ ପାଠଚକ୍ରର ସେ ଉପଦେଷ୍ଟା ଓ ଆଲୋଚକ ଭାବରେ କାର୍ଯ୍ୟସଂପାଦନ କରୁଛନ୍ତି ।

ଏତଦ୍‌ବ୍ୟତୀତ ପ୍ରଫେସର ଆଚାର୍ଯ୍ୟ ଓଡିଶା ଓ ଭାରତର ବିଭିନ୍ନ ଭାଷା-ସାହିତ୍ୟ-ସଂସ୍କୃତି ଅନୁଷ୍ଠାନ ସହ ଜଡିତ । ଶାନ୍ତିନିକେତନ, ମଣିପୁର ବିଶ୍ୱ ବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ବାଣୀବିହାର ଇତ୍ୟାଦିରେ ଅନୁଷ୍ଠିତ କର୍ମଶାଳା, ପାଠଚକ୍ର ପ୍ରଭୃତିରେ ଯୋଗ

ଦେଇଛନ୍ତି । ଦିଲ୍ଲୀ ମୁକ୍ତ ବିଶ୍ୱବିଦ୍ୟାଳୟ ତରଫରୁ ଅନୁଷ୍ଠିତ ସଂପାନରେ ଯୋଗଦାନ କରିଛନ୍ତି। ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଆଞ୍ଚଳିକ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ତାଙ୍କର ଏକ ବଡସିଦ୍ଧି ! ଏମ୍.ଓ୍ୱାଇ.ରାଓ ପ୍ରଶାସକ ଥିବାବେଳେ ୟୁଜିସିଙ୍କ ନନ୍‌ପ୍ଲାନ ଗ୍ରାଣ୍ଟ ନିମନ୍ତେ ପ୍ରସ୍ତାବ ଆହ୍ୱାନ କରିଥିଲେ । ତଦନୁସାରେ ପ୍ରଫେସର ଆଚାର୍ଯ୍ୟ ଆଞ୍ଚଳିକ ଗବେଷଣା କେନ୍ଦ୍ରର ଯୋଜନା ଉପସ୍ଥାପନ କଲେ । ୟୁଜିସିଙ୍କ ମଞ୍ଜୁରୀ ପାଇ ଗବେଷଣା କେନ୍ଦ୍ର ଖୋଲିଲା । ସମଗ୍ର ଦକ୍ଷିଣ ଓଡିଶାର ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଗବେଷଣା କେନ୍ଦ୍ର ରୂପେ ଗଢିତୋଳିବା ଏହି ଯୋଜନାର ଲକ୍ଷ୍ୟ । ୟୁଜିସି ଦୁଇଲକ୍ଷ ଟଙ୍କା ଅନୁଦାନ ଦେଲେ, ଏଥିରେ ଏବେ ସୁଦ୍ଧା ଦୁଇ ହଜାର ପୋଥି, ବହୁ ପତ୍ର ପତ୍ରିକା, ଦକ୍ଷିଣ ଓଡିଶାର ସାଂସ୍କୃତିକ ଉପାଦାନ ଇତ୍ୟାଦି ସଂଗୃହୀତ ହୋଇ ପାରିଛି । ଦକ୍ଷିଣ ଓଡିଶାର ପ୍ରତ୍ୟେକ ଅଞ୍ଚଳରୁ ଏ ଉପାଦାନ ସଂଗ୍ରହ ପାଇଁ ସେ ଉଦ୍ୟମ କରିଛନ୍ତି । ଏହା ସହିତ ବିଶ୍ୱବିଦ୍ୟାଳୟ ମ୍ୟୁଜିୟମରେ ସଂଗୃହୀତ ପ୍ରାୟ ଚାରିହଜାର ପୋଥି ଓ ଅନ୍ୟାନ୍ୟ ଉପାଦାନ ମଧ୍ୟରୁ ଅଧିକାଂଶ ପ୍ରଫେସର ଆଚାର୍ଯ୍ୟଙ୍କ ଦ୍ୱାରା ହିଁ ସଂଗୃହୀତ, ୟୁଜିସିର ପରିଦର୍ଶକ ମାନେ ଏ କେନ୍ଦ୍ରର ଭୂୟସୀ ପ୍ରଶଂସା କରି ଲିଖିତ ମନ୍ତବ୍ୟ ପ୍ରଦାନ କରିଛନ୍ତି। କିନ୍ତୁ ପରବର୍ତ୍ତୀ କାଳରେ ବିଶ୍ୱବିଦ୍ୟାଳୟ ପ୍ରଶାସନ ତରଫରୁ ଏ କେନ୍ଦ୍ରର ଉନ୍ନତି ପାଇଁ ସେମିତି ଆଗ୍ରହ ପ୍ରକାଶ ପାଇନାହିଁ । ଏଣୁ ଏହାର ଭବିଷ୍ୟତ ସଂପର୍କରେ ପ୍ରଫେସର ଆଚାର୍ଯ୍ୟ ଏବେ ସନ୍ଦିହାନ ।

**<u>ଶିକ୍ଷାବିତ୍‌ର ଭୂମିକା</u>**

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗରେ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ ସହ ଶ୍ରୀଯୁକ୍ତ ଆଚାର୍ଯ୍ୟ ହେଉଛନ୍ତି ପ୍ରଥମ ନିୟମିତ ନିଯୁକ୍ତ ଅଧ୍ୟାପକ । ଏଣୁ ହିଁ ତାଙ୍କର ଗୁରୁଦାୟିତ୍ୱ ସଂପର୍କରେ ସେ ଅଧିକ ସଚେତନ ଭାବେ କାର୍ଯ୍ୟ କରିଛନ୍ତି । ନବଜାତ ବିଶ୍ୱବିଦ୍ୟାଳୟର ସ୍ନାତକ ସ୍ତରରେ ମାତୃଭାଷା, ଇଚ୍ଛାଧୀନ ଓ ସମ୍ମାନ ଶ୍ରେଣୀରେ ଓଡିଆ ପାଠ୍ୟକ୍ରମ ଏବଂ ସ୍ନାତକୋତ୍ତର ତଥା ପରବର୍ତ୍ତୀ କାଳରେ ଏମ୍.ଫିଲ୍. ପାଇଁ ପାଠ୍ୟ ଖସଡା ପ୍ରସ୍ତୁତିରେ ପ୍ରଫେସର ଆଚାର୍ଯ୍ୟଙ୍କ ଦୂରଦର୍ଶିତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ପୁରୋଗାମିତାର ପରିଚୟନିହିତ । ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ଭାଷା ସାହିତ୍ୟ ଶିକ୍ଷାର ଆଧୁନିକ ତମ ପ୍ରବିଧି ସହ ସଂପର୍କ ସ୍ଥାପନ କରି ବିଶ୍ୱବିଦ୍ୟାଳୟର ପାଠ୍ୟ ଖସଡାକୁ ସେ ସମୟାନୁକ୍ରମେ ନବନ୍ୟାସ କରିଛନ୍ତି । ଏହିକାର୍ଯ୍ୟରେ ସେ ଆନୁଷ୍ଠାନିକ ଦାୟିତ୍ୱ ନିର୍ବାହ ପରିବର୍ତ୍ତେ ଆନ୍ତରିକ ଭାବେ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଥାଆନ୍ତି ।

ବିଭିନ୍ନ ଶୈକ୍ଷିକ ସଂସ୍ଥା ତାଙ୍କର ବିଦ୍‌ବତ୍ତାର ସ୍ୱୀକୃତି ସ୍ୱରୂପ ତାଙ୍କ ଅଭିଜ୍ଞତା ଓ ପରାମର୍ଶର ଉପଯୋଗ କରିବା ପାଇଁ ଆଗ୍ରହ ପ୍ରକାଶ କରିଥାଆନ୍ତି । ଆନ୍ଧ୍ର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତଥା ଶାନ୍ତିନିକେତନର ଉପଦେଷ୍ଟା ସମିତି, ପାଠ୍ୟ ପରିଚାଳନା ସମିତିର ସେ ସଦସ୍ୟ । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଓ ଓଡିଶା ସାହିତ୍ୟ ଏକାଡେମୀର ସଦସ୍ୟ ଭାବରେ ଦାୟିତ୍ୱ ନିର୍ବାହ କରିଛନ୍ତି । ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରଶ୍ନକର୍ତ୍ତା, ପରୀକ୍ଷକ , ମୋଡେରେଟର ଇତ୍ୟାଦି କାର୍ଯ୍ୟମଧ୍ୟ ତାଙ୍କଦ୍ୱାରାସଂପାଦିତ । ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ପରୀକ୍ଷା ସଂପର୍କିତ କାର୍ଯ୍ୟରେ ତାଙ୍କର ସହାୟତା ଉଲ୍ଲେଖନୀୟ । ସଂପ୍ରତି ଓଡିଶା ସରକାରଙ୍କର ପାରିଭାଷିକ ଶବ୍ଦାନୁବାଦ କମିଟିର ସଦସ୍ୟ ଭାବରେ କାର୍ଯ୍ୟରତ ।

**ପୁରସ୍କାର ଓ ସମ୍ମାନ**

ପ୍ରଚାର ବିମୁଖ ଏଇ ନିରହଙ୍କାର ସାଧକ କେବେହେଲେ ପୁରସ୍କାର ବା ସମ୍ମାନର ପ୍ରତୀକ୍ଷା କରିନାହାନ୍ତି । କହିବାକୁ ଗଲେ, ଏସବୁ ସଂପର୍କରେ ସେ ଅତିମାତ୍ରାରେ ଉଦାସୀନ । ଅଗଣିତ ଗୁଣମୁଗ୍‌ଧଙ୍କ ହୃଦୟର ଶ୍ରଦ୍ଧା ନିବେଦନ ହିଁ ତାଙ୍କ ପାଇଁ ସବୁଠୁଁ ବଳି ପୁରସ୍କାର । ଜ୍ୟେଷ୍ଠ କନିଷ୍ଠ ନିର୍ବିଶେଷରେ ସମସ୍ତଙ୍କର ସେ ପ୍ରିୟ । ଉଦାସୀନତା ସତ୍ତ୍ୱେ ବି ଓଡିଶାର ବହୁ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ହୋଇଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତିଙ୍କ ବିଷୁବ ପୁରସ୍କାର, ଉଦୟପୁରର ଯଦୁମଣି ସାହିତ୍ୟ ସଂସଦ, ଉତ୍କଳ ପରିଷଦ, ଶିଶୁ ସାହିତ୍ୟ ସଂସଦ, କଳିଙ୍ଗ ସାହିତ୍ୟ ସମାଜ (ଭଞ୍ଜ ଭାରତୀ ସମ୍ମାନ) କୋଦଳାର ମାଣିକ ସଂଗଠନ ( 'ଆମ ମାଣିକ' ସମ୍ମାନ) ଇତ୍ୟାଦି ତନ୍ମଧ୍ୟରୁ କେତୋଟି ଉଲ୍ଲେଖନୀୟ ।

ସଦାସାଧନାନିରତ ଏଇ କର୍ମ ଯୋଗୀଙ୍କର ଷଷ୍ଠିପୂର୍ତ୍ତି ଅବସରରେ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ।

***ସଂପାଦକ***

# ଚମତ୍କାର ବାଦ : ସୀମା ଓ ସମ୍ଭାବନା

ପ୍ରଫେସର ଡକ୍ଟର ଦାଶରଥି ଦାସ

In wonder all philosophy began, in wonder it ends, and admiration fills up the interspace ; but the first wonder is the offspring of ignorance, the last is the parent of adoration- Coleridge.

(ଏକ)

ଚମତ୍କାର ବାଦର ପ୍ରବର୍ତ୍ତକ ଆଚାର୍ଯ୍ୟ ନାରାୟଣ । ଆଚାର୍ଯ୍ୟ ମହୋଦୟ ଓଡିଶାର ଆଳଙ୍କାରିକ । ସେ 'ସାହିତ୍ୟ- ଦର୍ପଣ' ପ୍ରଣେତା ବିଶ୍ୱନାଥ କବିରାଜଙ୍କର ପ୍ରପିତାମହ । ତାଙ୍କ ପାଇଁ ପ୍ରପୌତ୍ର ଦୁଇଟି ବିଶେଷଣ ପ୍ରୟୋଗ କରିଛନ୍ତି , ସହୃଦୟ ଗୋଷ୍ଠୀ ଗରିଷ୍ଠ ଓ କବି ପଣ୍ଡିତ ମୁଖ୍ୟ । କିନ୍ତୁ ପରିତାପର ବିଷୟଯେ ଏପରି ଏକ ମହତ୍ ଆଚାର୍ଯ୍ୟଙ୍କ ରଚନା ଓ କାବ୍ୟାଦର୍ଶ ପରବର୍ତ୍ତୀ କାଳରେ ବିଶେଷ ଗୁରୁତ୍ୱ ଲାଭ କରିନାହିଁ , ରଚନା ଟି ହଜିଛି ଓ ମତଟି ଅନାଦୃତ ହୋଇଛି । ଏପରିକି ଯେଉଁ ବିଶ୍ୱନାଥ କବିରାଜ ବୃଦ୍ଧ ପ୍ରପିତାମହଙ୍କର ମତ ଉଦ୍ଧାର କରି ରସର ସଂଜ୍ଞା ନିରୂପଣ କରିଛନ୍ତି ସେ ମଧ ତାଙ୍କ ପ୍ରତି ଉପଯୁକ୍ତ ମର୍ଯ୍ୟାଦା ପ୍ରଦର୍ଶନ କରିନାହାନ୍ତି । ତଥାପି ତାଙ୍କ ଯୋଗୁଁ ନାରାୟଣଙ୍କର ରଚିତ ଗୋଟିଏ ଶ୍ଳୋକରୁ ତିନି ଧାଡି ବଞ୍ଚି ଯାଇଛି, ' ସାହିତ୍ୟ ଦର୍ପଣ' ରେ ସେ ନିଜ ମତର ପ୍ରତିପାଦନାର୍ଥେ ସେହି ତିନି ଧାଡି ଉଦ୍ଧାର କରିଛନ୍ତି ।

ରସେ ସାରଶ୍ଚମତ୍କାରଃ ସର୍ବତ୍ରାପ୍ୟନୁଭୂୟତେ
ତଚ୍ଚମତ୍କାର ସାରତ୍ୱେ ସର୍ବତ୍ରାପ୍ୟଦ୍ଭୁତୋ ରସଃ ।
ତସ୍ମାଦଦ୍ଭୁତମେବାହ କୃତି ନାରାୟଣୋ ରସମ୍ ।।

(ତୃତୀୟ ପରିଚ୍ଛେଦ)

ସର୍ବତ୍ର ରସରେ ଚମତ୍କାରହିଁ ସାର ଭାବରେ ଗୃହୀତ ହୋଇଥାଏ । ଏଣୁ ଚମତ୍କାର ସାର ହେତୁ ସବୁଠାରେ ରସ ହେଉଛି ଅଦ୍ଭୁତ । ଆଚାର୍ଯ୍ୟ ନାରାୟଣ ରସକୁ ଅଦ୍ଭୁତ ବୋଲି ଘୋଷଣା କରନ୍ତି । ଅର୍ଥାତ ଅଦ୍ଭୁତହିଁ ଏକମାତ୍ର ରସ । ରସେ ସାରଃ ଚମତ୍କାରଃ - ରସର ମୌଳିକ ଉପାଦାନ ଚମତ୍କାର । ଏହି ତତ୍ତ୍ୱରୁ ପ୍ରେରଣା ପାଇ ବିଶ୍ୱନାଥ କବିରାଜ ରସର ସ୍ୱରୂପ ନିର୍ଣ୍ଣୟ କରନ୍ତି, ରସ ହେଉଛି 'ଲୋକୋତ୍ତର ଚମତ୍କାର ପ୍ରାଣଃ' ରସର ପ୍ରାଣ ଚମତ୍କାର । କ'ଣ ଏ ଚମତ୍କାରର ସ୍ୱରୂପ ? ଚମତ୍କାରଶ୍ଚିତ୍ତ ବିସ୍ତାର ରୂପଃ । ଚମତ୍କାର ହେଉଛି ଚିତ୍ତ ବିସ୍ତାର । ଚିତ୍ତ ସଂକୋଚ ଅବସ୍ଥାରେ 'ମୋର ତୋର' ଜ୍ଞାନ ଥାଏ । ରସାନୁଭୂତି କାଳରେ ଏହି ଜ୍ଞାନ ତିରୋହିତ ହୁଏ । ଚିତ୍ତର ବିସ୍ତାର ଘଟେ । ସେ ଚମତ୍କାରକୁ ବିସ୍ମୟର ଗୋଟିଏ ଅନ୍ୟପର୍ଯ୍ୟାୟ ବାଚକ ଶବ୍ଦ ବୋଲି ଗ୍ରହଣ କରିଛନ୍ତି ଓ ବୃଦ୍ଧ ପ୍ରପିତାମହଙ୍କ ବାକ୍ୟ ଉଦ୍ଧାର କରି ନିଜ ମତର ମଣ୍ଡନ କରିଛନ୍ତି । ରସ ଚମତ୍କାର ପ୍ରାଣ , ଏଇଠି ନାରାୟଣ ଙ୍କ ସ୍ମୃତି ଉଦ୍‌ବୋଧନରେ ପୂର୍ଣ୍ଣଚ୍ଛେଦ ଘଟିଛି । ସେ ଚମତ୍କାର ପ୍ରାଣ ଅଦ୍ଭୁତ ରସକୁ ପ୍ରକୃତ ରସ ବୋଲି ଘୋଷଣା କରି ଅନ୍ୟସବୁ ରସକୁ ତାହାର ବିକୃତି ବୋଲି କହିବାକୁ ଯାହା ଚାହିଁଥିଲେ , ତାହା ଆଉ କୌଣସି ଆଳଂକାରିକଙ୍କ ଦୃଷ୍ଟି ଆକର୍ଷଣ କରିନାହିଁ ।

ନାଟ୍ୟ ଶାସ୍ତ୍ରରେ ଅଦ୍ଭୁତ ରସକୁ ମାନ୍ୟତା ଦିଆଯାଇଛି । ତା'ର ସ୍ଥାୟୀ ଭାବ ବିସ୍ମୟ, ତେଣୁ ଆଚାର୍ଯ୍ୟ ଭରତ ପ୍ରକାରାନ୍ତରେ ଚମତ୍କାରର ଭୂମିକା ସ୍ୱୀକାର କରିଛନ୍ତି । ଆଖ୍ୟାନ୍ ଭାଗ ଅବଶ୍ୟ ଆଶ୍ଚର୍ଯ୍ୟ ଜନକ ହେବ - ''ଆଶ୍ଚର୍ଯ୍ୟ ବଦ୍‌ଭିଖ୍ୟାନମ୍'' । ଆଉ କେଉଁ କେଉଁ ବିଭାବ ଅଦ୍ଭୁତ ରସର ଅଭିବ୍ୟକ୍ତିରେ ଉଦ୍ଦୀପକ ହୋଇପାରିବେ ତାହାର ତାଲିକା ପ୍ରସ୍ତୁତ କରିଛନ୍ତି ଟୀକାକାର ଅଭିନବ ଗୁପ୍ତ ଯଥା- ଦିବ୍ୟଜନ ଦର୍ଶନ ଓ ଅସମ୍ଭବ ବସ୍ତୁ ପ୍ରଦର୍ଶନ ଇତ୍ୟାଦି ଇତ୍ୟାଦି । ଅସମ୍ଭବ ବସ୍ତୁ ପ୍ରଦର୍ଶନରେ ବିସ୍ମୟ ଭାବ ଉଦ୍ରିକ୍ତ ହୋଇଥାଏ । ଏଣୁ ବୁଝିବାକୁ ହୁଏ ଯେ ନାରାୟଣଙ୍କ ବହୁପୂର୍ବରୁ ଚମତ୍କାରର ବୀଜ ଉପସ୍ଥିତ ଥିଲା । ସେ ତାହାକୁ ଏକ ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱରେ ପରିଣତ କରିଦେଇଛନ୍ତି । ବିଶ୍ୱନାଥ କବିରାଜ ରସକୁ ଚମତ୍କାର ପ୍ରାଣ କହନ୍ତି , କିନ୍ତୁ ପ୍ରପିତାମହଙ୍କ ପ୍ରତିପାଦ୍ୟତତ୍ତ୍ୱକୁ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ଚମତ୍କାର ବାଦ୍ ପ୍ରତି ଉଦାସୀନତାରୁ ନାରାୟଣ ବିସ୍ମୃତି ଗର୍ଭରେ ଲୀନ ହୁଅନ୍ତି । ପରବର୍ତ୍ତୀ କାଳରେ ପଣ୍ଡିତରାଜ ଜଗନ୍ନାଥ ପୁଣି ଥରେ ଚମତ୍କାରବାଦର ଉଦ୍‌ବୋଧନ ଚାହିଁଛନ୍ତି ଓ କାବ୍ୟରେ ବିସ୍ମୟ ରସର ଭୂମିକା ହୃଦ୍‌ବୋଧ କରାଇବାକୁ କାବ୍ୟର ନୂଆ ସଂଜ୍ଞା ନିରୂପଣ କରିଛନ୍ତି, 'ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍ । ଆଉ ରମଣୀୟ ଶବ୍ଦଟିର ବ୍ୟାଖ୍ୟାରେ କହିଛନ୍ତି ଯାହା ଲୋକୋତ୍ତର ଆନନ୍ଦ ଦିଏ ତାହା ହିଁ ରମଣୀୟ । ତାଙ୍କ ପାଇଁ ଲୋକୋତ୍ତର ଓ ଚମତ୍କାର ଏକାକଥା । ଅଲୌକିକ ବସ୍ତୁ ଓ ଭାବର ଉଜ୍ଜ୍ୱଳ ଉଦଭାସକ ହିଁ ବିସ୍ମୟ ଉପୁଯାଇଥାଏ । ଲୋକୋତ୍ତର ଓ ଲୋକୋତ୍ତୀର୍ଣ୍ଣ ଶବ୍ଦ ଦୁଇଟିର ଆଳଙ୍କାରିକ ପ୍ରୟୋଗ ପୂର୍ବରୁ ଥିଲା , କିନ୍ତୁ ପଣ୍ଡିତରାଜ ଜଗନ୍ନାଥ ଶବ୍ଦ ଦୁଇଟିକୁ କାବ୍ୟର ବା ସାହିତ୍ୟାଲୋଚନା କ୍ଷେତ୍ରରେ ନୂଆ ମର୍ଯ୍ୟାଦା ପ୍ରଦାନ କଲେ । ଲୋକୋତ୍ତୀର୍ଣ୍ଣତା ବା ଲୋକୋତ୍ତରତା କାବ୍ୟର ଅପରିହାର୍ଯ୍ୟ ମୂଳ ବୀଜ - ତାର ଅନୁପସ୍ଥିତିରେ କାବ୍ୟ ନିରସ୍ତିତ୍ୱ ହୋଇଉଠିବ ।

## (ଦୁଇ)

ଚମତ୍କାରବାଦ ପ୍ରତି ସଂସ୍କୃତ ଆଳଂକାରିକମାନେ ଅନୁତ୍ସାହୀ ନିଶ୍ଚୟ । କିନ୍ତୁ କବି ଏ ଚମତ୍କାରିତା ସୃଷ୍ଟିରେ ସଦା ନୀରଳସ । ଏଥିପାଇଁ ସେମାନେ ନାନା ଉପାୟ ଅବଲମ୍ବନ କରିଛନ୍ତି ; କେବଳ ଅଦ୍ଭୁତ ରସର ଉଦ୍ଦୀପକ ବିଭାବ ଅନୁସଂଧାନରେ ସେମାନେ ସମସ୍ତ ଶକ୍ତି ବ୍ୟୟ କରି ନାହାନ୍ତି, ଚମତ୍କାରିତା ସୃଷ୍ଟି ଉପଲକ୍ଷେ ବି ନୂଆ ନୂଆ କୌଶଳ ପ୍ରୟୋଗ କରିଛନ୍ତି । ନିକଟ ଅତୀତରେ ଏ.ଭି.ସୁବ୍ରମାନିୟାନ୍ (A.V.Subramanian) The Aesthetics of Wonder ନାମକ ବହିଟିଏ ଲେଖିଛନ୍ତି । ପ୍ରକାଶ କାଳ ୧୯୮୮ । ପ୍ରକାଶକ ମୋତିଲାଲ ବନାରସୀ ଦାସ । ବହିଟିରେ ଲେଖକ ଚମତ୍କାରିତା ସୃଷ୍ଟିର ବ୍ୟାପ୍ତି ଓ ବୈଚିତ୍ର୍ୟ ନିରୂପଣ ଉଦ୍ଦେଶ୍ୟରେ ସଂସ୍କୃତ କବିଙ୍କ ରଚନାରୁ ସଦୃଷ୍ଟାନ୍ତ ୭୩ ପ୍ରକାର ପ୍ରୟୋଗ ଭଂଗୀ ଆବିଷ୍କାର କରିଛନ୍ତି ଓ ଆମପାଇଁ ଚମତ୍କାରିତା ସୃଷ୍ଟିର କୌଶଳ ଉନ୍ମୋଚନ କରି ଦେଇଛନ୍ତି । ଦ୍ରଷ୍ଟବ୍ୟ । ସଂଖ୍ୟା ଆହୁରି ବଢ଼ାଇ ହେବ । ଉଦାହରଣାର୍ଥ ଏଠାରେ ଅଳ୍ପ କେତୋଟି ପ୍ରୟୋଗଭଂଗୀର ଦୃଷ୍ଟାନ୍ତ ଦିଆଯାଉଛି ।

### ୧. ଅଦ୍ଭୁତ ରସର ଉଦ୍ଦୀପକ ବିଭାବ :

ଅଭିନବ ଭାରତୀରେ ଅଭିନବ ଗୁପ୍ତ ଅଦ୍ଭୁତ ରସର ଯେଉଁ ବିଭାବ ତାଲିକା ପ୍ରସ୍ତୁତ କରିଛନ୍ତି, ତାହାହିଁ ଚମତ୍କାରିତା ସୃଷ୍ଟିର ମୂଳ ଉପାୟ । ନିମ୍ନୋକ୍ତ ପରିସ୍ଥିତିରେ ଅଦ୍ଭୁତ ରସ ଅଭିବ୍ୟକ୍ତ ହୋଇଥାଏ, '' ରଚ ଦିବ୍ୟଜନ ଦର୍ଶନେପ୍ସିତମନୋରଥା ବାପ୍ତ୍ୟୁପବନ ଦେବକୁଳା ଦିଗମନ ସଭାବିମାନ ମାୟେନ୍ଦ୍ର ଜାଲ ସମ୍ଭାବନା ଦିଭିଃ ବିଭବୈରୁପ୍‌ଦ୍ୟତେ । '' ଅଦ୍ଭୁତ ଓ ଅତି ପ୍ରାକୃତିକ ଘଟନା ସଂଯୋଜନା ଚମତ୍କାରିତା ସୃଷ୍ଟିର ପ୍ରଥମ ଉପାୟ । ଏହି ଉପାୟଟିର ପ୍ରୟୋଗ ପ୍ରଚୁର । 'ସୁଭାଷିତରତ୍ନ ଭାଣ୍ଡାଗାର'ରୁ ସରଳ ଶ୍ଳୋକଟିଏ ଦେଖନ୍ତୁ ।

କିଂ କ୍ରମିଷ୍ୟତି କିଲୈଷ ବାମନଃ
ଯାବଦିତ୍ଥ ମହସନ୍ତ ଦାନବାଃ
ତାବଦସ୍ୟ ନ ନମୌ ନଭସ୍ତଳେ
ଲଂଘିତାର୍କ ଶଶିମଣ୍ଡଳଃ କ୍ରମଃ ।।

ଯେଉଁ ଅସୁରଗଣ ବାମନ ମୂର୍ତ୍ତି ଦେଖି ଉପହାସ କରୁଥିଲେ ସେମାନଙ୍କୁ ଚନ୍ଦ୍ର ସୂର୍ଯ୍ୟ ମଣ୍ଡଳ ଭେଦ୍ୟ ବିରାଟ ରୂପ ପ୍ରଦର୍ଶନ କରାଇ ନାରାୟଣ ସ୍ତବ୍ଧ ଓ ଚକିତ କରି ଦେଇଛନ୍ତି ।

**୨. କଥାବସ୍ତୁରେ ଆଶ୍ଚର୍ଯ୍ୟ ଘଟନା ସଂଯୋଜନା :**

ମୁଦ୍ରାରାକ୍ଷସ, ମୃଚ୍ଛକଟିକ କି ମାଲତୀ ମାଧବ ପରି ଅଳ୍ପ କେତୋଟି ନାଟକ ଭିନ୍ନ ଅନ୍ୟ ସର୍ବତ୍ର କବି ଓ ନାଟ୍ୟକାରଗଣ କଥାବସ୍ତୁ ସଂଗ୍ରହ କରିଛନ୍ତି ରାମାୟଣ ଓ ମହାଭାରତରୁ । ମୌଳିକତା ପ୍ରଦର୍ଶନର କ୍ଷେତ୍ର ସୀମିତ ନିଶ୍ଚୟ । କିନ୍ତୁ ଚରିତ୍ର ସୃଷ୍ଟି ଓ ରସସଂଯୋଜନା ଉପଲକ୍ଷେ ସେମାନେ ମୂଳ କଥାବସ୍ତୁକୁ ଯଥାସମ୍ଭବ ଯେ ପରିବର୍ତ୍ତନ କରି ପାରିବେ ଏପରି ଏକ ସ୍ୱାଧୀନତା ସେମାନଙ୍କୁ ଦିଆଯାଇଛି । 'ଦଶରୂପକ'ରେ ଧନଞ୍ଜୟ ବିଧାନ ବ୍ୟବସ୍ଥା କରିଛନ୍ତି ।

ଯତତ୍ରାନୁଚିତଂ କିଂଚିଦ୍ ନାୟକସ୍ୟ ରସସ୍ୟ ବା
ବିରୁଦ୍ଧଂ ତଦ୍ ପରିତ୍ୟାଜ୍ୟଂ ଅନ୍ୟଥା ବା ପ୍ରକଳ୍ପୟେତ୍ ।
(୩/୨୪)

ଏହି ବ୍ୟବସ୍ଥା ଦୃଷ୍ଟିରୁ କବିଏ ନିରଙ୍କୁଶ । ମହାଭାରତରୁ କଥାବସ୍ତୁ ସଂଗ୍ରହ କରି କବି କାଳିଦାସ ଶକୁନ୍ତଳା ନାଟକରେ ଯେଉଁ ଅଭାବିତ ମୌଳିକତା ପ୍ରଦର୍ଶନ କରିଛନ୍ତି ତାହା ତାଙ୍କ ଚମତ୍କାରିତା ସୃଷ୍ଟିର ସୁନିପୁଣତାହିଁ ସୂଚାଇଥାଏ ।

**୩. ଅଭାବିତ ପ୍ରତିକ୍ରିୟା ସୃଷ୍ଟି :**

ଉପସ୍ଥିତ କଥା ଓ କାର୍ଯ୍ୟ ଉପଲକ୍ଷେ ଅନେକତ୍ର କାବ୍ୟ ଓ ନାଟକର ଚରିତ୍ର ଗୁଡିକ ସାଧାରଣତଃ ପ୍ରତ୍ୟାଶିତ ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି । କିନ୍ତୁ ମଣିଷ ଚରିତ୍ର ରହସ୍ୟମୟ । ତେଣୁ ସବୁଠାରେ ପ୍ରତ୍ୟାଶିତ ପ୍ରତିକ୍ରିୟା ଆଶାକରିବା ବିଡମ୍ବନା । ମଣିଷ ଚରିତ୍ରର ରହସ୍ୟମୟତା ଉପସ୍ଥାପନ ଉଦ୍ଦେଶ୍ୟରେ ହେଉକି ନାଟକୀୟତା ସୃଷ୍ଟି ଉପଲକ୍ଷେ ହେଉ ଅନେକତ୍ର କାବ୍ୟନାଟକର ଚରିତ୍ରାବଳୀ ଅପ୍ରତ୍ୟାଶିତ ପ୍ରତିକ୍ରିୟା ପ୍ରକାଶ କରି ପାଠକ ଓ ଦର୍ଶକଙ୍କୁ ମୁଗ୍ଧ ଚକିତ କରିଥାନ୍ତି । ରାମାୟଣରୁ ଦୃଷ୍ଟାନ୍ତ ଦିଆଯାଇପାରେ । ବିଭୀଷଣଙ୍କୁ ଶରଣ ଦେବା ଉପଲକ୍ଷେ ସମସ୍ତଙ୍କର ବାରଣସତ୍ତ୍ୱେ ରାମ କହିଛନ୍ତି -

ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ
ଅଭୟା ସର୍ବଭୂତେଭ୍ୟଃ ଦଦାମ୍ୟେତଦ୍ ବ୍ରତଂମମଃ ।

ଯେଉଁମାନେ ରାମଙ୍କ ଉଦାରତା ସହିତ ପରିଚିତ ସେମାନେ ଏଥିରେ ଚମତ୍କୃତ ନ ହୋଇ ପାରନ୍ତି, ମାତ୍ର ସେ ଯେତେବେଳେ ପରମଶତ୍ରୁ ରାବଣକୁ ଶରଣ ଦେବାକୁ ପ୍ରସ୍ତୁତ ବୋଲି କହନ୍ତି ତାହା ଅପ୍ରତ୍ୟାଶିତ ଶୁଭେ ଓ ବିସ୍ମୟ ଉପୁଯାଏ ।

ଆନୟେନଂ ହରିଶ୍ରେଷ୍ଠ ଦତ୍ତମସ୍ୟାଭୟଂ ମୟା
ବିଭୀଷଣୋ ବା ସୁଗ୍ରୀବ ଯଦିବା ରାବଣଃ ସ୍ୱୟମ୍ ।

୪. ତୀବ୍ର ପ୍ରତିକ୍ରିୟା - ସୃଷ୍ଟି :

ଦୁଷ୍ମନ୍ତ ହଜିଲା ମୁଦ୍ରିକାଟି ପାଇଲା ମାତ୍ରେ ଶକୁନ୍ତଳାଙ୍କ ପ୍ରେମସ୍ମୃତିଟିକୁ ଉଦ୍‌ବୋଧନ କରିଛନ୍ତି । ଶକୁନ୍ତଳା ପ୍ରତ୍ୟାଖ୍ୟାନ ଅପରାଧ ବୋଧରେ ବିବ୍ରତ ହେବା ସ୍ୱାଭାବିକ । ଅଭିଶାପ ଅପସୃତ । ଏବେ ଦୋଷ ସମୁଦ୍ୟତ । କିନ୍ତୁ କବି କାଳିଦାସ କଞ୍ଚୁକୀ ମୁଖରେ ରାଜାଙ୍କର ଯେଉଁ ମାନସିକ ଅବସ୍ଥା ବର୍ଣ୍ଣନା କରିଛନ୍ତି ତାହା ପ୍ରତ୍ୟାଶିତ ଅବସ୍ଥାଠାରୁ ଅନେକ ବେଶି ତୀବ୍ର ଓ ଗଭୀର ବୋଲି ବିସ୍ମୟଜନକ । କଞ୍ଚୁକୀ ପ୍ରଥମେ କହିଛି , 'ରମ୍ୟଂ ଦ୍ୱେଷ୍ଟି' ଯାହା ସୁନ୍ଦର ରାଜା ତାହା ପ୍ରତି ବିଦ୍ୱିଷ୍ଟ-ଯାହା ଆନନ୍ଦ ଦାୟକ ତାହା ଘୃଣାର ବସ୍ତୁ । ରାଜା ସୁନ୍ଦରର ଉପାସକ - ଏବେ ସୁନ୍ଦର ପ୍ରତି ଅପ୍ରତ୍ୟାଶିତ ପ୍ରତିକିୟା ସୃଷ୍ଟିରୁ କବି ଚମତ୍କାରିତାର ଅବକାଶ ସଂଧାନ କରିଛନ୍ତି ।

ବିରହରେ ଦେହର ଉତ୍ତାପ ବଢ଼ିଯାଏ । ବିରହିଣୀଙ୍କର ଦେହର ଉତ୍ତାପ ବର୍ଣ୍ଣନାରେ ଅତିରଂଜନ ଦୁର୍ଲକ୍ଷ୍ୟ ନୁହେଁ । କିନ୍ତୁ ନାରୀର ଏହି ଦୈହିକ ପ୍ରତିକ୍ରିୟା କେତେ ତୀବ୍ର ହୋଇପାରେ ତାହା ବର୍ଣ୍ଣନା କରିଛନ୍ତି ଏକ ଅଜ୍ଞାତ କବି - ଯାହାର ପ୍ରଲୋଭନ ଆଳଂକାରିକମାନେ ସମ୍ବରଣ କରି ପାରିନାହାନ୍ତି । ଉଦ୍ଧାର କରିଛନ୍ତି ବାରମ୍ବାର ।

ଅଙ୍ଗାସଙ୍ଗି ମୃଣାଳ କାଣ୍ଡମୟତେ ଭୃଙ୍ଗାବଳୀନାଂ ରୁଚଂ
ନାସାମୌକ୍ତିକ ମିନ୍ଦ୍ରନୀଳ ସରଣିଂ ଶ୍ୱାସାନିଳାଦ୍‌ଗାହତେ
ଦଭେୟଂ ହିମବାଲୁକାପି କୁଚଯୋର୍ଧରେ କ୍ଷଣଂ ଦୀପତାମ୍
ତପ୍ତାୟଃ ପତିତାମ୍ବୁବତ୍ କରତଳେ ଧାରାମ୍ବୁ ସଂଲୀୟତେ ॥

ବିରହ ସନ୍ତାପ ପ୍ରବଳ । ଶୀତଳ ଉପଚାର ବ୍ୟର୍ଥ । ମୃଣାଳ ସ୍ପର୍ଶମାତ୍ରେ ଶୁଷ୍କ ହୋଇ କଳା ପଡିଯାଉଛି । ନାସାର ମୁକ୍ତାଳଙ୍କାର ତପ୍ତଶ୍ୱାସ ପବନରେ ଇନ୍ଦ୍ରନୀଳମଣିରେ ପରିଣତ ହେଉଛି , ବକ୍ଷରେ ପ୍ରଯୁକ୍ତ କର୍ପୂର ଜଳି ଉଠୁଛି ଓ କରତଳ ଛୁଇଁଲା ମାତ୍ରେ ଜଳକଣା ବାଷ୍ପରେ ପରିଣତ ହୋଇ ଯାଉଛି । ମଣିଷ ଦେହ ଏତେ ଉତ୍ତପ୍ତ ହେବାର ସମ୍ଭାବନା ଅବଶ୍ୟ ନାହିଁ । କିନ୍ତୁ ଆଳଂକାରିକ ମାନେ ଏପରି ବର୍ଣ୍ଣନାରେ ଅବିଶ୍ୱାସ୍ୟ ବିସ୍ମୟର ସଂଧାନ ରଖନ୍ତି ।

୫. ପ୍ରତିଷ୍ଠିତ କଥାକୁ ନୂଆ ଭଙ୍ଗୀରେ କହିବା :

ବେଶପୋଷାକ ସାମାଜିକ ସମ୍ମାନ ଓ ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ପରିଚାୟକ । ସମୁଦ୍ର ନିଜ ସମସ୍ୟାର ସମାଧାନ ଉପଲକ୍ଷେ ଏହି କଥାଟିକୁ ପୁଣିଥରେ ମାନ୍ୟତା ପ୍ରଦାନ କରିଛନ୍ତି ।

କିଂ ବାସସା ତତ୍ର ବିଚାରଣୀୟମ୍
ବାସଃ ପ୍ରଧାନ୍ଂ ଖଳୁ ଯୋଗ୍ୟତାୟାଃ
ପୀତାମ୍ବରଂ ବୀକ୍ଷ୍ୟ ଦଦୌ ସ୍ୱକନ୍ୟାମ୍
ବୀତାମ୍ବରଂ (ଚର୍ମାମ୍ବରଂ) ବୀକ୍ଷ୍ୟ ବିଷଂ ସମୁଦ୍ରଃ ।

କାହା ହାତରେ ପ୍ରଦାନ କରିବେ ଲକ୍ଷ୍ମୀଙ୍କୁ ସମୁଦ୍ର ? ଯୋଗ୍ୟତାର ପ୍ରମାଣ ବେଶଭୂଷା । ତେଣୁ ପୀତାମ୍ବରଂକୁ ଦେଲେ ଝିଅ, ବୀତାମ୍ବରଂକୁ ବିଷ । ଏହି ଶ୍ଳୋକଟି ଆମ ବକ୍ରବାକ ଚକ୍ରପାଣି ପଟ୍ଟନାୟକଂକ ଦ୍ୱାରା ରଚିତ ବୋଲି ପ୍ରବାଦ ଅଛି ।

ଧନୀଲୋକ ଅନ୍ୟର ଦୁଃଖ ଯନ୍ତ୍ରଣା ପ୍ରତି ଉଦାସୀନ ଥାନ୍ତି । ଏହିକଥାଟି ଲକ୍ଷ୍ମୀପ୍ରତି ବିଷ୍ଣୁଙ୍କର ଧରାଭରାକ୍ଳାନ୍ତ ଶେଷନାଗ ଉପରେ ସୁଖରେ ଶୋଇବା ପ୍ରସଙ୍ଗରୁ ପ୍ରମାଣିତ ହୋଇଥାଏ ।

''ଲକ୍ଷ୍ମୀବନ୍ତୋ ନ ଜାଣନ୍ତି ପ୍ରାୟେଣ ପରବେଦନାମ୍
ଶେଷେ ଧରାଭର କ୍ଳାନ୍ତେ ଶେତେ ନାରାୟଣଃ ସୁଖମ୍ ''

## ୬. ଅପ୍ରତ୍ୟାଶିତ ଘଟନା ସଂଯୋଜନା :

ଅପ୍ରତ୍ୟାଶିତ ଘଟନା ବିସ୍ମୟ ଉଦ୍‌ବୋଧକ । ପୁଷ୍ପବୃଷ୍ଟିରେ କେହି ମରନ୍ତି ନାହିଁ, ଅଥଚ ସ୍ୱର୍ଗୀୟ ପୁଷ୍ପହାର ପତନରେ ଇନ୍ଦୁମତୀଙ୍କର ସହସା ମୃତ୍ୟୁ ଘଟିଲା , ଅଜ ଏବେ ବିଳାପ କରୁଛନ୍ତି, ସେହି ପୁଷ୍ପହାର ତାଙ୍କ ଗଳାରେ ଥାଇ ମୃତ୍ୟୁ ଘଟାଉ ନାହିଁ କାହିଁକି ? ପୁଷ୍ପହାର କ'ଣ ଘାତକ ହୋଇପାରେ ?

ସ୍ରଗୀୟଂ ଯଦି ଜିବୀତାପହା
ହୃଦୟେ କିଂ ନିହିତା ନ ହନ୍ତି ମାମ୍
ବିଷମପ୍ୟ ମୃତ୍‌ଂ କ୍ୱଚିଭବେତ୍
ଅମୃତ୍‌ଂ ବା ବିଷମୀଶ୍ୱରେ ଚ୍ଛୟା''(ରଘୁବଂଶ ୮/୪୬)

ଅବଶ୍ୟ ପରେ ଋଷିଙ୍କ ଅଭିଶାପ ବ୍ୟାଖ୍ୟାନରେ ସମସ୍ୟାର ସମାଧାନ ଖୋଜାଯାଇଛି , ତେବେ ପୁଷ୍ପହାର ପତନରେ ପ୍ରାଣହାନି ଘଟିବା ବ୍ୟାପାର ଆଶ୍ଚର୍ଯ୍ୟ ଜନକ ନୁହେଁକି ?

## ୭. ପ୍ରତ୍ୟୁକ୍ତି ସ୍ଥାପନା :

ବେଳେ ବେଳେ ଗୋଟିଏ ଉକ୍ତିର ପ୍ରତିପାଦ୍ୟକୁ ଅନ୍ୟ ଏକ ବ୍ୟକ୍ତିର ପ୍ରତ୍ୟୁକ୍ତି ପୂରାଭିନ୍ନ ଅର୍ଥ ଦେଇଦିଏ । ନାଟକୀୟତା ସୃଷ୍ଟି ହୁଏ ଓ ବିସ୍ମୟ ଉପୁଜେ । ସୁବ୍ରମାନିୟାନ୍ ଇଂରେଜୀ ଭାଷାରେ କେତୋଟି ଦୃଷ୍ଟାନ୍ତ ଦେଇଛନ୍ତି । ୧) ଚର୍ଚ୍ଚର ଦ୍ୱାର ଦେଶରେ ଲେଖାଅଛି ''Gateway to Heaven''ତଳକୁ ନିର୍ଦ୍ଦେଶ "In winter, use the other gate . ୨)ଇଂଲାଣ୍ଡର ଏକ ମାଂସ ଦୋକାନୀ ଘୋଷଣାକଲା , " We supply sausageas to queen" ସମ୍ମୁଖସ୍ଥ ପ୍ରତିପକ୍ଷ ଉତ୍ତର ଦେଲା, "God save the queen".ନାଟକରେ ଏହି କୌଶଳଟିର ଉପାଦେୟତା ଯଥେଷ୍ଟ । ସବୁଭଲ ନାଟ୍ୟକାର ଏହାର ସଦୁପଯୋଗ କରିଛନ୍ତି । ନାଟ୍ୟଶାସ୍ତ୍ରର ପରିଭାଷାରେ ଏହାକୁ କୁହାଯାଏ ପତାକା ସ୍ଥାପନ- ଗୋଟିଏ ଚରିତ୍ର ତାର ଉକ୍ତିର ଶେଷ ଶବ୍ଦଟିର ଉଚ୍ଚାରଣ ସଂପୂର୍ଣ୍ଣ କଲାପୂର୍ବରୁ ଅନ୍ୟ ଏକ ଚରିତ୍ର ଉତ୍ତେଜିତ ଅବସ୍ଥାରେ ମଞ୍ଚରେ ଉପସ୍ଥିତ ହୋଇ ଯାହା କହେ ତାହାର ପୂର୍ବ ଉକ୍ତି ସହିତ ପ୍ରାସଂଗିକ ସଂପର୍କ ନ ଥାଏ ଅବଶ୍ୟ - କିନ୍ତୁ ଏହି ପ୍ରତ୍ୟୁକ୍ତି ସ୍ଥାପନା ଉଭୟଙ୍କର ଅନଭିପ୍ରେତ ନୂଆ ପ୍ରତୀତି ଜନ୍ମାଏ ଓ ଉପସ୍ଥିତ ଚରିତ୍ର ତଥା ଦର୍ଶକଙ୍କୁ ଚମତ୍କୃତ କରେ । ଭବଭୂତିଙ୍କ ଉତ୍ତରରାମଚରିତରୁ ଦୃଷ୍ଟାନ୍ତଟିଏ ଦେଖନ୍ତୁ । ଶ୍ରୀରାମ ଦାଂପତ୍ୟ ପ୍ରେମର ମାଧୁର୍ଯ୍ୟ ଦୃଷ୍ଟିରୁ ନିଜର ସୌଭାଗ୍ୟ ଉପଲକ୍ଷେ ସୀତାଙ୍କ ସଂପର୍କରେ କହୁଛନ୍ତି, ଏହାଙ୍କର ବିରହ ଭିନ୍ନ ଆଉ ସବୁ ପ୍ରୀତିକର ,

ଇୟଂ ଗେହେ ଲକ୍ଷ୍ମୀରିୟ ମମୃତବର୍ତ୍ତିର୍ନୟନୟୋଃ
ଅସାବସ୍ୟାଃ ସ୍ପର୍ଶୋ ବପୁଷି ବହୁଳଶ୍ଚନ୍ଦନରସଃ
ଅୟଂ ବାହୁ କଣ୍ଠେ ଶିଶିର ମସୃଣୋ ମୌକ୍ତିକରସଃ
କିମସ୍ୟା ନ ପ୍ରେୟୋ ଯଦି ପରମସହ୍ୟସ୍ତୁ ବିରହଃ ।।

'ବିରହ' ଶବ୍ଦଟି ପୂରା ଉଚ୍ଚାରିତ ହେବା ପୂର୍ବରୁ କଞ୍ଚୁକୀ ଜଣାଉଛି, ''ଦେବ ଉପସ୍ଥିତଃ ।'' କଞ୍ଚୁକୀ ଗୁପ୍ତରେ ଦୁର୍ମୁଖର ଉପସ୍ଥିତି ଜଣାଇଛି , କିନ୍ତୁ ପ୍ରକାରାନ୍ତରେ ରାମସୀତାଙ୍କର ବିରହ ଯେ ପ୍ରତ୍ୟାସନ୍ନ ତାହା ସେଥିରୁ ବ୍ୟଞ୍ଜିତ ହେଉଛି ।

**୮. ପଶୁପକ୍ଷୀଙ୍କ ଚରିତ୍ର ଉପରେ ମାନବିକ ଦୋଷତ୍ରୁଟି ଆରୋପ :**

'ପଞ୍ଚତନ୍ତ୍ର' ଓ 'ହିତୋପଦେଶ' ଆଦି ଗ୍ରନ୍ଥରେ ପଶୁପକ୍ଷୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ କଥାବାର୍ତ୍ତା ଓ ଆଚାର ଆଚରଣରେ ପୂରା ମଣିଷଙ୍କୁ ଦେଖି ହୁଏ । ମଣିଷ ଭିତରେ ଯେପରି ସମ୍ଭ୍ରାନ୍ତ ହାତୀ ଅଛନ୍ତି, ସେମିତି ନୀଚ ତୋଷାମଦକାରୀ କୁକୁର ବି ଅଛନ୍ତି , ଆଚରଣର ତାରତମ୍ୟ ଦେଖନ୍ତୁ ।

ଲାଙ୍ଗୁଳ ଚାଳକ ମଧଚରଣାବଧାତଂ
ଭୂମୌ ନିପତ୍ୟ ବଦନୋଦର ଦର୍ଶନଂଚ ।
ଶ୍ୱା ପିଣ୍ଡଦସ୍ୟ କୁରୁତେ ଗଜପୁଂଗବସ୍ତୁ
ଧୀର ବିଲୋକୟତି ଚାଟୁ ଶତୈଶ୍ଚ ଭୁଙ୍କ୍ତେ ।

ଏପରି ଚିତ୍ରଣ ଯେପରି ମଣିଷ ସଂପର୍କରେ ଅନ୍ତର୍ଦୃଷ୍ଟି ଉନ୍ମୋଚନ କରେ ସେପରି ବିସ୍ମୟ ଉଦ୍ରେକ କରିଥାଏ । ମିଠାକଥା କହୁଥିବା ଲୋକଙ୍କ ଦୋଷଦୁର୍ବଳତାକୁ ଆମେ କିପରି ବିଚାରକୁ ଆଣୁନା ତାହାର ଏକ ଦୃଷ୍ଟାନ୍ତ ଅଛି କୋଇଲିର ଚରିତ୍ରରେ । ରଂଗକଳା । ପରିବାରିକ କର୍ତ୍ତବ୍ୟ ପାଳନରେ ପୂରା ଅନୁତ୍ସାହୀ - ପରପିଲାଙ୍କ ପ୍ରତି ତାର ବିଦ୍ୱେଷ କଥା ନ କହିବା ଭଲ, କାରଣ ସେ ନିଜପିଲାଙ୍କୁ ବି ପାଳେ ନାହିଁ । ଅଥଚ ସମସ୍ତେ ତାକୁ ଭଲ ପାଆନ୍ତି, କାରଣ ସ୍ୱରଟି ମିଠା । ନୀତିଶ୍ଳୋକରୁ ଚମତ୍କାରିତା ଦେଖନ୍ତୁ ।

ପିକସ୍ତାବଦ୍ କୃଷ୍ଣଃ ପରମରୁଣୟା ପଶ୍ୟତି ଦୃଶା
ପରାପତ୍ୟ ଦ୍ୱେଷୀ ସ୍ୱସୁତମପି ନୋ ପାଳୟତି ଯଃ
ତଥା ପ୍ୟେଷ୍ୟେଽମୀଷାଂ ସକଳ ଜଗତାଂ ବଲ୍ଲଭତମୋ
ନ ଦୋଷା ଗଣ୍ୟନ୍ତେ ଖଲୁ ମଧୁରବାଚାଂ କ୍ୱଚିଦପି ।

**୯. ସମାସୋକ୍ତି ଅଳଂକାର :**

ସଂସ୍କୃତ ସାହିତ୍ୟରେ ବିଶେଷତଃ କାଳିଦାସଙ୍କ କାବ୍ୟନାଟକରେ ପ୍ରକୃତିର ଭଦ୍ର ଶିକ୍ଷିତ ମାନବିକ ବ୍ୟବହାର ଦୁର୍ଲକ୍ଷ୍ୟ ନୁହେଁ । ଦିଲ୍ଲୀପ ବନକୁ ଗଲେ ତାଙ୍କୁ ରାଜପ୍ରାସାଦରେ ସବୁ ସୌଭାଗ୍ୟ ପ୍ରକୃତି ଯୋଗାଇ ଦିଏ, ଏପରିକି ଭାଟମାନଙ୍କ ପ୍ରଶଂସା ଗାନବି ।

ସ କୀଚକୈର୍ମାରୁତ ପୂର୍ଣ୍ଣରନ୍ଧ୍ରୈଃ କୂଜଦ୍ଭିରୋପାଜିତ ବଂଶ କୃତ୍ୟମ୍
ଶୁଶ୍ରାବ କୁଂଜେଷୁ ଯଶସ୍ୱ ମୁଚ୍ଚୈଃ ଉଦ୍‌ଗୀୟ ମାନଂ
ବନ ଦେବତାଭିଃ , ଇତ୍ୟାଦି

ବାୟୁ ପକ୍ଷରେ ସଂଗୀତ ସୃଷ୍ଟି କରିବା ପ୍ରସଂଗଟିକୁ ବିଶାଖଦତ୍ତ ରାମନାଟକରେ ଚମତ୍କାର ଭାବରେ ବ୍ୟବହାର କରିଛନ୍ତି । ବିଭୀଷଣ ରାବଣକୁ ରାମଙ୍କ ପରାକ୍ରମ ସଂପର୍କରେ ସମ୍ୟକ୍ ଧାରଣା ଦେବା ଉପଲକ୍ଷେ କହିଛନ୍ତି ।

ବଂଦୀନୈଷ ଯଶାଂସି ଗାୟତି ମରୁତ୍ ଯସ୍ୟୈକବାଣାହତି -
ଶ୍ରେଣୀଭୂତ ବିଶାଳ ଶାଳ ବିବରୋଦ୍ଗୀର୍ଣ୍ଣ ସ୍ୱରୌ ସ୍ୱପ୍ତଭିଃ ॥

ରାମ ଯେଉଁ ସପ୍ତଶାଳ ଭେଦ କରିଥିଲେ, ପବନ ବଂଦୀଙ୍କପରି ରାମଙ୍କ ଯଶଗାନ ଉଦ୍ଦେଶ୍ୟରେ ସେହି ସପ୍ତଶାଳର ସପ୍ତରନ୍ଧ୍ରରୁ ସପ୍ତସ୍ୱର ସୃଷ୍ଟି କରିଥାଏ । ସପ୍ତରନ୍ଧ୍ରରୁ ସପ୍ତସ୍ୱର ସୃଷ୍ଟିର ପରିକଳ୍ପନା ବିସ୍ମୟ ଜନକ ଓ ପ୍ରୀତିକର ।

**୧୦. ଚରିତ୍ରଗତ ତାରତମ୍ୟ ବିଚାର :**

ତୁଳନାତ୍ମକ କୌଶଳ ପ୍ରୟୋଗ କରି ସଂସ୍କୃତ କବିଏ ବିସ୍ମୟ ସୃଷ୍ଟି କରିବା ସଂଗେ ସଂଗେ ଅନ୍ୟାନ୍ୟ ଅନେକ ଉଦ୍ଦେଶ୍ୟ ସାଧନ କରିଛନ୍ତି । ରାମାୟଣରେ ହନୁମାନ ସୀତାଙ୍କ ସମ୍ମୁଖରେ ଅନ୍ୟାନ୍ୟ ବାନରଙ୍କ ତୁଳନାରେ ନିଜକୁ କ୍ଷୁଦ୍ର ଓ ଦୁର୍ବଳ ବୋଲି ଘୋଷଣା କରି ସୀତାଙ୍କ ଆଶା ଓ ସାହସ ବଢ଼ାଇ ଦେଇଛି ।

''ନହି ପ୍ରକୃଷ୍ଟାଃ ପ୍ରେଷନ୍ତେ ପ୍ରେଷନ୍ତେ ହୀତରେ ଜନାଃ' ଅର୍ଥାତ ହନୁମାନଙ୍କ ତୁଲ୍ୟ ଓ ତାଙ୍କ ଠାରୁ ଅଧିକ ଶକ୍ତିଶାଳୀ ବାନର ଅଛନ୍ତି, ରାମଙ୍କ ଗହଣରେ । ନିକୃଷ୍ଟକୁ ପଠାଇଛନ୍ତି ସେ ମାତ୍ର । ହନୁମାନଙ୍କ ପ୍ରସଂଗ ଉପଲକ୍ଷେ ଜଣେ ଅଜ୍ଞାତନାମା କବି ରାବଣର ନୈରାଶ୍ୟ ବଢ଼ାଇବା ଉପଲକ୍ଷେ କଥାଟିକୁ ଭିନ୍ନ ଭାବରେ ପ୍ରୟୋଗ କରିଛନ୍ତି । ଅଂଗଦ ଦୂତ ଭାବରେ ରାବଣ ସଭାରେ ଉପଗତ । ରାବଣ ପଚାରିଛି, '' ଆଗରୁ ଆସିଥିବା ଲଙ୍କାପୋଡା ମାଙ୍କଡଟି ଗଲା କୁଆଡେ ? ଅଂଗଦ କହିଛି, ''ବଦ୍ଧୌ ରାକ୍ଷସସୂନନେତି କିମପି ସନ୍ତାଡିତୋ ଭର୍ତ୍ସିତଃ/ ସ ବ୍ରୀଡାଉପରାଭବୋ ବନମୃଗଃ କୁତ୍ରେତି ନ ଜ୍ଞାୟତେ । '' ପରିସ୍ଥିତିଟିକୁ ଅଂଗଦ ନିୟନ୍ତ୍ରଣକୁ ଆଣିଛି । ଏହି ସୂତ୍ରରେ ଯେ, ରାବଣ ପୁତ୍ର ଦ୍ୱାରା ପରାଜିତ ହେବା ଯୋଗୁ ହନୁମାନ ମାଂକଡମାନଙ୍କ ଦ୍ୱାରା ତାଡିତ ଓ ଭର୍ତ୍ସିତ ହେବାରୁ ଲଜ୍ଜାରେ କୁଆଡେ ପଳାଇଛି, ଠିକଣା ବି ନାହିଁ । କଥା ମିଛ ଅଥଚ ରାବଣ ପ୍ରତି ତ୍ରାସପ୍ରଦ ।

**୧୧. ସଚରାଚର ଅପ୍ରଚଳିତ ତୁଳନା :**

ପ୍ରଚଳିତ ସାଦୃଶ୍ୟ କଥନ ଆନନ୍ଦ ନଦିଏ ନୁହେଁ । ଦିଏ । ଉପମା ଅଳଙ୍କାରର ଧର୍ମ ତ ତୁଳନାତ୍ମକ । ଚନ୍ଦ୍ର ସହିତ ସୁନ୍ଦର ମୁଖର ତୁଳନା ପ୍ରୀତିକର, କିନ୍ତୁ ରୁଟିର ତୁଳନା ବିସ୍ମୟ ଜନକ । ନୂଆ ତୁଳନାର ଦୃଷ୍ଟାନ୍ତ ଇଂରାଜୀରୁ ସଂଗ୍ରହ କରିଛନ୍ତି ସୁବ୍ରମାନିୟାନ ଯଥା - She not only reads her husband like a book, she gives neighbours reviews also, କିମ୍ବା When a woman falls, it is because, like a fruit, she was not picked in time. ସଂସ୍କୃତ ସାହିତ୍ୟରେ ଏପରି ଅଭାବିତ ତୁଳନାର ଅଭାବ ନାହିଁ । ମୃଚ୍ଛ କଟିକର ଶକାର ବସନ୍ତସେନାକୁ ଭୁଲି ପାରିନାହିଁ । ତେଣୁ କହିଛି, '' ଭାବ ଅଦ୍ୟାପି ତାଂ ବସନ୍ତସେନା ସ୍ମରାମି '' ଦୁର୍ଜନ ବଚନମିବ ହୃଦୟାନ୍ନାପସରତି । ଦୁର୍ଜନର କୁବଚନ ପରି ବସନ୍ତସେନା ତାହା ହୃଦୟରୁ ଅପସରୁ ନାହିଁ । ଶକାରର ମଧ୍ୟାହ୍ନ ସୂର୍ଯ୍ୟବର୍ଣ୍ଣନାରେ ବି ତଦନୁରୂପ ନୂଆ ଉପମାନର ବ୍ୟବହାର ଅଛି - '' ନଭୋମଧ୍ୟଗତଃ ସୂର୍ଯ୍ୟୋ ଦୁଷ୍ପ୍ରେକ୍ଷଃ କୁପିତବାନରସଦୃଶଃ । ଶ୍ଳେଷ୍ମରୋଗ ଓ ଦୁର୍ଜନଙ୍କର ପ୍ରକୃତି- ସାଦୃଶ୍ୟ କୌଣସି କବି ଲକ୍ଷ୍ୟ କରିଛନ୍ତି, '' ମଧୁରୈଃ କୋପମାୟାତି କଟୁ କେନୈବ ଶାମ୍ୟତି । ''

**୧୨. କଷ୍ଟାଷ୍ଟ - କୌତୁକ :**

ଇଂରାଜୀରେ ଲୋକୋକ୍ତି ଅଛି ,''Rumour is the one thing that gets thicker as you spread it '' କଥାଟି ଆକ୍ଷରିକ ଭାବରେ ଅପଳାପୀ କିନ୍ତୁ ସତ୍ୟର ନିକଟବର୍ତ୍ତୀ । ଶକୁନ୍ତଳାର ପଞ୍ଚମ ଅଂକରେ ଶାର୍ଙ୍ଗରବ ଅସୂୟା ପୂର୍ବକ ରାଜାଙ୍କୁ କହିଛି 'ଯିଏ ଜନ୍ମରୁ କୌଣସି ପ୍ରକାର

ଦୁଷ୍ଟତା ଶିଖିନାହିଁ ତାଙ୍କ କଥାକୁ ମିଥ୍ୟା କୁହା ଯାଉଛି ଅଥଚ ଯିଏ ଆଜନ୍ମ ଡିପ୍ଲୋମେସି ନାମରେ ଅନ୍ୟକୁ ପ୍ରତାରିତ କରିବା ବିଦ୍ୟା ଶିଖିଛନ୍ତି, ତାକୁ ସତ୍ୟବାଦୀ ବୋଲି ସ୍ୱୀକାର କରାଯାଉଛି - ''ବିଦ୍ୟାରୂପେଣ ପର ପ୍ରତାରଣାମଧିତବତାଂ ଭବତାଂ ବଚନଂ ପ୍ରମାଣମ୍'' ଦୁଷ୍ଟବୁଦ୍ଧି ସଂପନ୍ନ କବିଏ ନାମ ସହିତ ଡାକ୍ତରଙ୍କ ସାଦୃଶ୍ୟ ଲକ୍ଷ୍ୟ କରିଥାନ୍ତି - ଯମ ପ୍ରାଣନିଏ, ଡାକ୍ତର ଉଭୟ ଧନ ଓ ପ୍ରାଣ ନିଅନ୍ତି, '' ବୈଦ୍ୟରାଜ ନମସ୍ତୁଭ୍ୟଂ ଯମରାଜ ସହୋଦର / ଯମସ୍ତୁ ହରତି ପ୍ରାଣାନ୍ ବୈଦ୍ୟଃ ପ୍ରାଣାନ୍ ଧନାନି ଚ୍ ।।''

**୧୩. ଆବେଗାତିଶଯ୍ୟ ବର୍ଣ୍ଣନା :**

ଆବେଗ ଓ ବିଚାରର ପଡେନା । ଆବେଗ ପ୍ରବଳତର ହୋଇ ଉଠିଲେ ବିଚାର ବିମୁଖ ହୋଇ ପଳାଏ । ତେଣୁ ମହତ୍ ଲୋକମାନେ ବି ଭୁଲ କରି ବସନ୍ତି । 'କୃଷ୍ଣ କର୍ଣ୍ଣାମୃତ'ରେ ଲୀଳାଶୁକ ରାଧାକୃଷ୍ଣଙ୍କ ପ୍ରେମାତୁରତା ବର୍ଣ୍ଣନା କରିବା ଉପଲକ୍ଷେ ବିଭ୍ରାନ୍ତିର ଉଲ୍ଲେଖ କରିଛନ୍ତି , ପ୍ରେମ ସୀମାତୀତ - ମୂର୍ଖତା ବି ତର୍କାତୀତ । କୃଷ୍ଣଦତ୍ତଚିତ୍ତା ରାଧା ଦଧିମନ୍ଥନରେ ଲାଗିଛନ୍ତି ଅଥଚ ନବନୀତର ଦେଖାନାହିଁ, ରାଧାଙ୍କର ସ୍ତନ ସ୍ତବକଚଞ୍ଚଳ ଲୋଳଦୃଷ୍ଟି, କୃଷ୍ଣ ଗୋଦୋହନରେ ଗଳଦ୍‌ଘର୍ମ ଅଥଚ କ୍ଷୀର ଅନୁପସ୍ଥିତ । କାରଣ କ'ଣ ? ରାଧା ମନ୍ଥୁଛନ୍ତି ଦଧିରିକ୍ତ ପାତ୍ର ଆଉ କୃଷ୍ଣ ଦୁହୁଁଛନ୍ତି ବୃଷଭଟିକୁ -

ରାଧା ପୁନାତୁ ଜଗଦ ଚ୍ୟୁତ ଦତ୍ତ - ଚିତ୍ତା ।
ମନ୍ଥାନ ମାକଳୟତୀ ଦଧିରିକ୍ତ ପାତ୍ରେ
ତସ୍ୟାଃ ସ୍ତନସ୍ତବକ ଚଞ୍ଚଳ ଲୋଳ ଦୃଷ୍ଟି -
ର୍ଦେବୋଽପି ଦୋହନଧିୟା ବୃଷଭଂ ନିରୁନ୍ଧନ୍ ।।

**୧୪. ପ୍ରତ୍ୟାକ୍ଷେପ :**

ମୁରାରୀଙ୍କ ନାଟକରେ ରାମଙ୍କୁ ଆକ୍ଷେପକରି ରାବଣ କହିଛି, ସେ ସୂର୍ଯ୍ୟବଂଶର ରାଜା ଅନରଣ୍ୟଙ୍କୁ ପରାଜିତ କରିଛି ଓ ହତ୍ୟା କରିଛି , ରାମ ପ୍ରତ୍ୟାକ୍ଷେପ କରିଛନ୍ତି , ଯୁଦ୍ଧରେ ଜୟ କି ମୃତ୍ୟୁ ହିଁ ଗୌରବଜନକ, କିନ୍ତୁ କାର୍ତ୍ତବୀର୍ଯ୍ୟ ଦ୍ୱାରା ବଂଦୀ ହୋଇ ପିତାମହ ପୁଲସ୍ତଙ୍କ ଅନୁନୟ ବିନୟରୁ ମୁକ୍ତ ହେବା ବୀର ପକ୍ଷରେ ସଦ୍‌ଗତି ନୁହେଁ ନିଶ୍ଚୟ ! ରାବଣର ମର୍ମପୀଡା ଚମତ୍କାର ପ୍ରତ୍ୟୁକ୍ତିଟିରୁ ହିଁ ହୃଦୟଙ୍ଗମ କରିହୁଏ ।

**୧୫. ବର୍ତ୍ତମାନର ଅନୁଭୂତିକୁ ମିଥ୍ କି ପୌରାଣିକ ଧାରଣା ସହିତ ଯୋଡିଦେବା :**

ସୁନ୍ଦରୀ ନାରୀଏ କଟାକ୍ଷପାତରେ ଶିବ ଭସ୍ମ କରିଥିବା ମଦନକୁ ଜୀବନ୍ୟାସ ଦେଇ ପାରନ୍ତି, ଫଳତଃ ନାରୀ ଶିବଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ - ତାଙ୍କ ନେତ୍ରପାତରେ ମଦନ ଭସ୍ମ ହୋଇଥିଲା । ନାରୀ ନେତ୍ରପାତରେ ଜୀଇ ଉଠିଛି ।

ଦୃଶା ଦଗ୍ଧଂ ମନସିଜମ୍ ଜୀବୟନ୍ତି ଦୃଶୈବ ଯାଃ
ବିରୂପାକ୍ଷସ୍ୟ ଜୟିନୀଃ ତାଃ ସ୍ତୁବେ ବାମଲୋଚନାଃ ।।

(କୁବଳୟାନଂଦ)

କବି ଏ ନୂଆକଥାକୁ ଅତୀତର ପୌରାଣିକ କଥା କି ପୁରୁଣା ଧାରଣା ସହିତ ଯୋଡି ଏପରି ଚମତ୍କାରିତା ସୃଷ୍ଟି କରିଛନ୍ତି ।

**୧୬. ପରିସ୍ଥିତିର ପ୍ରତିସ୍ଥାପନା :**

ମଣିଷ ଯେଉଁ ପରିସ୍ଥିତିରେ ଥାଏ ତାହା' ଠାରୁ ଭିନ୍ନ ଅନ୍ୟ ଏକ ପରିସ୍ଥିତିର ମଣିଷକୁ ନଦେଖିବା ପର୍ଯ୍ୟନ୍ତ ସେ ଆଶ୍ୱସ୍ତ ରହେ । କିନ୍ତୁ ଭିନ୍ନ ପରିସ୍ଥିତିର ମଣିଷକୁ ଦେଖିଲେ ନିଜ ପରିସ୍ଥିତି ପ୍ରତି ବିତୃଷ୍ଣା କି ବିରକ୍ତି ଆସିଥାଏ । ଏହା ସ୍ୱାଭାବିକ କଥା । କିନ୍ତୁ କବିଏ ଅଭାବିତ ପରିସ୍ଥିତି ପରିକଳ୍ପନା କରି ସେହି ଦୁଇଟିର ପ୍ରତିସ୍ଥାପନାରୁ ବିସ୍ମୟ ଉଦ୍ରେକ କରିଥାନ୍ତି । ଶିଶୁପାଳବଧରେ ମାଘ ରୈବତିକ ପର୍ବତ ବର୍ଣ୍ଣନାରେ କିନ୍ନର ଓ କିଂପୁରୁଷଙ୍କ ମଧରେ ଥିବା ଇର୍ଷା କଥା ଉତ୍ଥାପନ କରିଛନ୍ତି । କିଂପୁରୁଷଙ୍କ ଦେହ ମଣିଷର ଦେହ ପରି , ମାତ୍ର ମୁହଁଟି ଘୋଡା ମୁହଁ । ଅନ୍ୟପକ୍ଷରେ କିନ୍ନରଙ୍କ ମୁହଁ ମଣିଷଙ୍କ ମୁହଁ ପରି କିନ୍ତୁ ଦେହଟି ଘୋଡାର ଦେହ । ପରସ୍ପରକୁ ସେମାନେ ପ୍ରବଳ ଇର୍ଷା କରନ୍ତି କାରଣ କିଂପୁରୁଷ - ପ୍ରେମିକ - ପ୍ରେମିକା ଆଲିଂଗନ ସୁଖ ପାଇଲା ବେଳେ ଚୁମ୍ବନ ଆନଂଦରୁ ବଂଚିତ ହୁଅନ୍ତି । କିନ୍ନର ମିଥୁନ ଚୁମ୍ବନ ସୁଖ ପାଆନ୍ତି, କିନ୍ତୁ ଆଲିଙ୍ଗନ ଆନଂଦ ପାଆନ୍ତି ନାହିଁ ।

ମଜାର କଥା - ବିୟୋଷ୍ଟଂ ବହୁ ମନୁତେ ତୁରଙ୍ଗବକ୍ତ୍ରଃ
ଚୁମ୍ବନ୍ତଂ ମୁଖମିହ କିନ୍ନରଂ ପ୍ରିୟା ଯା
ଶ୍ଳିଷ୍ୟନ୍ତଂ - ମୁହୁରିତରୋଽପି ନିଜସ୍ତ୍ରୀମ୍
ଉତ୍ତୁଙ୍ଗସ୍ତନ ଭରଭଙ୍ଗ ଭୀରୁ ମଧାମ୍ ( ୪/୩୮ )

**୧୭. ବ୍ୟାଜସ୍ତୁତି ପ୍ରତିମ ଭଙ୍ଗି ସଂଯୋଜନା :**

ସଚେତନ ଭାବରେ କବିଏ ଯାହା କହିବାକୁ ଚାହାନ୍ତି ତାହାର ଓଲଟା କଥାଟିକୁ ଉପସ୍ଥାପନ କରିଥାନ୍ତି । କହିବା ଭଙ୍ଗୀରୁ ବକ୍ତବ୍ୟଟି ଶକ୍ତି ପାଏ ଓ ଅଧିକ ପ୍ରଭାବଶାଳୀ ହୁଏ । ବଦାନ୍ୟ ରାଜାଙ୍କୁ ନିନ୍ଦା କରିବା ଛଳରେ କବି କହନ୍ତି , ଆପଣ ସର୍ବଦା ସମସ୍ତଙ୍କୁ ସବୁ ଦେଇ ଦିଅନ୍ତି ବୋଲି ଯାହା କୁହାଯାଏ, ତାହା ସଂପୂର୍ଣ୍ଣ ମିଥ୍ୟା କଥା । ଶତ୍ରୁଙ୍କୁ ପିଠି ଦେଇଛନ୍ତି କି ? ପରନାରୀଙ୍କୁ ବକ୍ଷ ?

ସର୍ବଦା ସର୍ବଦୋଽସୀତି ମିଥ୍ୟା ସଂସ୍ତୂୟସେ ବୁଧୈଃ
ନାରୟୋ ଲେଭିରେ ପୃଷ୍ଠଂ ନ ବକ୍ଷଃ ପରଯୋଷିତଃ

ନିନ୍ଦାରୁ ପ୍ରଶଂସା ପ୍ରସରୁଛି । ବୀରତ୍ୱ ଓ ଏକ ପନ୍ତୀବ୍ରତ ରାଜାଙ୍କ ମହତ୍ତ୍ୱ ବଢ଼ାଉଛି ।

ଚମତ୍କାରିତା ସୃଷ୍ଟିର ଏତେ କୌଶଳ ଅଛି ଯେ, ସବୁଗୁଡିକୁ ସଦୃଷ୍ଟାନ୍ତ ଉପସ୍ଥାପନା କରିବା ଦୁଃସାଧ । ଶ୍ଳେଷାଳଙ୍କାର ଅନ୍ୟତମ କୌଶଳ, ଯାହା ଓଡିଆ କାବ୍ୟରେ ପ୍ରମୁଖ ସ୍ଥାନ ଅଧିକାର କରିଛି । ସୁଭାସିତ ରତ୍ନ ଭଣ୍ଡାରରୁ ପ୍ରୟାତ ଅଧାପକ ଜୟକୃଷ୍ଣ ମିଶ୍ର ଆମକୁ ଅନେକ ଶ୍ଳୋକ ଶୁଣାଉଥିଲେ, ତାଙ୍କ ପୁଣ୍ୟସ୍ମୃତି ଉଦ୍‌ବୋଧନ ଉପଲକ୍ଷେ ଗୋଟିଏ ଦୃଷ୍ଟାନ୍ତ ଦେବାର ଲୋଭ ସମ୍ବରଣ କରି ହେଉନାହିଁ । (ସାରଙ୍କ କହିବା ଭଙ୍ଗୀ ଓ ଉତ୍‌ଫୁଲ୍ଲ ହେବାର ଉଜ୍ଜଳ ମୁଖଶ୍ରୀ ଏବେ ବି ମନେ ଅଛି )

ଏକୋନା ବିଂଶତିଃ ସ୍ତ୍ରୀଣାଂ ସ୍ନାନାର୍ଥଂ ସରଯୂ ଗତା
ବିଂଶତିଃ ପୁନରାୟାତା ଏକୋ ବ୍ୟାଘ୍ରେଣ ଭକ୍ଷିତଃ ।

ଏକ ଊଣା ୨୦ଟି ସ୍ତ୍ରୀଲୋକ ସ୍ନାନ ପାଇଁ ଯାଉଥିଲେ , ଜଣକୁ ବାଘ ଖାଇଲା , ଅଥଚ ଫେରିଲେ ସେଇ କୋଡିଏ କୁ କୋଡିଏ ସ୍ତ୍ରୀଲୋକ । ଅଂକ ଠିକ୍ ଅଛି ? ଠିକ୍ ଅଛି । ଏଠାରେ ଏକୋନାକୁ ଭାଂଗି ଦେଲେ ହେବ ଏକଃ ଓ ନା । ନା ଅର୍ଥ ଗୋଟିଏ ପୁରୁଷ ଲୋକ । ପୁରୁଷଟି ବାଘ ପାଟିରେ ଗଲା , ଫେରିଲେ ସ୍ତ୍ରୀ ସବୁ । ତେବେ ଆଉ କୌଶଳ ବୈଚିତ୍ର୍ୟ ବିଶ୍ଳେଷଣ ନକରି କୌଣକଟିର ସାରସ୍ୱତ ତାତ୍ପର୍ଯ୍ୟ ନିରୂପଣ କରିବା ଉଚିତ୍ ହେବ ।

(ତିନି)

ଚମତ୍କାରିତା ସୃଷ୍ଟିର କୌଶଳଟିକୁ କେବଳ କୌଶଳ ପ୍ରଦର୍ଶନ ଉପଲକ୍ଷେ ବ୍ୟବହାର କରାଯାଏ ବା ତାହାର କିଛି ଗୂଢ଼ ତାତ୍ପର୍ଯ୍ୟ ଥାଏ ? ସବୁ ଭଲ କବି ପ୍ରଜ୍ଞାବଳରେ ନୂଆ ନୂଆ କୌଶଳ ଉଦ୍ଭାବନ କରିଛନ୍ତି । ସମସ୍ତଙ୍କର ଉଦ୍ଦେଶ୍ୟ ମଧ ଅଦ୍ଭୁତ ରସ ସୃଷ୍ଟି ନୁହେଁ ; ଉଦ୍ଦେଶ୍ୟ ସାରସ୍ୱତ ସୌନ୍ଦର୍ଯ୍ୟ ସୃଷ୍ଟି । ଏପରି ସୌନ୍ଦର୍ଯ୍ୟ ସୃଷ୍ଟିର ତାତ୍ପର୍ଯ୍ୟ ଅଛି ନିଶ୍ଚୟ । ତାତ୍ପର୍ଯ୍ୟ ନିର୍ଣ୍ଣୟ ଏଠାରେ ପ୍ରତ୍ୟାଶିତ କର୍ତ୍ତବ୍ୟ ।

**୧. ସତେଜତା ଓ ଆଶ୍ଚର୍ଯ୍ୟତା ସୃଷ୍ଟି :**

ସୃଷ୍ଟିର ବୈଶିଷ୍ଟ୍ୟ ହେଉଛି ନୂତନତା, ଅନନ୍ୟତା ଓ ଅନାସ୍ୱାଦିତ ପୂର୍ବତା । ସ୍ରଷ୍ଟା ଯେଉଁ ଉପାଦାନ ଓ ଉପକରଣ ବ୍ୟବହାର କରନ୍ତି, ତାହା ସେ ସୃଷ୍ଟି କରନ୍ତି ନାହିଁ; ଏପରି କି ନୂଆ ଶବ୍ଦ ସୃଷ୍ଟି କରନ୍ତି ନାହିଁ, ପ୍ରଚଳିତ ଶବ୍ଦର ନୂଆ ବ୍ୟବହାର କରନ୍ତି ମାତ୍ର, ଯାହା ଅନନ୍ୟ ଓ ସତେଜ ନହେଲେ ନ ଚଳେ । ଫ୍ରାନସିସ୍ ବ୍ୟାକନ୍ "Of Beauty" ପ୍ରବନ୍ଧରେ କହନ୍ତି ' ଠିକ୍ କଥା, '' There is a no excellent beauty that hath not same strangeness in the proportion.'' ଆଶ୍ଚର୍ଯ୍ୟତା ନଥିଲେ ପରମ ସୌନ୍ଦର୍ଯ୍ୟ ସୃଷ୍ଟି ଅସମ୍ଭବ । ପ୍ରତିଭା ମଧ ନୂଆ ଓ ସତେଜ ଧାରଣା ସୃଷ୍ଟି କ୍ଷମତା --''ପ୍ରଜ୍ଞା ନବନବୋନ୍ମେଷଶାଳିନୀ ପ୍ରତିଭା ମତା । '' ଶବ୍ଦାର୍ଥରେ ନୂତନତା ଧେୟ । ନୂତନତା ଉପରେ ସୌନ୍ଦର୍ଯ୍ୟ ନିର୍ଭର କରେ, ଯାହା ସୁନ୍ଦର ତାହାବି ନିତ୍ୟନୂତନ ପ୍ରତିପନ୍ନ ହୁଏ -- କ୍ଷଣେ କ୍ଷଣେ ଯନ୍ନବତାମୁପୈତି ତଦେବ ରୂପଂରମଣୀୟତାୟା '' (ମାଘ)- । ଦୃଷ୍ଟପୂର୍ବ ହୋଇ ଅଦୃଷ୍ଟ ପ୍ରତୀତି' ନ ହେଲେ ବସ୍ତୁକୁ ସୁନ୍ଦର କହିବା କଷ୍ଟକର । ବିସ୍ମୟ ବୋଧ ପଛରେ ଏହି ନୂତନତା ନିତ୍ୟ ବର୍ତ୍ତମାନ । ତେଣୁ ଅଦ୍ଭୁତ କାବ୍ୟର ପ୍ରମୁଖ ରସ ନ ହେଲେବି ବିସ୍ମୟ ବୋଧ ଉଦ୍ରେକ କରିବାକୁ ସବୁ କବି ଉନ୍ମୁଖ ରହିଥାନ୍ତି ।

**୨. ଚିତ୍ତବିସ୍ତାର ସାମର୍ଥ୍ୟ ଅର୍ଜନ :**

ବିସ୍ମୟଃ ଚିତ୍ତବିସ୍ତାରୟିତା । ବିସ୍ମୟ ଚିତ୍ତ ବିସ୍ତାର କରେ ଓ ରସୋଦ୍ରେକ ପାଇଁ ଅବକାଶ ସୃଷ୍ଟି କରେ ।

**୩. ମନୋଯୋଗ ଆକର୍ଷଣ :**

ମଣିଷର ମନ ବିକ୍ଷିପ୍ତ - ଚାରି ପାଖରେ ତାହାପାଇଁ ଅନେକ ଆକର୍ଷଣ ଉପସ୍ଥିତ । ତେଣୁ ତାହାକୁ ନିର୍ଦ୍ଦିଷ୍ଟ ଏକ ବସ୍ତୁ କି ଭାବ ପ୍ରତି ନିବିଷ୍ଟ କରିବାକୁ ହେଲେ ବିସ୍ମୟ ଉଦ୍‌ବୋଧନ ଅବଶ୍ୟ ପ୍ରୟୋଜନୀୟ । ପାଠକର ଦୃଷ୍ଟି ଆକର୍ଷଣ କରିବାକୁ କବିଏ ଚମତ୍କାରିତା ସୃଷ୍ଟି ଉପରେ ଗୁରୁତ୍ୱ ଦିଅନ୍ତି --- ସେ ଚମତ୍କାରିତା ହୋଇପାରେ ଭାବଗତ କି ଶବ୍ଦଗତ ।

**୪. ଭାବାନୁଭୂତିର ଉପଲବ୍ଧିକୁ ସ୍ନିଗ୍ଧ ଓ ବିଶ୍ୱାସ୍ୟୀକରଣ :**

ସବୁ ମଣିଷଙ୍କ ମଧରେ ଶିଶୁ ମନଟି ଏ ବର୍ତ୍ତମାନ । ବୟସ ମଣିଷକୁ ବୁଢ଼ା କରେ ନାହିଁ, ପ୍ରକୃତରେ ବିସ୍ମୟବୋଧର ଅନୁପସ୍ଥିତିରେ ମଣିଷ ବୁଢ଼ା ହୁଏ , ସାହିତ୍ୟ ପାଇଁ ମରେ ମଧ । ତେଣୁ ଯେଉଁ ପର୍ଯ୍ୟନ୍ତ ଶିଶୁ ମନଟି ଜୀବନ୍ତ ଥାଏ , ସେ ପର୍ଯ୍ୟନ୍ତ ମଣିଷ 'ବାଲ୍ୟେ ପ୍ରତିଷ୍ଠିତ ଥାଏ । ସାହିତ୍ୟିକ ମଣିଷର ଶିଶୁ ମନଟିକୁ ପ୍ରସନ୍ନ କରିବାକୁ ପାଠକକୁ ବିସ୍ମୟ ଜଗତକୁ ଉତ୍ତୀର୍ଣ୍ଣ କରି ଦିଅନ୍ତି, ସଂବେଦ୍ୟ ଭାବାନୁଭୂତି ସ୍ନିଗ୍ଧ ଓ ବିଶ୍ୱାସ ଯୋଗ୍ୟ ହୋଇଉଠେ ।

**୫. ପରିଚିତ ବସ୍ତୁ ଓ ଆବେଗାନୁଭୂତିକୁ ବିସ୍ମୟ ମାଧ୍ୟମରେ କୌତୂହଳ ସୃଷ୍ଟି କ୍ଷମତା ଦାନ :**

କବି ଓ ସାହିତ୍ୟିକ ଜଗତକୁ ଗୁଣ୍ଠନମୁକ୍ତ କରି ଦେଖାନ୍ତି , ପରିଚିତକୁ ଅପରିଚିତ ପ୍ରତିପନ୍ନ କରି ପାରନ୍ତି । ଯେଉଁ ଶବ୍ଦରେ ଆମେ ଜୀବନ ଯାତ୍ରା ନିର୍ବାହ କରୁ ସେ ସେହି ଶବ୍ଦ ବ୍ୟବହାର କରନ୍ତି, ଆମରି ଆବେଗାନୁଭୂତି ବୃତ୍ତ ଭିତରୁ ସେ ପ୍ରାୟ ତାଙ୍କର ବିଷୟ ବସ୍ତୁ ନିର୍ବାଚନ କରିଥାନ୍ତି, ଅଥଚ ବିନ୍ୟାସ ଭଂଗୀର ଅପୂର୍ବତା ବଳରେ ସେହି ଉପାଦାନ ଉପକରଣ ଦ୍ୱାରା ଆମକୁ ସମ୍ମୋହିତ କରି ପାରନ୍ତି । କ'ଣ କରନ୍ତିସେ? କବି ସେଲିଙ୍କ ଉତ୍ତର ଶୁଣନ୍ତୁ , "Poets remove the film of familiarity from the things around us , with the result that we begin to look upon them with new eyes of wonder,"

**୬. ରସାସ୍ୱାଦନକୁ ତ୍ୱରାନ୍ୱିତ କରିବା :**

ବିସ୍ମୟ କ୍ୱଚିତ୍ ସାର୍ବଭୌମ ହୋଇ ଉଠିଥାଏ ମାତ୍ର ଅନ୍ୟ ସ୍ଥାୟୀଭାବ ଗୁଡିକୁ ସାହାଯ୍ୟ ସହଯୋଗରେ ସର୍ବଦା ରସାଭିବ୍ୟକ୍ତି କ୍ଷେତ୍ରରେ କ୍ଷିପ୍ର ଗତିବେଗ ଦାନ କରିବାକୁ ସମର୍ଥ ହୋଇଥାଏ । ଦୃଷ୍ଟାନ୍ତ ଦେଲେ ପୋଥିଏ ହେବ । ଶୃଙ୍ଗାର ରସ ନିର୍ମିତ ହୁଏ ନାହିଁ । ପ୍ରେମ ନିର୍ମାଣ ନୁହେଁ, ସୃଷ୍ଟି --- ସହସା ଆବିର୍ଭୂତ ହୁଏ ବିସ୍ମୟ ଓ ଆନଂଦ ସହିତ -- ଏହା ଦୁଷ୍ମନ୍ତଙ୍କୁ ଯେପରି ଅଭିଭୂତ କିରିଛି ଓ ସେ ଏହାକୁ ଯେପରି ଅଭିବ୍ୟକ୍ତି ଦାନ କରିଛନ୍ତି ତାହା କବିତ୍ୱ ଦୃଷ୍ଟିରୁ ପ୍ରଚୁର ପ୍ରଶଂସା ଦାବି କରିଥାଏ । ଶକୁନ୍ତଳାଙ୍କୁ ଦେଖି ଦୁଷ୍ମନ୍ତ ମୁଗ୍ଧ ହୋଇଛନ୍ତି,

ଅନାଘ୍ରାତଂ ପୁଷ୍ପଂ କିଶଳୟମଲୂନଂ କରରୁହୈଃ -
ଅନାବିଦ୍ଧଂ ରତ୍ନଂ ମଧୁ ନବମନାସ୍ୱାଦିତରସମ୍ ।
ଅଖଣ୍ଡଂ ପୁଣ୍ୟାନାଂ ଫଳମିବ ଚ ତଦ୍ରୂପମନଘମ୍
ନ ଜାନେ ଭୋକ୍ତାରଂ କର୍ମହ ସମୁପସ୍ଥାସ୍ୟତି ବିଧିଃ ।।

**୭. କଥାବସ୍ତୁର ଗତିବେଗକୁ ମୋଡ ଦାନ ବା ନାଟକୀୟ ପରିବର୍ତ୍ତନ ସୃଷ୍ଟି :**

କବି ଓ ସାହିତ୍ୟିକମାନେ ସାଧାରଣତଃ ନାଟକୀୟତା ସୃଷ୍ଟି ପାଇଁ କଥାବସ୍ତୁର ଅଗ୍ରଗତିରେ, ରସ ସଂଯୋଜନାରେ ଓ ପରିସ୍ଥିତି କ୍ଷେତ୍ରରେ ପରିବର୍ତ୍ତନ ଆଣନ୍ତି । ଏହା ସହସା ସଂଘଟିତ ହେଲେ ବିସ୍ମୟ ଉପୁଜାଏ - ପ୍ରକାରାନ୍ତରେ କହିଲେ ବିସ୍ମୟ ପରିବର୍ତ୍ତନକୁ ଆସ୍ୱାଦ୍ୟ ଓ ସୁନ୍ଦର କରେ । ଦୁଷ୍ମ ନ୍ତ - ପ୍ରତ୍ୟାଖ୍ୟାତା ଶକୁନ୍ତଳାଙ୍କୁ ରାଜପୁରୋହିତ ସାଂଗରେ ନେଉଥିଲା ବେଳେ କାଳିଦାସ ହଠାତ୍ ମେନେକାଂକୁ ଆବିର୍ଭୂତ କରାଇଛନ୍ତି । ସେ ଦୁଃଖିନୀକନ୍ୟାଟିକୁ ତୋଳିନେଇଛନ୍ତି । କାହାଣୀର ବେଗ ଓ ଦିଗ ବଦଳି ଯାଇଛି - ପୁରୋହିତ ରାଜାଙ୍କୁ ଆସି କହିଛନ୍ତି , " ଦେବ ଅଦ୍‌ଭୁତଂ ଖଳୁ ସଂବୃତ୍ତମ୍ । " ଇତ୍ୟାଦି ।

**୮. ବର୍ଣ୍ଣନାକୁ ବର୍ଣ୍ଣାଢ୍ୟ କରିବା ଓ ନୀରସ ପରିବେଶକୁ ସରସତା ଦେବା :**

ବିସ୍ମୟର ଧର୍ମ ହେଲା ଚକିତ ଉଦ୍ଭାସନ । ଏହା ଦୀର୍ଘ ବର୍ଣ୍ଣନାର କ୍ଳାନ୍ତି ଓ ଅବସାଦକୁ ଦୂରକରେ,ସେଥିପାଇଁ ନାଟକରେନିର୍ବହଣ ବା ଉପସଂହୃତି ସନ୍ଧିରେ ଅଦ୍ଭୁତ ଘଟଣା ଅବଶ୍ୟ ସଂଯୋଜନୀୟ ବୋଲି ନାଟ୍ୟଶାସ୍ତ୍ର ର ଅନୁଶାସନ ଅଛି,"କୁର୍ଯ୍ୟାନିର୍ବହଣେଽଦ୍ଭୁତଂ"। ଦଶରୂପକ(୩/୩୩) ଚମତ୍କାରିତା ଯୋଗୁହିଁ ଜଣାଶୁଣା କଥାବସ୍ତୁ କାବ୍ୟ ଓ ନାଟକରେ ଅନାସ୍ୱାଦିତପୂର୍ବ ବୋଲି ପ୍ରତୀତ ହୋଇଥାନ୍ତି, ରାମାୟଣ କି ମହାଭାରତରୁ ସଂଗୃହୀତ ଆଖ୍ୟାନ ଭାଗ ଆମୂଳାନ୍ତ ପାଠକର ଆବେଗଉତ୍କଣ୍ଠାକୁ ସଜାଗ ରଖି ପାରିଥାନ୍ତି ।

୯. **ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ କୌତୂହଳ-ବୋଧର ସହଜ ଉଦ୍‌ବୋଧନ:**

ବିସ୍ମୟ-ଉଦ୍‌ବୋଧକ ବସ୍ତୁ ଓ ଭାବ ପ୍ରତି ମଣିଷର ପ୍ରତିକ୍ରିୟା ଅନେକ ଦିନ ତଳୁ ଆରମ୍ଭହୋଇଥିବ-ସଭ୍ୟତା ଓ ସଂସ୍କୃତିର ଉନ୍ମେଷର ବହୁ ପୂର୍ବରୁ ବନଚାରୀ ମଣିଷର ଚାରିପାଖରେଥିବେ ହିଂସ୍ର ଜନ୍ତୁ,ଆକାଶରେ ବଜ୍ର ବିଦ୍ୟୁତ ଇରମ୍ମଦ-ଭୟ ଓ ବିସ୍ମୟ ମଧ୍ୟରେ ବଂଚିଥିବ ସେ । ସେହି ସବୁଦିନର ସ୍ମୃତି ସାମୂହିକ ଅବଚେତନର ଆର୍କିଟାଇପ୍ ଭାବରେ ବିଦ୍ୟମାନ । ତେଣୁ ଅଦ୍ଭୁତ ବସ୍ତୁ ଓ ଭାବ ବିସ୍ମୟ ବୋଧକୁ ସହଜରେ ଉଦ୍‌ବୋଧନ କରିପାରନ୍ତି ।

୧୦. **ଲୋକୋତ୍ତର ଆହ୍ଲାଦସୃଷ୍ଟି :**

ପଣ୍ଡିତରାଜ ଜଗନ୍ନାଥଙ୍କ କାବ୍ୟସଂଜ୍ଞା ଆଗରୁ ଉଦ୍ଧାର କରାଯାଇଛି - ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍ - ଆଉ ରମଣୀୟତା ହେଉଛି ଲୋକୋତ୍ତରଆହ୍ଲାଦଜନକଜ୍ଞାନଗୋଚରତା । ଲୋକୋତ୍ତରତ୍ୱଂ ଚ ଆହ୍ଲାଦଗତଃ ।
ଚମତ୍କାରତ୍ୱାପର ପର୍ଯ୍ୟାୟଃ ଅନୁଭବ ସାକ୍ଷିରେକଃ ଜାତିବିଶେଷଃ । କ'ଣ କହିବାକୁ ଚାହାନ୍ତି ପଣ୍ଡିତ ମହୋଦୟ ? କବିତା ଅର୍ଥନ୍ୱିତ । ଅର୍ଥ ଆନଂଦ ଦିଏ । ଜ୍ଞାନ ଦୃଷ୍ଟିରୁ ବିଚାର କଲେ ଏହି ଆନଂଦ ଲୋକୋତ୍ତର ବା ଅଲୌକିକ ଆନଂଦ । ପୃଥିବୀର ସୁଖ ଅଛି , ଆନଂଦ ଅଛି । ତେଣୁ ବାସ୍ତବ ଜଗତର ଅନେକ ବାକ୍ୟ ଶ୍ରୋତାକୁ ଆନଂଦ ଦେଇଥାନ୍ତି - "ତୁମର ଦରମା ତିନିଗୁଣ ବଢ଼ିଛି " - ନୂଆ Scale of pay ଦୃଷ୍ଟିରୁ " କିନ୍ତୁ ବାକ୍ୟଟି କବିତା ନୁହେଁ । ତହିଁରୁ ଉତ୍ପନ୍ନ ଆନଂଦ ମଧ ସାରସ୍ୱତ ଆନଂଦ ନୁହେଁ । ଏହା ଏହି ଲୋକର କଥା - କାବ୍ୟର ଆନଂଦ ଲୋକୋତ୍ତର - ଲୋକୋତୀର୍ଣ୍ଣ - ଅନ୍ୟ ଏକ ଭିନ୍ନଭୂମଧି ଆନଂଦ, ଦିବ୍ୟ ଭୂମିର ଆନଂଦ । କାବ୍ୟର ଚମତ୍କାରିତା ତେଣୁ ପାଠକକୁ ଭୂମିରୁ ଭୂମାକୁ ଉତ୍ତୀର୍ଣ୍ଣ କରିଦିଏ , ଦିବ୍ୟ ଆନଂଦ ପ୍ରଦାନ କରେ ।

ସାଧାରଣ ମଣିଷ ଯେଉଁ ଜଗତରେ ବାସକରେ , ସେହି ଜଗତ ବୈଚିତ୍ର୍ୟହୀନ ଓ ବିସ୍ମୟରହିତ । ତେଣୁ ଏଥିରୁ ମୁକ୍ତି ଖୋଜିବା ଆସ୍ୱାଭାବିକ ନୁହେଁ , ମୁକ୍ତି ଅଛି ଶିହରଣରେ , ହୃତ୍‌କଂପନରେ ଓ ଆତ୍‌ଭେଞ୍ଚରରେ । କିନ୍ତୁ ଏହି ଅନୁଭୂତି ନିଜର ବ୍ୟକ୍ତିଗତ ହୋଇଥିଲେ ଆନଂଦ ମିଳିବାର ସମ୍ଭାବନା ନାହିଁ । ଏହା ହେବ ନିଜର ଅଥଚ୍ ନିଜର ନୁହେଁ, ପରର କିନ୍ତୁ ପରର ନୁହେଁ - ତେଣୁ ଅନ୍ୟର ଦୁଃସାହସିକ ପଦକ୍ଷେପ ବିଷୟରେ ପଢ଼ିଲେ ଆନଂଦ ମିଳିଥାଏ , ଏକପକ୍ଷରେ ନିରାପଦ କୂଳରେ ଠିଆ ହୋଇ ଯେପରି ଘଟନା ପ୍ରବାହ କୁ ଦେଖିହୁଏ, ଅନ୍ୟ ପକ୍ଷରେ ଠିକ୍ ସେପରି ସେହି ପ୍ରବାହରେ ନିମଜ୍ଜିତ ହେବାକୁ ହୁଏ । କାବ୍ୟାନଂଦ ଲାଭ କରିବାର ଏହାହିଁ ଏକମାତ୍ର ପଥ, ଯଦିଓ ଆଦୌ ସହଜ ପଥ ନୁହେଁ । ତେଣୁ ସତ୍‌ପାଠକ ପାଇଁ କାବ୍ୟର ଚମତ୍କାରିତା କେବଳ ଦିବ୍ୟାନଂଦର ଦ୍ୱାର ଉନ୍‌ମୋଚନ କରିଦିଏ ନାହିଁ ଉପଦ୍ରୁତ ଜୀବନରୁ ଲୋକୋତୀର୍ଣ୍ଣ ଜଗତକୁ ଉତୀର୍ଣ୍ଣ କରିଦିଏ ମଧ ।

## (ଚାରି)

ବିସ୍ମୟର ଉଦ୍ଭାସନ କ୍ଷଣସ୍ଥାୟୀ । ତେଣୁ ତାହା ସମସ୍ତ ଶକ୍ତି ଓ ସମ୍ଭାବନା ସତ୍ତ୍ୱେ ନିଜେ ନିଜ ପାଇଁ ମୂଲ୍ୟବାନ ହୋଇପାରେ ନାହିଁ । ବୀର, କରୁଣ, ଅଦ୍ଭୁତ ଓ ଶୃଙ୍ଗାରାଦି ରସର ଅବକାଶ ସୃଷ୍ଟିରେ ଯଥୋଚିତ ଭୂମିକା ନିର୍ବାହ କରି କୃତାର୍ଥ ହୋଇଥାଏ ମାତ୍ର । କବି ଓ ନାଟ୍ୟକାର ମାନେ ବିସ୍ମୟ ଉଦ୍‌ବୋଧନରୁ କାବ୍ୟନାଟକ ଆରମ୍ଭ କରନ୍ତି, କିନ୍ତୁ ଶେଷ ପର୍ଯ୍ୟନ୍ତ ଅଙ୍ଗୀରସର ପରିଚର୍ଯ୍ୟାରେ ମନୋନିବେଶ କରନ୍ତି । ଶିଶୁପାଳବଧ ପରି ବିରାଟ ମହାକାବ୍ୟ ବିସ୍ମୟବୋଧର ଉଦ୍‌ବୋଧନରୁ ଆରମ୍ଭ , କିନ୍ତୁ ତାହା ପରମୂହୂର୍ତ୍ତରେ କବିଙ୍କୁ ଅଭିପ୍ରେତ ରସ ସୃଷ୍ଟି ପାଇଁ ସୁଯୋଗ ଦେବାକୁ ବିଦାୟ ଘେନିଛି । ବିସ୍ମୟ ପାଠକକୁ ସଜାଗ କରେ ,

ତାହାର ମନକୁ ଆକର୍ଷଣ କରେ ନିଶ୍ଚୟ, କିନ୍ତୁ ଦୀର୍ଘକାଳ ସକ୍ରିୟ ରହିଲେ ଅବସାଦକର ହୋଇ ଉଠେ । ପାଠକ-ମନ କ୍ଳାନ୍ତ ହୋଇପଡେ । ଏଥିପାଇଁ ସତ୍‌କବି ଓ ସାହିତ୍ୟିକମାନେ ଏକାଦି କ୍ରମେ ଦୀର୍ଘକାଳ ଧରି ବିସ୍ମୟବୋଧର ଉଦ୍‌ବୋଦନରେ ଉତ୍ସାହ ପ୍ରକାଶ କରନ୍ତି ନାହିଁ । ଆଜିକାଲି ଗଳ୍ପ ଉପନ୍ୟାସରେ ପରୀଗଳ୍ପ ଓ ଫାଣ୍ଟାସି (Fantacy) ର ବ୍ୟବହାର ଦୁର୍ଲକ୍ଷ ନୁହେଁ , କିଂତୁ ସାହିତ୍ୟିକ ମାନେ ଏପରି ଅଲୌକିକ ଘଟଣା ବିନ୍ୟାସର ସୀମାଜାଣନ୍ତି । ସୀମା ଅତିକ୍ରାନ୍ତ ହେଲେ ପରିଣତି ଭଲ ହୁଏନାହିଁ । ବିସ୍ମୟର କର୍ତ୍ତୃତ୍ୱ ବେଳେ ବେଳେ ମଧ୍ୟ ଉଦ୍ଦୀପନ ବିଭାବ ସହିତ ସଂପର୍କ ସ୍ଥାପନ ଆଂନନ୍ଦରୁ ପାଠକକୁ ବଂଚିତ କରିଥାଏ । ଅଧିକନ୍ତୁ ଦୀର୍ଘକାଳ ଧରି ବିସ୍ମୟର ଆଧିପତ୍ୟ ଅକ୍ଷୁର୍ଣ୍ଣ ରହିଲେ କାବ୍ୟନାଟକର ଚରିତ୍ରଗୁଡିକ ସହିତ ଆତ୍ମୀୟ ହୋଇ ହୁଏ ନାହିଁ । ଅଲୌକିକତା କି ଅଦ୍ଭୁତ ଅବସ୍ଥା ଅନ୍ତରାୟ ସୃଷ୍ଟି କରିଥାଏ । ତନ୍ମୟୀଭବନ କାବ୍ୟନାଟକ କି ଗଳ୍ପ ଉପନ୍ୟାସ-ଉପଭୋଗର ଅବଶ୍ୟ ପ୍ରୟୋଜନୀୟ ଅଂଗ । ତନ୍ମୟୀଭବନ ଅବକାଶ ଉପଲକ୍ଷେ କୌଣସି କବି କି ନାଟ୍ୟକାର ଅଦ୍ଭୁତ ରସକୁ ଅଙ୍ଗୀରସ ଭାବରେ ସ୍ୱୀକୃତି ଦିଅନ୍ତି ନାହିଁ । ଶକ୍ତିଭଦ୍ରଂକ ରଚିତ 'ଆଶ୍ଚର୍ଯ୍ୟ ଚୂଡାମଣି' ନାମ ଦେଖି ଅନେକେ ଭ୍ରମରେ ପଡନ୍ତି ଓ ସେଥିରେ ଅଦ୍ଭୁତ ଅଙ୍ଗୀରସ ଭାବରେ ବ୍ୟବହୃତ ବୋଲି ଘୋଷଣା କରନ୍ତି । କିନ୍ତୁ ଯେଉଁମାନେ 'ଆଶ୍ଚର୍ଯ୍ୟ ଚୂଡାମଣି' ପଢିଛନ୍ତି ସେମାନେ ଜାଣନ୍ତି 'ଅଦ୍ଭୁତରସ'କୁ ସେଥିରେ ଅଙ୍ଗୀରସର ମାନ୍ୟତା ଦିଆଯାଇ ନାହିଁ ।

ରସାନୁଭୂତିର ଅବ୍ୟବହିତ ପୂର୍ବରୁ ବିସ୍ମୟର ଶିହରଣ ଅଛି । ବିସ୍ମୟବୋଧ ରସାନୁଭୂତିର ପୂର୍ବାବସ୍ଥା । ଦୁଇ ଅବସ୍ଥା ମଧ୍ୟରେ ସୂକ୍ଷ୍ମ ବ୍ୟବଧାନ ଉପସ୍ଥିତ । ତେଣୁ ବିସ୍ମୟ ବା ଚମତ୍କାର ( ବିଶ୍ୱନାଥ କବିରାଜ ଚମତ୍କାରକୁ ବିସ୍ମୟର ସମପର୍ଯାୟବାଚୀ ଶବ୍ଦ ବୋଲି ଗ୍ରହଣ କରନ୍ତି ) ରସ ପର୍ଯାୟଭୁକ୍ତ ନୁହେଁ , ରସର ଭୂମିକା ମାତ୍ର । ବିସ୍ମୟ ବା ଚମତ୍କାର ଅପ୍ରତ୍ୟାଶିତ ଓ ଅଭାବିତ ବ୍ୟାପାରରୁ ଉପୁଜିଥାଏ , କିନ୍ତୁ ବୀର, କରୁଣ ଓ ଶୃଙ୍ଗାରାଦି ରସ ପରିଚିତ ବିଭାବରୁ ସୃଷ୍ଟି - ସ୍ଥାୟୀଭାବର ଅଭିବ୍ୟକ୍ତି । ପୂର୍ବ ସ୍ମୃତି ସହିତ ସଂପର୍କ ସ୍ଥାପିତ ହୋଇ ନ ପାରିଲେ ରସାସ୍ୱାଦନ ସମ୍ଭବ ହୁଏ ନାହିଁ । ଏଣୁ ଚମତ୍କାର ମୂଳତଃ ରସଠାରୁ ଭିନ୍ନ ବ୍ୟାପାର । ରସାସ୍ୱାଦନ ପୂର୍ବରୁ ବିସ୍ମୟ ଓ ଚମତ୍କାରକୁ ବିଦାୟ ଦେବାକୁ ହୁଏ ।

ଆଚାର୍ଯ୍ୟ ନାରାୟଣ ଅଦ୍ଭୁତ ରସକୁ ରସରାଜ ବୋଲି ଘୋଷଣା କରିଛନ୍ତି । ତାହା ପ୍ରକୃତ ରସ, ଅନ୍ୟ ଗୁଡିକ ତାହାର ବିକୃତି ମାତ୍ର । ଆଳଙ୍କାରିକମାନେ ଚମତ୍କାର ପ୍ରତି ଯେଉଁ ଅବଜ୍ଞା ଓ ଅବହେଳା ପ୍ରକାଶ କରି ଆସିଥିଲେ ତାହାର ପ୍ରତିଷେଧକଲ୍ପେ ନୂଆ ତତ୍ତ୍ୱଟିଏ ପ୍ରବର୍ତ୍ତନ କରିଛନ୍ତି - ତାଙ୍କର ପୂର୍ଣ୍ଣ ବକ୍ତବ୍ୟ ଆମ ପାଖରେ ଅନୁପସ୍ଥିତ । ଆଗରୁ କୁହାଯାଇଛି ତାଙ୍କ ରଚିତ ଗୋଟିଏ ଶ୍ଳୋକର ତିନୋଟି ଧାଡି ପ୍ରପୌତ୍ର ବିଶ୍ୱନାଥ କବିରାଜ ସଂଗ୍ରହ କରିଛନ୍ତି - ସେ ମଧ୍ୟ ବୃଦ୍ଧ ପ୍ରପିତାମହଙ୍କ ମତଟିକୁ ପ୍ରତିଷ୍ଠିତ କରିବାକୁ କୌଣସି ଯୁକ୍ତି ବାଢ଼ି ନାହାନ୍ତି । କେବଳ ଏତିକି ମାତ୍ର ସ୍ୱୀକାର କରିଛନ୍ତି ଯେ, ରସ ଚମତ୍କାର ପ୍ରାଣ । ସବୁଠାରେ ରସରେ ଚମତ୍କାର ସାର ଭାବରେ ଗୃହୀତ ହୋଇଥାଏ - ' ରସେ ସାର ଚମତ୍କାରଃ ' । ଚମତ୍କାର ରସ ନୁହେଁ, କିନ୍ତୁ ଚମତ୍କାର ବିନା ରସ ନିଷ୍ପ୍ରାଣ । ଆଚାର୍ଯ୍ୟ ନାରାୟଣଙ୍କ ଚମତ୍କାରତତ୍ତ୍ୱଟିକୁ ପୁନର୍ଗଠନ କରିବା କ୍ଷମତା ଲେଖକର ନାହିଁ, ତେଣୁ ଏତିକି କହିଲେହେବଯେ , ଚମତ୍କାରବାଦର ସମ୍ଭାବନା ପ୍ରଚୁର, ଅଥଚ କେଉଁଠି ନା କେଉଁଠି ସୀମା ଅଛି । ସତ୍ କବି ଓ ନାଟ୍ୟକାର ମାନେ ସେହି ସୀମାବଦ୍ଧତା ଜାଣନ୍ତି, ତେଣୁ ଚମତ୍କାରର ସଦୁପଯୋଗ କ୍ଷେତ୍ରରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରନ୍ତି ।

*(ପ୍ରବଂଧଟିରେ " The Aeshetic of wonder" ଗ୍ରନ୍ଥଟିର ସାହାଯ୍ୟ ଗ୍ରହଣ କରାଯାଇଛି । )*

*ମାୟାଲୋକ, ଗୋଧୂଳି ଲେନ୍*
*ଦେଉଳ ସାହି, କଟକ - ୭୫୩୦୦୮ (ଓଡିଶା)*

# ମଙ୍ଗଳଗୀତ

## ପ୍ରଫେସର ଡକ୍ଟର ଜାନକୀବଲ୍ଲଭ ମହାନ୍ତି

ଓଡିଶାରେ ବିବାହକୁ ମଙ୍ଗଳକୃତ୍ୟ କୁହାଯାଏ , ଏହି ଉପଲକ୍ଷରେ ଗଣକ ପୁରୋହିତ ମାନେ ସଂସ୍କୃତ ମଙ୍ଗ ଷ୍ଟକ ପାଠକରିଥାଆନ୍ତି, ଏତଦ୍ ବ୍ୟତୀତ ଅତୀତରେ ବିବାହ ଉତ୍ସବରେ ମଂଗଳଗୀତ ସମୂହ ମଧ ଗାନ କରାଯାଉଥିଲା , ମଂଗଳ ବାଦ୍ୟଯୁକ୍ତ ପଞ୍ଚମ ସ୍ୱରରେ ଗୀତ ହେଉଥିବା ବଧୂ ପ୍ରୀତିକର ଗାନସବୁ ' ମଙ୍ଗଳଗାନ' ରୂପେ ସୁବିଦିତ ଥିଲା, ସଂଗୀତ ଶାସ୍ତ୍ର ମାନଙ୍କରୁ ମଧ ତାହାର ନିଦର୍ଶନ ମିଳିଥାଏ ।

ପ୍ରାଚୀନ ବଙ୍ଗ ସାହିତ୍ୟରେ ' ମଂଗଳ ଗାନ' ବା 'ମଂଗଳ ଗୀତ ' ନାମକ ଏକ ପ୍ରକାର ରଚନା ପ୍ରଚଳିତ ଥିଲା । 'ଚଣ୍ଡୀ ମଙ୍ଗଳ' ଗୁଡିକ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ, ଏବେ ଏହାକୁ 'ମଙ୍ଗଳ - କାବ୍ୟ' କୁହାଯାଇଥାଏ , ମାତ୍ର ଓଡିଆ 'ମଂଗଳ ଗୀତ' ବା ମଂଗଳ ସଂଗୀତ ସହ ଏହି ରଚନାର କୌଣସି ସାମଞ୍ଜସ୍ୟ ନାହିଁ । ବଂଗଳା ମଂଗଳ କାବ୍ୟ ଗୁଡିକରେ ମୁଖ୍ୟତଃ 'ଗାନ' ଓ 'ଛଡା' ସାହାଯ୍ୟରେ ଏକ କାହାଣୀ ବର୍ଣ୍ଣନା କରାଯାଇଥାଏ, ଏହାର କାହାଣୀ ପ୍ରଧାନ ଅଂଶଟି 'ପୟାର ଛନ୍ଦ' ରେ ଲିଖିତ ହୋଇଥାଏ ଓ ତାହା ଆବୃତ୍ତି କରାଯାଏ, ମାତ୍ର ଯେଉଁଠାରେ ଭାବାବେଗର ପ୍ରାଧାନ୍ୟ ଥାଏ, ସେହି ଅଂଶଟିରେ ସ୍ୱରତାଳଯୁକ୍ତ ' ତ୍ରିପଦୀ' ବା 'ଏକାବଳୀ' ଛନ୍ଦର ଗୀତ ସଂଯୁକ୍ତ ହୋଇଥାଏ, ଏଣୁ ଓଡିଆ ମଂଗଳଗୀତ ଓ ବଂଗଳା ମଂଗଳ କାବ୍ୟ ରୂପ ଓ ଗୁଣରେ ପରସ୍ପରଠାରୁ ସଂପୂର୍ଣ୍ଣ ପୃଥକ୍ ।

ଗୀତ ଗୋବିନ୍ଦକୁ କବି ଜୟଦେବ ଏକ 'ମଂଗଳ ଗୀତ' ବୋଲି ଅଭିହିତ କରିଥିବା ଜଣାଯାଏ; ମାତ୍ର ତାହା ବିବାହ ଉପଲକ୍ଷେ ଗୀତ ହୋଇନଥାଏ , ଓଡିଆ ମଂଗଳ ଗୀତଗୁଡିକ ମୁଖ୍ୟତଃ ବିବାହ ଅନୁଷ୍ଠାନକୁ କେନ୍ଦ୍ର କରି ଲିଖିତ । ଏଣୁ ଓଡିଆ ମଂଗଳ ଗୀତ ଗୁଡିକ ପୂରାପୂରି ଓଡିଆ ଲୋକ ଚଳଣୀରୁ ହିଁ ଉଦ୍ଭୁତ ଓ ନିଜସ୍ୱ ବିଶିଷ୍ଟତା ସଂପନ୍ନ ।

ଓଡିଶାରେ ପ୍ରାଚୀନ କାଳରେ ସମ୍ଭ୍ରାନ୍ତ ପରିବାରମାନଙ୍କରେ ବିବାହ ଉପଲକ୍ଷେ ମଂଗଳଗୀତ ଗାନ କରାଯାଉଥିଲା । ସାମାଜିକ ପ୍ରଥାଭାବେ ଗଣିକା ଓ ଅନ୍ୟାନ୍ୟ ଅନ୍ତଃପୁର ବାସିନୀ ନାରୀଗଣ ମଂଗଳଗୀତ ଗାଉଥିଲେ । ସାରଳା ଦାସଙ୍କ ମହାଭାରତର କେତେକ ସ୍ଥଳରେ ମଂଗଳ ଗୀତର ଉଲ୍ଲେଖ ଦେଖାଯାଏ । ଭାନୁମତୀ ସ୍ୱୟଂବର ବର୍ଣ୍ଣନା ପ୍ରସଂଗରେ ସେ ସୁସ୍ୱରରେ ମଂଗଳଗୀତ ଗାନ ହେଉଥିବା ବିଷୟ ଉଲ୍ଲେଖ କରିଛନ୍ତି , -

ଅନେକ ବୀରତୂର ଯେ ବାଜଇ ଉଛୁଳି ।
ଗଣିକାଗଣ ଆନନ୍ଦେ ଦ୍ୟନ୍ତି ହୁଳହୁଳି ।।
ଶଙ୍ଖ ମହୁରୀ ଶବଦ ଘନଘନ ସ୍ୱରେ
ମଂଗଳଗୀତ ଗାୟନ କରନ୍ତି ସୁସ୍ୱରେ ।। (ସା.ମ.-ଆଦ୍ୟ)

ଏଣୁ ପଂଚଦଶ ଶତାବ୍ଦୀରୁ ଓଡିଶାରେ ମଂଗଳଗୀତ ବିବାହ ଉପଲକ୍ଷେ ଗୀତ ହେଉଥିବା ଅନୁମେୟ। ସପ୍ତଦଶ ଶତାବ୍ଦୀରେ ରଚିତ କେତେକ ପ୍ରାଚୀନ ଓଡିଆ ଆଖ୍ୟାନ - କାବ୍ୟରେ ମଧ୍ୟ ମଂଗଳଗୀତ ଗାନର ଉଲ୍ଲେଖ ଦେଖାଯାଏ । ବିବାହର ବିଭିନ୍ନ ପର୍ଯ୍ୟାୟରେ ବିବିଧ ମଂଗଳ ଗୀତର ପ୍ରଚଳନ ଥିଲା । ବରକନ୍ୟାଙ୍କୁ ମଙ୍ଗୁଳିବାବେଳେ ମଂଗଳଗୀତ ଗାନ ହେଉଥିଲା ଓ ଶଙ୍ଖମହୁରୀ ବାଦ୍ୟ ବାଜୁଥିଲା । ଉପେନ୍ଦ୍ର ଭଂଜଙ୍କ କାବ୍ୟରେ ମଧ୍ୟ ବହୁସ୍ଥାନରେ ମଂଗଳ ଗୀତ ଗାନର ଉଲ୍ଲେଖ ଦେଖାଯାଏ ।

ଏଥିରୁ ସହଜରେ ଅନୁମିତ ହୋଇପାରେ ଯେ ସପ୍ତଦଶ ଶତାବ୍ଦୀ ବେଳକୁ ଓଡିଶାରେ ବହୁ ମଂଗଳ ଗୀତ ପ୍ରଣୀତ ହୋଇଥିଲା । ଏହଗୀତ ମୁଖ୍ୟତଃ ରାଜା, ସମ୍ଭ୍ରାନ୍ତ ଓ କ୍ଷତ୍ରୀୟ ପରିବାରମାନଙ୍କରେ ହିଁ ପ୍ରଚଳିତ ଥିଲା; ମାତ୍ର ଉପଯୁକ୍ତ ସଂରକ୍ଷଣ ଅଭାବରୁ ଏ ଗୁଡିକରୁ ଅନେକ ରଚନା କାଳକ୍ରମେ ଲୋପ ପାଇଯାଇଅଛି । ଏହାଛଡା ରାଜନୈତିକ ଅସ୍ଥିରତା, ପରାଧିନତା, ଅଭାବ, ପ୍ରାକୃତିକ ଦୁର୍ଯୋଗ ଦୁର୍ବିପାକ ଯୋଗୁଁ ଲୋକ ଚଳଣୀରୁ ମଧ୍ୟ ଏହି ଗୀତର ବ୍ୟବହାର କ୍ରମେ ଲୋପ ପାଇଯାଇଅଛି । ସମ୍ଭବତଃ ଏହି ମଂଗଳ ଗୀତ ସମବେତ-ଗୀତ ଥିଲା । ପରିବାରରେ କନ୍ୟା ଓ ବଧୂ ମାନଙ୍କୁ ପୂର୍ବେ ଛାନ୍ଦଗୀତ ପ୍ରଭୃତି ଶିଖିବାକୁ ହେଉଥିଲା । କ୍ରମେ ପରିବାରରେ ନାରୀ ମାନଙ୍କ ମଧ୍ୟରେ ଗୀତଚର୍ଚ୍ଚା ଉଠି ଯିବାରୁ ମଂଗଳ-ଗୀତ ଗଣିକା ବା ଗାଆଣୀମାନଙ୍କଦ୍ୱାରା ଶୁଭାନୁଷ୍ଠାନ ମାନଙ୍କରେ ଗୀତ ହେବାକୁ ଲାଗିଲା, ଏବେ ବିବାହ ଉତ୍ସବରେ ସଂସ୍କୃତ ମଂଗଳାଷ୍ଟକ ବ୍ୟତୀତ ଓଡିଆ ମଂଗଳ-ଗୀତ ଗାଇବା ଏକ ପ୍ରକାର ଉଠିଯାଇଅଛି ।

ପ୍ରାୟ ଶହେ ବର୍ଷ ପୂର୍ବେ ଏହି ସବୁ ଲୁପ୍ତପ୍ରାୟ ମଂଗଳଗୀତ ମାନଙ୍କରୁ କିୟଦଂଶ ନରସିଂହପୁରର ସ୍ୱର୍ଗତ ରାଜା ସାଧୁଚରଣ ମାନସିଂହ ହରିଚନ୍ଦନ ମହାପାତ୍ର ଉଦ୍ଧାର କରି ଓଡିଶାର ମହୋପକାର ସାଧନ କରିଯାଇ ଅଛନ୍ତି । ଓଡିଶାର ପୂର୍ବ ଗଡଜାତ ରାଜ ପରିବାରରେ ବିବାହ ଉତ୍ସବାଦି ଉପଲକ୍ଷେ ଗୀତ ହେଉଥିବା ମଂଗଳଗୀତଗୁଡିକୁ ସେ ତାଳ ପତ୍ରପୋଥିରୁ ସଂଗ୍ରହ କରି ଦୁଇଟି ଖଣ୍ଡରେ 'ମଂଗଳ ସଗୀତ' ୧ମ ଖଣ୍ଡ (ଉତ୍କଳ ସାହିତ୍ୟ ପ୍ରେସ କଟକ, ୧୯୦୩) ଓ 'ମଙ୍ଗଳ ସଙ୍ଗୀତ' ୨ୟ ଖଣ୍ଡ (ଶୂର ପ୍ରତାପ ପ୍ରେସ୍, ଢେଙ୍କାନାଳ, ୧୯୦୪) ନାମରେ ପ୍ରକାଶ କରିଥିଲେ । ଏହି ସଂକଳନର ପ୍ରଥମ ଖଣ୍ଡର ମୁଖବଂଧରୁ ମଂଗଳ ଗୀତର କବିମାନଙ୍କ ସଂବନ୍ଧରେ ଜାଣି ହୁଏ, - " ଏ ପୁସ୍ତକ ଖଣ୍ଡିକ ହାତ - ଲେଖା ତାଳପତ୍ର ପୋଥିରୁ ସଂଗ୍ରହକରି ପ୍ରକାଶ କରାଗଲା । ଏଗୁଡିକ ଗଡଜାତ ରାଜପରିବାର ମାନଙ୍କ ଉତ୍ସବାଦି ଶୁଭକର୍ମ ସମୟରେ ଗାନ ହେଉଥିବା ମଙ୍ଗଳଗୀତ ଅଟେ । ଏହା ଆମ୍ଭର ପୂର୍ବପୁରୁଷ ଜଗନ୍ନାଥ ହରିଚନ୍ଦନ ଓ ବିଶ୍ୱମ୍ଭର ହରିଚନ୍ଦନ ଓ ରାଜପରିବାରର ସ୍ତ୍ରୀ ଲୋକମାନଙ୍କଦ୍ୱାରା ରଚିତ, ଏଥିରେ ଗଂଜାମ ଜିଲ୍ଲା ଅନ୍ତର୍ଗତ ବିରୁଳୀ ରାଜା ବିନାୟକଶୂର ଦେଓ ମହୋଦୟଙ୍କ ଦ୍ୱାରା ରଚିତ କେତେକ ମଂଗଳଗୀତ ସନ୍ନିବେଶିତ ହୋଇଅଛି । "

ଏହି ସଂକଳିତ ଗ୍ରନ୍ଥ ଦୁଇଟିର ନାମକରଣ ଯଥାର୍ଥ, ସଂକଳିତ ଗୀତ ଗୁଡିକ ଯେ 'ମଙ୍ଗଳ ଗୀତ' ଓ ବିବାହ ଉତ୍ସବରେ ଏ ଗୁଡିକ ଗୀତ ହେବା ଉଚିତ ହୋଇଥିଲା, ତାହା ଉକ୍ତ ପୁସ୍ତକରେ ସନ୍ନିବିଷ୍ଟ କେତେକ ଗୀତର ଭଣିତାରୁ ମଧ୍ୟ ଜଣାଯାଏ । ସଂକଳିତ ଗ୍ରନ୍ଥଦୁଇଟିରେ ବିଶ୍ୱମ୍ଭର, ଜଗନ୍ନାଥଙ୍କ ବ୍ୟତୀତ ମୋଟ ୩୯ ଜଣ କବିଙ୍କ ରଚିତ ୮୯ଟି ମଙ୍ଗଳଗୀତ ସନ୍ନିବିଷ୍ଟ । ଏହି କବି ମାନଙ୍କ ମଧ୍ୟରୁ ୮ ଜଣ ନାରୀ କବି; ସେମାନେ ହେଉଛନ୍ତି ମନୋରମା ଦେଈ, ରାଜମଣି ଜେମା, ନୟନମାଳୀ ଜେମା, ନୀଳମଣି ଜେମାଦେଈ, ନୃପତି ଦୁଲାଳୀ, ମରକତ ମଣି ଜେମା, ମର୍ଦ୍ଦରାଜ ଦେଈ ଓ ଶିବ ପ୍ରିୟା । ଏମାନଙ୍କ ମଧ୍ୟରୁ ମନୋରମା ଦେଈଙ୍କ ବ୍ୟତୀତ ଅନ୍ୟମାନେ ସମ୍ଭବତଃ ରାଜପରିବାରର କନ୍ୟା ଅଥବା ବଧୂ । ଏହି ସଂକଳନରେ ବିଶ୍ୱମ୍ଭର

ହରିଚନ୍ଦନ, ବିରୂଳି ରାଜା ବାଲୁକେଶ୍ୱର ମାର୍ଥା ଓ ବିନାୟକ ଶୂରଦେଓ, ବିରୁଳି ରାଜଭ୍ରାତା ପଦ୍ମନାଭ ଦେଓଙ୍କ ରଚିତ ଗୀତର ସଂଖ୍ୟା ସବୁଠାରୁ ଅଧିକ, ଶ୍ରୀଚନ୍ଦନ ଭଣିତା ଥିବା କେତେକ ଗୀତ ମଧ ଏଥିରେ ସନ୍ନିବିଷ୍ଟ । ଏତଦ୍‌ବ୍ୟତୀତ ଏହି ପୁସ୍ତକ ଦୁଇଟିରେ ତୁଙ୍ଗରାଜ ସିଂହ, ଜଗନ୍ନାଥ ତୁଙ୍ଗ, ଗୋପୀନାଥ ତୁଙ୍ଗ, କୃଷ୍ଣଚନ୍ଦ୍ର ତୁଙ୍ଗ, କୃପାସିନ୍ଧୁ ନରେନ୍ଦ୍ର, ବିଶ୍ୱମ୍ବର ରାଜେନ୍ଦ୍ର, ଉପେନ୍ଦ୍ର ଭଂଜ, ଦିବ୍ୟସିଂହ ଗଜପତି, କ୍ଷତ୍ରିବର ନରପତି, ପୀତାମ୍ବର ଭଂଜ, କୁଜଂଗ କ୍ଷଣ୍ଣ ନୃପ, ରାମଚନ୍ଦ୍ର ନରପତି, ଧନଂଜୟ ନୃପ, ମୁକୁନ୍ଦ ଦେବ, ଡମପଡା ନୃପବର ପ୍ରଭୃତି ରାଜା ଓ ରାଜବଂଶୀୟଙ୍କ ଦ୍ୱାରା ରଚିତ କେତେକ ମଂଗଳ - ଗୀତ ଯେପରି ସନ୍ନିବିଷ୍ଟ ସେହିପରି ବଳରାମ ଦାସ, ବୈରାଗୀ ଦ୍ୱିଜ,ଅର୍ଜୁନ ଦାସ, ଚନ୍ଦ୍ରଶେଖର, ଦୀନକୃଷ୍ଣ, କୃଷ୍ଣ ଦାସ, ବିଶି, କିଶୋରଚନ୍ଦ୍ର, ଶ୍ୟାମଘନ ଦାସ, ପୀତାମ୍ବର ଦାସ. ତ୍ରିବିକ୍ରମଙ୍କ ଭଣିତା ଥିବା କେତେକ ଗୀତ ମଧ ଏଥିରେ ସନ୍ନିବିଷ୍ଟ ହୋଇଅଛି । ଏଥିରୁ ଏହାହିଁ ଅନୁମିତ ହୁଏ ଯେ ମଧ୍ୟଯୁଗରେ ରାଜାଙ୍କଠାରୁ ଆରମ୍ଭ କରି ସମାଜର ସବୁ ଶ୍ରେଣୀର ବ୍ୟକ୍ତି - ବିଶେଷଙ୍କ ଦ୍ୱାରା ମଂଗଳ ଗୀତ ରଚିତ ଓ ଆଦୃତ ହେଉଥିଲା ।

ଏହି ଗୀତ ମାନଙ୍କ ମଧରୁ ଅଧିକାଂଶ ମଂଗଳ, କଳମା ମଂଗଳ ଗୁଜ୍ଜରୀ ବୃତ୍ତରେ ଲିଖିତ, ଅଳ୍ପ କେତେ ଗୋଟି ମାତ୍ର ଗୀତ ମୁଖାରୀ (୧୦ ଅକ୍ଷର ବିଶିଷ୍ଟ ସମ-ଛନ୍ଦ), କେଦାର ଚକ୍ରକେଳି (୧୧ ଅକ୍ଷର ବିଶିଷ୍ଟ ସମଛନ୍ଦ), ରାମ କେରି (୧୬ ଅକ୍ଷର ବିଶିଷ୍ଟ ସମଛନ୍ଦ) ଓ ଶଂକରାଭରଣ ବୃତ୍ତରେ ରଚିତ ହୋଇଥିବା ଦେଖିବାକୁ ମିଳେ । ଏଗୁଡିକ ଆକାରରେ ଯେପରି କ୍ଷୁଦ୍ର, ସେହିପରି ଅନ୍ୟ ପ୍ରସଂଗ ନିରପେକ୍ଷ ଓ ସ୍ୱୟଂସଂପୂର୍ଣ୍ଣ । ଏଣୁ ଏଗୁଡିକ ଯଥାର୍ଥତଃ ସଂଗୀତ ବା ଚଉପଦୀ ପର୍ଯ୍ୟାୟ ଭୁକ୍ତ ରଚନା । ପ୍ରାଚୀନ ମଂଗଳ-ସଂଗୀତ ରଚୟିତା ମାନେ ମଧ ଏଗୁଡିକୁ ଚଉପଦୀ ଭାବେ ଗ୍ରହଣ କରିଅଛନ୍ତି --

''ମଂଗଳ ବିଷୟ ଚଉପଦୀ ହେଲା ଶେଷ
ଗୀତରେ ଭଣିଲେ ବିଶ୍ୱମ୍ବର ନରଈଶ ।''

ଅଧିକାଂଶ ମଂଗଳଗୀତ ରାମ- ସୀତାଙ୍କ ବିବାହକୁ ଉପଜୀବ୍ୟ କରି ଲିଖିତ । ଅଳ୍ପ କେତୋଟି ଗୀତରେ କୃଷ୍ଣ - ରୁକ୍ମିଣୀଙ୍କ ବିବାହ ବିଷୟ ବର୍ଣ୍ଣିତ ହୋଇଅଛି । ବିବାହ ଆୟୋଜନ ଠାରୁ ତାହାର ପରବର୍ତ୍ତୀ ସାତମଂଗଳା ପର୍ଯ୍ୟନ୍ତ ବିବାହର ବିବିଧ ଅନୁଷ୍ଠାନ ଉପଲକ୍ଷେ ବିବିଧ ମଂଗଳ-ଗୀତ ରଚିତ ହେଉଥିଲା ଏବଂ ତାହା ସେହି ସେହି ଉପଲକ୍ଷରେ ଗୀତ ହେଉଥିବା ମଧ କେତେକ ଗୀତରୁ ଜଣାଯାଏ । ରାମ - ସୀତା ବା ବର-କନ୍ୟାଙ୍କ ବିବାହ ଉପଲକ୍ଷେ ଉଭୟଙ୍କ ମଧରୁ କାଛ ଧଉଳା, ଗନ୍ଧଷଣ, ହାଣ୍ଡି ମଂଗଳନ, ବ୍ରାହି-ମୁଗ ଚୂରା, ବେଦି ଅନୁକୂଳ, ବଡିପକା, କୋଇଲି ବୁଡ, ବିବାହ, ଜୁଆଖେଳ, ହୋମ, ପଞ୍ଚଗ୍ରାସ, କନ୍ୟାର ଲବଣ ଚାମରୀ, ନଣନ୍ଦ ପୁଚୁଲୀ, କନ୍ୟାବରଣ, କଉତୁକ ସୂତ୍ର ବନ୍ଧନ, ଚତୁର୍ଥୀ ପ୍ରଭୃତିର ବର୍ଣ୍ଣନା ଏହି ଗୀତ ମାନଙ୍କରେ ପରିଲକ୍ଷିତ ହୁଏ । ସାଧାରଣତଃ ହୁଳହୁଳି ଦେଉସାରି ନାରୀମାନେ ଏହି ଗୀତ ଗାନ କରୁଥିଲେ ।

ବିବାହ ଗୀତ ଛଡା କେତେକ ଭକ୍ତି ମୂଳକ ଗୀତ ମଧ ବିଭିନ୍ନ ଉତ୍ସବ ଉପଲକ୍ଷେ ଗୀତ ହେଉଥିଲା । କୃଷ୍ଣଦାସଙ୍କ 'ଜଗନ୍ନାଥ ମଂଗଳ', ରାମଚନ୍ଦ୍ରଙ୍କର 'ଶ୍ରବଣ ମଂଗଳ', ନୃପଧନଂଜୟଙ୍କ 'ଶ୍ରୀମୁଖମଂଗଳ' ଓ 'ଦୁର୍ଗାମାଧବ ମଂଗଳ' , ବାଲୁକେଶ୍ୱର ନୃପ ଓ ରାମଚନ୍ଦ୍ର ନରପତିଙ୍କ 'ଦଶାବତାର ମଂଗଳ' କୁ ଏହି ମଂଗଳ- ସଂଗୀତ ପର୍ଯ୍ୟାୟଭୁକ୍ତ କରାଯାଇଅଛି । ପୀତାମ୍ବରଙ୍କ 'ବଳଭଦ୍ର ବନ୍ଦନା' ଓ ଅନ୍ୟବହୁ କବିଙ୍କ ରଚିତ ଜଗନ୍ନାଥ ଓ କୃଷ୍ଣ ବନ୍ଦନା ମୂଳକ ଗୀତ ମାନଙ୍କୁ ମଧ ଏହି ପୁସ୍ତକରେ ମଙ୍ଗଳ- ଗୀତ ଶ୍ରେଣୀଭୁକ୍ତ କରାଯାଇଅଛି । ଅନୁକୂଳ ଯାତ୍ରା ଓ ଯୁଦ୍ଧ ପୂର୍ବରୁ ଦେବତାଙ୍କୁ ସ୍ମରଣକଲେ ତାହା ମଙ୍ଗଳପ୍ରଦ ଓ

ଅଭୀଷ୍ଟ ଫଳଦାୟକ ହେବ ବୋଲି ଲୋକମାନେ ବିଶ୍ୱାସ କରିଥାଆନ୍ତି । ଏହି ବିଶ୍ୱାସରୁ ' ଅନୁକୂଳ ମଂଗଳ', 'ଯାତ୍ରାମଂଗଳ', 'ଶସ୍ତ୍ରବିଦ୍ୟାମଂଗଳ' ପ୍ରଭୃତି ଗୀତ ଗୁଡିକ ପ୍ରଣୀତ ହୋଇଥିବା ଅନୁମେୟ ।

ଏତଦ୍‌ବ୍ୟତୀତ ବିବାହ ବେଳେ ବରକନ୍ୟାଙ୍କୁ ପରିହାସ କରିବା ଲାଗି ରଚିତ କେତେକ ଗୀତ ମଧ୍ୟ ମଂଗଳ ଗୀତଭାବେ ପରିଗଣିତ ହେଉଥିଲା , ଏହି ପରିହାସ ମୂଳକ ଗୀତରେ ବରକନ୍ୟାଙ୍କର ରୂପ ଗୁଣର ହାସ୍ୟ ଓ ବ୍ୟଙ୍ଗାତ୍ମକ ବର୍ଣ୍ଣନା ହୋଇଥାଏ । ଏହାକୁ ବରକନ୍ୟାଙ୍କର ପରିହାସକାରୀମାନେ ସାଧାରଣତଃ ବିବାହ ବେଳେ କହିଥାନ୍ତି । ଏହି ଧରଣର ଗୀତଗୁଡିକ ବହୁ ପରବର୍ତ୍ତୀକାଳୀନ ରଚନା । ଏଗୁଡିକରେ ବଂଶୀ ଦାସଙ୍କ 'କଳସା ଚଉତିଶା'ର ପ୍ରଭାବ ଅନୁଭୂତ ହୁଏ । କୃଷ୍ଣଚନ୍ଦ୍ର ନୃପ, ବାଲୁକେଶ୍ୱର ନୃପ, ବିଶ୍ୱମ୍ଭର ନୃପ ପ୍ରଭୃତିଙ୍କ ଦୁଇଟି 'ବୁଢ଼ା କଳସ' ଓ ଦୁଇଟି 'ବୁଢ଼ୀ କଳସ' ସହ କଳଶା ଚଉତିଶାର ସାମଞ୍ଜସ୍ୟ ଦ୍ରଷ୍ଟବ୍ୟ । ଏଥିରେ ବିବାହକୁ ଆସିଥିବା ଏବଂ ବେଦୀରେ ବସିଥିବା ବରକନ୍ୟାଙ୍କୁ ବୁଢ଼ା ବୁଢ଼ୀ ଭାବରେ ତଥା ହାସ୍ୟୋଦ୍ଦୀପକ ଭାବରେ ଚିତ୍ରଣ କରାଯାଇଅଛି ।

ଏହି ମଂଗଳ - ଗୀତମାନଙ୍କରୁ ମଧ୍ୟଯୁଗୀୟ ସାମାଜିକ ରୀତିନୀତିର ସୁନ୍ଦର ପରିଚୟ ମିଳିଥାଏ । ବହୁ ଅପ୍ରଚଳିତ ଓ ପ୍ରାଚୀନ ଶବ୍ଦର ବ୍ୟବହାର ମଧ୍ୟ ଏହି ଗୀତଗୁଡିକରେ ପରିଦୃଷ୍ଟ ହୁଏ । ଏହିପରି ବହୁ ଆୟାସ ସହକାରେ ଲିଖିତ , କବିତ୍ୱପୂର୍ଣ୍ଣ ସରସ ବର୍ଣ୍ଣନାଚାତୁରୀ - ବିଜଡିତ ଓ ସର୍ବୋପରି ପ୍ରତ୍ୟେକ ଗୀତରେ ଭଣିତାଯୁକ୍ତ ଏହି ମଂଗଳ ଗୀତ ଗୁଡିକୁ ଲୋକଗୀତଭାବରେ ଗ୍ରହଣ କରିବାର କୌଣସି କାରଣ ନାହିଁ । ମାତ୍ର ଓଡିଶାରେ ସୁପରିଚିତ ଲୋକଗୀତ - ସଂଗ୍ରାହକ ନରସିଂହପୁର ନିବାସୀ ଶ୍ରୀ ଚକ୍ରଧର ମହାପାତ୍ର ତାହାଙ୍କ 'ଉତ୍କଳ ଗାଉଁଲୀ ଗୀତ' ପୁସ୍ତକରେ ବହୁପୂର୍ବରୁ ପ୍ରକାଶିତ ଏହି ' ମଙ୍ଗଳ ସଂଗୀତ' ପୁସ୍ତକ ଦ୍ୱୟର ଗୀତ ଗୁଡିକୁ ହିଁ ଭଣିତା ଗୁଡିକୁ ବାଦଦେଇ ସନ୍ନିବେଶିତ କରିଅଛନ୍ତି । ଏଗୁଡିକୁ ସେ ରାଜ ଅନ୍ତଃପୁର ଗାୟେଣୀ ମାନଙ୍କ ଠାରୁ ସଂଗ୍ରହ କରିଅଛନ୍ତି ବୋଲି ଉଲ୍ଲେଖ କରିବା ବିସ୍ମୟ ଜନକ । ଭଣିତା ଯୁକ୍ତ ତଥା ସାହିତ୍ୟିକ ସୌନ୍ଦର୍ଯ୍ୟ ମଣ୍ଡିତ ଏହି ମଙ୍ଗଳ - ଗୀତ ଗୁଡିକ ଓଡିଆ ଗୀତି - କାବ୍ୟକୁ ସମୃଦ୍ଧ କରିଛନ୍ତି, ସନ୍ଦେହ ନାହିଁ ।

*(ଓଡିଆ ଗୀତିକାବ୍ୟ'ର ତୃତୀୟ ପରିଚ୍ଛେଦରୁ ସଂଗୃହୀତ )*

# ଲୋକ କଥା ଉପାଖ୍ୟାନ

ବିୟତ୍‌କେଶ ତ୍ରିପାଠୀ

ଆଫ୍ରିକାର ସିଂହକୁ ବା ଭାରତର ବାଘକୁ ଜଂଗଲରେ ପଶି ବନ୍ଧୁକ ବା କ୍ୟାମେରା ନେଇ ଶିକାର କରିବା ଗୋଟାଏ ପ୍ରକାର କଥା । ଲୋକମାନଙ୍କ ପାଖକୁ ଯାଇ ତାଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବା ଆଉ ଗୋଟାଏ କଥା : ଗାଁରେ କେତେ ଘର ଅଛନ୍ତି, ଘରତିଆରି ପଦ୍ଧତି କ'ଣ, ଲୋକ ମରିଗଲେ କ'ଣ କରାଯାଏ ଇତ୍ୟାଦି । ଗୋଟାଏ ଯାଗାକୁ ଯାଇ ପଚରା ଉଚୁରା କରି ବିଶେଷ କ୍ଳେଶ ନ ସହି ବା ମାନସିକ ପରିଶ୍ରମ ନ ଦେଇ ତଥ୍ୟ ପାଇଯାଇ ହେବ । ଆଉ ଟିକିଏ ଜଟିଳ କାମ ହେଲା ଦୂରଦୂରାନ୍ତ ଗାଁ ଗଣ୍ଡାକୁ ଯାଇ ଲୋକଙ୍କ ରୀତିନୀତି ବିଷୟରେ ଜାଣିବା : ଜନ୍ମ ପରେ କ'ଣ ହୁଏ, ଇନିସିଏସନ ବା ଶୈଶବୋତ୍ତର ଜୀବନ ସଂଘର୍ଷ ପର୍ଯ୍ୟାୟର ପ୍ରବେଶିକା ରୀତି କ'ଣ, ସ୍ତ୍ରୀ ପୁରୁଷ ସାନ୍ନିଧ ଓ ବିବାହ ପ୍ରଥା କ'ଣ, ମଲେ କ'ଣ କରାଯାଏ, ଦେବଦେବୀ ସବୁ କ'ଣ କ'ଣ, ପର୍ବ ପର୍ବାଣୀରେ କ'ଣ ହୁଏ ଇତ୍ୟାଦି । ସେ ଲୋକଙ୍କ ସାଙ୍ଗରେ ବସି କଥାବର୍ତ୍ତା କରି ଧୀରେ ଧୀରେ ଠିକ୍ ମନେ ନଥିବା କଥା ବି ବାହାର କରି ଆଣି ହେବ । ଯଦି ଚାହାନ୍ତି, ଏ ଲୋକ ମାନଙ୍କ ଗହଣରେ ଦୀର୍ଘଦିନ ରହି ତାଂକ ଚାଲି ଚଳନ, ଭାବଧାରା, ରୀତି ପ୍ରଥା ଇତ୍ୟାଦି ପ୍ରତ୍ୟକ୍ଷ ଭାବେ ଜାଣି ହେବ । ଯେମିତି ପ୍ରସିଦ୍ଧ ନୃତତ୍ତ୍ୱବିତ୍ ଲିଭାଇ ଷ୍ଟ୍ରାଉସ୍, ଭେରିଅର୍ ଏଲ୍‌ୱିନ୍ ଇତ୍ୟାଦି କରୁଥିଲେ । କିନ୍ତୁ ଗୋଟାଏ ଗାଁରେ ପଶି ବା କାହାରି ଘରେ ପହଞ୍ଚି ଗପ କହିବାକୁ ଅନୁରୋଧ କରିବାଟା ଏକେବାରେ ଅଲଗା ପ୍ରକାର କଥା । ଭାବନ୍ତୁ, ଜଣେ ବିଦେଶୀ ଭଳିଆ ଦିଶୁଥିବା ଭଦ୍ରବ୍ୟକ୍ତି ବା ଭଦ୍ରମହିଳା ବା ଏହିଭଳି ଦଳେ ଲୋକ ଯଦି ଆପଣଙ୍କ ସାହିକୁ ଆସି ଆପଣଙ୍କ ଦୁଆର ବାଡାନ୍ତି ଓ ଦୁଆର ଖୋଲିଲା ବେଳକୁ ଭିତରକୁ ଆସି କହନ୍ତି, '' ଆମକୁ ଆପଣଙ୍କ ସଂସ୍କୃତିର ପୁରୁଣା ଲୋକକଥା କିଛି କୁହନ୍ତୁ । '' ଅତି ବିରକ୍ତିର । ଆପଣ ହୁଏତ ତାଙ୍କୁ ଧକ୍କା ଦେଇ ବାହାର କରିଦେବେ, ନହେଲେ ଅନାବିଳ ଭାବରେ ତାଙ୍କୁ ବିଦାୟଦେଇ ଦୁଆର ବନ୍ଦ କରିଦେବେ । ଅବଶ୍ୟ ଆପଣ ଯଦି କୋଲରିଜ୍‌ଙ୍କ ବୃଦ୍ଧ ନାବିକ ପରି ଗଳ୍ପବିଦ୍ଧ ହୋଇଥାନ୍ତି, ତା' ହେଲେ ଭିନ୍ନ କଥା ।

ଯଦିବା ଆପଣ ନିଜ ପ୍ରାଥମିକ ବିରକ୍ତିକୁ ଭଲ ମିଜାଜ୍ ରେ ଥିବା ହେତୁ ଚାପି ଦିଅନ୍ତି ଓ ଗବେଷକଙ୍କୁ ଘରେ ବସାନ୍ତି, ତାଙ୍କ ପ୍ରଶ୍ନ ପ୍ରତି ଆପଣଙ୍କ ପ୍ରତିକ୍ରିୟା କ'ଣ ହେବ ।

'ଆଛା, ଏଥର ଆପଣଙ୍କ ସୃଷ୍ଟି ଗଳ୍ପ ବା କିଂବଦନ୍ତୀ କହିବେକି ?'' ଭଲ ମିଜାଜ୍‌ରେ ଯେତେବେଳେ ଅଛନ୍ତି ତାଙ୍କୁ ଘଉଡେଇ ଦେବେନି ହଠାତ୍ । ନିଜକୁ ପଚାରିବେ ସୃଷ୍ଟି ଗପ କ'ଣ ?

''ଆଡାମ୍ - ଇଭ ପରି ?''

''ନାଇଁ, ନାଇଁ ଆପଣଙ୍କର । ନିଜ ସଂସ୍କୃତିର । ପ୍ରାଚୀନ ଆପଣଙ୍କ ନିଜସ୍ୱ ସୃଷ୍ଟି ଗଳ୍ପ ।

''ମୋ ନିଜସ୍ୱ ସୃଷ୍ଟି ଗପ, ଆଛା, ଆଛା । ''

ଆପଣ ମୁଣ୍ଡରେ ବୁଲାଇ ଭାବିବେ , କିନ୍ତୁ କିଛି ମନେ ପଡିବନି ହଠାତ୍ ।

''ସଂସ୍କୃତି ନାୟକ ଗପ ହେଲେ ବି ଚଳିବ । କଲଚର୍ ହିରୋଗପ ।''

କଲଚର୍ ହିରୋ , ଆଛା, ଆଛା । ''

କିନ୍ତୁ ଏ ସଂସ୍କୃତି ନାୟକ ଗପ କ'ଣ ?

କଥାଟା ହେଲା, ହଠାତ୍, କାହାରି ଚାହିଦା ଅନୁସାରେ ଗପଟିଏ ବାହାର କରି ଆଣିବା ମଣିଷ ପକ୍ଷରେ କାଠିକର ପାଠ । ପାଭଲଭ୍ ଙ୍କ କୁକୁର ମାନେ ବା ସାଇକ୍ସ୍ପିକ୍ସକ୍ ସିନେମାରେ ଗବେଷଣାଗାରର ନାଲି ଆଲୁଅରେ ବାଁ ପଟକୁ ବା ନେଳି ଆଲୁଆରେ ଡାହାଣ ପଟକୁ ଯାଉଥିବା ମୂଷାମାନେ ହୁକୁମ କହିବା ମାତ୍ରେ ଆଦେଶ ପାଳନ କରିଦେବେ ।

ଗପଟା ଖୋଳି ତାଡି ବାହାର କରିବା କଷ୍ଟ । ଦବାଲୋକ ଜାଣିଥିବା ଦରକାର । ଜାଣିଥିଲେ ମନେଥିବା ଦରକାର । ମନେଥିଲେ ବି ଗପ କହିବାର କଳା ନଥିଲେ ବି ଅନ୍ତତଃ ସାମର୍ଥ୍ୟ ଥିବା ଦରକାର, ଆଉ ଏ ସବୁ ସାଙ୍ଗକୁ ଦୈନନ୍ଦିନ ଜଞ୍ଜାଳ ଭିତରେ ତାର ମନ ଓ ସମୟ ଉନ୍ମୁକ୍ତ ଥିବା ଦରକାର ।

ମୋର ଲୋକକଥା (ଓଡିଶାର ଆଦିବାସୀ ଲୋକକଥା) ସଂଗ୍ରହର ପ୍ରଥମ ଅଭିଜ୍ଞତା ଏମିତି । ଆମେ ( ୧ ) ରାୟଗଡାର ବିଷମ କଟକ ଅଞ୍ଚଳର କୁର୍ଲି ଗାଁଟାକୁ କେତେଗୁଡିଏ କାରଣରୁ ଲୋକକଥା ଆହରଣ ପାଇଁ ବାଛିଥାଉ । କନ୍ଧ ଗାଁ , ଡଙ୍ଗରିଆ କନ୍ଧ (ଡଙ୍ଗର ହେଲା ପାହାଡ) । ପାହାଡ ରାସ୍ତାଟକ ବେସ୍ ଖରାପ । ଆମ୍ବାସାଡର ଗାଡି କାନ୍ଦି କୁନ୍ଥେଇ ଉଠୁଥାଏ । ଆମେ ତାକୁ ଛାଡି ଚାଲୁ ଥାଉ ନାଳ ଝରଣା ଖାଲ ଢ଼ିପ ଦେଇ । ପାହାଡ କଡ ଯାକ ନିଘଞ୍ଚ ଓ ସମୃଦ୍ଧ ଦିଶୁଥିଲା । କଦଳୀ, ସପୁରୀ ଓ ଅନ୍ୟାନ୍ୟ ଫଳମୂଳ ଗଛରେ ଭରପୂର । ରାସ୍ତା କଡରେ କିଛି ସ୍ତ୍ରୀଲୋକ ଓ ପିଲା ଜାଳେଣି ସଂଗ୍ରହ କରୁଥିଲେ । ଆମକୁ ଦେଖି ତାଙ୍କ ଆଖିରେ ଶଙ୍କା ନଥିଲା ।

ପରିଶେଷରେ ଗାଁରେ ପହଞ୍ଚିଲୁ । ଗାଁଟା ପାହାଡର ପଶ୍ଚିମ ପାଖ ଗଡାଣିରେ, ଗୋଟିଏ ଝରଣା କୂଳରେ ତିନି ସାହିରେ ଗଠିତ । ଦୁଇଟି ମୁହାମୁହିଁ ସାହି କନ୍ଧଙ୍କର । ମଝିରେ ବଡଦାଣ୍ଡ, ଶାସନ ଗାଁ ପରି । ଏ ଦୁଇ ସାହି ଉପରକୁ ଲାଗି ଆଉ ଗୋଟିଏ ସାହି, ପାଣଙ୍କର ଯେଉଁମାନେ ଅନେକ ସମୟରେ ଆଦିବାସୀଙ୍କ ପାଖରେ ରହିଥାନ୍ତି ଓ ତାଙ୍କ ଉତ୍ପାଦିତ ପଦାର୍ଥ ନେଇ ବାହାରେ ବିକନ୍ତି । କୁର୍ଲିରେ ଜଣେ ପାଣ ମୁଖିଆ ଥାନ୍ତି । ଆମକୁ ତାଙ୍କ ଘରକୁ ନିଆ ଯାଇଥିଲା । ମୁଖିଆ ମାସ ବ୍ୟାପି ଦିପାବଳୀ ମଉଚ୍ଛବ ହେତୁ ରାତି ଅନିଦ୍ରା ହୋଇ ଶୋଇଥିଲେ ଦଉଡିଆ ଖଟଟିରେ ତାଙ୍କ ବାରଣ୍ଡାରେ । ସେ ଉଠିଲେ କିନ୍ତୁ ଆମ ସାଂଗେ କଥାବାର୍ତ୍ତା କରିବାକୁ ବିଶେଷ ଆଗ୍ରହୀ ନଥିଲେ । ଆମେ କିଛି କନ୍ଧ ଲେକଙ୍କୁ ଡାକିଲୁ । ଜଣେ ଆସିଲେ କିନ୍ତୁ ଗପ ବା ଲୋକକଥା ବୋଇଲେ ଆମେ କ'ଣ ଚାହୁଁଛୁ ଠିକ୍ ବୁଝିପାରିଲେନି । ତେଣୁ ଆମେ ବିଭିନ୍ନ ପ୍ରଥା କଥା ଆରମ୍ଭ କଲୁ । ବାହାଘର କଥା କହୁ କହୁ ସେ ଭଦ୍ରଲୋକ କହିଲେ ପୁଅ ଝିଅର ହାତ ଧରିଲେ ଓ କଥାବାର୍ତ୍ତା କରିଲେ ତାଙ୍କ ବିବାହ ଉଦ୍ଦେଶ୍ୟ ପ୍ରକାଶିତ ହୁଏ । ଝିଅ ଯଦି ଟାଣି ହୋଇ ଚାଲି ନ ଆସି କଥାବାର୍ତ୍ତା

କରେ ତାର ସମ୍ମତି ପ୍ରକାଶିତ ହୁଏ । ତାପରେ କନ୍ୟା ପାଉଣା କଥା ମୁରବି ମାନେ ଛିଣ୍ଡାନ୍ତି । ସେତିକିରେ କିନ୍ତୁ କଥା ସରେନି । ପୁଅ ଦିନେ ଝିଅ ଘରକୁ ଆସେ ଓ ଗୋଟିଏ କୋଠରିରେ ତା ସହ ରାତିଏ ରହେ । ତା' ପରେ ଯାଇ ଦିହେଁ ଯଦି ରାଜି ହୁଅନ୍ତି ତାହାହେଲେ ବାହାଘର ହୁଏ । ଏତିକି ବେଳେ ଶ୍ରୋତାଙ୍କ ଭିତରୁ କିଏ ଜଣେ କୁଇ ଭାଷାରେ କ'ଣ କହିଲା । ତାପରେ ଆମ ବକ୍ତା ଚୁପ୍ ହୋଇ ଗଲେ । ଆମ ଭାଷାନ୍ତରକାରୀ କହିଲେ ଯେ ଏକାଘରେ ରହିବା କଥା ଆମକୁ କହିବା କଥାନୁହେଁ କାରଣ ଆମେ (ମୂର୍ଖ) ଯାର ମର୍ମ ବୁଝି ପାରିବୁନି ।

ମୁଖିଆ ଏପଟ ସେପଟ ହେଉଥାନ୍ତି , କୁଆଡେ ଯାଉଥାନ୍ତି ଆସୁଥାନ୍ତି । ପରେ ଶୁଣିଲୁ ସଲପ ଗଛଆଡେ ଯାଉଥାନ୍ତି । କିନ୍ତୁ ସଲପ ସତ୍ତ୍ୱେ ଗୋଟିଏ ବି ଗପ ବାହାରିଲାନି କାରଣ ହୁଏତ ତାଂକର ଗପ କହିବାର ଇଚ୍ଛା ଜାଗ୍ରତ ହଉନଥିଲା ।  ହୁଏତ ବହୁତ ଜଞ୍ଜାଳ ଥିଲା ତାଙ୍କ ମନ ଭିତରେ ।

ମୋର ଶଙ୍କା ହେଲା ଯେ ଏମାନଙ୍କର ହୁଏତ ଗପର ଭଣ୍ଡାର ନାହିଁ । କିଂବଦନ୍ତୀର ପରିପୂର୍ଣ୍ଣତା ହୁଏତ ଆଉକିଛି ସାଂସ୍କୃତିକ ପ୍ରସ୍ଫୁଟନ ପରେ ପ୍ରାପ୍ତ ହୁଏ । ଯାଙ୍କର ବିକଶିତ ରାଜନୈତିକ ପ୍ରଥା ନାହିଁ । ତେଣୁ ରଜା, ରାଣୀ, ରାଜନୈତିକ ମାରପେଞ୍ଚ, ଯୁଦ୍ଧ ଇତ୍ୟାଦି ବିଷୟର ଗପ ନଥିବ । ଜଟିଳ ସାମାଜିକ ଆଦାନ ପ୍ରଦାନ ବି ନାହିଁ । ତେଣୁ ପ୍ରେମ, ବିରହ, ଯନ୍ତ୍ରଣା, ପ୍ରାପ୍ତି ଉଲ୍ଲାସ ଇତ୍ୟାଦିର ଗପ ବି ନଥିବ । ଈଶ୍ୱର ବା ଦେବତା ଏମାନଙ୍କର ନାହାତି । ଦେବଦେବୀ ମାନଙ୍କ ଗପ କୁଆଡୁ ଆସିବ ? ମତେ ଲାଗିଲା ମୋର ପୂରା ପରିକଳ୍ପନା ଟା ଭୁଲ୍ । ମୋର ଏ ଖୋଜ୍‌ରେ ନିଷ୍ଫଳ ହୋଇ ଲୋକହସା ହେବି । ମୁଁ ମୋ ପୂର୍ବର ଗବେଷକଙ୍କୁ ଗପ ସଂଗ୍ରହ ନ କରିଥିବା ହେତୁ ଦୋଷ ଦେବାରୁ କ୍ଷାନ୍ତ ହେଲି , କାରଣ ଗପତ ନାହିଁ ସେମାନେ ଆଣିବେ କୁଆଡୁ ।

ତେଣୁ ଭାରାକ୍ରାନ୍ତ ମନରେ କୁଳି ଛାଡିଲୁ । ମୁଁ ତ ଗପ ଚୋରାଳି, ଅନ୍ୟ ପ୍ରଥା ଇଥା ବିଷୟ ସଂଗ୍ରହ କରି କାମ ଚଳେଇ ନବା ମୋ ଉଦ୍ଦେଶ୍ୟ ନଥିଲା ।

କିନ୍ତୁ କେତେ ଗୁଡାଏ କଥା ଠିକ୍ ଜଚୁ ନଥିଲା । ଏତେବଡ ଗାଁ, ଲୋକବାକ କୁଆଡେ ଥିଲେ ? ସଂଗ୍ରହ କରିଥିବା ତାଙ୍କ ଦୈନନ୍ଦିନ ଜୀବନର ଅନୁକ୍ରମ ମନେ ପକେଇଲି । ଉଠନ୍ତି ୪/୪.୩୦ ବେଳେ । ଗାଁ ଦାଣ୍ଡରେ ୫ଟା ବେଳକୁ ଏକାଠି ହେଇ ଗାଁର କୋଠ କାମ କଥା ନିଷ୍ପତି କରି ବାହାରି ଯାନ୍ତି । ୮ଟା ବେଳକୁ ଫେରି ଖିଆଦେଇ ଯେ ଯାହା ଡଙ୍ଗରକୁ ଚାଲିଯାନ୍ତି ନିଜ ଚାଷ ବାଷ କରିବାକୁ । ଅନ୍ଧାର ହେଲା ବେଳକୁ ଫେରନ୍ତି, ଧୁଆ ଧୁଇ ହୋଇ , ହବ ଯଦି ସଲପ ଟିକିଏ ପାଇ ନାଚ ଗୀତ ଥିଲେ ସେଥିରେ ମାତନ୍ତି । ତା ପରେ ଖାଇ ପିଇ ଶୋଇ ପଡନ୍ତି । ଆମେତ ୧୦ଟା ବେଳେ ପହଞ୍ଚିଲୁ , ପାଇବୁ କାହାକୁ ? କେତେବେଳେ ତାହେଲେ ତାଙ୍କୁ ଧରି ହବ ? ସକାଳ ୫ଟା ବେଳେ ବା ସନ୍ଧ୍ୟାରେ । ସମୟଟା ବଡ କଥା । ଆଉବି ବୁଝୁଥିଲି ଯେ ଜଣେ କୁହାଳିକୁ ଏକୁଟିଆ ଧରି ବସିଲେ ସେ ଅଳ୍ପ ସମୟରେ ଜିଭ ବାନ୍ଧି ହେଲା ପରି ଚୁପ୍ ହୋଇ ଯାଇପାରନ୍ତି । ଦଳେ ଲୋକଙ୍କୁ ଧରିଲେ ସୁଅଟା ଚାଲିବ । ତୃତୀୟତଃ, ନିର୍ଦ୍ଦିଷ୍ଟ ପ୍ରକାର ଗପ ପାଇଁ ବରାଦ କରିବାଟା ଭୁଲ ସୃଷ୍ଟିଗପ ଇତ୍ୟାଦି । ବୋଧହୁଏ କୁଳିର ମୁଖିଆ ଠିକ୍ କହିଥିଲେ : '' ଇମିତି ହବନି । କିଛି ଦିନ ରହନ୍ତୁ , ମାସେ ଦିମାସ, ବେଶି ହେଲେ ଭଲ । ମୁଁ ପାଖ ପାହାଡର ଗାଁରୁ ଲୋକ ଡାକିବି ସନ୍ଧ୍ୟାବେଳେ । କଥାବାର୍ତ୍ତା ହବା, ହଉ ହଉ ବାହାରିବ । କିଏ ଜାଣେ କିସତି । ସବୁ ବେଳେ କ'ଣ ସବୁ କଥା ମନେ ପଡିବ ?'' ଭେରିଅର୍ ଏଲ୍ୱିନ୍ ବଣ୍ଡାଙ୍କ ଗହଣରେ ବର୍ଷେକାଳ ରହିଥିଲେ ତାଙ୍କ ବହିଲେଖିବାକୁ ବଣ୍ଡାଙ୍କ ବିଷୟରେ । ଅନ୍ୟାଙ୍କ ଗହଣରେ ଆହୁରି ଅଧିକ । ଡାଲ୍‌ଟନ୍, ଆର୍ଚର୍ ଇତ୍ୟାଦି ସୀମିତି ।

ମୋର କିନ୍ତୁ ବାଷଠି ଆଦିଜାତି । ବାଷଠି ବର୍ଷତ ନାହିଁ ଆଉ ମୋ ଖାତାରେ । ତା ଛଡା ପ୍ରତି ଜାତିର ଚାରି ପାଞ୍ଚଟା ଗାଁ ତ ସାଉଁଟି ବାକୁ ପଡିବ ନମୁନା ଭାବରେ । ତାହେଲେ ମତେ ମେଥୁସେଲା ହେବାକୁ ପଡିବ ୯୦୦ ବର୍ଷ ବଞ୍ଚି । ଏ କାମ ପାଇଁ କିନ୍ତୁ ମୋର ଥିଲା ଜମା ତିନି ବର୍ଷ । କିଛି ଦିନ ଯାଉଥିଲା ସଜବାଜ ହବାକୁ । କିଛି ସମୟ ବି ଯିବ ଲେଖା ପଢ଼ା କରିବାରେ । ଅବଶ୍ୟ ମୋ କାମ ଥିଲା ଖାଲି ଗପ ସଂଗ୍ରହ କରିବା, ଜାତିର ପୂର୍ଣାଙ୍ଗ ଅଧ୍ୟୟନ ନୁହେଁ । କିଛି ତ ଗୋଟେ ଉପାୟ ବାହାରିବ , ମୁଁ କୁର୍କିରୁ ଫେରିଲା ବାଟରେ ମୁଣ୍ଡ ବାଡେଇ ଭାବିଲି ।

ଦୁଇମାସ ପରେ , ମୋର ତୃତୀୟ ଯାତ୍ରାବେଳେ, ଠିକ୍ ଉପାୟ ଏ ପର୍ଯ୍ୟନ୍ତ ନପାଇ ଯାଉଥିବା ବେଳେ କିନ୍ତୁ ଏମାନଙ୍କ ଭିତରେ ଗପ ଅଛି ବୋଲି ବିଶ୍ୱାସ ଜନ୍ମିଥିଲା ବେଳେ ଆମେ ମାଲ୍‌କାନଗିରୀର ଗୋଟିଏ ବଣ୍ଡା ଗାଁରେ ପହଞ୍ଚିଲୁ । ଅତି ଏକଶିଙ୍ଘିଆ ପାହାଡିଆ ବଣ୍ଡା । ରହିଲୁ ବ୍ଲକର ବଙ୍ଗଳାର ଗୋଟିଏ ଛୋଟ ବଖରାରେ । ଲୋକଟିଏ ପାଣି ଦି ବାଲ୍ଟି ଦେଇଯାଏ ଗାଧୁଆ ପାଧୁଆ ପାଇଁ । ଗାଁରେ ଗୋଟିଏ ଏକ ବଖରିଆ ଚାଳିଆ ରେସ୍ତୋରାଁ ଯାହାର ପଛଭାଗରେ ମାଲିକ ତା ସ୍ତ୍ରୀ ପିଲାଙ୍କୁ ଧରି ରହେ ।

ରାତିରେ ଭାବି ଭାବି ଶୋଇଲୁ କ'ଣ କଲେ ଗପର ଝର ବହି ଆସିବ । ଏ ପର୍ଯ୍ୟନ୍ତ ଆମେ ଲୁଣ୍ଠନ ପଦ୍ଧତି ପ୍ରୟୋଗ କରୁଥିଲୁ: ହଠାତ୍ ପହଞ୍ଚି କାହାକୁ ଧରିନେଇ ଗପ ଆଦାୟ କରିବା । ସକାଳୁ ଧନୁଶର ଧରା ବଣ୍ଡା ପୁରୁଷ ଆଉ ପାନିଆ ଛୁରୀ ଓ କଟୁରୀ ଧରା ବଣ୍ଡା ସ୍ତ୍ରୀ ଙ୍କ ପାହାଡ ରାଜ୍ୟରେ ପଶିଲୁ । ଚାରିଟି ଗାଁ ରେ ଲୁଟପାଟ କଲୁ । କିଛି ମିଳିଲାନି । ଅବଶ୍ୟ ଦିନବେଳେ । ଅଳ୍ପ ଲୋକ ଥିଲେ ଗାଁରେ । ଅଧିକାଂଶ କାମକୁ ଯାଇଥିଲେ । ଗୋଟିଏ ଗାଁରେ କିନ୍ତୁ ବେଶ୍ କିଛି ବୟସ୍କ ମହିଳା ଓ ପିଲା ଥିଲେ । ଜଣେ ମଧ୍ୟ ବୟସ୍କା ମହିଳା ଯାହାଙ୍କ ଇୟାଳିଆ ମୁହଁରେ ଏକପ୍ରକାର କାନ୍ତି ଥିଲା ଓ ଶରୀରରେ ଥିଲା ସଠାମ ଚାରୁଶୀଳତା, ଯିଏ ପିନ୍ଧିଥିଲେ ୧୪ ଇଞ୍ଚ ଚଉଡାରେ ଗୁଡିଆ କଟୀବସ୍ତ୍ର(Wraparound skirt) ଓ କିଛି କଣ୍ଠମାଳା, ଗପ କହିବାକୁ ରାଜିହେଲେ । ସେ ଓଡିଆ କି ଦେଶିଆ ଜାଣି ନଥିଲେ । ତେଣୁ ତାଙ୍କ ଭାଷାରେ ଗପ କହିଲେ, ଆଉ ଆମେ ଠିକ୍ ବୁଝି ପାରିଲୁ ଯେ ସେ ଜଣେ ନିପୁଣା କଥାକାର । ତାଙ୍କ ଗପ ଗୀତ ଭରା ଥିଲା ଆଉ ଗୀତର ସ୍ୱର ବହ୍ମପୁତ୍ର ଉପତ୍ୟକାର ଥିଲା । କିନ୍ତୁ ସେ ବା ତାଙ୍କ ଗାଁର କେହି ଆସାମ ଯାଇ ନଥିଲେ । ମୁଁ ଉଦ୍‌ଗ୍ରୀବ ହୋଇଗଲି । ଡ.ରାଓ ଗପ ରେକର୍ଡ୍ କରୁଥାନ୍ତି । ମୁଁ ଟିକିଏ ଦୂରରୁ ଲକ୍ଷ୍ୟକଲି ଯେ ନାଚ ତାମସା ହେଲା ପରି ଛୋଟ ଦର୍ଶକ ମଣ୍ଡଳୀଟିଏ ଗଢ଼ି ଉଠୁଥିଲା । ସେ ଗାଁରୁ ଦୁଇଜଣ ସ୍ତ୍ରୀଙ୍କ ଠାରୁ କିଛି ଗପ ସଂଗ୍ରହକଲୁ । ବଣ୍ଡା ପୁରୁଷମାନେ ସଲପ ପିଇ ସନ୍ଧ୍ୟାରେ ଫେରିବା ପୂର୍ବରୁ ଆମକୁ ପାହାଡ ଛାଡିବାକୁ ତାଗିଦା କରାଯାଇଥିଲା । କାରଣ ଦୁଇଦିନ ପୂର୍ବରୁ ଗୋଟିଏ ଜିପ୍ ଅଟକାଇ ତାର ଟାୟାର କାଟି ଦିଆଯାଇଥିଲା ।

ଆମେ ଫେରିଗଲୁ । ଅନ୍ଧାରରେ ଗୋଟିଏ ଦିଦାୟି ଗାଁ ଚଢ଼ଉ କଲୁ । ଅଳ୍ପ ଦର୍ଶକ ଏକାଠି ହେଲେ । ଅଳ୍ପ କିଛି ଗପ ପାଇଲୁ । ସାଧାରଣ କୁହାଳିଙ୍କ ଠାରୁ । ଆମ ଦିନଟା ସମାପ୍ତ କରିବାକୁ ଠିକ୍ କଲୁ ଓ ସାଙ୍ଗରେ ଆସିଥବା ଅଫିସ୍‌ର ମାନଙ୍କୁ ନିଜ ନିଜ ସ୍ଥାନରେ ଛାଡିଦେଇ, ବ୍ଲକ୍ ଅଫିସ୍ ଆଡେ ଫେରିଲୁ ୧୪ କିଲୋମିଟର । ବାଟରେ ଦେଖିଲୁ ମାଟି ରାସ୍ତାଟିଏ ଡାହାଣ ପାଖ ଜଂଗଲର ଅନ୍ଧାର ଭିତରୁ ଲମ୍ବି ଯାଇଛି । ଆମେ ମୁହଁ ଚୁହାଁ ଚୁହିଁ ହେଲୁ । ଗୋଟେ ଶେଷ ଚଢ଼ଉ କରିବାକି ? ମାଡି ଯିବାକି ଅନ୍ଧାର ଭିତରକୁ । ରାସ୍ତା ଯୁଆଡେ ନବ । ଗାଡି ମୋଡିଲୁ । ପହଞ୍ଚିଲୁ ଯାଇ ୮ କିଲୋମିଟର ଦୂରରେ ବଣ୍ଡା ପାହାଡ ତଳେ । ଚାରିଆଡ ଘନ ଅନ୍ଧାର । ଅଳ୍ପ କିଛି ଘରେ ଡିବି ଆଲୁଅ । ଦିବଖରିଆ ସ୍କୁଲ ଘର ପାହାଚରେ ଦିଜଣ ବସିଥିଲେ । ଆମେ

ଆମ ଉଦ୍ଦେଶ୍ୟ ତାଙ୍କୁ ବୁଝେଇଲୁ । ସେମାନେ ଗପ ଜାଣିଥିବା ଜଣେ ସ୍ତ୍ରୀ ଲୋକଙ୍କ ନାଁ କହିଲେ । ତାଙ୍କ ପାଖକୁ ଖବର ପଠେଇଲୁ । ଜଣେ ଦିଜଣ ହୋଇ ଲୋକେ ଆସିବାକୁ ଲାଗିଲେ । ଜଣେ ପୁରୁଷ ବାହାରି ଆସିଲେ ଗପ କହିବାକୁ, ଆଗଭର ହୋଇ । ଆମେ ତାଙ୍କଠୁଁ ଆରମ୍ଭ କରିଦେଲୁ । ସମ୍ପୂର୍ଣ ଅନ୍ଧାରରେ ଗପ କୁହା ଆରମ୍ଭ ହୋଇଗଲାବେଳକୁ ଶହେଖଣ୍ଡେ ଲୋକ ଜମି ଯାଇଥିଲେ ଆଉ ମୁଁ ଧୀରେ ଧୀରେ ବୁଝିପାରୁଥିଲି ମୋ କାମ କିମିତି ହୋଇପାରିବ । ଆଉବି ଦେଖିଲି ଏ ଲୋକଟି ପ୍ରକୃତ ବାକ୍‌ପଟୁ କଥାକାର । ଗପର ଝର ଫିଟିଗଲା । ଘଣ୍ଟା ଘଣ୍ଟା କହି ଚାଲିଲେ ସେ । ତା ପରେ ଆସି ପହଞ୍ଚିଲେ ମଧ ବୟସ୍କା ଭଦ୍ର ମହିଳା ଜଣକ । ସେ ଯେତେବେଳେ ଆରମ୍ଭ କଲେ ସମସ୍ତଙ୍କୁ ମୁଗ୍ଧ କରିଦେଲେ । ତାଙ୍କ ଗପସମ୍ଭାର ଯିମିତି ପ୍ରଚୁର, ତାଙ୍କ କଥାଶୈଳୀ ବି ସିମିତି ଚମତ୍କାର ।

ହଠାତ୍ ଆମେ ଗପର ଖଣି ଟିଏ ପାଇଯାଇଥିଲୁ । ପରିପୂର୍ଣ୍ଣ, ଜଟିଳ, ମାଳିଗୁନ୍ଥା ଗପସବୁ ଯାହା ଯେ କୌଣସି ମାଳି ପରେ ସମାପ୍ତ କରିଦିଆ ଯାଇ ପାରେ ବା ଆହୁରି ମାଳି ଯୋଡି ବଢ଼େଇଦିଆ ଯାଇପାରେ । ଆଉ ପାଇଥିଲୁ ସୁଦକ୍ଷ କଥାକାର । କେବଳ ସେତିକି ନୁହେଁ ଆମେ ଆମ ସଂଗ୍ରହ ପଦ୍ଧତି ପାଇଯାଇଥିଲୁ । ଗପକୁହା ମଉସବ ପଦ୍ଧତି । ଆଉ ଚଢ଼ୋଉ ଲୁଣ୍ଠନ ପଦ୍ଧତି ଦରକାର ନଥିଲା ।

ସର୍ବୋପରି ମୁଁ ବୁଝି ପରୁଥିଲି ଯେ ଗପ ଶୁଣିବା, ଜାଣିବା, କହିବାର ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ ପ୍ରକଷ୍ଟ ଜୀବନର ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ । ଯାର ରାଜନୈତିକ ଢ଼ାଞ୍ଚା ବା ସଂବୃଦ୍ଧି ସହ ବା ଦାର୍ଶନିକ ପ୍ରଗାଢ଼ତା ସହ ସମ୍ବନ୍ଧ ନାହିଁ । ଗପ ଗଢ଼ିବା ଗୋଟାଏ ନିହିତ ଆଦି ଶକ୍ତି । ଗପ କହିବା ମଧ । ଗପର ଉତ୍ସ ଓ ବିଷୟବସ୍ତୁ ବିଛୁରିତ ଅଛି ଚାରିଆଡେ । ସୂର୍ଯ୍ୟ ଓ ଚନ୍ଦ୍ରରେ, ବାଘ ଓ ଶିଆଳରେ, ଜଙ୍ଗଲ ଓ ଗାଁରେ । ଆଉ ଏ ସବୁ ଫୁଟିଉଠେ ଭାବରେ ଓ ଭାଷାରେ । ଲୋକକଥାର ସଂବୃଦ୍ଧି ସାଂସ୍କୃତିକ ଚଞ୍ଚଳତାର ପ୍ରତୀକ ଯୋଉଟାକି ଆମ ସଭ୍ୟତା ମାନଙ୍କରେ ଧୀର ଧୀର ଲୋପପାଇ ଯାଉଛି । ସାଉଁଟି ଆଣି ଯଦି ରଖିହବ କିଛି ଗୋଟାଏ କଳାପରି ଲାଗିବ ।

୧ . ଆମ ଦଳରେ ଥିଲେ ଇ.ରାଜା ରାଓ (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧାପକ); ଏଚ.ଆର.ସତପଥି (ଖଲ୍ଲିକୋଟ କଲେଜ ଇଂରାଜୀ ବିଭାଗ); ଭି.ରବିନ୍ଦ୍ରନାଥ (କାଶିପୁର କଲେଜ୍ ଇଂରାଜୀ ବିଭାଗ); ବି.ରବିଶଙ୍କର (ବିଷମକଟକ କଲେଜ, ଅର୍ଥନୀତି ବିଭାଗ) ଓ ଡାକ୍ତର ପଦ୍ମନାଭ ମିଶ୍ର (ଅବସରପ୍ରାପ୍ତ ଡାକ୍ତର) ।

ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର
୧୦୧୮ - ଏ , ନୟାପଲ୍ଲୀ, ଭୁବନେଶ୍ୱର - ୭୫୧୦୧୨

# ଊନବିଂଶ ଶତାବ୍ଦୀର ଓଡିଆ ଉପନ୍ୟାସ

ଡଃ ବ୍ରହ୍ମାନନ୍ଦ ସିଂହ

ଊନବିଂଶ ଶତାବ୍ଦୀ ଓଡିଶାର ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଚେତନାର ଥିଲା ଏକ ନୂତନ ବାର୍ତ୍ତାବହ, ନବ ଜାଗରଣର ପ୍ରତୀକ । ଭାରତୀୟ ରାଜନୀତିରେ ଏହି ଶତାବ୍ଦୀର ପ୍ରାରମ୍ଭରେ ଓଡିଶା ତାହାର ଗୌରବଟୀକାକୁ ଇଂରେଜମାନଙ୍କ ହସ୍ତରେ ଅର୍ପଣକରି ଦୁଃଖ ଓ ଅନୁଶୋଚନାର ଅଶାନ୍ତ ବଳୟ ମଧ୍ୟରେ ନିର୍ଯ୍ୟାତନାର ଶିକାରହେବା ସଂଗେ ସଂଗେ ବହୁ ପରିମାଣରେ ନିପୀଡିତ ହୋଇଥିଲା । ଶାସନ ଗତ ଅବ୍ୟବସ୍ଥା ଶାସକମାନଙ୍କର ଖାମଖେୟାଲୀ ବେପରୁଆ ମନୋଭାବ, ଚିର ଅବହେଳିତ ନିପୀଡିତ ଓଡିଆ ଜୀବନଧାରାରେ ମଧ୍ୟବିତ୍ତ ଗୋଷ୍ଠୀର ଅଭ୍ୟୁଦୟ ଓଡିଶାର ଜନଜୀବନରେ ଏକ ନୂତନ ଚମକ ସୃଷ୍ଟି କରିଥିଲା ଏଥିରେ ସଂଶୟ ନାହିଁ । ଏହି ଶତାବ୍ଦୀର ପ୍ରାକ୍‌କାଳରେ ନୂତନ ସୂର୍ଯ୍ୟାଲୋକର ଛଟା ଏକ ଅଦ୍ଭୁତ ପ୍ରେରଣା ପ୍ରଦାନ କରିଥିଲା । ଏହାର ଏକମାତ୍ର କାରଣ ଥିଲା ଶାସନଗତ ବିଶୃଙ୍ଖଳାରୁ ମୁକ୍ତି ।

ଇଂରେଜମାନେ ପ୍ରଥମେ ଓଡିଶାକୁ ଆସିଲା ବେଳେ ଅନେକ ପ୍ରତିପତ୍ତିଶାଳୀ ସାମନ୍ତ ସେମାନଙ୍କୁ ସ୍ୱାଗତ କରିଥିଲେ ; କାରଣ ସେମାନେ ମରହଟ୍ଟାମାନଙ୍କର କୁଶାସନରୁ ଚାହୁଁଥିଲେ ମୁକ୍ତି । ମାତ୍ର ବ୍ରିଟିଶ ମାନଙ୍କ ଆର୍ଥିକ ଶୋଷଣ ନୀତି ଓ ଅସାଧୁ କର୍ମଚାରୀ ମାନଙ୍କର ଅତ୍ୟାଚାର ଶତବର୍ଷର ମରହଟ୍ଟା ଶାସନ ଅପେକ୍ଷା ଲୋକଙ୍କୁ ଅଧିକ ବାଧିଲା । ଫଳତଃ ୧୮୧୭ ମସିହାରେ ପାଇକ ବିଦ୍ରୋହର ସୂତ୍ରପାତ ହେବା ସଂଗେ ସଂଗେ ୧୮୧୭ ଠାରୁ ୧୮୬୨ ମଧ୍ୟରେ ବହୁ ଖଣ୍ଡ ବିଦ୍ରୋହ ସୃଷ୍ଟି ହୋଇଥିଲା । ଏଥିରେ ଶାସକବର୍ଗର ଅପକର୍ମ ବିରୋଧରେ ସାଧାରଣ ଜନସମାଜର ତୀବ୍ର ଅସନ୍ତୋଷ ପ୍ରକାଶ ପାଇଥିଲା । ଇଂରେଜ ଶାସକବର୍ଗ କେତେବେଳେ ଶକ୍ତି ପ୍ରୟୋଗପୂର୍ବକ ଓ କେତେବେଳେ କୂଟନୀତି ପ୍ରୟୋଗପୂର୍ବକ ଏହି ବିଦ୍ରୋହଗୁଡିକୁ ଦମନ କରିବା ସଂଗେ ସଂଗେ ପ୍ରାକୃତିକ ବିଭବ ବିମଣ୍ଡିତ ଓଡିଶାକୁ ଖଣ୍ଡ ଖଣ୍ଡ କରି ପ୍ରାନ୍ତୀୟ ରାଜ୍ୟ ସହିତ ଯୋଡି ନେଇଥିଲେ । ବହୁ ସାମନ୍ତ ଶାସକ ସୃଷ୍ଟି କରି ଓଡିଶାର ଆନ୍ତରୀଣ ସଂହତି ଭାଂଗି ଦେଇଥିଲେ । କେବଳ ସେତିକି ନୁହେଁ ଓଡିଶାର ଚିର ସହଚର ପ୍ରାକୃତିକ ବିପର୍ଯ୍ୟୟ ଏ ଶତକରେ ଓଡିଶାର ଜନଜୀବନକୁ ଅଧିକ ବିପର୍ଯ୍ୟସ୍ତ କରିଥିଲା । ''ଯଦିବା ଅଦ୍ୟାବଧି ୯୭ ବର୍ଷ କାଳ ଯାବତ୍ ଉତ୍କଳଭୂମି ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ କରତଳ ନ୍ୟସ୍ତ ହୋଇଅଛି ମାତ୍ର ସାକ୍ଷାତ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଆଶାନୁରୂପ ସାହଯ୍ୟପ୍ରାପ୍ତି ତାହା ଅଦୃଷ୍ଟରେ ଘଟି ନଥିଲା । ଏହା ବଂଗଳା ହତାର ଗୋଟିଏ ବାଜେ ରିପୋର୍ଟ ଜମିଦାରୀ ସ୍ୱରୂପ ଥିଲା । ଗତ ନଅଙ୍କର ଭୟଙ୍କର ଲୋକକ୍ଷୟର ଦୁର୍ଭିକ୍ଷ ଉଭାରେ ଏହା ଉପରେ ଗଭର୍ଣ୍ଣମେଣ୍ଟଙ୍କର କୃପାଦୃଷ୍ଟି ପଡିବାର ସୂତ୍ରପାତ । '' (ଫକୀରମୋହନ ଗ୍ରନ୍ଥାବଳୀ ପୃ ୧୦୪୮) ଫକୀରମୋହନଙ୍କ ଉକ୍ତ ଉକ୍ତିରୁ ଶାସକମାନଙ୍କ ପ୍ରତି ବୀତସ୍ପୃହତା ଓ ସେମାନଙ୍କର ଶୋଷଣର ଶିକାର ହେବାପରେ ସାଧାରଣ ଜନତା ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାହା ଏଥିରୁ ଲକ୍ଷ୍ୟ କରାଯାଇପାରେ । ଯଥାର୍ଥତଃ ଓଡିଶା ପାଇଁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଥିଲା ଏକ ଘୋର ତମିସ୍ରାଚ୍ଛନ୍ନ ସମୟ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓଡିଶା ପାଇଁ ଏକ ନୂତନ ଦୀପ୍ତିମନ୍ତ ମାଇଲଷ୍ଟମ୍ଭ । ଜାତୀୟଜୀବନ ଘୋରଅନ୍ଧକାର ଓ ଅବସାଦ ମଧ୍ୟରେ ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗତିକରୁଥିଲାବେଳେ ନୂତନ ଶିକ୍ଷାନୀତିର ଆଲୋକ ଅତ୍ୟନ୍ତ ମନ୍ଥର ଗତିରେ ଏ ଦେଶରେ ପ୍ରବେଶ କରୁଥିଲା । ଓଡିଶାର ସ୍ୱାଭିମାନ ପ୍ରତିଷ୍ଠା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟିର ଅଭାବବୋଧ ଲକ୍ଷ୍ୟ କରି ନୂତନ ଶିକ୍ଷାନୀତି, ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ପତ୍ରପତ୍ରିକା, ପ୍ରକାଶନ ପ୍ରଭୃତିର ଉଦ୍ୟମ ଆରମ୍ଭ କରାଗଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏ ଦିଗରେ ଅଗ୍ରଗାମୀ ଭାରତୀୟ ଚିନ୍ତାନାୟକ ମାନେ ତଥା ଇଂରେଜ ଶାସକ ବର୍ଗ ଓଡିଆ ଜୀବନଧାରା ଓ ସମାଜର କ୍ରମପରିବର୍ତ୍ତନ ପ୍ରତି ଅଧିକ ଦୃଷ୍ଟି ନିକ୍ଷେପ କରି ମୁଖ୍ୟତଃ ଯୋଗାଯୋଗ ବ୍ୟବସ୍ଥା ଓ ଶିକ୍ଷା ସଂସ୍କାର ପ୍ରତି ଅଧିକ ଦୃଷ୍ଟି ପ୍ରଦାନ କରିଥିଲେ । ଏହା ଫଳରେ ଓଡିଆ ସାମାଜିକ ଓ ସାଂସ୍କୃତିକ ଜୀବନଧାରା ଏକ ନୂତନ ଦିଗରେ ଗତି କଲା । ଯୁଗ ଯୁଗର ପୁଞ୍ଜିଭୂତ ଅବିଶ୍ୱାସ, କୁସଂସ୍କାର ଓ ଅନ୍ଧକାର କ୍ରମଶଃ ଜାତୀୟ ଜୀବନରୁ ଲୋପ ପାଇବାକୁ ଲାଗିଲା ।

ସାମାଜିକ ଜୀବନରେ ଏହିଯେଉଁ ନୂତନ ଜୀବନବୋଧର ପରିପ୍ରକାଶ ଘଟିଲା ତାହାର ପ୍ରତ୍ୟକ୍ଷ ପ୍ରଭାବ ସାହିତ୍ୟକର୍ମ ଉପରେପରିଲକ୍ଷିତ ହୋଇଥିଲା । ଅତୀତର ଶିଳ୍ପକର୍ମରେ ଯେଉଁ ଯେଉଁ ବିଶିଷ୍ଟ ଦିଗ ଗୁଡ଼ିକ ପରିଲକ୍ଷିତ ହୋଇଥିଲା ତାହା କ୍ରମଶଃ ରୂପାନ୍ତରିତ ହୋଇ କାବ୍ୟ କବିତାରେ ଏକ ନୂତନ ସମ୍ଭାବନାର ସ୍ୱାକ୍ଷର ବହନ କରି ପରିପ୍ରକାଶ ଲାଭ କଲା ଏବଂ ଗଳ୍ପ ଓ ଉପନ୍ୟାସ ସାହିତ୍ୟର ବିକାଶ ମାର୍ଗ ଉନ୍ମୋଚିତ ହୋଇଥିଲା । ମଧ୍ୟଯୁଗୀୟ ସାମନ୍ତବାଦୀ ବେଷ୍ଟନୀ ମଧ୍ୟରୁ ମୁକ୍ତ ହୋଇ ଆଧୁନିକ ସମାଜ ବ୍ୟକ୍ତିନିଷ୍ଠ ଜୀବନର ମୂଲ୍ୟବୋଧକୁ ସ୍ୱୀକୃତି ପ୍ରଦାନ କରିଥିଲା । ଏତଦ୍ ବ୍ୟତୀତ ଆଧୁନିକ ସଭ୍ୟତାର ପ୍ରଧାନସହଚର ମୁଦ୍ରାଯନ୍ତ୍ର ପ୍ରତିଷ୍ଠିତ ହୋଇ ଏହା ଗର୍ଭରୁ ସାମୟିକ ସାହିତ୍ୟ ପତ୍ରିକା ଓ ସଂବାଦପତ୍ରମାନ ଆତ୍ମପ୍ରକାଶ କଲା । ଏ ସବୁର ବିକାଶ ସଂଗେ ସଂଗେ ଉପନ୍ୟାସ ସଦୃଶ୍ୟ ଏକ ନୂତନ ଶିଳ୍ପରୂପ ବା Art formର ଜନ୍ମ ପାଇଁ ଶଙ୍ଖଧ୍ୱନି ବାଜି ଉଠିଲା । ସଂବାଦପତ୍ର ପ୍ରକାଶନର ନିବିଡ଼ ସଂପର୍କ ରହିଛି ଉପନ୍ୟାସ ସହିତ । କାରଣ ପତ୍ରପତ୍ରିକାରସଂପାଦକ ପାଠକମାନଙ୍କ ଚିତ୍ତବିନୋଦନ ନିମିତ୍ତ ଦେଶ ମଧ୍ୟରେ ଯେଉଁସବୁ ବିଚିତ୍ର କୌତୁହଳୋଦୀପକ ଘଟଣାମାନସଂଘଟିତ ହୁଏ ଏବଂ ମନ ଓ ପ୍ରାଣକୁ ଉଲ୍ଲସିତ କରେ,ସେ ସବୁକୁ ପ୍ରକାଶ କରିବା ପାଇଁ, ଆଗ୍ରହୀ । ସାମାଜିକ ସମସ୍ୟାର ନାନାବିଧ ଲଘୁ ସରସ ଆଲୋଚନା,ବିରୁଦ୍ଧ ମତବାଦର ସଂଘର୍ଷ,ପ୍ରତିପକ୍ଷର କୁତ୍ସାରଟନା, ଦୁର୍ନୀତିର ମୁଖରୋଚକ ଉଦାହରଣ ପ୍ରଭୃତି ବାସ୍ତବଜୀବନର ସତ୍ୟ ଓ ଉପଭୋଗ୍ୟ ମର୍ଯ୍ୟାଦା ପ୍ରଦାନ କରିଥାଏ । ଯଥାର୍ଥତଃ ସଂବାଦପତ୍ରମଧ୍ୟରେ ଜାତି ନିଜରବହିଃରୂପ ଓ ମନୋବାସନାର ନିଖୁଣ ପ୍ରତିବିମ୍ବ ଦେଖିବାକୁପାଏ । ବାସ୍ତବ ଜୀବନର ଏହି ଖଣ୍ଡ ଖଣ୍ଡ ଛବି ଗୁଡିକ ଐକ୍ୟସୂତ୍ରରେ ଗ୍ରଥିତ ହୋଇ ଘଟଣାର ଧାରାବାହିକତା ଓ ଶିଳ୍ପୀ ମନର ସଚେତନ ଉଦ୍ଦେଶ୍ୟ ସହିତସଂଯୁକ୍ତ ହୋଇ ଏକ ସଂପୂର୍ଣ୍ଣ ସଂଗତି ବିଶିଷ୍ଟ କାଳ୍ପନିକ ଚିତ୍ର ପ୍ରକାଶ ଲାଭ କରେ । ଏହାହିଁ ସନ୍ତାନ ଉପନ୍ୟାସ ସୃଷ୍ଟିର ପ୍ରଥମ ଅଙ୍କୁର । ଏଠାରେ ଲକ୍ଷ୍ୟ କରିବାର କଥା ଯେ ସଂପୁର୍ଣ୍ଣ ସାମନ୍ତବାଦୀ ବା ଅଭିଜାତବର୍ଗର ପୃଷ୍ଠପୋଷକତାରେ ଏ ସାହିତ୍ୟ ଜନ୍ମଲାଭ କରିନାହିଁ ଅଥବା ସଂପୂର୍ଣ୍ଣ ନିରକ୍ଷର ଜନଜୀବନର ମନୋରଞ୍ଜନ ନିମିତ୍ତ ଏ ସାହିତ୍ୟ ସୃଷ୍ଟି ହୋଇନାହିଁ ବରଂ ମଧ୍ୟବିତ୍ତ ଗୋଷ୍ଠୀର ଅଭ୍ୟୁଦୟ ସଂଗେ ସଂଗେ ଉପନ୍ୟାସ ସାହିତ୍ୟ ଜନ୍ମ ଲାଭ କରିଅଛି । ଧନୀ ଓ ବଣିକ ମାନଙ୍କର ସମ୍ମେଳନ ଫଳରେ ସମାଜରେ ଶ୍ରମିକ, ଗୃହଭୃତ୍ୟ, ଶିକ୍ଷା-ନବିଶ, କିରାଣୀ, ବ୍ୟବସାୟୀ ପ୍ରଭୃତି ଗୋଷ୍ଠି ଜନ୍ମଲାଭ କଲା । ଏବଂ ଏହି ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଗୋଷ୍ଠୀର ଆତ୍ମାନୁସନ୍ଧିତ୍ସା ଓ ଜୀବନାନୁସନ୍ଧାନ ଉପନ୍ୟାସ ସୃଷ୍ଟି ପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ଏତଦ୍ ବ୍ୟତୀତ ଏହି ସମୟରେ ବ୍ୟକ୍ତି କୈନ୍ଦ୍ରିକ ଜୀବନବୋଧ ସମଗ୍ର ସାମାଜିକ ଶୃଙ୍ଖଳାଠାରୁ ବିଚ୍ଛିନ୍ନ ହୋଇ ବ୍ୟକ୍ତିତ୍ୱବୋଧ

ଓ ଆତ୍ମମର୍ଯ୍ୟାଦାଭାବ ଉପନ୍ୟାସ ସୃଷ୍ଟିର ଥିଲା ଅନ୍ୟତମ ହେତୁ । ବ୍ୟକ୍ତିକୈନ୍ଦ୍ରିକ ଜୀବନଧାରା ମଧ୍ୟରେ ସାଧାରଣ ଶିକ୍ଷିତ ବ୍ୟକ୍ତି ଆତ୍ମାନ୍ୱେଷଣ ଓ ଆତ୍ମାନୁଭବର ଦୁର୍ବାର ଆକାଂକ୍ଷା ନେଇ ସାହିତ୍ୟ ଦରବାରରେ ଏଯାବତ୍ ଉପେକ୍ଷିତ ହୋଇଥିବାରୁ ସମୟର ପ୍ରାଣ ସ୍ପନ୍ଦନରେ ନିଜକୁ ନିଜେ ଖୋଜି ପାଇଥିଲା ଉପନ୍ୟାସରେ । ଉପନ୍ୟାସ ସଦୃଶ ସାହିତ୍ୟକାର୍ମ ନିମନ୍ତେ ଏହାହିଁ ପ୍ରଧାନ ଅବଲମ୍ବନୀୟ ବସ୍ତୁ । ସମୟର ପ୍ରବହମାନ ସ୍ରୋତରେ କୌଣସି ଦେଶର ସାମାଜିକ ପରିବର୍ତ୍ତନ ବ୍ୟତିରେକେ ଉପନ୍ୟାସ ପାଇଁ ଉପଯୁକ୍ତ ପରିବେଶ ମିଳେ ନାହିଁ । ଓଡିଶାରେ ଊନବିଂଶ ଶତାବ୍ଦୀ ପୂର୍ବରୁ ଏହା ସମ୍ଭବପର ନଥିଲା ।

ଯୁଗର ପରିବର୍ତ୍ତନ ସ୍ରୋତରେ ସଭ୍ୟ ମନୁଷ୍ୟ ଆଗରେ ଶିଳ୍ପ ବିପ୍ଳବ ଓ ବୈଜ୍ଞାନିକ ଅନୁଚିନ୍ତା ଏକ ନୂତନ ପୃଥିବୀର ଚିତ୍ର ସୃଷ୍ଟି କଲା । ପ୍ରାଚୀନ ରକ୍ଷଣଶୀଳ ଗଣ୍ଡି ମଧ୍ୟରୁ ନିଜକୁ ମୁକ୍ତକରି ଆଧୁନିକ ମନୁଷ୍ୟ ନିଜର ସାହିତ୍ୟକର୍ମ ମଧ୍ୟରେ ନିଜକୁ ଖୋଜିବା ପାଇଁ ଅଧିକ ବ୍ୟାକୁଳ ହୋଇ ଉଠିଲା, ତେଣୁ ସମ୍ଭବତଃ ଉପନ୍ୟାସର ଅପୂର୍ବ ସୃଷ୍ଟି; କାରଣ ଉପନ୍ୟାସ ଏକ ବାସ୍ତବଧର୍ମୀ କଳା । ଏହା ପୂର୍ଣ୍ଣତଃ ଆଧୁନିକ ଯୁଗର ସୃଷ୍ଟି । ଏଥିପାଇଁ ଆଧୁନିକ କାଳର ପରିବେଶ ଅନାଗତ ଉପନ୍ୟାସକୁ ସ୍ୱାଗତ ଜଣାଇବା ସ୍ୱାଭାବିକ । ଏହି ସୃଷ୍ଟି ସମ୍ଭାର ମଧ୍ୟରେ ସାମାଜିକ ଜୀବନର ବାସ୍ତବିକ ବିଶ୍ଳେଷଣ ସଂଗେ ସଂଗେ ନାରୀ ଓ ପୁରୁଷର ସୁଖଦୁଃଖର ସଂସାରରେ ପ୍ରତିନିୟତ ସଂଘଟିତ ହେଉଥିବା ଅତି ସୂକ୍ଷ୍ମ ବିବରଣୀ ରୂପାୟିତ ହୋଇଥିଲା । ଜୀବନର ସହଜ ପ୍ରବାହ ଉପନ୍ୟାସର ପ୍ରଧାନଧର୍ମ ଏବଂ ଏହା ମଧ୍ୟରେ ରୋମାନ୍ସ, ନାନା କୌତୂହଳୋଦୀପକ ଘଟଣାବଳୀ ଓ ବୀରତ୍ୱବ୍ୟଞ୍ଜକ କାହାଣୀର ଅବତାରଣା କରାଯାଇଥାଏ । ଆଧୁନିକ ଯୁଗରେ ସୃଷ୍ଟିର ସର୍ବଶ୍ରେଷ୍ଠ ଓ ଅଭୂତପୂର୍ବ ପ୍ରାଣୀ ମଣିଷ, ନିଜକୁ ଆବିଷ୍କାର କରିବାର ଜିଜ୍ଞାସା ଚରିତାର୍ଥ ହୋଇଥିବାରୁ ଏଯୁଗର ଏକମାତ୍ର ବଳିଷ୍ଠ ସାହିତ୍ୟ କର୍ମ ହେଉଛି ଉପନ୍ୟାସ । ଏହାର ସର୍ବପ୍ରଧାନ ଅଭିମୁଖ୍ୟ ହେଉଛି ମଣିଷକୁ ଆବିଷ୍କାର କରିବା ଓ ମଣିଷର କଥା କହିବା । ଓଡିଆ ଉପନ୍ୟାସର ସୃଷ୍ଟି କାଳରେ ଏହି ଚେତନାର ବ୍ୟତିକ୍ରମ ଆଦୌ ପରିଲକ୍ଷିତ ହୁଏ ନାହିଁ । ଏହି ନିର୍ଦ୍ଦିଷ୍ଟ ଶିଳ୍ପରୀତିର ବିକାଶ ନିମନ୍ତେ ଆବଶ୍ୟକ ହେଉଥିବା ପରିବେଶ ଓ ପରିସ୍ଥିତି ବ୍ରିଟଶ ରାଜତ୍ୱ କାଳରେ ସମ୍ଭବ ହୋଇଥିଲେହେଁ ଊନବିଂଶ ଶତାବ୍ଦୀରେ ଥିବା ଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ମଧ୍ୟବିତ୍ତ ମନୁଷ୍ୟ ସମାଜ ନଗରକୈନ୍ଦ୍ରିକ ହୋଇ ଉଠିଥିଲା ।

ଓଡିଆ ଉପନ୍ୟାସର ଜନ୍ମଲଗ୍ନ କଥା ଚିନ୍ତାକଲାବେଳେ ଊନବିଂଶ ଶତାବ୍ଦୀର ସମାଜ, ସଂସ୍କୃତି, ଶିକ୍ଷାବ୍ୟବସ୍ଥା ଓ ଯୁଗରୁଚି କଥା ସ୍ୱତଃ ମନକୁ ଆସେ । ଇଂରେଜମାନଙ୍କ ପ୍ରୋତ୍ସାହନ, ବାର୍ତ୍ତା ପ୍ରଚାରର ଆବଶ୍ୟକତା ତଥା ପତ୍ରପତ୍ରିକାର ପ୍ରକାଶନ ଉପନ୍ୟାସ ସୃଷ୍ଟିର ମାର୍ଗ, ପରିଷ୍କାର କରିଦେଲା- ଏହା ପୂର୍ବେ ସୂଚିତ । ଏହି ଶତକରେ ପ୍ରକାଶ ଲାଭ କରିଥିବା 'ଉତ୍କଳ ଦୀପିକା', 'ହିତୈଷିଣୀ', 'ପ୍ରଭା', 'ଓଡିଆ ଓ ନବସମ୍ବାଦ' ଏବଂ 'ଉତ୍କଳମଧୁପ' ପ୍ରଭୃତି ପତ୍ରିକା ପ୍ରକାଶିତ ହୋଇ ନଥିଲେ ଓଡିଆ ଉପନ୍ୟାସର ଅଭ୍ୟୁଦୟ ନିମନ୍ତେ ଆଉ କିଛି ସମୟ ପାଇଁ ଅପେକ୍ଷା କରିବାକୁ ପଡିଥାନ୍ତା । ରାମଶଂକର ରାୟଙ୍କ ମତାନୁସାରେ 'ମୁଁ ଉତ୍କଳମଧୁପ ନାମକ ମାସିକ ପତ୍ର ବାହାର କଲାବେଳେ 'ସୌଦାମିନୀ' ନାମକ ଉପନ୍ୟାସ ଲେଖୁଥିଲି । ସେ ଉପନ୍ୟାସ ଶେଷ ହେବା ପୂର୍ବେ ଦେଶର ସ୍ୱାଭାବିକ ଗତିରେ ଗ୍ରାହକମାନେ ମୂଲ୍ୟ ନଦେବାରୁ କାଗଜ ଖଣ୍ଡିକ ବନ୍ଦ ହୋଇଗଲା । ମୁଁ କ୍ଷୁବ୍ଧ ହୋଇ ରହିଲି - ସେହି ଉପନ୍ୟାସର ହସ୍ତଲିପି ମୁଁ ତତ୍‌କାଳୀନ ଶିକ୍ଷା ବିଭାଗର ଡିପୋଟି ଇନ୍‌ସପେକ୍ଟର ଉମାଚରଣ ବାବୁଙ୍କୁ ଦେଖାଇଥିଲି । ସେ ତାହା ପଢ଼ି ତହିଁର ବିସ୍ତର ପ୍ରଶଂସା କଲେ ମାତ୍ର ଉପନ୍ୟାସ ବିଦ୍ୟାଳୟର ପାଠ୍ୟପୁସ୍ତକର ଅନୁପଯୁକ୍ତ ବୋଲି ମତ ଦେବାରୁ ମୁଁ କ୍ଷାନ୍ତ ହୋଇ ରହିଲି । '' (ରାମଶଂକରଙ୍କ ଅଭିଭାଷଣ - ମୁକୁର ୯ମ ଭାଗ ୧୦ମ ସଂଖ୍ୟା ) ।

ଓଡିଆ ଉପନ୍ୟାସର ଏହି ଯେଉଁ ଜନ୍ମଲଗ୍ନର ସୂଚନା ଊନବିଂଶ ଶତକରେ ପ୍ରଦାନ କରାଯାଇଛି ଏଥିରୁ କେତେକ ଅନୁକୂଳ ଓ ପ୍ରତିକୂଳ ଓ ଧାରଣା ପାଠକ ଲାଭ କରିଥାଏ । ପତ୍ରିକାର ଅଭ୍ୟୁଦୟ ସହିତ ଉପନ୍ୟାସର ଜନ୍ମ ଏହା ସୁସ୍ପଷ୍ଟ । ପୁନଶ୍ଚ ଓଡିଶାରେ ନବଯୁଗର ପରିପ୍ରକାଶ ଅନୁମାନସାପେକ୍ଷ ଏକ ଶୁଭସୂଚକ ଘଟଣା । ଦ୍ୱିତୀୟତଃ ଉପନ୍ୟାସର ପାଠ୍ୟପୁସ୍ତକୋପଯୋଗିତା ସଂପର୍କରେ ପ୍ରଦାନ କରାଯାଇଥିବା ପ୍ରତିକୂଳ ମନ୍ତବ୍ୟ ଉପନ୍ୟାସଟିର ବିକାଶର ଅନ୍ତରାୟ ଘଟଣା ଅତ୍ୟନ୍ତ କୌତୂହଳୋଦ୍ଦୀପକ । ଏହା ମୁଖ୍ୟତଃ ଦିଓଟି ଚେତନା ଉପରେ ପର୍ଯ୍ୟବସିତ । ଉପନ୍ୟାସ ଏକ ଲଘୁ ସାହିତ୍ୟ ଭାବରେ ଏହାର ପ୍ରାକ୍‌କାଳରେ ପ୍ରତିଷ୍ଠିତ ସାହିତ୍ୟିକ ମାନଙ୍କ ଦ୍ୱାରା ଗୃହୀତ ହୋଇଥିବାରୁ ଏହା ସମ୍ଭବତଃ ପାଠ୍ୟପୁସ୍ତକ ଅନୁପଯୋଗୀ ଏବଂ ଆଧୁନିକ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନଙ୍କର ବହୁ ଜନାଦୃତ ଉପନ୍ୟାସ ସଦୃଶ ଏକ ନୂତନ ସାହିତ୍ୟ ସୃଷ୍ଟିକୁ ସ୍ୱାଗତ କରିବା ପାଇଁ ଦେଶରେ ଗ୍ରାହକତାର ଅଭାବ ଲେଖକଙ୍କୁ ନିରୁତ୍ସାହିତ କରିବା ସ୍ୱାଭାବିକ । '' ଉପନ୍ୟାସ ଲେଖା ନହେଲେ ଭାଷାର ସୌଷ୍ଠବ ସାଧିତ ହୁଏ ନାହିଁ ଏବଂ ସେହି ହେତୁ ଚାରିଆଡେ ଉପନ୍ୟାସ ଲେଖ ଲେଖ ବୋଲି ରଡି ପଡିଛି, ମାତ୍ର ଲେଖା ହୋଇ ବହୁ ବ୍ୟୟରେ ଛାପା ହେଲେ କେତେଜଣ ଲୋକ ମୋର ମାତୃଭାଷା ଉପନ୍ୟାସ ଗ୍ରନ୍ଥ ବୋଲି କିଣିବାକୁ ଆଗ୍ରହାନ୍ୱିତ ହୁଅନ୍ତି । '' (ମୁକୁର ୯ମ/୧୦ମ ସଂଖ୍ୟା-ରାମଶଂକରଙ୍କ ଅଭିଭାଷଣ ) ପ୍ରଥମତଃ ଗ୍ରାହକମାନଙ୍କର ଅନାଗ୍ରହ ଏବଂ ଦ୍ୱିତୀୟତଃ ଶିକ୍ଷିତବ୍ୟକ୍ତିମାନଙ୍କର ମାତୃଭାଷା ପ୍ରତି ମମତ୍ୱବୋଧର ଅଭାବ ଲେଖକଙ୍କୁ ବିଶେଷ କ୍ଷୁବ୍ଧ କରିଛି ଏଥିରେ ସଂଶୟ ନାହିଁ । କିନ୍ତୁ ପରବର୍ତ୍ତୀ କାଳରେ ସ୍ୱୀୟ ଜୀବନାନୁଭୂତି ସଂପର୍କରେ ଲେଖକ ନିଜର ଅନ୍ୟତମ ଉପନ୍ୟାସ 'ବିବାସିନୀ ଓ ଉନ୍ମାଦିନୀ' ପ୍ରସଂଗରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଛନ୍ତି ସେଥିରୁ ଉପରୋକ୍ତ ଦିଓଟି କାରଣକୁ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲା ଭଳି ମନେହୁଏ । '' ନାଟକ ରଚନାରେ ଶ୍ରମ କରୁଥିବା ସମୟରେ 'ଉତ୍କଳପ୍ରଭା' ନାମକ ମାସିକପତ୍ରର ଚାଳକମାନଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ମୁଁ 'ବିବାସିନୀ' ଉପନ୍ୟାସ ଲେଖିଲି ଏବଂ ସୌଭାଗ୍ୟକ୍ରମେ ତାହା ଶେଷ ପର୍ଯ୍ୟନ୍ତ ପ୍ରକାଶିତ ହେବା କାଳକୁ ପତ୍ରିକାଟି ବଞ୍ଚିଗଲା । 'ଇନ୍ଦ୍ରଧନୁ' ନାମକ ମାସିକ ପତ୍ରିକାର ପରିଚାଳକ ମାନେ ଅନୁରୋଧ କରିବାରୁ ମୁଁ 'ଉନମାଦିନୀ' ନାମରେ ଉପନ୍ୟାସ ଲେଖିବାକୁ ଆରମ୍ଭ କଲି । ତାହା କିୟଦଂଶ ଲେଖା ହୋଇ ପ୍ରକାଶିତ ହେଲାପରେ ପତ୍ରିକାଟି ବିଲୟପ୍ରାପ୍ତ ହେବାରୁ ଉପନ୍ୟାସଟି ଅପୂର୍ଣ୍ଣ ରହିଗଲା । 'ବିବାସିନୀ' ଓଡିଶାର ପ୍ରଥମ ଉପନ୍ୟାସ-ତାହା ସୁପରିଚିତ ଏବଂ କଲିକତାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବିଦ୍ୟାଳୟାଦିରେ ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ହୋଇଅଛି । ''(ରାମଶଂକର ଗ୍ରନ୍ଥାବଳୀ - ଭୂମିକା ପୃଷ୍ଠା-୫୦) 'ବିବାସିନୀ' ଉପନ୍ୟାସର ସଫଳତା ସଂପର୍କରେ ଲେଖକଙ୍କ ଏହି ଉକ୍ତିରୁ ଦିଓଟି କଥା ଲକ୍ଷ୍ୟ କରାଯାଇପାରେ । ଉପନ୍ୟାସ ଶେଷପର୍ଯ୍ୟନ୍ତ ପତ୍ରିକାର ପ୍ରକାଶନ ଏବଂ ପାଠ୍ୟପୁସ୍ତକ ଭାବେ ଏହାକୁ ଗ୍ରହଣ ଏହାଦ୍ୱାରା ଲେଖକ ନିଜକୁ କୃତ୍ୟ କୃତ୍ୟ ମନେ କରିଛନ୍ତି ଏବଂ ବିବାସିନୀକୁ ଓଡିଶାର ପ୍ରଥମ ଉପନ୍ୟାସ ଭାବେ ଘୋଷଣା କରିଛନ୍ତି । ଓଡିଆର ଏହି ଆଦି ସୃଷ୍ଟି କଥା ପରେ ବିଚାର୍ଯ୍ୟ ।

ସବୁଠାରୁ ଦୁଃଖ ଓ କ୍ଷୋଭର କଥା ଶିକ୍ଷିତ ଓଡିଆ ପାଠକଗୋଷ୍ଠୀ ସହଜରେ ମାତୃଭାଷାରେ ଲିଖିତ ଏହି ନୂତନ ସାହିତ୍ୟ କୃତିକୁ ସାଦରେ ଗ୍ରହଣ କରିପାରିନଥିବାରୁ ବିକଳାଙ୍ଗ ଭାବରେ ଓଡିଆ ଉପନ୍ୟାସର ଆଦିସୃଷ୍ଟି ଅକାଳରେ ମୃତ୍ୟୁ ବରଣ କରିଛି । ଇଂରାଜୀ ଶିକ୍ଷାଭିମାନୀ ପାଶ୍ଚାତ୍ୟ ସଂସ୍କୃତିପ୍ରେମୀ ଓଡିଆ ମାନେ ଇଂରାଜୀ ଭାଷାକୁ ଅଧିକ ଗୁରୁତ୍ୱ ପ୍ରଦାନ କରିବା ସଂଗେ ସଂଗେ ଅବିକଶିତ ସାହିତ୍ୟକୁ ଅନାଦର କରିବା ହେତୁ ସମ୍ଭବତଃ ଓଡିଆରେ ପ୍ରକାଶ ପାଇଥିବା ବହୁ ପ୍ରାଥମିକ ସୃଷ୍ଟି ଲୋକଲୋଚନକୁ ଆସି ପାରିନାହିଁ । ତଥାପି ଊନବିଂଶ ଶତାବ୍ଦୀରେ ଦେଖା ଦେଇଥିବା ନୂତନ ନଗର କୈନ୍ଦ୍ରିକ ଜୀବନ ଧାରା, ବ୍ୟକ୍ତି କୈନ୍ଦ୍ରିକ ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଅଭ୍ୟୁଦୟ ସାହିତ୍ୟ ସୃଷ୍ଟିର ବଳୟ ମଧ୍ୟରେ ଏକ ନୂତନ ସମ୍ଭାବନାର ସଂକେତ

ପ୍ରଦାନ କରିଥିଲା ଏଥିରେ ଦ୍ୱିମତ ନାହିଁ । ଶିଳ୍ପ ପରିପାଟୀ ପୂର୍ଣ୍ଣ କାବ୍ୟକବିତାର ଲୋକପ୍ରିୟତା ଓ ଭୋଗପ୍ରିୟ ସାହିତ୍ୟ କ୍ରମଶଃ କ୍ଷୁର୍ଣ୍ଣ ହୋଇ ଜୀବନ ଜିଜ୍ଞାସାର ଆଧାର ଭାବରେ ମୁଣ୍ଡ ଟେକିଥିବା ସାହିତ୍ୟ ପ୍ରତି ଲୋକମାନଙ୍କ ମନରେ ଯଥେଷ୍ଟ ଆଗ୍ରହ ସୃଷ୍ଟି ହୋଇଥିଲା । ଆଧୁନିକ ଜୀବନ ଦ୍ୱନ୍ଦ୍ୱ, ଜଟିଳତା, ଘାତ ପ୍ରତିଘାତ ପୂର୍ଣ୍ଣ ପରିସ୍ଥିତି ଓ ତନ୍ମଧ୍ୟରେ ମଣିଷର ଦୁଃସ୍ଥିତି ଓ ଦୁରବସ୍ଥାର ସମ୍ମୁଖୀନ ହେତୁ ପାଣ୍ଡିତ୍ୟପୂର୍ଣ୍ଣ କଳାମୟ କାବ୍ୟ ସାହିତ୍ୟର ସୃଷ୍ଟି, ପଠନ ଓ ମନନ ସଂପୂର୍ଣ୍ଣ ଭାବରେ ଏ ଶତକବେଳକୁ ଉପେକ୍ଷିତ ହେବାକୁ ଲାଗିଲା । ନୂତନତାର ଶିକ୍ଷାଲୋକକୁ ଏ ଦେଶରେ ଶିକ୍ଷିତଗୋଷ୍ଠୀ ପୂର୍ଣ୍ଣମାତ୍ରାରେ ଗ୍ରହଣ କରି ନଥିଲେ ଏହା ରାମଶଂକରଂକ ପ୍ରଦତ୍ତ ପୂର୍ବ ଉକ୍ତିରୁ ସହଜରେ ଅନୁମାନ କରାଯାଇ ପାରେ । ଓଡିଶାର ଜାତୀୟ ଜୀବନ, ସଂସ୍କୃତି ଓ ଜାତୀୟ ସାହିତ୍ୟର ଆଦର୍ଶ ଓ ମାନଦଣ୍ଡ ଦୋଦୂଲ୍ୟମାନ ହୋଇପଡିଛି ('ଇନ୍ଦ୍ରଧନୁ' ଓ 'ବିଜୁଳି' ସମ୍ବାଦ) ଏବଂ ଉତ୍କଳୀୟ ଜନଜୀବନରେ ବିଭିନ୍ନ ସମସ୍ୟା ଓ ସଂକଟ ଉଗ୍ରରୂପ ଧାରଣ କରିଛି ସେତିକିବେଳେ ମୁଷ୍ଟିମେୟ ଇଂରାଜୀ ଶିକ୍ଷାପ୍ରାପ୍ତ ମଧ୍ୟବିତ୍ତ ଗୋଷ୍ଠୀ ନବଜ୍ଞାନ ପ୍ରଚାରର ଅଗ୍ରଦୂତ ଭାବରେ ଦଣ୍ଡାୟମାନ ହୋଇଥିଲେ । ସେମାନେ ନୂଆ ନୂଆ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିବା ସଂଗେ ସଂଗେ ଉପନ୍ୟାସ ସାହିତ୍ୟ ସୃଷ୍ଟି କରି ଅପୂର୍ବ ସାହସିକତାର ପରିଚୟ ପ୍ରଦାନ କରିଥିବା କଥା ଘୋଷଣା କରିଛନ୍ତି । ''ଉତ୍କଳ ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱକପୋଳକଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଆମ୍ଭେ ଏ ଅସୀମ ସାହସିକ କାର୍ଯ୍ୟର ଅନୁଷ୍ଠାନ କରିଅଛୁଁ । ଉତ୍କଳ ଭାଷାନଭିଜ୍ଞ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣି ସୁଦ୍ଧା ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁ । ବ୍ରତ ସଫଳ ବା ନିଷ୍ଫଳ ହେଉ ଆମ୍ଭେ ପଶ୍ଚାତପଦ ହୋଇ ନ ପାରୁ ।'' (ଉମେଶଚନ୍ଦ୍ର ସରକାର ପଦ୍ମମାଳୀ - ମୁଖବଂଧ) ଅନ୍ୟତ୍ର ''ଆମ୍ଭଠାରୁ ଅଧିକ କୃତବିଦ୍ୟ ଯୁବକ ଆମ୍ଭର ପ୍ରଦର୍ଶିତ ମାର୍ଗ ଅବଲମ୍ବନ କରି କୃତକାର୍ଯ୍ୟ ହୋଇପାରିବେ ଓ ତଦ୍ଦ୍ୱାରା ଉତ୍କଳ ଭାଷାକୁ ସମଧିକ ଗୌରବାନ୍ୱିତ କରି ଆମ୍ଭର ନିଷ୍ଫଳତାର ସମୁଚିତ କ୍ଷତିପୂରଣ କରିବେ ।'' (ପଦ୍ମମାଳୀ ୩ୟ ସଂ-ମୁଖବଂଧ) ଉମେଶଚନ୍ଦ୍ରଙ୍କ ଏହି ଉକ୍ତି ସହିତ ଅନ୍ୟତମ ଔପନ୍ୟାସିକ ରାମଶଂକରଙ୍କ ଉକ୍ତିକୁ ମିଶାଇ ଦେଖିଲେ ଓଡିଶାରେ ନବ୍ୟ ସଭ୍ୟ ଶିକ୍ଷିତ ବ୍ୟକ୍ତି ମାନଙ୍କର ସାହିତ୍ୟ ପ୍ରତି ଅନାଗ୍ରହ ସହଜରେ ଉପଲବ୍ଧି କରିହୁଏ ।

ଓଡିଆ ସାହିତ୍ୟରେ ପ୍ରଥମ ଉପନ୍ୟାସ ଭାବରେ ୧୮୮୮ ମସିହାରେ ପୁସ୍ତକାକାରରେ ପ୍ରକାଶିତ ଉମେଶଚନ୍ଦ୍ର ସରକାରଙ୍କ 'ପଦ୍ମମାଳୀ'' ଉପନ୍ୟାସକୁ ଗ୍ରହଣ କରାଯାଇଥିଲେହେଁ ଏହା ପୂର୍ବରୁ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ଅସଂପୂର୍ଣ୍ଣ ଉପନ୍ୟାସ ଗୁଡିକର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇ ନ ପାରେ । ଉତ୍କଳ ଦୀପିକା ୩.୫.୧୮୭୩ ସଂଖ୍ୟାର ସୂଚନାରୁ ଦୁଇଟି ମନୋହର ପାଠଯୋଗ୍ୟ ଉପନ୍ୟାସ ସନ୍ନିବେଶିତ ହୋଇଥିବା କଥା ଉଲ୍ଲେଖ କରାଯାଇଥିଲେହେଁ ଏହାର ସଂଜ୍ଞା ଓ ସ୍ୱରୂପ ଏଯାବତ୍ ସମାଲୋଚନାର ପରିସରକୁ ଆସିନାହିଁ । ଏତଦ୍ ବ୍ୟତୀତ 'ସୌଦାମିନୀ' - ଉତ୍କଳ ମଧୁପ, 'ଉନ୍ମାଦିନୀ', 'ରାଜବିବି' - ଇନ୍ଦ୍ରଧନୁ, 'ଓଡିଆବୀର', 'ମୂଳିଆଧନ' - 'ଉତ୍କଳ ଦୀପିକା', 'ମଠର ସମ୍ବାଦ', 'ଅନାଥିନୀ'-ପ୍ରଦିପ ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇଥିଲା । କେବଳ ସେତିକି ନୁହେଁ ମିଶନାରୀମାନଙ୍କ ଧର୍ମପ୍ରଚାର ଉଦ୍ଦେଶ୍ୟରେ ରଚିତ ଉପନ୍ୟାସଗୁଡିକ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ବଂଗଳାରେ ୧୮୫୨ ମସିହାରେ ପ୍ରକାଶିତ ଶ୍ରୀମତୀ ହେନେ କାଥାରାଇନ୍ ମୁଲେନ୍ଙ୍କ ''କରୁଣା ଓ ଫୁଲମଣି'' କାଳଦିଗରୁ ସର୍ବପ୍ରଥମ ଉପନ୍ୟାସ ଭାବରେ ଗୃହୀତ । ଏହାର ଓଡିଆ ଅନୁବାଦ ରେଭରେଣ୍ଡ ଷ୍ଟବିନ୍ସଂକ ଦ୍ୱାରା ୧୮୫୭ ମସିହାରେ ପ୍ରକାଶିତ ହୋଇଥିବା କଥା ପ୍ରିୟ ରଂଜନ ସେନଙ୍କ ''ମଡର୍ଣ୍ଣ ଓଡିଆ ଲିଟରେଚର''ରୁ ଜଣାଯାଏ । ଏହା ଯଥାର୍ଥତଃ ଉପନ୍ୟାସ ହୋଇ ନପାରେ କିନ୍ତୁ ଏହା ଉପନ୍ୟାସ ଲକ୍ଷଣାକ୍ରାନ୍ତ ଏଥିରେ ସଂଦେହ ନାହିଁ । ''ଫୁଲମଣି ଓ କରୁଣା'' ଛାୟାରେ ଓଡିଆରେ ଅନ୍ୟ ଏକ ଉପନ୍ୟାସ 'ମାଳତୀ ଓ ଭାଗ୍ୟବତୀ' ଶିରୋନାମାରେ ପ୍ରକାଶ ଲାଭ କରିଥିଲା । କିନ୍ତୁ

ଏହାର ପ୍ରଥମ ପ୍ରକାଶ ସମ୍ବନ୍ଧରେ ସଠିକ ବିବରଣୀ ମିଳି ନଥିଲେହେଁ ଏହାର ପଞ୍ଚମ ସଂସ୍କରଣ ୧୯୧୦ ମସିହାରେ ହୋଇଥିଲା ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଏହି ଯେଉଁ ଉପନ୍ୟାସ ରଚନାର ପ୍ରବଣତା ଓଡ଼ିଶାରେ ପ୍ରକାଶ ପାଇଛି ତାହା ବିଶ୍ଳେଷଣ କଲେ ଦେଖାଯାଏ ଯେ ମୁଖ୍ୟତଃ ଅଣଓଡ଼ିଆ ବଂଗଭାଷୀ ବ୍ୟକ୍ତିମାନଙ୍କର ପ୍ରଚେଷ୍ଟାରେ ଏହା ପ୍ରତିଷ୍ଠା ଲାଭ କରିଛି । ରାମଶଂକର ହୁଅନ୍ତୁ ଅଥବା ଉମେଶଚନ୍ଦ୍ର ହୁଅନ୍ତୁ ଏମାନଙ୍କର ମାତୃଭାଷା ଥିଲା ବଂଗଳା ଓ ଏମାନେ ପ୍ରତିଷ୍ଠିତ ସମୃଦ୍ଧ ବଂଗଳା ଭାଷା ଓ ସାହିତ୍ୟ ସହିତ ଅଧିକ ଭାବରେ ଥିଲେ ପରିଚିତ । ଓଡ଼ିଆରେ ଉପନ୍ୟାସ ରଚନାର ଉଦ୍ୟମ ଆରମ୍ଭ ହେବାବେଳକୁ ବଂଗଳା ଭାଷାରେ ଉପନ୍ୟାସ ରଚିତ ହୋଇ ଏକ ଯୁଗାନ୍ତକାରୀ ବିପ୍ଳବ ସୃଷ୍ଟି ହୋଇଥିଲା । ଏତିକିବେଳକୁ ବଂଗଳାରେ ନାଥଶର୍ମାଙ୍କ ରଚିତ 'ନବବାବୁ ବିଳାସ' (୧୮୨୩) ପ୍ୟାରିଚାନ୍ଦ ମିତ୍ରଙ୍କ 'ଆଲୋଲ୍‌ର ଘରେ ଦୁଲାଲ' (୧୮୫୭) କାଳୀ ପ୍ରସନ୍ନ ସିଂଙ୍କ 'ହୁତୋମ ପାଚାର ନକ୍‌ସା' (୧୮୬୨), ବଂକିମଚନ୍ଦ୍ରଙ୍କ ଦୁର୍ଗେଶ ନନ୍ଦିନୀ (୧୮୬୫) 'ମୃଣାଳିନୀ' (୧୮୬୯), 'ରାଜସିଂହ' (୧୮୮୧), ଚନ୍ଦ୍ରଶେଖର (୧୮୮୧), ଉମେଶଚନ୍ଦ୍ର ଦତ୍ତଙ୍କ, 'ବଂଗ ବିଜେତା' (୧୮୭୩), 'ମାଧବୀ କଂକଣ' (୧୮୭୬), ଭୂଦେବ ମୁଖୋପାଧ୍ୟାୟଙ୍କ 'ସଫଳ ସ୍ୱପ୍ନ', 'ଅଙ୍ଗୁରୀ ବିନିମୟ' ପ୍ରଭୃତି ବହୁ ଉପନ୍ୟାସ ସୃଷ୍ଟି ହୋଇ ପ୍ରତିଷ୍ଠା ଲାଭ କରିଥିଲା । ଫଳତଃ ଏହାର ପରୋକ୍ଷ ପ୍ରଭାବ ଏହି ଲେଖକ ମାନଙ୍କୁ ଅସୀମ ସାହସିକତାର କାର୍ଯ୍ୟ ସଂପାଦନ ପାଇଁ ଥିଲା ପ୍ରେରଣାର ଉତ୍ସ ।

ଓଡ଼ିଆରେ ପ୍ରଥମ ଔପନ୍ୟାସିକଙ୍କ ମର୍ଯ୍ୟାଦା କେହି କେହି ରାମଶଂକରଙ୍କୁ ପ୍ରଦାନ କରିଥିଲା ବେଳେ ଆଉ କେତେକ ଉମେଶଚନ୍ଦ୍ରଙ୍କ ଏହା ଅର୍ପଣ କରିଥାନ୍ତି । 'ସୌଦାମିନୀ' ଉନତ୍ରିଂଶ ପରିଚ୍ଛେଦ ମଧ୍ୟରେ ସୀମିତ ରହି କାଳର କରାଳ ଗର୍ଭରେ ଲୀନ ହୋଇଗଲା ସିନା ଲେଖକଙ୍କୁ ଏକ ବିବ୍ରତମନ ସ୍ଥିତିରେ ଛାଡ଼ି ଦେଇଥିଲା । ଲେଖକ ସ୍ୱୀୟ ଜୀବଦ୍ଦଶାରେ ୧୯୩୦ ବେଳକୁ ଗ୍ରନ୍ଥାବଳୀ ପ୍ରକାଶ କରି ସୌଦାମିନୀର ପ୍ରକାଶିତ କିମ୍ବା ଅପ୍ରକାଶିତ ଅଂଶକୁ ଏଥିରେ ସ୍ଥାନ ଦେଇ ନଥିଲେ ମଧ୍ୟ କଥାସମ୍ରାଟ ଫକୀରମୋହନ ଏହି ପ୍ରଚଣ୍ଡ ପ୍ରତିଭାଧର ବ୍ୟକ୍ତିର ସୃଷ୍ଟି ସମୂହକୁ ବିଚାର କରି ପ୍ରଥମ ଔପନ୍ୟାସିକର ଗୌରବ ପ୍ରଦାନ କରି ଅଛନ୍ତି ''ହେ ରାମଶଂକର ମୋର ମାନୁଛି ମନକୁ/ହୋଇପାର ଭାଇ ତୁମ୍ଭେ ଗଉରୀ ପଛକୁ / ପ୍ରଥମ ନାଟକ ଆଉ ନଭେଲର ଲେଖା/ପ୍ରଥମରେ ତୁମ୍ଭଠାରେ ଗଲାସିନା ଦେଖା । '' (ଉତ୍କଳ ଭ୍ରମଣ) ଲେଖକ ନିଜେ ମଧ୍ୟ ଓଡ଼ିଆ ଭାଷାରେ ବିବାସିନୀକୁ ଓଡ଼ିଆର ପ୍ରଥମ ଉପନ୍ୟାସ ବୋଲି ଗ୍ରନ୍ଥାବଳୀର ମୁଖବଂଧରେ ଉଲ୍ଲେଖ କରିଅଛନ୍ତି । ''ବିବାସିନୀ ବାରିପଦାରୁ ପ୍ରକାଶ ପାଉଥିବା ଉତ୍କଳପ୍ରଭା ମାସିକ ପତ୍ରିକାର ପ୍ରଥମ ସଂଖ୍ୟାରୁ ପ୍ରକାଶ ଲାଭ କରିଥିଲା । ''ଉତ୍କଳପ୍ରଭା'' ୧୯୯୨-୯୩ ବେଳକୁ ପ୍ରକାଶ ପାଇଥିଲା କିନ୍ତୁ ଏହା ପୂର୍ବରୁ 'ପଦ୍ମମାଳୀ' ୧୮୮୮ ମସିହାରେ ପ୍ରକାଶିତ ହୋଇଥିବାରୁ ବିବାସିନୀକୁ ପ୍ରଥମ ଓଡ଼ିଆ ଉପନ୍ୟାସ କହିବା ଲେଖକଙ୍କ ଯୁକ୍ତି ଆଦୌ ଯୁକ୍ତି ଯୁକ୍ତ ମନେ ହୁଏ ନାହିଁ । ରାମଶଂକର ପ୍ରଥମେ ଓଡ଼ିଆ ଉପନ୍ୟାସ ରଚନାରେ ମନୋନିବେଶ କରିଛନ୍ତି ମାତ୍ର ତାଙ୍କର ପ୍ରଥମ କାଳରେ ଉପନ୍ୟାସ ଗୁଡ଼ିକ ଅପୂର୍ଣ୍ଣ ରହିଯିବାରୁ 'ପଦ୍ମମାଳୀ' ପ୍ରକାଶ ପାଇବା ପରେ ପ୍ରକାଶ ଲାଭ କରିଥିବା 'ବିବାସିନୀ' କୁ ପ୍ରଥମ ଉପନ୍ୟାସର ଗୌରବ ପ୍ରଦାନ କରିବା ସମୀଚିନ ହେବ ନାହିଁ । ଲେଖକଙ୍କ ଅଗ୍ରଜ ଗୌରୀଶଂକର ସେଥିପାଇଁ ପଦ୍ମମାଳୀକୁ ପ୍ରଥମ ଉପନ୍ୟାସର ସମ୍ମାନ ପ୍ରଦାନ କରି ଉତ୍କଳଦୀପିକାରେ ପ୍ରକାଶ କରିଥିଲେ ''ପ୍ରକୃତ ଘଟଣା ସମ୍ବଳିତ କୌଣସି ଉପନ୍ୟାସ ଅବଧି ଓଡ଼ିଆ ଭାଷାରେ ପ୍ରଚାରିତ ହୋଇ ନଥିବାରୁ ଉମେଶ ବାବୁଙ୍କ ଏହି ଉଦ୍ୟମଟି ପ୍ରଶଂସନୀୟ । ଏହି ଖଣ୍ଡିକୁ ଓଡ଼ିଆର ପ୍ରଥମ ନଭେଲ କହିଲେ ଅତ୍ୟୁକ୍ତି ହେବ ନାହିଁ । (ଦୀପିକା ୦୨.୫; ୧୮୮୯) ଏଥିରୁ ସ୍ପଷ୍ଟ ଭାବରେ ପ୍ରତୀୟମାନ

ହୁଏ ଯେ ରାମଶଂକର ଓଡିଆରେ ପ୍ରଥମ ଉପନ୍ୟାସକାର ହୋଇପାରନ୍ତି କିନ୍ତୁ ପ୍ରଥମ ଉପନ୍ୟାସ ହେଉଛି 'ପଦ୍ମମାଳୀ' ।

'ସୌଦାମିନୀ' ଇତିହାସର କଥାବସ୍ତୁ ଆଧାରିତ ଏକ ଉପନ୍ୟାସ । ଆଲ୍ଲାଉଦ୍ଦିନ ଖିଲ୍‌ଜିଙ୍କର' ଚିତୋର ଉଜ୍ଜୟିନୀ ଆଦି ଆକ୍ରମଣ ଓ ଅଧିକାର ଏହି ଉପନ୍ୟାସର ମୁଖ୍ୟ ଆଖ୍ୟାନଭାଗ । ଆଲ୍ଲାଉଦ୍ଦିନ ଉଜ୍ଜୟିନୀ ଆକ୍ରମଣ କରି ରାଣା ଓ ତାଙ୍କ ସ୍ତ୍ରୀଙ୍କୁ ହତ୍ୟାକଲା ପରେ ରାଜକୁମାର ଜୟସିଂହ ସୁଲତାନଙ୍କ ବିରୁଦ୍ଧରେ ଏକାକୀ ଯୁଦ୍ଧ କରିଥିଲେ କିନ୍ତୁ ବିଫଳତା ହେତୁ ବଣକୁ ପଳାଇଲା ପରେ ବଣରେ ନିଜର ବାଲ୍ୟସଂଗିନୀ ଓ ପ୍ରଣୟିନୀ ସୌଦାମିନୀଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସୁଲତାନ ବାହିନୀ ବଣ ମଧ୍ୟରେ ଉଭୟଙ୍କୁ ଆକ୍ରମଣ କରି ସୌଦାମିନୀଙ୍କୁ ଧରି ନେଇ ଦିଲ୍ଲୀ ଦରବାରକୁ ପଠାଇ ଦେଲେ । ଏଥିରେ ଜୟସିଂହ ମୂର୍ଚ୍ଛିତ ହୋଇଯିବା ପରେ ଅତି ଅପ୍ରତ୍ୟାଶିତ ଭାବରେ ଆନନ୍ଦମୟୀ ନାମ୍ନି ଜଣେ ମହିଳାଙ୍କର ସେବା ଯତ୍ନରେ ଜୟସିଂହ ସଂଜ୍ଞା ଫେରି ପାଇଥିଲେ । ଆନନ୍ଦମୟୀଙ୍କର ସ୍ୱାମୀ ସୁଲତାନ ବାହିନୀଙ୍କ ସହିତ ଯୁଦ୍ଧ କଲାବେଳେ ବଣରେ ନିରୁଦ୍ଦିଷ୍ଟ ହୋଇ ଯାଇଥିଲେ । ଦୁଃଖ ଓ ଅନୁଶୋଚନାରେ ଜର୍ଜରିତା ଆନନ୍ଦମୟୀଙ୍କ ପ୍ରତି ସମ୍ବେଦନଶୀଳ ହୋଇ ଜାନ୍‌ଚାରପୁର ରାଜକନ୍ୟା କୁସୁମ କୁମାରୀ ପ୍ରତିଜ୍ଞା କରିଥିଲେ ଯେ ଆନନ୍ଦମୟୀ ନିଜ ସ୍ୱାମୀଙ୍କୁ ନପାଇଲା ପର୍ଯ୍ୟନ୍ତ ସେ ବିବାହ କରିବେ ନାହିଁ । ଏହି ଘଟଣା ସବୁ ଜାଣିଲା ପରେ ଜୟସିଂହ ଆନନ୍ଦମୟୀଙ୍କ ସ୍ୱାମୀଙ୍କୁ ଖୋଜିବା ପାଇଁ ବାହାରିଛନ୍ତି । ପ୍ରକାଶିତ ୩୦ଟି ପରିଚ୍ଛେଦ ମଧ୍ୟରେ କାହାଣୀର ଏହି ଅଂଶ ମାତ୍ର ପ୍ରକାଶ ଲାଭ କରିଥିଲେହେଁ ଯୁଗୀୟ ପରମ୍ପରା ଅନୁସାରେ ଏହା ଯେ ମିଳନାନ୍ତକ ହୋଇଥାନ୍ତା ତାହା ଅନୁମାନ କରାଯାଇପାରେ । ଉପନ୍ୟାସର ଘଟଣାବଳୀ ଇତିହାସ ସମର୍ଥିତ ହେଲେହେଁ - ମୁଖ୍ୟ ନାୟକ ନାୟିକାଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥିବା ଘଟଣାବଳୀର ବର୍ଣ୍ଣନା ଇତିହାସାଶ୍ରିତ ନୁହେଁ । ଐତିହାସିକ ପୃଷ୍ଠଭୂମିରେ ଏହି କାଳ୍ପନିକ ଘଟଣା ଉପନ୍ୟାସକୁ ଅଧିକ ଜୀବନ୍ତ ଓ ରସସ୍ନିଗ୍ଧ କରିଛି । ୧୮, ଅପ୍ରେଲ୍ ୧୮୭୮ ବାଲେଶ୍ୱର ସମ୍ବାଦ ବାହିକା ''ସୌଦାମିନୀ'' ଉପନ୍ୟାସର ସୃଷ୍ଟି ସୌରଭ ସଂପର୍କରେ ମନ୍ତବ୍ୟ ପ୍ରଦାନ କରି ଉଲ୍ଲେଖ କରିଥିଲେ ''ସୌଦାମିନୀ'' ଲେଖା ପ୍ରାଞ୍ଜଳ ହୋଇନାହିଁ, ସେଥିରେ ନବନ୍ୟାସର ଗନ୍ଧ ମାତ୍ର ଅଛି ''। ନବନ୍ୟାସ ରଚନା କଲାବେଳେ ପ୍ରାଥମିକ ପର୍ଯ୍ୟାୟରେ ଏତାଦୃଶ ଅଭାବବୋଧ ପରିଲକ୍ଷିତ ହେବା ସ୍ୱାଭାବିକ । ପୁନଶ୍ଚ ଉପନ୍ୟାସଟି ଶେଷ ହୋଇ ନ ଥିବାରୁ ଏହାର ଲେଖା/ ଚରିତ୍ର ସଂପର୍କରେ ମନ୍ତବ୍ୟ ପ୍ରଦାନ କରିବା ସମୀଚୀନ ମନେହୁଏ ନାହିଁ । ତେବେ ଏଥିରେ ପ୍ରକାଶ ପାଇଥିବା ଯୁଦ୍ଧ ବର୍ଣ୍ଣନା, ବିମଳ ପ୍ରେମର ଚିତ୍ର, ଦୁର୍ଗ, ଅରଣ୍ୟ, ପ୍ରଭାତ, ସନ୍ଧ୍ୟା ଆଦିର ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ ଓ ସ୍ୱାଭାବିକ ଏଥିରେ ସଂଦେହ ନାହିଁ । ଏତଦ୍‌ବ୍ୟତୀତ ବୀର କ୍ଷାତ୍ର ତେଜୋଦୀପ୍ତ ଘଟଣାବଳୀର ବର୍ଣ୍ଣନା କରିବା ସଂଗେ ସଂଗେ ଅପୂର୍ବ ସାହସିକତାର ପରିଚୟ ଲେଖକ ଏହି ଉପନ୍ୟାସରେ ପ୍ରଦାନ କରିଛନ୍ତି । ଏ ଦେଶରେ ଦେଖା ଦେଇଥିବା ସିପାହୀ ବିଦ୍ରୋହ ଓ ନଅଙ୍କ ଦୁର୍ଭିକ୍ଷ ପ୍ରଭୃତି ଇତିହାସ ସମ୍ଭୃଦ୍ଧ ଘଟଣାବଳୀ ଗୋଟିଏ ଦିଗରେ ଓ ଅପରପକ୍ଷରେ ବଂକିମଚନ୍ଦ୍ରଙ୍କ ସଦୃଶ ପ୍ରଭାବଶାଳୀ ଲେଖକଙ୍କ ଇତିହାସାଶ୍ରିତ ସୃଷ୍ଟି ଲେଖକଙ୍କୁ ଐତିହାସିକ ଉପନ୍ୟାସ ରଚନା କରିବା ପାଇଁ ଅନୁପ୍ରେରିତ କରିଥିବ ଏଥିରେ ସଂଦେହ ନାହିଁ । ପ୍ରେମ ବ୍ୟାପାରକୁ କେନ୍ଦ୍ରକରି ଉପନ୍ୟାସର କାହାଣୀଭାଗଟିକୁ ପରିକଳ୍ପନା କରାଯାଇଥିଲେହେଁ ପ୍ରକାଶିତ ଅଂଶ ମଧ୍ୟରେ ଅନେକତ୍ର ଆକ୍ରମଣ ପ୍ରତିଆକ୍ରମଣର ଘଟଣାବଳୀ ଅଧିକ ପରିମାଣରେ ବର୍ଣ୍ଣନା କରାଯାଇଛି ।

କଟକ ପ୍ରିଣ୍ଟିଂ କଂପାନୀ ତରଫରୁ ପ୍ରକାଶିତ ଇନ୍ଦ୍ରଧନୁ ପତ୍ରିକାରେ ଧାରାବାହିକ ଭାବରେ ରାମଶଂକରଙ୍କ ଅନ୍ୟ ଏକ ଉପନ୍ୟାସ-ଉନ୍ମାଦିନୀ ଦ୍ୱିତୀୟ ଭାଗ ଦଶମ ସଂଖ୍ୟା ଅପ୍ରେଲ ୧୮୯୫ ସଂଖ୍ୟାଠାରୁ

ପ୍ରକାଶ ପାଇଥିଲା । ଇନ୍ଦ୍ରଧନୁ ଅନିୟମିତ ଭାବରେ ୧୮୯୭ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲେହେଁ କେବଳ ପ୍ରଥମ ପାଞ୍ଚୋଟି ପରିଚ୍ଛେଦ ମଧ୍ୟରେ ଏହା ଥିଲା ସୀମିତ । ଏହି ପାଞ୍ଚୋଟି ପରିଚ୍ଛେଦ ମଧ୍ୟରେ ଲେଖକ ଯେଉଁ ବର୍ଣ୍ଣନା ବୈଚିତ୍ର୍ୟ ପ୍ରଦାନ କରିଛନ୍ତି ତାହା ପରବର୍ତ୍ତୀ କାଳରେ ଫକୀରମୋହନଙ୍କ ସଦୃଶ ଲେଖକ ମାନଙ୍କୁ ଯେ ପ୍ରେରଣା ଯୋଗାଇଥିବ ଏହା ଅସ୍ୱୀକାର କରାଯାଇ ନ ପାରେ । ଏହି ଉପନ୍ୟାସରୁ ସାମାଜିକ ଜୀବନର ମୂଲ୍ୟବୋଧ, ନୈତିକତା ଓ ସାଂସ୍କୃତିକ ଜୀବନଧାରାର ଯେଉଁ ସୂଚନା ମିଳେ ତାହା ବିଶେଷ ଉଲ୍ଲେଖଯୋଗ୍ୟ । 'ଉନ୍ମାଦିନୀ' ପ୍ରାଥମିକ କାଳରେ ସୃଷ୍ଟ ଅନ୍ୟାନ୍ୟ ଉପନ୍ୟାସ ସଦୃଶ ଇତିହାସ କଥାବସ୍ତୁ ଆଧାରିତ ଏକ ଉପନ୍ୟାସ ନୁହେଁ । ଏହା ଥିଲା ଏକ ସାମାଜିକ ଉପନ୍ୟାସ । ପାଞ୍ଚୋଟି ପରିଚ୍ଛେଦ ମଧ୍ୟରୁ ଦିଓଟି ସମ୍ଭ୍ରାନ୍ତ କରଣ ପରିବାରର ଚିତ୍ର ପ୍ରଦାନ କରାଯାଇଛି । ନୀତି ଦୃଷ୍ଟିରୁ ଓଡିଶୀ ପରମ୍ପରା ମଧ୍ୟରେ ଯାହାକିଛି କରଣୀୟ ସେସବୁର ବର୍ଣ୍ଣନା କରିବା ସଂଗେ ସଂଗେ ଲେଖକ ପ୍ରକାରାନ୍ତରେ ବିଦେଶୀ ସଂସ୍କୃତି ପ୍ରତି ଅନୁରକ୍ତ ନବ୍ୟ ସଭ୍ୟ ଶିକ୍ଷିତ ବ୍ୟକ୍ତିମାନଙ୍କ ପ୍ରତି ଅଙ୍ଗୁଳି ନିକ୍ଷେପକରିଛନ୍ତି । ମହାଦେବ ଓ ଅନ୍ନପୂର୍ଣ୍ଣାଙ୍କ ପାରିବାରିକ ଜୀବନ ଚିତ୍ର ମାଧ୍ୟମରେ ସମ୍ଭ୍ରାନ୍ତ ଓଡିଆ କରଣ ଘରର ମୂଲ୍ୟବୋଧ, ଆତିଥେୟତା, ବୈବାହିକ ବିଧି ବିଧାନ, ଉଦାର ମାନବିକତା ପ୍ରଭୃତିର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ପାଠକକୁ ତତ୍କାଳୀନ ସମାଜ ଜୀବନର ଏକ ସୁସ୍ପଷ୍ଟ ଚିତ୍ର ପ୍ରଦାନ କରିଥାଏ । ଏହି ଉପନ୍ୟାସରେ ନାୟକ ନାୟିକାର ଜୀବନବୋଧ ସହିତ ଅନ୍ୟାନ୍ୟ ବାସ୍ତବ ଉପାଦାନର ପ୍ରାଚୁର୍ଯ୍ୟ ବହୁ ପରିମାଣରେ ଦେଖିବାକୁ ମିଳେ । ବହିଃ ପ୍ରକୃତି ବର୍ଣ୍ଣନାରେ ସଂସ୍କୃତ -କାବ୍ୟ-ନିର୍ଦ୍ଦିଷ୍ଟ ପ୍ରଥା ଅତିକ୍ରମ କରି ଗ୍ରାମ୍ୟ ଜୀବନର ବାସ୍ତବ ଚିତ୍ର ଅଂକିତ । ନାୟିକାର ରୂପବର୍ଣ୍ଣନାରେ ତେଜସ୍ୱୀ, ଆତ୍ମସମ୍ମାନ ବୋଧ, ପରୋପକାରୀ, ହିତୈଷିଣୀ ନୀତିପରାୟଣା ମହିଳାର ଚିତ୍ର ପ୍ରଦାନ କରାଯାଉଛି । ବର୍ଣ୍ଣନାର ଗୁରୁଭାରରେ ଏହା ଭାରାକ୍ରାନ୍ତ 'ଦିନ ଦିନ ଅତିବାହିତ ହୋଇ ସ୍ନେହମୟୀଙ୍କି ତ୍ରୟୋଦଶ ବର୍ଷ ବୟସ ହେଲା । ରତିଦେବୀ ଅଲକ୍ଷିତ ଭାବରେ ସମୁପସ୍ଥିତା ହୋଇ, ସ୍ନେହମୟୀଙ୍କର ସମୁଦାୟ ଅଙ୍ଗ ପ୍ରତ୍ୟଙ୍ଗ ସଜାଇ ଦେଲେ । ମୁଖ ମଣ୍ଡଳର ମାଧୁରୀ ଚତୁର୍ଗୁଣ ହୋଇ ଫୁଟି ପଡିଲା । ଘନକୃଷ୍ଣ ଚିକୁର ଦାମ୍, ଚମରୀପୁଚ୍ଛକୁ ଶତଧିକ୍କାର କରି ଲଳିତାଙ୍ଗୀର ଶିରୋଦେଶ ମଣ୍ଡନ କଲା । ଅନଂଗ ଦେବଂକର ଧନୁକ ଖଣ୍ଡ ଦ୍ୱିଧା ହୋଇ ଭ୍ରୂଭଙ୍ଗିରେ ସ୍ଥାନପ୍ରାପ୍ତ ହେଲା । ଦିବ୍ୟ ସରୋବରର ସଦ୍ୟ ପ୍ରସ୍ଫୁଟିତ ଈଷନ୍ନୀଳ ସରୋରୁହ ରୂପରେ ଚକ୍ଷୁଦ୍ୱୟ ମନୋହରଣ କଲା ଏବଂ ତହିଁରେ ଚୋଳୀରୂପୀ ଭ୍ରମରଦ୍ୱୟ ପରମ ପରିତୃପ୍ତ ଭାବରେ ବସି ଯେଉଁ ପ୍ରେମସଂଗୀତ ଗୁଂଜନ କରୁଥିଲେ ତାହା ଅଚିରେ ଚରାଚରକୁ ସମ୍ମୋହିତ କଲା । ......'' (ଚତୁର୍ଥ ପରିଚ୍ଛେଦ - ଇନ୍ଦ୍ରଧନୁ-ସଂଗ୍ରାହକ-ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ପୃ-୧୭୭) ଏଥିରୁ ଲେଖକଙ୍କ ବର୍ଣ୍ଣନା ବିଳସିତା ଓ କଳା ପାଟବତା ସହଜରେ ଗ୍ରହଣ କରାଯାଇପାରେ । ଉପନ୍ୟାସର ମୁଖ୍ୟ ବିଷୟ ବର୍ଣ୍ଣିତ ହେବା ପୂର୍ବରୁ ଏହା କାଳର କରାଳ ଗର୍ଭରେ ଲୀନ ହେବାରୁ ଏହି ଉପନ୍ୟାସର ଘଟଣା ପ୍ରବାହ ଓ ଚରିତ୍ରାବଳୀ ବିଶେଷତ୍ୱ ସଂପର୍କରେ ବିଶେଷ କିଛି ଉଲ୍ଲେଖ କରିବା ସମ୍ଭବପର ନୁହେଁ ।

ଏତଦ୍‌ବ୍ୟତୀତ 'ଶ୍ରୀ ଦ' ଛଦ୍ମନାମରେ 'ରାଜବୀବୀ' ଶୀର୍ଷକ ଏକ ଖଣ୍ଡିତ ଉପନ୍ୟାସ ଇନ୍ଦ୍ରଧନୁ ଚତୁର୍ଥଭାଗ ୧ମ ସଂଖ୍ୟା ଜାନୁୟାରୀ ୧୮୯୭ ସାଲରେ ପ୍ରକାଶ ପାଇଥିଲା । ଏହି ଛଦ୍ମନାମଧାରୀ ଲେଖକଙ୍କୁ ଆବିଷ୍କାର କରିବା ପାଇଁ ପ୍ରୟାସ କରି ଇନ୍ଦ୍ରଧନୁର କେତେକ ପ୍ରାପ୍ତ ସଂଖ୍ୟାର ପୁନଃ ମୁଦ୍ରଣ ଓ ସଂପାଦନା ଅବସରରେ ଡଃ ସୁଦର୍ଶନ ଆଚାର୍ଯ୍ୟ ତାଙ୍କୁ ଦୈତ୍ୟାରି ଦାସ ବି.ଏଲ୍.ବୋଲି ଚିହ୍ନଟ କରିଛନ୍ତି । ଓଡିଶାରେ ଏହି ସମୟ ବେଳକୁ ଯେଉଁ ଲେଖକମାନେ ଛଦ୍ମନାମରେ ଲେଖାମାନ ପ୍ରକାଶ କରୁଥିଲେ ପରବର୍ତ୍ତୀ କାଳରେ ସେମାନଙ୍କୁ ଚିହ୍ନିବାର ସୁବିଧା ଓ ସୁଯୋଗ ମିଳିଥିଲେହେଁ ଏହା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ନ ଥିଲା । ରାଜବୀବୀର ଚାରୋଟି ପରିଚ୍ଛେଦ ଇନ୍ଦ୍ରଧନୁରେ ଦେଖିବାକୁ ମିଳେ । ପ୍ରତ୍ୟେକ ପରିଚ୍ଛେଦ ଘଟଣାନୁସାରେ

ନାମିତ । ବିଷୟବସ୍ତୁର ପ୍ରତ୍ୟକ୍ଷ ଅବତାରଣା କରାନଯାଇ ପରୋକ୍ଷଭାବେ ବର୍ଣ୍ଣନା ବାହୁଲ୍ୟ ମଧ୍ୟରେ ଘଟଣା ଉପସ୍ଥାପନ ଥିଲା କାଳୋଚିତ ବୈଶିଷ୍ଟ୍ୟ । ଲେଖକ ପ୍ରାକୃତିକ ଦୃଶ୍ୟରାଜିର ବର୍ଣ୍ଣନା କରିବା ସଂଗେ ସଂଗେ ଦୁର୍ଭେଦ୍ୟ ଜଟିଳତାର ଅନିୟମିତ ଅତିପ୍ରାଚୁର୍ଯ୍ୟର  ଚିତ୍ରଣ କରିବାରେ ସିଦ୍ଧହସ୍ତ । ଗ୍ରାମ୍ୟ ଜୀବନର ସରଳ ଅମାୟିକ ଜୀବନବୋଧ ଭିତରେ ଯେଉଁ ସାଂସ୍କୃତିକ ,ଐକ୍ୟ ପରିଲକ୍ଷିତ ହୋଇଥିଲା ସେସବୁକୁ ଉପସ୍ଥାପନା କରିବା ପାଇଁ ଦୃଢ଼ ପରିକର ଥିଲା ଭର୍କମନେହୁଏ । କେବଳ ସେତିକି ନୁହେଁ ଏକ ଜାତି ବର୍ଣ୍ଣ ଧର୍ମହୀନ ସମାଜର ପରିକଳ୍ପନା କରାଯାଇଛି '' ପାଠକେ ! ଘୃଣା କରିବ ନାହିଁ, ସଦେଇ ଜାତିରେ କଣ୍ଡରା । ନାମ ଶୁଣି ହୁଏତ ଅନେକଙ୍କର ହୃତକମ୍ପ ହେବ, ଛାଇ ମାଡିଲେ ନାହି ଡେଇଁବ କିନ୍ତୁ ଆଜିକାଲି ଫିରଙ୍ଗୀ ଅମଳରେ ସମସ୍ତେ ସମସ୍ତଙ୍କ ସହିତ ଅକପଟ ଭାବରେ ମିଶୁ ଅଛନ୍ତି । ସ୍ପର୍ଶ ଅସ୍ପର୍ଶ୍ୟ କିଛି ନାହିଁ;  ଜାତି ପାତର ଭୟ ନାହିଁ, ଖିଆ ଦିଆରେ ମଧ କିଛି ଦୋଷ ହେଉନାହିଁ । ଅନେକ ସ୍ଥଳରେ ଜାତି ଭେଦଟି ଅନେକ ଦିନ ହେଲା ଉଠି ଗଲାଣି । ''(ରାଜଜୀବୀ - ୨ୟ ପରିଚ୍ଛେଦ - ଇନ୍ଦ୍ରଧନୁ - ସଂଗ୍ରାହକ ଡଃ. ସୁଦର୍ଶନ ଆଚାର୍ଯ୍ୟ ପୃ-୨୩୩) ସର୍ବଶେଷରେ ଏହି ଉପନ୍ୟାସର ଭାଷା ଶୈଳୀ ଓ ଉପସ୍ଥାପନ ପ୍ରଣାଳୀ ଅନେକ ପରିମାଣରେ ମାର୍ଜିତ ଥିଲେ ମଧ ପ୍ରାଥମିକ ପର୍ଯ୍ୟାୟରେ ରଚିତ ଉପନ୍ୟାସର ଦୋଷ ଦୁର୍ବଳତାରୁ ସଂପୂର୍ଣ୍ଣ ମୁକ୍ତ ନୁହେଁ । ଅର୍ଥାତ ଲେଖକଙ୍କ ଉପସ୍ଥିତି ଓ ଘଟଣାକ୍ରମେ ଔଚିତ୍ୟ ଅନୌଚିତ୍ୟ ବିଷୟ ପ୍ରତ୍ୟକ୍ଷ ଭାବରେ ଉପସ୍ଥାପନ ଥିଲା ପ୍ରଧାନ ଦୁର୍ବଳତା ।

ଊନବିଂଶ ଶତାବ୍ଦୀରେ ଅନ୍ୟ ଯେଉଁ ଉପନ୍ୟାସ ଗୁଡିକ ବିଭିନ୍ନ ପତ୍ର ପତ୍ରିକାରେ ଆତ୍ମପ୍ରକାଶ କରି ପୂର୍ଣ୍ଣାଙ୍ଗ ପ୍ରାପ୍ତି ପୂର୍ବରୁ ବିଲୟ ଭଜିଥିଲା ସେଗୁଡିକ ମଧ୍ୟରେ ୧୮୮୫ ମସିହାରେ ଶରତଚନ୍ଦ୍ର ମୁଖୋପାଧ୍ୟାୟଙ୍କ ସଂପାଦିତ ଓ କଟକ ପ୍ରିଣ୍ଟିଂ କଂପାନୀ ପକ୍ଷରୁ ମୁଦ୍ରିତ 'ପ୍ରଦୀପ' ପତ୍ରିକାରେ 'ମଠର ସମ୍ବାଦ' ଓ 'ଅନାଥିନୀ' ନାମକ ଦୁଇଟି ଉପନ୍ୟାସ ଶ୍ରୀ ଛଦ୍ମନାମରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସ ଦୁଇଟିର ପ୍ରକୃତ ଲେଖକ କିଏ ସେ ସଂପର୍କରେ ଅବଧାରଣା କରିବା କଷ୍ଟକର । ଏହାର ଶୈଳୀ ପ୍ରତି ଦୃକ୍‌ପାତ କରି କେତେକ ସମାଲୋଚକ ଏହା ଫକୀରମୋହନଙ୍କ ସୃଷ୍ଟି ବୋଲି ସୂଚନା ପ୍ରଦାନ କରିଥିଲେହେଁ ଫକୀରମୋହନ ତାଙ୍କର ସମସ୍ତ ଲେଖାର ଏକ କ୍ରମିକ ସୂଚନା ପ୍ରସଂଗ କ୍ରମେ ଉଲ୍ଲେଖ କରିଥିବାରୁ ଏହା ତାଙ୍କରି ସୃଷ୍ଟି ନୁହେଁ ବୋଲି ସହଜରେ ଗ୍ରହଣ କରାଯାଇପାରେ । ସେ ଯାହା ହେଉନା କାହିଁକି  'ମଠର ସମ୍ବାଦ' ରେ ଓକିଲ ବାବୁ , ଡାକ୍ତର ବାବୁ, ଇଂରାଜୀ ଶିକ୍ଷାପ୍ରାପ୍ତ ଯୁବକ, ଡେପୁଟି ସରକାରୀ କର୍ମଚାରୀ, ସବ୍‌ଜାନତା, ଶିକ୍ଷିତ ଯୁବକ ବାବୁ ପ୍ରଭୃତି ଚରିତ୍ର ଚିତ୍ରିତ ହୋଇଅଛି । ଏଗୁଡିକ ବଂଗଳାର 'ନବବାବୁ ବିଳାସ' ଅନୁକରଣରେ ରଚିତ ହୋଇଥିବାର ସଂଦେହକୁ ସହଜରେ ଏଡାଇ ଦେଇ ହୁଏ ନାହିଁ । 'ମଠର ସମ୍ବାଦ' ଅପେକ୍ଷା 'ଅନାଥିନୀ' ଉପନ୍ୟାସର ପ୍ରକାଶିତ ଅଂଶ ଗୁଡିକ ଅଧିକ ବଳିଷ୍ଠ ଓ କଳାଦୃଷ୍ଟିରୁ ଅଧିକ ସାର୍ଥକ । ଫଳତଃ ଏହି କଳାକୃତି ଦିଓଟିର ଲେଖକ ଯେ ଏକ ବ୍ୟକ୍ତି ତାହା ସ୍ୱତଃ ଶୈଳୀ ଦୃଷ୍ଟିରୁ ସନ୍ଦେହର ବଳୟ ମଧ୍ୟକୁ ଚାଲିଆସେ । 'ଅନାଥିନୀ'  ଏକ ନାୟିକା ପ୍ରଧାନ ଉପନ୍ୟାସ । ଚରିତ୍ରର ପ୍ରଭାବ ଏବଂ ପ୍ରତିଷ୍ଠାକୁ ଭିତ୍ତିଭୂମି ଭାବରେ ଗ୍ରହଣ କରି ଏହି ଉପନ୍ୟାସ ପରିକଳ୍ପିତ । ପାଞ୍ଚୋଟି ପରିଚ୍ଛେଦ ମଧ୍ୟରେ ଏକ ସାଧାରଣ ନିମ୍ନ ବିତ୍ତିୟ ଚାଷୀ କନ୍ୟାକୁ ନେଇ ଏହି ଉପନ୍ୟାସ ବିକାଶଲାଭକରିଛି । ଅନାଥିନୀ ଜୀବନର କରୁଣ କାହାଣୀ, ମାତୃ ସ୍ନେହ ଓ ଯନ୍ତ୍ରଣା ଜର୍ଜରିତ, ଜୀବନର ଦୁଃଖାନୁଭୂତି କଳା ଗୌରବରେ ହୋଇ ଉଠିଛି ମହିମାନ୍ୱିତ । ଉପନ୍ୟାସ ରଚନାର ପ୍ରାକ୍ କାଳରେ ଏତାଦୃଶ ବିସ୍ମୟୋଦ୍ଦୀପକ କାହାଣୀ ଅନାଥିନୀ ଉପନ୍ୟାସକୁ ଏକ ସ୍ୱତନ୍ତ୍ର ସ୍ଥାନ ପ୍ରଦାନ କରେ । ଏହି କଳାକୃତିର ପ୍ରତ୍ୟେକଟି ପରିଚ୍ଛେଦର ଆରମ୍ଭ, ଅଭିବୃଦ୍ଧି ଓ ପରିସମାପ୍ତି ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ । ଏହା ଏକ ଅସଂପୂର୍ଣ୍ଣ ଉପନ୍ୟାସ ହେଲେହେଁ ଓଡିଆ ଉପନ୍ୟାସର ବିକାଶ କ୍ରମରେ ଏହା ଏକ ମାଇଲ ସ୍ତମ୍ଭ ଏଥିରେ ସଂଦେହ ନାହିଁ । ଅନ୍ୟାନ୍ୟ ଉପନ୍ୟାସ ସଦୃଶ ଏହାର ବର୍ଣ୍ଣନା କ୍ଲିଷ୍ଟ ନହୋଇ

ଅପେକ୍ଷାକୃତ ଅଧିକ ପରିମାଣରେ ସହଜ, ହୃଦ୍ୟ ଓ ଗ୍ରାହ୍ୟ ଭଳି ପ୍ରତୀୟମାନ ହୁଏ । ''ଅନାଥିନୀ ଯେ ରୂପ ଘରେ ଜନ୍ମ ଗ୍ରହଣ କରିଅଛନ୍ତି ରୂପ ଏବଂ ଗଠନ ସୌନ୍ଦର୍ଯ୍ୟ ତଦ୍ରୂପ ସାମାନ୍ୟ ଅଟଇ । କ୍ଷୀର ସମୁଦ୍ର ମନ୍ଥନୋଦ୍ଭୂତା ଲକ୍ଷ୍ମୀ ତିଳୋତ୍ତମା ସଦୃଶ ଦେବ ଦୁର୍ଲଭ ସୌନ୍ଦର୍ଯ୍ୟ ଲାଭ କରିନାହାନ୍ତି, ଅର୍ଥାତ୍ ଆପଣମାନେ ସାଧାରଣରେ ଯେ ରୂପ ଦେଖିଥାନ୍ତି ସେହିପରି, ତଥାପି ଅସୁନ୍ଦରୀ ବା କୁରୂପା ନୁହନ୍ତି । ଅନାଥିନୀ ଲାବଣ୍ୟମୟୀ, ତାଙ୍କର ମୁଖମଣ୍ଡଳରେ ଚମତ୍କାର ଲାବଣ୍ୟ ବିଦ୍ୟମାନ, ସର୍ବାଂଶ ସୁଠାମ ଏବଂ ସୁଷମ, ପୁଣି ଚକ୍ଷୁ ଯୋଡିକ ସେହି ପୁରାଣ କଥିତ ହରିଣାକ୍ଷିର ଅନୁରୂପ । ସୁତରାଂ ସାଧାରଣ ପ୍ରକାର ସୌନ୍ଦର୍ଯ୍ୟ ବିଦ୍ୟମାନ ଥିଲେ ହେଁ ଲାବଣ୍ୟମୟୀ ଅନାଥିନୀ ହରିଣାକ୍ଷି ହୋଇ ଲୋକରେ ଦିବ୍ୟସୁନ୍ଦରୀ ବୋଲି ବନ୍ଦି ଅଟନ୍ତି । '' (ନଟବର ସାମନ୍ତରାୟ - ଓଡିଆ ...ିତ୍ୟର ଇତିହାସ ୧ମ ସଂ ପୃ-୫୧୫ ଉଦ୍ଧୃତିରୁ ଉଦ୍ଧୃତ) ।

ଊନବିଂଶ ଶତାବ୍ଦୀରେ ପ୍ରକାଶିତ ପ୍ରଥମ ପୂର୍ଣ୍ଣାଙ୍ଗ ଓଡିଆ ଉପନ୍ୟାସ ''ପଦ୍ମମାଳୀ'' ପ୍ରକାଶ ଲାଭ କରିଥିଲା ୧୮୮୮ ମସିହାରେ । ଏହାର ତିନିବର୍ଷ ପରେ ରାମଶଂକର ରାୟଙ୍କ ବହୁ ପଠିତ ଏବଂ କଲିକତା ଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବିଦ୍ୟାଳୟାଦିରେ ପାଠ୍ୟପୁସ୍ତକ ରୂପେ ଗୃହୀତ ଉପନ୍ୟାସ 'ବିବାସିନୀ' ପ୍ରକାଶ ଲାଭ କରିଛି ୧୮୯୧ ମସିହାରେ । ଏହି ଦିଓଟି କଳାକୃତି ବ୍ୟତୀତ ୧୮୯୮ ମସିହାରେ ଫକୀରମୋହନ ସେନାପତିଙ୍କର ପ୍ରଥମ ଉପନ୍ୟାସ 'ଛମାଣ ଆଠଗୁଣ୍ଠ' ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ ଲାଭ କରିଥିଲା । କଳା କୁଶଳତା ଦିଗରୁ ଏହାର ସ୍ଥାନ ଥିଲା ସ୍ୱତନ୍ତ୍ର । ଭାଷା, ରଚନାଶୈଳୀ, ଚରିତ୍ର ସୃଷ୍ଟି ଆଭିମୁଖ୍ୟ ଓ ବାସ୍ତବତା ଦିଗରୁ ଛମାଣ ଆଠଗୁଣ୍ଠ ଥିଲା ସଂପୂର୍ଣ୍ଣ ଭିନ୍ନ । ପ୍ରଥମୋକ୍ତ ଉପନ୍ୟାସ ଦିଓଟିର କଥାବସ୍ତୁ, ରଚନାଭଂଗୀ, ଭାଷା, ସଂଳାପ, ବର୍ଣ୍ଣନାକୌଶଳ ଓ ଜୀବନପ୍ରତି ଦୃଷ୍ଟିଭଂଗୀ ଥିଲା ସମଧର୍ମା । ଫଳତଃ ଏକାଦିକ୍ରମେ ଏହି ଶତାବ୍ଦୀରେ ପ୍ରକାଶଲାଭ କରିଥିବା ତିନୋଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ମଧ୍ୟରୁ ପ୍ରଥମ ଦିଓଟିକୁ ଗୋଟିଏ ପର୍ଯ୍ୟାୟରେ ଆଲୋଚନା କରାଯାଇଛି ଏବଂ ଛମାଣ ଆଠଗୁଣ୍ଠ ଉପନ୍ୟାସକୁ ଭିନ୍ନ ଭାବରେ ଉପସ୍ଥାପନ କରାଯାଇଛି ।

ଓଡିଆ ଉପନ୍ୟାସ ସାହିତ୍ୟରେ ପ୍ରଥମେ ପ୍ରକାଶ ଲାଭ କରିଥିବା ଏହି ପୂର୍ଣ୍ଣାଙ୍ଗ ଉପନ୍ୟାସ ଦ୍ୱୟ ଓଡିଆ ଗଦ୍ୟ ସାହିତ୍ୟର ଏକ କ୍ରମବର୍ଦ୍ଧିଷ୍ଣୁ ସାହିତ୍ୟିକ ରୂପ ଭାବରେ ପ୍ରକାଶିତ ନ ହୋଇ ଊନବିଂଶ ଶତାବ୍ଦୀରେ ପ୍ରକାଶ ପାଇଥିବା ବଂଗବାସୀଙ୍କ ହୀନ ଚକ୍ରାନ୍ତକୁ ପ୍ରତିହତ କରିବାର ବାସନା ଓ ଏକ ନୂତନ ସାହିତ୍ୟ ସୃଷ୍ଟି କରି ଓଡିଆ ଭାଷାକୁ ସମଧିକ ଗୌରବାନ୍ୱିତ କରିବାର ସଯତ୍ନ ପ୍ରୟାସ ଥିଲା ଲେଖକମାନଙ୍କରଐକାନ୍ତିକ ଅଭିଳାଷ । ୧୮୭୫ ଖ୍ରୀଷ୍ଟାବ୍ଦରେ ନୀଳଗିରି ରାଜ୍ୟର କର୍ମଚାରୀମାନଙ୍କ ଦ୍ୱାରା ପାଞ୍ଚଗଡ ଆକ୍ରମଣ ଓ ହରିହର ଭ୍ରମରବର ବାବୁଙ୍କ ଦ୍ୱାରା ନୀଳଗିରି ଆକ୍ରମଣ ଐତିହାସିକ ଘଟଣା ଦୁଇଟିକୁ କେନ୍ଦ୍ରକରି ପଦ୍ମମାଳୀ ଉପନ୍ୟାସ ପରିକଳ୍ପନା କରାଯାଇଥିଲାବେଳେ ମରହଟା ଶାସନର ଅସଫଳତା ଓ ଅତ୍ୟାଚାରର ପୃଷ୍ଠଭୂମିଉପରେ ବିବାସିନୀ ପ୍ରତିଷ୍ଠିତ । ଏହି କଳାକୃତିରେ ଐତିହାସିକ ଘଟଣାକୁ ସରସ ଓ ପ୍ରାଣବନ୍ତ କରିବାର ଲେଖକଙ୍କ ସଯତ୍ନ ପ୍ରୟାସ ଅଭିନନ୍ଦନୀୟ । ''ଏ ସକଳ ବର୍ଣ୍ଣନାରେ ଏକପକ୍ଷରେ ଯେପରି ଇତିହାସର ଏକବର୍ଣ୍ଣର ଅପଳାପ କରିନାହୁଁ ଅନ୍ୟପକ୍ଷରେ ପାଠକ ମାନଙ୍କର ଚିତ୍ତରଂଜନ କରିବାକୁ ସମଧିକ ଯତ୍ନବାନ ହୋଇଅଛୁଁ । ଉମେଶଚନ୍ଦ୍ରଙ୍କ ଏହି ଦମ୍ଭୋକ୍ତି ବିବାସିନୀ ପ୍ରତି ମଧ ପ୍ରଯୁଜ୍ୟ । ଓଡିଶା ଇତିହାସରେ ଏହା ଏକ ଉଲ୍ଲେଖନୀୟ ସ୍ମରଣୀୟ ଘଟଣା ନ ହେଲେହେଁ ଗଡଜାତ ଅଂଚଳରେ ପ୍ରକାଶ ପାଇଥିବା ନାରୀଧର୍ଷଣ, ଅରାଜକତା, ଶାସନଗତ ବିଶୃଙ୍ଖଳା ଓ ବିଦ୍ରୋହାଦିର ଚିତ୍ର ଉପସ୍ଥାପନା କରିବା ହେଉଛି ଲେଖକଙ୍କ ଅଭିବ୍ୟକ୍ତି ।

ସମାଜ ତଥା ଜୀବନ ଉପନ୍ୟାସକାରଙ୍କୁ ଯେଉଁ ଅନୁଭୂତି ଓ ଅଭିଜ୍ଞତା ଯୋଗାଇଥାଏ ମୁଖ୍ୟତଃ ତାହା ପ୍ରକାଶ ପାଏ କଳାକୃତି ଗୁଡିକରେ । ଉପନ୍ୟାସର ପଟ୍ଟଭୂମି ବ୍ୟାପକ ଓ ସୁବିସ୍ତୀର୍ଣ୍ଣ ହୋଇଥିବାରୁ ପ୍ରାଥମିକସ୍ତରରେ ଲେଖକମାନେ ଇତିହାସର ପୃଷ୍ଠପଟ୍ଟ ଉପରେ ସମାଜ ବ୍ୟବସ୍ଥାକୁ ଉପଲବ୍ଧି କରି ତାହାକୁ ଚିତ୍ରଣ କରିବାର ପ୍ରଚେଷ୍ଟା କରିଛନ୍ତି । ଅତୀତର ଆଲୋକରେ ବର୍ତ୍ତମାନକୁ ଦେଖିଛନ୍ତି । ଅତୀତରୁ ପ୍ରେରଣା ସଂଗ୍ରହ କରି ବର୍ତ୍ତମାନ ସମାଜରେ ଘଟୁଥିବା ଦେଶୀୟ ଚୌଧୁରୀ ମାନଙ୍କ ଦେଶଦ୍ରୋହିତା ବିଶ୍ୱାସଘାତକତା, ଘୃଣା, ପ୍ରତିହିଂସା ଓ ସମବେଦନା ଆଦିକୁ ଉପନ୍ୟାସରେ ରୂପାୟିତ କରାଯାଇଛି । ପଦ୍ମମାଳୀ ଓ ବିବାସିନୀ ଉପନ୍ୟାସରୁ ଦୀର୍ଘ ଏକ ଶତାବ୍ଦୀ ପୂର୍ବର ଜୀବନଚିତ୍ର ଉପଲବ୍ଧ ହୁଏ - ରାଜା, ରାଣୀ, ରାଜ ଅନ୍ତଃପୁର, କ୍ଷମତାମର ରାଜକର୍ମଚାରୀଙ୍କର ଅହମିକା, ରାଜନୀତି ବିଶାରଦ, କୂଟକୌଶଳୀ ବା ଧୂର୍ତ୍ତ, ଦୃପ୍ତ କ୍ଷାତ୍ର ତେଜୋଦ୍ଦୀପ୍ତ ତରୁଣ ପ୍ରେମପ୍ରବଣ ରାଜପୁତ୍ର, ଉଚ୍ଚାଭିଳାଷଗର୍ବିତା ଦାମ୍ଭିକା ବା ଆଦର୍ଶ ପତ୍ନୀ ରାଜମହିଷୀ, ପ୍ରେମ ସ୍ୱପ୍ନ ବିଭୋର କୋମଳ ହୃଦୟ ରାଜକନ୍ୟା ଏବଂ କବିରାଜ ମାନଙ୍କ ଅପରିଣାମ ଦର୍ଶିତା, ନୂତନ ଡାକ୍ତରୀ ଚିକିତ୍ସା ପ୍ରତି ବିରାଗ, ପାଇକ ସଂଗ୍ରହ ପ୍ରଥା, ସାଙ୍କେତିକଧ୍ୱନି ମାଧ୍ୟମରେ ସମ୍ବାଦ ପ୍ରେରଣ, ସମର ସଜ୍ଜା କୌଶଳ, ମରହଟ୍ଟା ସୁବେଦାରମାନଙ୍କ ଅପଶାସନ ଓ ଅରାଜକତା ଫଳରେ ବର୍ଗୀମାନଙ୍କର ଲୁଣ୍ଠନ ପ୍ରଭୃତି ଓଡିଶାର ଗଣଜୀବନରେ ଅନୁଭୂତ ହେଉଥିବା ବହୁ ଚିତ୍ର ଦେଖିବାକୁ ମିଳେ । ଅପରପକ୍ଷରେ ଗଡଜାତ ରାଜାମାନଙ୍କର ପ୍ରଜାପୀଡନ ମନୋଭାବ ଏବଂ ସୁରା ସାକୀର ପ୍ରମତ୍ତତାରେ ନିମଜ୍ଜିତ ଏହି ରାଜନ୍ୟବର୍ଗଙ୍କ ଖାମଖେଆଲୀ ମନୋବୃତ୍ତିର ଏକ ସୁନ୍ଦର ଆଲେଖ୍ୟ ଅଙ୍କନ କରାଯାଇଛି ପଦ୍ମମାଳୀ ଓ ବିବାସିନୀ ଉପନ୍ୟାସରେ । ଓଡିଶାର ଗଣଜୀବନରେ ପ୍ରକାଶ ପାଇଥିବା ଅନ୍ଧବିଶ୍ୱାସବୋଧ ଜାତୀୟ ଉନ୍ନତିର ଥିଲା ପ୍ରଧାନ ପ୍ରତିବନ୍ଧକ । ଫଳତଃ ସାହିତ୍ୟ ଓ ସଂସ୍କୃତିର ଉନ୍ନତି ଆଦୌ ପରିଲକ୍ଷିତ ହୋଇନଥିଲା ଏବଂ ଶାସକ ମାନଙ୍କର ପ୍ରତ୍ୟକ୍ଷ ସଂପର୍କ ଲାଭ କରିବା ଏ ଜାତି ପାଇଁ ଥିଲା ଏକ ବିଡମ୍ବନା । ଏହି ସମୟବେଳକୁ ଓଡିଶାରେ ଇଂରାଜୀ ଶିକ୍ଷାର ପ୍ରସାର ଓ ପ୍ରଚଳନ ଫଳରେ ଲୋକମାନଙ୍କର ଧର୍ମ ଧାରଣା ଭିନ୍ନ ରୂପ ଧାରଣ କରିଥିଲା । ଲେଖକ କେବଳ ଜାତିର ଉନ୍ନତିକୁ ଦୃଷ୍ଟି ସମ୍ମୁଖରେ ରଖିଥିବା ହେତୁ ଏହି ବିଶ୍ୱାସବୋଧ ଆମ ଜାତୀୟ ଜୀବନର କିଭଳି କ୍ଷୟକ୍ଷତି ସାଧନ କରିଥିଲା ତାହାର ସୂଚନା ପ୍ରଦାନ କରିଛନ୍ତି । କୋଇଲି , ଗୋପୀଭାଷା, ରାହାସ, ଭାଗବତ ଅମର କାବ୍ୟ ନାଟକ ପ୍ରଭୃତି ଅଧ୍ୟୟନ କରିଥିବା ପଦ୍ମମାଳୀ ରୋଗାକ୍ରାନ୍ତ ହେଲାପରେ 'ଗୋ ଶୂକର ଖାଦକ ମ୍ଲେଚ୍ଛ ସାହେବ ଚର୍ମ ପାଦୁକା ସହିତ ଗୃହସ୍ଥର ପବିତ୍ର ଅନ୍ତଃପୁର ମଧ୍ୟରେ ପ୍ରବେଶ କରି କୁଳ କନ୍ୟାକୁ ତାହାର ବିଲାତି ଚକ୍ଷୁରେ ଦେଖି ମଦ୍ୟ ମାଂସର ବ୍ୟବସ୍ଥା ଦେବ ' ଏହା ଅନୁମୋଦନ ସାପେକ୍ଷ ନୁହେଁ । ଉମେଶଚନ୍ଦ୍ର ଏହି କୁସଂସ୍କାରାଚ୍ଛନ୍ନ ମନୋଭାବ ପରିହାର କରି ଓଡିଶାକୁ ଉନ୍ନତି ପଥରେ ଆଗେଇ ନେବାର ପରିକଳ୍ପନା କରିଥିଲେହେଁ ରାମଶଂକର ପ୍ରାଚୀନ ହିନ୍ଦୁ ଧର୍ମ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରାଇଛନ୍ତି । ହିନ୍ଦୁ ଧର୍ମ ପ୍ରତି ଲୋକ ମାନଙ୍କର ବିମୁଖତା ଓ ପୂଜା ପାର୍ବଣରେ ଏକ ଅହେତୁକ ବିରାଗ ଭାବ ନବ୍ୟ ଶିକ୍ଷିତ ବ୍ୟକ୍ତି ମାନଙ୍କର ଥିଲା ଏକ ସଉକ । ଲେଖକ ଏହାର ପ୍ରତିରୋଧ କରି ପରୋକ୍ଷ ଭାବରେ ବିଦ୍ରୁପ ବାଣୀ ପ୍ରକାଶ କରିଛନ୍ତି । (ଗ୍ରନ୍ଥାବଳୀ ପୃ-୩୪୭ ଦ୍ରଷ୍ଟବ୍ୟ) । ସାମଗ୍ରିକ ଭାବରେ ଇତିହାସ ମଧ୍ୟରୁ ଉଚ୍ଛ୍ୱସିତ ଆମୋଦଗଂ କାରି ଦେଶାନୁରାଗ, ଦୁର୍ଦ୍ଧର୍ଷ, ଅନମନୀୟ ଦୃଢ଼ ସଂକଳ୍ପ, ମୃତ୍ୟୁ ସ୍ପର୍ଶୀ ପ୍ରେମ ଓ ଦୁଃସାହସିକ ବିସ୍ମୟକର ସ୍ଫୁରଣ ପ୍ରଭୃତି ଜୀବନର ଅସାଧାରଣ ଦିଗ ଗୁଡିକ ସୂଚାଇବା ପାଇଁ ଲେଖକ ଏହି କଳା କୃତିର ଆଶ୍ରୟ ଗ୍ରହଣ କରିଛନ୍ତି । ଇଂରେଜୀ ତଥା ସ୍ୱୀୟ ମାତୃଭାଷା ବଂଗଳାରେ ଐତିହାସିକ ଉପନ୍ୟାସମାନ ରଚିତ ହୋଇଥିବାରୁ ଉମେଶଚନ୍ଦ୍ର ଓ ରାମଶଂକର ସମ୍ଭବତଃ ଏତାଦୃଶ ଉପନ୍ୟାସ ରଚନାର ପ୍ରଚୋଦନା ବଂଗଳାରୁ ଲାଭ କରିଥିଲେ ହେଁ ଓଡିଆଗଣଜୀବନର ପ୍ରକୃତଚିତ୍ର ପସ୍ତୁତେ କରିବାର ପ୍ରବଳ ବାସନା ପୋଷଣ କରିଛନ୍ତି ।

ପଦ୍ମମାଳୀ ଉପନ୍ୟାସର ଘଟଣା ପ୍ରବାହ ମଧ୍ୟରେ ପ୍ରେମପୂର୍ଣ୍ଣ ପୁଲକ ଓ ଆବେଗରେ ଏକ ସାମାଜିକ ଚିତ୍ର ପ୍ରଦାନ କରାଯାଇଛି । ଧୂର୍ତ୍ତ କାମାନ୍ଧ ଯୁବକର କାମ ପିପାସା ଚରିତାର୍ଥ କରିବାର ବାସନା ଓ ଏହାକୁ ପ୍ରତିହତ କରି ବୀର କ୍ଷାତ୍ରୋଚିତ ଚରିତ୍ରବାନ୍ ବ୍ୟକ୍ତିର ଅପହୃତା ନାୟିକାର ପାଣିଗ୍ରହଣ ଉପନ୍ୟାସର ମୁଖ୍ୟ ବିଷୟ । ଏହା ସଂଘଟିତ ହୋଇଛି ଓଡ଼ିଶାର ଗଣଜୀବନରେ ଏକ ଅନାସକ୍ତ ମୋହ ସୃଷ୍ଟି କରିଥିବା ଜାଗର ଯାତ୍ରାରୁ ଏବଂ ମଠର ଶୁଦ୍ଧ ପୂତ ପରିବେଶ ମଧ୍ୟରେ ଏହାର ବିକାଶ ଓ ପରିଣତି । ଏହି ଘଟଣା ପ୍ରବାହ ମଧ୍ୟରେ ନାୟକ ନାୟିକାଙ୍କ ପ୍ରେମ, ବିରହବେଦନା, ସଖୀ ନିକଟରେ ପ୍ରେମଜନିତ ପୁଲକର ପରିପ୍ରକାଶ ପ୍ରଭୃତି ଘଟଣାବଳୀର ବର୍ଣ୍ଣନା ପ୍ରଣୟପ୍ରଧାନ କାବ୍ୟରୀତିର ଅନୁକୃତି କହିଲେ ଅତ୍ୟୁକ୍ତି ହେବନାହିଁ । ରାମଶଙ୍କର ତତ୍କାଳୀନ ସମାଜରେ ପ୍ରତିନିୟତ ଘଟୁଥିବା ପ୍ରେମ, ସମ୍ବେଦନା, ବାତ୍ସଲ୍ୟ, ସୌହାର୍ଦ୍ଦ୍ୟ, ଘୃଣା, ପ୍ରତିହିଂସା, ବିଶ୍ୱାସଘାତକତା ଓ ମୃତ୍ୟୁ ପ୍ରଭୃତି ବିଭିନ୍ନ ବିଭାବର ଚିତ୍ର ମାଧ୍ୟମରେ ମାନବ ଜୀବନର ଉଦ୍ଦେଶ୍ୟ ଓ ମୂଲ୍ୟବୋଧ ପ୍ରତିଷ୍ଠା କରିବା ପାଇଁ ପ୍ରୟାସ କରିଛନ୍ତି । ଏତଦ୍‌ବ୍ୟତୀତ ଲୋକଶିକ୍ଷାକୁ ପ୍ରଧାନ ଧର୍ମ ରୂପେ ଗ୍ରହଣ କରି ଔପନ୍ୟାସିକଦ୍ୱୟ ସର୍ବତ୍ର ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ ଚିତ୍ର ପ୍ରଦାନ କରିବା ପାଇଁ ପ୍ରୟାସୀ । ଧର୍ମର ଭୟ ମନ ମଧ୍ୟରେ ସୃଷ୍ଟି କରିଛି ଏକ ଅହେତୁକ ଦ୍ୱନ୍ଦ୍ୱ । ସମ୍ଭବତଃ ଏଥିପାଇଁ ପଦ୍ମମାଳୀ ଉପନ୍ୟାସରେ ମଠର ମହନ୍ତ ରାମାନୁଜ ଦାସ ଓ ବିବାସିନୀ ଉପନ୍ୟାସରେ ହନୁମାନ ଦାସ, ଗିରିଧାରୀ ଦାସ ବାବାଜୀ ଦ୍ୱୟ ଅଳ୍ପସମୟ ପାଇଁ ଆତ୍ମପ୍ରକାଶ କରି ଏକ ଉନ୍ନତ ମାନବିକତାର ପରିଚୟ ପ୍ରଦାନ କରିଛନ୍ତି । ସ୍ଥୂଳତଃ ନୈତିକତା, ସଂଯମ ଓ ମାନବିକତା ଭିତ୍ତିରେ ଏକ କର୍ମପ୍ରବଣ ଆଦର୍ଶ ଆଧ୍ୟାତ୍ମିକ ଜୀବନର ଚିତ୍ର ଅଂକନ ଥିଲା ଲେଖକମାନଙ୍କର ଉଦ୍ଦେଶ୍ୟ ।

ଉପନ୍ୟାସ ସୃଷ୍ଟିର ପ୍ରାକ୍‌କାଳରେ ଓଡ଼ିଆରେ ଖଣ୍ଡେ ଦୁଇଖଣ୍ଡ ଐତିହାସିକ ଉପନ୍ୟାସ ରଚନାକରିବାର ବାସନା ପ୍ରବଳ ଭାବେ ପ୍ରକାଶ ପାଇଥିଲା ଏହା ପୂର୍ବେ ସୂଚିତ । ରାମଶଂକର ଓ ଉମେଶ ଚନ୍ଦ୍ର ଏହି ଚେତନାର ବଶବର୍ତ୍ତୀ ହୋଇ ଐତିହାସିକ ଉପନ୍ୟାସ ରଚନାରେ ମନୋନିବେଶ କରିଛନ୍ତି । ଉପନ୍ୟାସରେ ଇତିହାସର ନାମ, ତାରିଖ ଅଥବା ଘଟଣାକ୍ରମ କେବଳ ଉଲ୍ଲେଖ କରାଗଲେ ଉପନ୍ୟାସ ଐତିହାସିକ ହୁଏନାହିଁ; ଉପନ୍ୟାସରେ ଏପରି ସମୟର ଇତିହାସ ଅବଲମ୍ବିତ ହେବା ଉଚିତ, ଯେଉଁ ସମୟରେ ଲେଖକ ଜୀବିତ ନଥିଲେ ମାତ୍ର ଲେଖା ଗୁଣରେ ସେ ସେହି ଅତୀତ ଯୁଗକୁ ସ୍ପଷ୍ଟ ଭାବେ ରୂପାୟିତ କରିଥାନ୍ତି । ଐତିହାସିକ ଉପନ୍ୟାସର ସଂଗଠନ କାଳ କୌଣସି ଅତୀତ ଯୁଗ ଯାହା ନିକଟ କିମ୍ବା ଦୂର ଏବଂ ଯାହା ସମ୍ବନ୍ଧରେ ଆମର ଜ୍ଞାନ ପୁରାତତ୍ତ୍ୱର ବିଷୟୀଭୂତ ତଥା ସ୍ମୃତି କଳ୍ପନାରେ ମିଶ୍ରିତ ଅସ୍ପଷ୍ଟ ଓ ଧୂସର । ଐତିହାସିକ ଘଟଣା ପ୍ରବାହ ସହିତ ବ୍ୟକ୍ତିଗତ ବା ପାରିବାରିକ ଜୀବନର ସମ୍ମିଶ୍ରଣହିଁ ଏହାର ପ୍ରଧାନ ଉପାଦାନ । ଇତିହାସର ବେଗବାନ ତରଂଗ ବ୍ୟକ୍ତି ଜୀବନରେ କିପରି ତୀବ୍ର ବିକ୍ଷୋଭ ଓ ବିପର୍ଯ୍ୟୟ ସୃଷ୍ଟି କରେ ଏବଂ କ୍ଷୁଦ୍ର ପାରିବାରିକ ସମସ୍ୟା ଇତିହାସର ସଂସ୍ପର୍ଶ ଲାଭ କରି କିପରି ବିସ୍ତୃତ ଓ ଜଟିଳତା ସୃଷ୍ଟିକରେ ମୁଖ୍ୟତଃ ତାହାହିଁ ଐତିହାସିକ ଉପନ୍ୟାସର ଆଭିମୁଖ୍ୟ । ବର୍ଣ୍ଣିତ ଆଖ୍ୟାୟିକା ମଧ୍ୟରେ ତତ୍କାଳୀନ ସମୟରେ ବିଶେଷ ସତ୍ତା ଓ ପ୍ରାଣ ସ୍ପନ୍ଦନ, ତାହାର ଆଦର୍ଶ, ଚିନ୍ତାଧାରା ଓ କର୍ମପ୍ରଣାଳୀର ରୂପବୈଶିଷ୍ଟ୍ୟ ଐତିହାସିକ ଉପନ୍ୟାସ ମୁକୁରରେ ପ୍ରତିଫଳିତ ହୋଇଥାଏ । ଚରିତ୍ରାଭିବ୍ୟକ୍ତି ଅପେକ୍ଷା ଘଟଣାର ରୋମାଞ୍ଚକର ଅସାଧାରଣତ୍ୱ ବିଶେଷ ଭାବରେ ଅଭିବ୍ୟଞ୍ଜିତ ହୋଇଥାଏ ।

ଓଡ଼ିଶାର ଏକ ଘଡ଼ି ସନ୍ଧି ମୁହୂର୍ତ୍ତରେ ଐତିହାସିକ ଉପନ୍ୟାସର ଜନ୍ମ ଏହା ପୂର୍ବେ ବର୍ଣ୍ଣିତ । ପାଶ୍ଚାତ୍ୟର ଶିକ୍ଷା ସଭ୍ୟତା, ଶାସନ ବ୍ୟବସ୍ଥା ଓ ଚଳଣି ପ୍ରଭୃତିର ସଂସ୍ପର୍ଶରେ ଆସିବା ଦ୍ୱାରା ଚିରାଚରିତ

ପାରଂପରିକ ଜୀବନ ପ୍ରଣାଳୀରେ ଯେଉଁ ପରିବର୍ତ୍ତନ ଦେଖା ଦେଇଥିଲା ଓ ଗତାନୁଗତିକ ଜୀବନ ପ୍ରଣାଳୀରେ ଯେଉଁ ସଂଘର୍ଷର ସୂତ୍ରପାତ ହୋଇଥିଲା ତାହାର ପ୍ରତିଫଳନ ଉପନ୍ୟାସ ଗୁଡ଼ିକରେ ପଡ଼ିବା ସ୍ୱାଭାବିକ ଲେଖକ ସ୍ୱୀୟ ଦିବ୍ୟ ଦୃଷ୍ଟି ବଳରେ ସମାଜ ଜୀବନରେ ଅନୁଭୂତ କୁ ଓ ସୁ ସଂପର୍କରେ ସଚେତନ ରହି ନୈତିକତା ଓ ଆଦର୍ଶର ମୂଲ୍ୟବୋଧ ପ୍ରତିଷ୍ଠା କରିବା ପାଇଁ ପ୍ରୟାସୀ । ଇଂରେଜ ଶାସନକାଳରେ ସମାଜ, ଶିକ୍ଷା, ସଂସ୍କୃତି, ସାହିତ୍ୟ ଓ ଜୀବନଯାପନପ୍ରଣାଳୀରେ ଯେଉଁ ନୈତିକ ଅସ୍ୱସ୍ତି ଜାତୀୟ ଦୈନ୍ୟ, ରୁଚି ହୀନତା ଏବଂ ଜୀବନରେ ସଂଯମର ଅଭାବବୋଧ ପରିଲକ୍ଷିତ ହୋଇଥିଲା, ସେ ସବୁର ପୁଷ୍କଳ ପ୍ରକାଶ ଘଟିଛି ଉପନ୍ୟାସଗୁଡ଼ିକରେ । ଅତୀତର ସାମାଜିକ ଚଳଣି ଓ ଧର୍ମଯାଜକ ମାନଙ୍କର ଜୀବନ ପ୍ରତି ଅନୁଜ୍ଞା ସର୍ବଦା ଗ୍ରହଣୀୟ ନୁହେଁ ଫଳତଃ ଜାତୀୟ ଜୀବନର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବ୍ୟକ୍ତି ଚିତ୍ତରେ ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା ହେଉଛି ଔପନ୍ୟାସିକଙ୍କ ଲକ୍ଷ୍ୟ ।

ଫକୀରମୋହନଙ୍କ ଛମାଣ ଆଠଗୁଣ୍ଠ ଉପନ୍ୟାସ ଓଡିଆରେ ପ୍ରକାଶିତ ଅସଂପୂର୍ଣ୍ଣ ଓ ସଂପୂର୍ଣ୍ଣ ଉପନ୍ୟାସର ବଳିଷ୍ଠ ପରଂପରା ଉପରେ ପ୍ରତିଷ୍ଠିତ କିନ୍ତୁ ଏଥିରେ ବିବାସିନୀର ରଚନାରୀତି ଅଥବା ପଦ୍ମମାଳୀର ଆଖ୍ୟାନ ଭାଗର କୌତୂହଳୋଦ୍ଦୀପକତା ଆଦୌ ପରିଲକ୍ଷିତ ହୁଏ ନାହିଁ - ଏହା ଏକ ସାର୍ଥକ କଳାତ୍ମକ ଅଭିବ୍ୟକ୍ତି । ଏହା ଓଡିଆ ଉପନ୍ୟାସ ସାହିତ୍ୟର ମାଇଲଷ୍ଟମ୍ଭ । ତତ୍କାଳୀନ ସାମାଜିକ ସ୍ଥିତି ଓ ପ୍ରଚଳିତ ବିଧି ବ୍ୟବସ୍ଥାର କଳାତ୍ମକ ଅଭିବ୍ୟକ୍ତି ହେଉଛି ଫକୀର ମୋହନଙ୍କ ଛମାଣ ଆଠଗୁଣ୍ଠ । ଓଡିଶାର ଗଣଜୀବନ ଯେତେବେଳେ କୁସଂସ୍କାର ଭ୍ରଷ୍ଟ, ଜରାଜୀର୍ଣ୍ଣ, ଧର୍ମାନ୍ଧତା ଓ ପ୍ରବଞ୍ଚନାର ନିଗଡ ବନ୍ଧନରେ ପେଷି ହୋଇଯାଇଛି; ସାମାଜିକ ଜୀବନଧାରାରୁ ଦୀପ୍ତୀମୟ ଆଲୋକ ଲିଭିଯାଇଛି ; ଦୁଃଖ, ଯନ୍ତ୍ରଣା, ଅନୁଶୋଚନା ମଧ୍ୟରେ ବ୍ୟକ୍ତିର ଅନ୍ତରାତ୍ମା ବିଳପି ଉଠିଛି ସେତିକିବେଳେ ଫକୀରମୋହନ ଏ ଉପନ୍ୟାସ ସୃଷ୍ଟିରେ ମନୋନିବେଶ କରିଛନ୍ତି । କେନ୍ଦ୍ରାପଡାର ଜମିଦାର କୌଣସି ଏକ ତନ୍ତୀ ପରିବାରଠାରୁ କଚେରୀ କରିବା ଉଦ୍ଦେଶ୍ୟରେ ବୈଧ ବା ଅବୈଧ ଉପାୟରେ ଗ୍ରହଣ କରିଥିବା ଛମାଣ ଆଠଗୁଣ୍ଠ ଜମି ମର୍ମରୋଚକ ଭାବରେ ସୃଷ୍ଟି କରିଛି ଉପନ୍ୟାସ ରୂପ । ଏହା ଥିଲା ଅତ୍ୟନ୍ତ ହୃଦୟସ୍ପର୍ଶୀ । ସେଥିପାଇଁ ଲେଖକଙ୍କ ନିଜ ଭାଷାରେ ମୋର ଏହି ଗଳ୍ପ ଉପନ୍ୟାସମାନ ପଢ଼ି ପାଠକମାନେ ବିଶେଷ ପ୍ରୀତ ହୋଇଥିଲେ ଛମାଣ ଆଠଗୁଣ୍ଠକୁ ସେମାନେ ବଶେଷ ଆଗ୍ରହର ସହିତ ପଢୁଥିଲେ । ଏହି ଉପନ୍ୟାସ ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣ ଯେତେବେଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଉଥିଲା ସେତେବେଳେ ମଫସଲରୁ କେତେକ ଅଞ୍ଚଳୋକ ମକଦ୍ଦମା ବିଚାର ଦେଖିବା ପାଇଁ କଟକ ଆସିଥିଲେ । (ଗ୍ରନ୍ଥାବଳୀ - ଆତ୍ମଜୀବନ ଚରିତ ପୃ - ୧୦) ଫକୀରମୋହନ ଇତିହାସର ଗଣ୍ଡି ମଧ୍ୟରୁ ଏହି କଳାକୃତିର ଉପାଦାନ ସଂଗ୍ରହ ନ କରି ସାମାଜିକ ବାସ୍ତବତାକୁ ଗଳ୍ପାଂଶର ଆଧାର ଭାବେ ଗ୍ରହଣ କରିଥିବାରୁ ଏହା ଅଧିକ ପରିମାଣରେ ଲୋକପ୍ରିୟ । ପୁନଶ୍ଚ ପରିବେଷଣଭଂଗୀର ପ୍ରଖରତା ଓ ମଣିଷ ପ୍ରବୃତ୍ତିର ସ୍ୱାଭାବିକ ସମତା ପରିପ୍ରକାଶ କରି ଲେଖକ ସାହିତ୍ୟ ମାଧମରେ ଶିବର ସଂଧାନ କରିଛନ୍ତି । ଫକୀରମୋହନ ଯଥାର୍ଥତଃ ଥିଲେ ଆଧୁନିକ; ଆଧୁନିକତାର ବାର୍ତ୍ତା ବହନ କରି ବ୍ୟଙ୍ଗ ଓ ଚାତୁର୍ଯ୍ୟ ମାଧମରେ ସେ ଘଟଣାଟିକୁ ପ୍ରକାଶ କରିଛନ୍ତି ।

ଛମାଣ ଆଠଗୁଣ୍ଠ ଉପନ୍ୟାସରେ ଫକୀରମୋହନ ପରିଣତି ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ଉପନ୍ୟାସର ପରିଣତିରେ ଲେଖକଙ୍କ ଭାବାବେଗ,ଶୈଳ୍ପିକ ପ୍ରତିଭା ଓ ସୃଜନକାରୀ ଶକ୍ତିର ଚରମ ଉତ୍କର୍ଷତା ପରିଲକ୍ଷିତ । ଏହାକୁ ପ୍ରାଣବନ୍ତ ଓ ଜୀବନ୍ତ କରିବା ନିମନ୍ତେ ଚରିତ୍ର ଓ ପରିସ୍ଥିତିର ସଂଯୋଜନା କରାଯାଇଛି । ରାମଚନ୍ଦ୍ର ମଙ୍ଗରାଜ ସଂସ୍ଥିତିହୀନ ଚରିତ୍ରଟିଏ ବହୁ ଘର ଭାଙ୍ଗି ନିଜ ଘର ଗଢ଼ିଥିଲେ,

ସ୍ଥିତିବାନ ହୋଇଥିଲେ, ବହୁ ଉପରକୁ ଉଠିଥିଲେ ପୁଣି ଶେଷରେ ଆପଣା କଳାକର୍ମର ଶାସ୍ତି ଭୋଗ କରିଥିଲେ । ଏହା ଏକ ନିର୍ମମ, ନିଷ୍ଠୁର, ସତ୍ୟ, ଏହା ଅଲଂଘନୀୟ । ଏ ସଂପର୍କରେ ଲେଖକଙ୍କ ଅନୁଚିନ୍ତା ସୁସ୍ପଷ୍ଟ ''ହେ ବୁଦ୍ଧିମାନ ତୁମ୍ଭେ ଅତି ନିର୍ଜନରେ ଅତି ସାବଧାନରେ କିଛି କର୍ମ କରି ମନେ କରୁଅଛ, ମନୁଷ୍ୟର ଦୃଷ୍ଟିରେଖାର ଅନ୍ତରାଳରେ ରହିଅଛ । ଭୂମିରେ ଗୋଟିଏ ବୀଜ ପୋତିବାବେଳେ କେହି ଦେଖେନାହିଁ ସତ୍ୟ, ମାତ୍ର ସେଥିରୁ ଜାତ ବୃକ୍ଷର, ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷ ରୋପଣ କଲ, ତାହାର ଫଳ ତୁମ୍ଭଙ୍କୁ - କଦାଚିତ୍ ବଂଶ ପରମ୍ପରାକୁ ଭୋଗ କରିବାକୁ ପଡିବ । '' ନିଜର ଜୀବଦ୍ଦଶା ମଧ୍ୟରେ ଯେ କେବଳ ଏହି କର୍ମଫଳ ଭୋଗିବାକୁ ହୁଏ ତାହା ନୁହେଁ, ମୃତ୍ୟୁପରେ ମଧ୍ୟ ଏହା ଭୋଗ କରିବାକୁ ହୋଇଥାଏ । ଚମ୍ପାର ପରିଣତି ଏହାର ଏକ ଜ୍ଵଳନ୍ତ ଦୃଷ୍ଟାନ୍ତ ।

ଛମାଣ ଆଠଗୁଣ୍ଠ ଉପନ୍ୟାସରେ କ'ଣ କୁହାଯାଇଛି ତାହା ଯେତେ ଗୁରୁତ୍ଵପୂର୍ଣ୍ଣ ନୁହେଁ କିପରି କୁହାଯାଇଛି ତାହା ଅଧିକ ଗୁରୁତ୍ଵପୂର୍ଣ୍ଣ । ବ୍ୟର୍ଥତା ଓ ପରାଜୟର ଏକ କରୁଣ କାହାଣୀ ଛମାଣ ଆଠଗୁଣ୍ଠ । ଶୂନ୍ୟତା ଓ ରିକ୍ତତାର କାନଭାସ ଉପରେ ଚରିତ୍ରର ସଂଯୋଜନା ଘଟଣା ବିନ୍ୟାସ ଓ ପରିବେଷଣ ଏହି କଳାକୃତିକୁ ଏକ ସାର୍ଥକ ଅଭୂତପୂର୍ବ ସୃଷ୍ଟିରେ ପରିଣତ କରିଛି । ଲୋକଚରିତ୍ର ସହିତ ନିବିଡ ସଂପର୍କ ସ୍ଥାପନ ପୂର୍ବକ ଲେଖକ ଯେଉଁ ଅନୁଭୂତି ସଂଗ୍ରହ କରିଥିଲେ ସେସବୁକୁ ସଂଯୋଜନା କରି ସମାଜ-ଜୀବନର ଦୋଷ ଦୁର୍ବଳତା ପ୍ରକାଶ କରିବାକୁ କୁଣ୍ଠା ପ୍ରକାଶ କରିନାହାନ୍ତି । ଏଥିରେ ଲେଖକଙ୍କ ଲୋକମୁଖୀ ଭାଷା ବହୁ ପରିମାଣରେ ସହାୟତା କରିଛି । କଥିତ ଭାଷାକୁ ଏକ ବିଶିଷ୍ଟ ସାହିତ୍ୟିକ ରୂପରେ ମର୍ଯ୍ୟାଦା ପ୍ରଦାନ କରିବା ସଂଗେ ସଂଗେ ଉପନ୍ୟାସ ସାହିତ୍ୟର ବିକାଶ ସାଧନ କରିବା ଥିଲା ଲେଖକଙ୍କ ଅଭିଳାଷ । ଏହା ସାର୍ଥକ ହୋଇଛି । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଏହି ଯେଉଁ କେତୋଟି ଉପନ୍ୟାସ ଏକ ସ୍ଵତନ୍ତ୍ର ସାହିତ୍ୟ-ଆଲୋକର ଉଜ୍ଜ୍ଵଳ ଦୀପ୍ତିରେ ଉଦ୍‌ଭାସିତ ହୋଇଥିଲା ତାହା ପରବର୍ତ୍ତୀ କାଳରେ ଏକ ଉନ୍ନତ ସମ୍ଭାବନାର ବାଣୀ ପ୍ରକାଶ କରିଥିଲା ଏଥିରେ ସନ୍ଦେହ ନାହିଁ ।

*ଉପାଧ୍ୟକ୍ଷ ଓଡିଆ ବିଭାଗ*
*ଖଲ୍ଲିକୋଟ ସ୍ଵୟଂଶାସିତ ମହାବିଦ୍ୟାଳୟ, ବ୍ରହ୍ମପୁର*

# କଥାସରିତ୍‌ସାଗର

ଡଃ. କିଶୋର ଚନ୍ଦ୍ର ମିଶ୍ର

ବିଶ୍ୱ ବିଶ୍ରୁତ କଥାକାର ଅପୂର୍ବ ପ୍ରତିଭାଧର ସ୍ୱନାମଧନ୍ୟ ଗୁଣାଢ୍ୟଙ୍କ ପୈଶାଚୀ ପ୍ରାକୃତରେ ଲିଖିତ ବଡ଼କହା (ବୃହତ୍ କଥା) ଆଜି ଲୋକ ଲୋଚନରୁ ଅନ୍ତର୍ହିତ । କିନ୍ତୁ ସେହି ବୃହତ୍ କଥାର ଭାବାନୁବାଦ ଗୁଡ଼ିକ ମଧ୍ୟରେ ସୋମଦେବ ଭଟ୍ଟଙ୍କ କଥାସରିତ୍‌ସାଗର ସଂସ୍କୃତ ବାଙ୍ମୟରେ ଏକ ସୁନିର୍ଦ୍ଦିଷ୍ଟ ସ୍ଥାନ ଦାବିକରେ । ବୋଧହୁଏ ଆଦିକବି ବାଲ୍ମୀକି ଓ କବିକୁଳଗୁରୁ କାଳିଦାସ କାବ୍ୟ- ନାଟକ ରଚନାରେ ଯେଉଁ ମହତୀ କୀର୍ତ୍ତିର ଅଧିକାରୀ, କାବ୍ୟଶୈଳୀ ଅନୁମୋଦିତ କଥା-ସ୍ରଷ୍ଟା ଭାବେ ସେହି ଉଜ୍ଜ୍ୱଳ ସମ୍ମାନର ସୂତ୍ରଧାର କବି ପ୍ରବର ସୋମଦେବ ଭଟ୍ଟ । କଥାସରିତସାଗରର ଓଡିଆ ଅନୁବାଦକ୍ଷେତ୍ରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗମୁଖ୍ୟ ପ୍ରଫେସର ଡଃ ସୁଦର୍ଶନ ଆଚାର୍ଯ୍ୟଙ୍କ ଅବଦାନ ଯେ ଉଲ୍ଲେଖଯୋଗ୍ୟ, ଏହା କହିବା ବାହୁଲ୍ୟ ମାତ୍ର ।

ଉପଲବ୍ଧ ଅଲୋଚନା-ପ୍ରତ୍ୟାଲୋଚନା ଆଧାରରେ ଗୁଣାଢ଼୍ୟଙ୍କ ପରିଚୟ, ବୃହଦ୍ କଥାର ସ୍ୱରୂପ, ବିଭିନ୍ନ ଅନୁବାଦର ମହତ୍ତ୍ୱ, ସୋମଦେବଙ୍କ କୃତିର ବୈଶିଷ୍ଟ୍ୟ ଓ ସର୍ବୋପରି ଓଡିଆ ଅନୁବାଦକଙ୍କ ମହତ୍ତ୍ୱ ପ୍ରକାଶନ ଏ ପ୍ରବନ୍ଧର ଆଭିମୁଖ୍ୟ ।

**ଗୁଣାଢ୍ୟଙ୍କ ପରିଚୟ :-**

ଆଲୋଚକଙ୍କ ମତରେ ଗୁଣାଢ଼୍ୟ ଆନ୍ଧ୍ର ସାତବାହନ ଯୁଗରେ ଅର୍ଥାତ୍ ଖ୍ରୀଷ୍ଟୀୟ ପ୍ରଥମ-ଦ୍ୱିତୀୟ ଶତକରେ ଗୋଦାବରୀ ନଦୀ ତଟସ୍ଥ ପ୍ରତିଷ୍ଠାନପୁରରେ ଜନ୍ମ ଗ୍ରହଣ କରିଥିଲେ । ସେହି ପ୍ରତିଷ୍ଠାନପୁର ହାଳ ବା ଶାଳିବାହନଙ୍କ ରାଜଧାନୀ ଥିଲା । ଗୁଣାଢ଼୍ୟଙ୍କ ବହୁ ଗଳ୍ପରେ ଉଜ୍ଜୟିନୀ ଓ କୌଶାମ୍ବୀ ନଗରୀର ମହତ୍ତ୍ୱ ଉଦ୍‌ଗୀତ ହେତୁ ପରେ ଗୁଣାଢ଼୍ୟ ସେହି ସ୍ଥାନରେ ଅବସ୍ଥାନ କରୁଥିବା ଅନୁମାନ କରାଯାଇପାରେ ।

ଗୁଣାଢ଼୍ୟଙ୍କ ପୂର୍ବଜନ୍ମ ବିଷୟକ ଏକାଧିକ କାହାଣୀ ପ୍ରଚଳିତ । ଥରେ ଶିବ ଏକାନ୍ତରେ ପାର୍ବତୀଙ୍କୁ ସାତଗୋଟି ବିଦ୍ୟାଧର ଚକ୍ରବର୍ତ୍ତୀଙ୍କ ଆଶ୍ଚର୍ଯ୍ୟମୟୀ କଥା ଶୁଣାଇବା ଅବସରରେ ତାଙ୍କର ଏକ ଅନୁଚର ପୁଷ୍ପଦନ୍ତ ଗୋପନରେ ସେ କାହାଣୀଗୁଡ଼ିକୁ ଶୁଣି ନିଜ ପ୍ରିୟତମା ଜୟାକୁ ସେ ସବୁ ଶୁଣାଇଦେଲା । ଜୟା ସେହି ବିସ୍ମୟକର ମଧୁର କାହାଣୀଗୁଡ଼ିକୁ ନିଜ ପ୍ରିୟସଖୀଗହଣରେ ବର୍ଣ୍ଣନା କରିବାରୁ ଧୀରେ ଧୀରେ ତାହା ପାର୍ବତୀଙ୍କ ଶ୍ରୁତିଗୋଚର ହେଲା । ଏଥିରେ କ୍ଷୁବ୍ଧା ହୋଇ ପାର୍ବତୀ ପୁଷ୍ପଦନ୍ତକୁ ମର୍ତ୍ତ୍ୟଲୋକରେ ଜନ୍ମନେବା ପାଇଁ ଅଭିଶାପ ଦେଲେ । ଏଥିରେ ଦୁଃଖିତ ହୋଇ ପୁଷ୍ପଦନ୍ତର ଭାଇ ମାଲ୍ୟବାନ୍ ପାର୍ବତୀଙ୍କ ନିକଟରେ କ୍ଷମାପ୍ରାର୍ଥୀ ହେବାରୁ ତାକୁ ମଧ ଅନୁରୂପ ଶାପ ମିଳିଲା । ପରେ ପାର୍ବତୀଙ୍କ ନିକଟତମ ପରିଚାରିକା ଦୁଃଖିନୀ ଜୟାର ପ୍ରାର୍ଥନାରୁ ଅଭିଶାପ ପରିହାର କରି ପାର୍ବତୀ କହିଲେ -

ମୋର ବଚନ ଅନ୍ୟଥା ହେବ ନାହିଁ । ପୁଷ୍ପଦନ୍ତ କିନ୍ତୁ ପୂର୍ବଜନ୍ମର ସ୍ମୃତି ସହିତ ମର୍ତ୍ତ୍ୟରେ ଜନ୍ମ ହୋଇ ବିନ୍ଧ୍ୟ ପର୍ବତ ବାସୀ ପିଶାଚ କଣଭୂତିକୁ ଏ ସମସ୍ତ କଥା ଶୁଣାଇବା ପରେ ଶାପମୁକ୍ତ ହେବ । ମାଲ୍ୟବାନ୍ କଣଭୂତି ଠାରୁ ଏ ସମସ୍ତ କଥା ଶୁଣି ମର୍ତ୍ତ୍ୟଲୋକରେ ପ୍ରଚାର-ପ୍ରସାର କରିବା ପରେ ସେ

ଶାପମୁକ୍ତ ହେବ । ଏହି ବିଧାନ ଅନୁସାରେ ପୁଷ୍ପଦନ୍ତ କୌଶାମ୍ବୀରେ ବରରୁଚି କାତ୍ୟାୟନ ରୂପେ ଜନ୍ମ ହୋଇ ବିଶିଷ୍ଟ ବୈୟାକରଣ ଓ ନନ୍ଦବଂଶର ଅନ୍ତିମ ରାଜା ଯୋଗାନନ୍ଦଙ୍କ ମନ୍ତ୍ରୀ ହେଲେ । ପରେ ପୂର୍ବଜନ୍ମ ସ୍ମୃତିରୁ କଣଭୂତିଙ୍କୁ ଭେଟି ସପ୍ତ ବୃହତ୍ କଥା ଶୁଣାଇ ଶାପମୁକ୍ତ ହେଲେ । ତାଙ୍କର ଭାଇ ମାଲ୍ୟବାନ୍ ଗୁଣାଢ଼୍ୟ ନାମରେ ପ୍ରତିଷ୍ଠାନପୁରରେ ଜନ୍ମ ହୋଇ ସେ ମଧ ସାତବାହାନ ରାଜାଙ୍କ ମନ୍ତ୍ରୀ ହେଲେ । ପୂର୍ବଜନ୍ମର ସ୍ମୃତି ଜାଗ୍ରତ ହେବାରୁ ସେ ଦୁଇଟି ମୁଖ୍ୟ ଶିଷ୍ୟ ଗୁଣଦେବ ଓ ନନ୍ଦୀଦେବଙ୍କ ସହିତ କଣଭୂତିଙ୍କ ଠାରୁ ସପ୍ତବୃହତ୍‌କଥା ଶ୍ରବଣକରି ତାହାକୁ ନିଜ ରକ୍ତରେ ସାତଲକ୍ଷ ପୈଶାଚୀ ପ୍ରାକୃତ ପଦରେ ରଚନା କଲେ । କଥାଗୁଡିକର ପ୍ରଚାର ପ୍ରସାର ପାଇଁ ଶିଷ୍ୟଙ୍କ ଅନୁରୋଧରେ ଗୁଣାଢ଼୍ୟ ରାଜା ସାତବାହନଙ୍କ ନିକଟକୁ ଗ୍ରନ୍ଥଟି ପ୍ରେରଣ କଲେ । କିନ୍ତୁ ପୈଶାଚୀ ଭାଷାରେ ଲିଖିତ କାହାଣୀଗୁଡିକୁ ରାଜା ପସନ୍ଦକଲେନାହିଁ । ଏଥିରେ ଦୁଃଖିତ ହୋଇ ଗୁଣାଢ଼୍ୟ ଗୋଟି ଗୋଟି କରି ସମଗ୍ର କାହାଣୀକୁ ଅଗ୍ନିରେ ଆହୁତି ଦେବାବେଳେ ଶିଷ୍ୟଙ୍କ ଅନୁରୋଧରେ ଶେଷାଂଶଟି ଅଗ୍ନିଦାହରୁ ମୁକ୍ତ ହେଲା । ସେତେବେଳକୁ ଛଅଗୋଟି କାହାଣୀ ଭାଗ ଦଗ୍ଧହୋଇଯାଇଛି । ଲକ୍ଷେ ପଦ ବିଶିଷ୍ଟ ସପ୍ତମ କାହାଣୀଭାଗଟି କେବଳ ଶେଷ ରହିଲା । ସେହି ଅବଶିଷ୍ଟ କଥା ଶିଷ୍ୟଙ୍କ ମୁଖରୁ ଶୁଣି ବଣ-ଜଂଗଲର ପଶୁପକ୍ଷୀ ମଧ ମୁଗ୍ଧ-ଚକିତ ହେବା ଖବର ପାଇ ଅନୁତପ୍ତ ରାଜା ନିଜେ ଉପସ୍ଥିତ ହୋଇ ଶିଷ୍ଟ କଥାଭାଗକୁ ଗ୍ରହଣ କଲେ ଓ ଗୁଣାଢ଼୍ୟଙ୍କ ଶିଷ୍ୟ ମାଧମରେ ଗ୍ରନ୍ଥଟିକୁ ଅଧୟନ କରି କଥା ଉପ୍ତତି ଅଂଶଟି ନିଜେ ଯୋଗ କଲେ ଓ ପ୍ରଚାର ପ୍ରସାର ଦିଗରେ ଯତ୍ନନେଲେ ।

ଗୁଣାଢ଼୍ୟଙ୍କ ପରିଚୟ ବିଷୟରେ ନୈପାଳ ମାହାତ୍ମ୍ୟର ବର୍ଣ୍ଣନା ଏହାଠାରୁ ସାମାନ୍ୟ ଭିନ୍ନ । ଆରମ୍ଭରେ ଶିବ-ପାର୍ବତୀଙ୍କ ସମ୍ବାଦ ଉଲ୍ଲିଖିତ । ଥରେ ପାର୍ବତୀ ନୂତନ କାହାଣୀ ଶୁଣାଇବା ପାଇଁ ଶିବଙ୍କୁ ଅନୁରୋଧ କଲେ । ଶିବ ସମସ୍ତ ଦ୍ୱାରରୁଦ୍ଧ କରାଇ ଏକାନ୍ତରେ ପାର୍ବତୀଙ୍କୁ କଥା ଶୁଣାଇଲେ । କିନ୍ତୁ ଶିବଙ୍କ ଗଣମଧରୁ ଅନ୍ୟତମ ଭୃଂଗୀ ଭ୍ରମର ରୂପରେ ସେ ସମସ୍ତ ଗଳ୍ପ ଶୁଣି ନିଜ ପ୍ରିୟତମା ବିଜୟାକୁ ସେହି ଗଳ୍ପ ଗୁଡିକୁ ଶୁଣାଇଲା । ଦିନେ ପାର୍ବତୀ ନିଜ ସଖୀମାନଙ୍କୁ ନୂତନ କାହାଣୀ ଶୁଣାଇବା ବେଳେ ବିଜୟା ଏ ସମସ୍ତ ଜାଣିଥିବା ପ୍ରକାଶ କରିବାରୁ ପାର୍ବତୀ ଅଭିମାନରେ ଶିବଙ୍କୁ ଏ କଥା ଜଣାଇଲେ । ଧ୍ୟାନ ବଳରେ ଶିବ ଜାଣିପାରି ମର୍ତ୍ତ୍ୟଲୋକରେ ଜନ୍ମ ହେବା ପାଇଁ ଭୃଂଗୀକୁ ଅଭିଶାପ ଦେଲେ । ଭୃଂଗୀ କ୍ଷମା ପ୍ରାର୍ଥୀ ହେବାରୁ ଶିବ କହିଲେ- ମର୍ତ୍ତ୍ୟରେ ନଅଲକ୍ଷ ଶ୍ଳୋକରେ ଏ ସମସ୍ତ ଗଳ୍ପ ରଚନା କରି ଶିବଲିଂଗ ପ୍ରତିଷ୍ଠା ପରେ କୈଳାସକୁ ପ୍ରତ୍ୟାବର୍ତ୍ତନ କରିବ ।

ସେହି ଭୃଂଗୀ ଗୁଣାଢ଼୍ୟ ନାମରେ ମଥୁରାରେ ଜନ୍ମ ହୋଇ ଅନାଥ ଅବସ୍ଥାରେ ଉଜ୍ଜୟିନୀରେ ପ୍ରବେଶ କଲେ । ସେଠାରେ ମଦନ ନାମକ ରାଜା ରାଜତ୍ୱ କରୁଥିଲେ ଓ ତାଙ୍କର ସଭାକବି ଥିଲେ ସର୍ବବର୍ମନ୍ । ସେ ଗୁଣାଢ଼୍ୟଙ୍କ ପ୍ରତିଭାରେ ପ୍ରଭାବିତ ହୋଇ ଗୁଣାଢ଼୍ୟଙ୍କୁ ରାଜସଭାରେ ସଦସ୍ୟ ରୂପେ ପ୍ରତିଷ୍ଠା ଦେଲେ । ଦିନେ ରାଜା ରାଣୀମାନଙ୍କ ସହିତ ଜଳବିହାର ବେଳେ ମୋଦକ ଶବ୍ଦର ଅଶୁଦ୍ଧ ପ୍ରୟୋଗ କରି ରାଣୀଙ୍କ ଦ୍ୱାରା ନିନ୍ଦିତ ହେଲେ । ଗୁଣାଢ଼୍ୟ ୧୨ ବର୍ଷରେ ରାଜାଙ୍କୁ ବ୍ୟାକରଣ ଶିକ୍ଷା ଦେବାପାଇଁ ପ୍ରତିଶ୍ରୁତ ହେବାରୁ ସର୍ବବର୍ମନ୍ ମାତ୍ର ଦୁଇବର୍ଷରେ କଳାପ ବ୍ୟାକରଣ ରଚନା କରି ରାଜାଙ୍କୁ ବ୍ୟାକରଣ ଶିକ୍ଷା ଦେଇ ପାରିଲେ । ଫଳରେ ରାଜା ଗୁଣାଢ଼୍ୟଙ୍କୁ ଆଦେଶ ଦେଲେ - ସେ ସଂସ୍କୃତ ଭାଷା କହି ପାରିବେ ନାହିଁ । ତାପରେ ଗୁଣାଢ଼୍ୟ ରାଜ ଦରବାର ପରିତ୍ୟାଗ କରି ପୁଲସ୍ତ୍ୟ ଋଷିଙ୍କ ସୌଜନ୍ୟରୁ ପୈଶାଚୀ ପ୍ରାକୃତରେ ବୃକ୍ଷପତ୍ରରେ ଗେରୁରେ କାହାଣୀ ରଚନା କଲେ ଓ ଉଚ୍ଚସ୍ୱରରେ କାହାଣୀ ଗୁଡିକୁ ପାଠ କଲାବେଳେ ବଣର ପଶୁପକ୍ଷୀ ମୋହିତହୋଇ ସେ ସବୁ ଶୁଣୁଥିଲେ । ରାଜାଙ୍କ କାନରେ ଏ କଥା ପଡିବାରୁ ସେ ଗୁଣାଢ଼୍ୟଙ୍କୁ ପୁଣି ରାଜସଭାକୁ ନିମନ୍ତ୍ରଣ

କଲେ । କିନ୍ତୁ ଗୁଣାଢ୍ୟ ରାଜାଙ୍କୁ କହିଲେ - ଆପଣ ଏ ସମସ୍ତ କାହାଣୀ ସଂସ୍କୃତ ଭାଷାରେ ଅନୁବାଦ କରି ପ୍ରଚାର କରନ୍ତୁ । ତାପରେ ଗୁଣାଢ୍ୟ ନେପାଳଯାଇ ପଶୁପତିନାଥଙ୍କୁ ଦର୍ଶନକଲେ ଓ ଋଷି-ମୁନିଙ୍କ ସାହାଯ୍ୟରେ ଭୃଂଗୀଶ୍ୱର ଶିବଲିଙ୍ଗ ସ୍ଥାପନକରି ଶାପମୁକ୍ତ ହେଲେ ।

ଗୁଣାଢ୍ୟଙ୍କ ପୂର୍ବଜନ୍ମ ସମ୍ବନ୍ଧୀୟ ଉପର୍ଯୁକ୍ତ ବର୍ଣ୍ଣନାରୁ ଅନୁମିତ ହୁଏ, ଭାରତୀୟ ଚିନ୍ତାରେ ବିଶିଷ୍ଟ ପ୍ରତିଭାଧର ଅଭିଶପ୍ତ ଦେବ-ଗନ୍ଧର୍ବ ବା ଶିବଗଣ ଆଦି ରୂପରେ ଅଥବା ଐଶୀ ଶକ୍ତି ସମ୍ପର୍ଣ୍ଣ ଭାବେ ଚିତ୍ରିତ ହୋଇଥାନ୍ତି । ପୁଣି ପୁରାଣ, ଓଷା, ବ୍ରତ ଆଦିରେ ନିହିତ ଗଳ୍ପର ସତ୍ୟତା ପ୍ରତିପାଦନ ପାଇଁ ଶିବ-ପାର୍ବତୀଙ୍କ ପ୍ରଶ୍ନୋତ୍ତର ଭାବେ ଉପସ୍ଥାପିତ ।

**ବୃହଦ୍ କଥାର ସ୍ୱରୂପ ଓ ମହତ୍ତ୍ୱ :-**

ବୃହତ୍ କଥାର ସ୍ୱରୂପ ନିର୍ଣ୍ଣୟ ବାସ୍ତବରେ ଏକ କଠିନ ବ୍ୟାପାର । କାରଣ ଆଜକୁ ଆଠଶହ ବର୍ଷପୂର୍ବେ ଅର୍ଥାତ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୃହତ୍ କଥାର ସ୍ଥିତି ସମ୍ବନ୍ଧରେ ସୂଚନା ମିଳେ । ଏତେବଡ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ କିପରି ଲୋକଲୋଚନରୁ ଅନ୍ତର୍ହିତ ହୋଇଗଲା, ଭାବିଲେ ବିସ୍ମୟ ସାଗରରେ ମନ ମଜ୍ଜିଯାଏ ।

ବ୍ୟାସଦେବଙ୍କ ମହାଭାରତ ଓ ପୁରାଣ ପରି ଗୁଣାଢ୍ୟଙ୍କ ବୃହତ୍ କଥା କେବଳ ଆକାରରେ ନୁହେଁ; ମନୋରଂଜନ, ଚାରିତ୍ରିକ ବୈଶିଷ୍ଟ୍ୟ ପ୍ରତିପାଦନ, ଜନଜୀବନର ବାସ୍ତବ ଓ ବ୍ୟାପକ ଚିତ୍ର ପ୍ରଦାନ, ଏକାଧାରରେ ସଖାସମ୍ମିତ ଓ କାନ୍ତାସମ୍ମିତ ଉପଦେଶ ପ୍ରଦାନ, ପ୍ରକୃତିରେ ମନୋଜ୍ଞ ରୂପ ଚିତ୍ରଣ ଓ ସର୍ବୋପରି ଅନୁଭୂତିର ନିର୍ଯ୍ୟାସବେଦନରେ ସମୃଦ୍ଧ ଓ କାଳଜୟୀ । ଏହାର ବୈଶିଷ୍ଟ୍ୟରେ ବିସ୍ମୟାଭିଭୂତହୋଇ ପରବର୍ତ୍ତୀ ସମୟର କାଳିଦାସ, ସୁବନ୍ଧୁ , ବାଣ, ଦଣ୍ଡୀ, ଧନିକ, ଗୋବର୍ଦ୍ଧନ ଆଦି କବି- ସମାଲୋଚକ ଏହି ଗ୍ରନ୍ଥର ପ୍ରଶସ୍ତି ଗାନରେ ଶତମୁଖ ହୋଇ ଉଠିଛନ୍ତି । ଏପରିକି ବୃହତ୍‌କଥାର ଏକ ଏକ ଅଂଶକୁ ଅବଲମ୍ବନ କରି ବହୁ ପ୍ରତିଭାଧର କାବ୍ୟ ଓ ନାଟକ ରଚନା କରି ଯାଇଛନ୍ତି ।

କେତେକଙ୍କ ମତରେ ଗୁଣାଢ୍ୟ ବ୍ରହ୍ମା ଓ ବୃହତ୍‌କଥା ସମସ୍ତ କଳାର ଆକର ସରସ୍ୱତୀ । ଉଦ୍ୟୋତନ ସୂରିଙ୍କ କୁବଳୟମାଳା କହା, ଧନପାଳଙ୍କ ତିଳକମଂଜରୀ, ସୁବନ୍ଧୁଙ୍କ ସ୍ୱପ୍ନବାସବଦତ୍ତା, ବାଣଭଟ୍ଟଙ୍କ କାଦମ୍ବରୀ, ଶ୍ରୀହର୍ଷଙ୍କ ନୈଷଧୀୟ ଚରିତ, ବିଶାଖଦତ୍ତଙ୍କ ମୁଦ୍ରାରାକ୍ଷସ ପ୍ରଭୃତି ଗ୍ରନ୍ଥ ସାମାନ୍ୟ ପରିବର୍ତ୍ତିତ ରୂପରେ ବୃହତକଥା ଆଧାରିତ ।

ବୃହତ୍ କଥାର ବିଷୟ ବିନ୍ୟାସ ସମ୍ବନ୍ଧରେ ଆଲୋଚକ ଲାକୋତ କହନ୍ତି - ଏଥିରେ ବସରାଜ ଉଦୟନଙ୍କ ବାସବଦତ୍ତା ଓ ପଦ୍ମାବତୀ ସହିତ ବିବାହ, ବାସବଦତ୍ତାଙ୍କ ପୁତ୍ର ନରବାହନ ଦତ୍ତର ପିତାମାତାଙ୍କ ଅନିଚ୍ଛାରେ ଗଣିକା ପୁତ୍ରୀ ମଦନମଂଚୁକା ସହିତ ବିବାହ, କୌଣସି ବିଦ୍ୟାଧର ଦ୍ୱାରା ମଦନମଂଚୁକାର ହରଣ, ମଦନ ମଂଚୁକାର ଅନୁସନ୍ଧାନରେ ନରବାହନ ଦତ୍ତର ବିଦ୍ୟାଧର ଲୋକ ଓ ମନୁଷ୍ୟ ଲୋକ ପରିଭ୍ରମଣ, ପରାକ୍ରମ ପ୍ରଦର୍ଶନ କରି ବିଭିନ୍ନ ରାଜ୍ୟ ଆକ୍ରମଣ ଓ ବହୁ ରାଜକନ୍ୟାଙ୍କ ପାଣିଗ୍ରହଣ, ମଦନମଂଚୁକା ସହିତ ପୁନର୍ମିଳନ, ନରବାହନଦତ୍ତ ବିଦ୍ୟାଧର ଚକ୍ରବର୍ତ୍ତୀ ହେବାପରେ ମଦନମଂଚୁକାକୁ ପାଟରାଣୀ ପଦବୀ ପ୍ରଦାନ ଆଦି ବର୍ଣ୍ଣିତ ।

ଜର୍ମାନ ବିଦ୍ୱାନ୍ ଆଲଡ଼ର୍ଫ ବହୁ ଗବେଷଣା ଲବ୍ଧ ମନ୍ତବ୍ୟ ପ୍ରଦାନ କରି କହନ୍ତି - ଗୁଣାଢ଼୍ୟଙ୍କ ବୃହତ୍ କଥା ନିଃସନ୍ଦେହ ପ୍ରାଚୀନ ଭାରତୀୟ ସାହିତ୍ୟର ଏକ ରସମୟ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଆନ୍ଧ୍ର ସାତବାହନଙ୍କ ମୁଦ୍ରାରେ ଅଙ୍କିତ ଜଳଯାନର ଚିତ୍ରରୁ ଅନୁମିତ ହୁଏ, ସେ ସମୟରେ ବହୁ ସାର୍ଥବାହ, ପୋତାଧିପତି ଏବଂ ସାଂଯାତ୍ରିକ ବ୍ୟାପାରୀ ଦେଶ ଦେଶାନ୍ତର ଭ୍ରମଣ କରୁଥିଲେ ଓ ସେମାନଙ୍କ ଅନୁଭବ ଜନିତ ଅତିରଂଜନ କଥା ଜନତାର ଚିତ୍ତ ବିନୋଦର ସାମଗ୍ରୀ ଥିଲା । ଦେଶର ପାହାଡ଼-ପର୍ବତ, ବନ-ଜଂଗଲ, ନଦୀ-ନାଳ, ନଗର-ଜନପଦାଦି ଭ୍ରମଣ, ସମୁଦ୍ର ମଧ୍ୟସ୍ଥ କଟାହ, ନାରିକେଳ, କର୍ପୂର, ସିଂହଳ ଆଦି ଦ୍ୱୀପ-ଦ୍ୱୀପାନ୍ତର ଗମନ ଓ ପୁନରାଗମନ ପ୍ରସୂତ ବ୍ୟଥା-ବେଦନା, ସୁଖ-ସମୃଦ୍ଧି, ଭୋଗ-ବିଳାସ, ସଂଜାତ ଯାତ୍ରୀଙ୍କ ଚମତ୍କପ୍ରଦ କଥା ଜନତାକୁ ମୁହ୍ୟମାନ କରୁଥିବା ସମ୍ଭାବନା ନିରାଧାର ନୁହେ । ହୋଇପାରେ ନିଜେ ଗୁଣାଢ଼୍ୟ ମଧ୍ୟ ସାଂଯାତ୍ରିକ ଦଳରୁ ଅନ୍ୟତମ ହୋଇ ନିଜ ଅନୁଭୂତ ବାସ୍ତବଚିତ୍ର ରୂପାୟନ କରିଛନ୍ତି ।

**ବୃହତ୍ କଥାର ବିଭିନ୍ନ ଅନୁବାଦ :-**

ବୃହତ୍ କଥା ଆଜି ଅବଲୁପ୍ତ ହେତୁ ସେହି ଗ୍ରନ୍ଥ ଅଧାରିତ ଅନୁବାଦ ପୁସ୍ତକର ସାହାଯ୍ୟ ନେଇ ଅଧିକ କିଛି କୁହାଯାଇ ପାରେ । ବିଦେଶୀ ଗଳ୍ପ ଅଲିଫ ଲୈଲା ଓ ଭାରତୀୟ ଗଳ୍ପ ବେତାଳ ପଞ୍ଚବିଂଶତି କଥା ପଞ୍ଚତନ୍ତ୍ରରେ ମଧ୍ୟ ବୃହତ୍‌କଥାର ପ୍ରଭାବ ଅନୁସନ୍ଧାନ କରାଯାଇପାରେ । କିନ୍ତୁ ଅବିଭକ୍ତ ଭାରତରେ ମୁଖ୍ୟତଃ ଚାରିଗୋଟି ଅନୁବାଦ ଗ୍ରନ୍ଥ ବୃହତ୍ କଥା ଆଧାରିତ ।

ପ୍ରଥମ ଗ୍ରନ୍ଥ ନେପାଳର ପଣ୍ଡିତ ବୁଧସ୍ୱାମୀକୃତ ସଂସ୍କୃତଭାଷାରେ ଲିଖିତ ବୃହତ୍ କଥା-ଶ୍ଳୋକସଂଗ୍ରହ । ପଞ୍ଚମ ଶତାବ୍ଦୀରେ ଲିଖିତ ଏ ଗ୍ରନ୍ଥ ମୂଳ ବୃହତ୍‌କଥାର ଯଥାର୍ଥ ଚିତ୍ର ପ୍ରସ୍ତୁତ କରେ । ୨୮ ସର୍ଗ ବିଶିଷ୍ଟ ୪୫୩୯ ଶ୍ଳୋକ ସମ୍ବଳିତ ଏ ଗ୍ରନ୍ଥ ଅପୂର୍ଣ୍ଣ । ଶ୍ରୀ ଲୋକାତ ଏହି ଶ୍ଳୋକ ଗୁଡିକର ଫରାସି ଅନୁବାଦ କରି ପ୍ୟାରିସରୁ ପ୍ରକାଶ କରିଛନ୍ତି । ଏଥିରେ କଥା ନାୟକ ନରବାହନ ଦତ୍ତର ୧୮ ଗୋଟି କନ୍ୟା ସହିତ ବିବାହ ମଧ୍ୟରୁ ୬ଟି ବିବାହ ବର୍ଣ୍ଣିତ ।

ଦ୍ୱିତୀୟ ଅନୁବାଦ ଗ୍ରନ୍ଥ ଜୈନ ପରଂପରାର ସଂଘଦାସ ଗଣିଙ୍କ ମହାରାଷ୍ଟ୍ରୀ ପ୍ରାକୃତ ଗଦ୍ୟରେ ଲିଖିତ ବସୁଦେବ ହିଣ୍ଡୀ । ଏଥିରେ ବୃହତ୍ କଥାର ଲୌକିକ ପ୍ରେମକଥା ଧର୍ମକଥାରେ ପରିବର୍ତ୍ତିତ ଓ ନାୟକ ନରବାହନ ଦତ୍ତ ପରିବର୍ତ୍ତେ ବସୁଦେବ ଏ ଗ୍ରନ୍ଥର ନାୟକ । ପରେ ଏହି ଅପୂର୍ଣ୍ଣ ଗ୍ରନ୍ଥକୁ ଧର୍ମଦାସ ଗଣି ପୂର୍ଣ୍ଣରୂପ ଦେଇଛନ୍ତି । ଏ ସମସ୍ତ ପରିବର୍ତ୍ତନ ସତ୍ତ୍ୱେ ଗୁଣାଢ଼୍ୟଙ୍କ ବୃହତ୍ କଥାର ପ୍ରକାଶଭଂଗୀ ଓ କଥାରୂପ ଏଥିରେ ଅବିକଳ ସଂରକ୍ଷିତ ।

ତୃତୀୟ ଅନୁବାଦ ଗ୍ରନ୍ଥ ବ୍ୟାସଦାସ ରୂପେ ପରିଚିତ କାଶ୍ମୀର ରାଜା ଅନନ୍ତଙ୍କ ସଭାସଦ୍ କାଶ୍ମୀରୀ ପଣ୍ଡିତ କ୍ଷେମେନ୍ଦ୍ର (୧୦୨୯-୧୦୬୪) ଙ୍କ ସଂସ୍କୃତ ବୃହତ୍ କଥା ମଂଜରୀ ୧୮ ଲମ୍ବକ ବିଶିଷ୍ଟ ବୃହତ୍ କଥା ଆଧାରିତ ଏହି ଗ୍ରନ୍ଥ ସ୍ଥଳ ବିଶେଷରେ ଅତିସଂକ୍ଷିପ୍ତ ଓ ଅସ୍ପଷ୍ଟ ହେତୁ କଥାଗ୍ରନ୍ଥ ରୂପେ ଲୋକପ୍ରିୟ ହୋଇପାରିନାହିଁ ।

ଚତୁର୍ଥ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ବୃହତ୍ କଥାର ଶେଷ ଭାରତୀୟ ଅନୁବାଦ କାଶ୍ମୀରୀ ପଣ୍ଡିତ ସୋମଦେବ ଭଟ୍ଟଙ୍କ କଥା ସରିତ୍ ସାଗର । ଖ୍ରୀଷ୍ଟାବ୍ଦ ୧୦୬୩-୧୦୮୧ ମଧ୍ୟରେ କାଶ୍ମୀରର ରଜା ଅନନ୍ତଙ୍କ ପାଟରାଣୀ ସୂର୍ଯ୍ୟମତୀଙ୍କ ମନୋବିନୋଦ ପାଇଁ ଏହି ଗ୍ରନ୍ଥ ରଚିତ ହୋଇଥିଲା । ଏହି ଗ୍ରନ୍ଥର ଲମ୍ବକ ବା ଭାଗ

୧୮ ଓ ଏହା ୧୨୪ ତରଂଗରେ ବିଭକ୍ତ । ସମଗ୍ର ଗ୍ରନ୍ଥର ଶ୍ଳୋକ ସଂଖ୍ୟା - ୨୧୩୮୮ । ଯଥାର୍ଥତଃ ଏହା କଥା ସରିତର ସାଗର ଅଟେ । ଅଧିକାଂଶ ଶ୍ଳୋକ ଅନୁଷ୍ଟୁପ୍ ବୃତ୍ତରେ ଲିଖିତ । ସ୍ଥଳେ ସ୍ଥଳେ ଭାବଗାମ୍ଭୀର୍ଯ୍ୟ ରକ୍ଷା ପାଇଁ କବି ଉପଜାତି, ଶାର୍ଦ୍ଦୂଳ ବିକ୍ରୀଡିତ ପ୍ରକୃତି ବୃତ୍ତ ବ୍ୟବହାର କରିଛନ୍ତି ମାତ୍ର ।

**କଥାସରିତ୍‌ସାଗରର ମହତ୍ତ୍ୱ :-**

ସୋମଦେବଙ୍କ ଅଦ୍ଭୁତ ସଫଳତା ବୋଧହୁଏ ଗୁଣାଢ୍ୟଙ୍କୁ ନାମଶେଷ କରି ଦେଇଛି । ଏହି ଗ୍ରନ୍ଥ ରଚିତ ହେବାପରେ ଗୁଣାଢ୍ୟଙ୍କ ବଡ୍ଡକହା ଅପାଂକ୍ତେୟ ହୋଇ ଲୋକ ଲୋଚନରୁ ଅନ୍ତର୍ହିତ ହୋଇଯାଇଛି । କଥାସରିତ ସାଗରର ପ୍ରାରମ୍ଭରେ ସୋମଦେବ କହନ୍ତି -

''ମୂଳ ଗ୍ରନ୍ଥ ବୃହତ୍ କଥାକୁ କେବଳ ସଂସ୍କୃତ ଭାଷାରେ ରୂପାନ୍ତର କରାଯାଇଛି । ଔଚିତ୍ୟ ରକ୍ଷା ତଥା କଥାରସର ପ୍ରବାହ ସୃଷ୍ଟିପାଇଁ ସ୍ଥଳ ବିଶେଷରେ କାହାଣୀ ଗୁଡିକୁ ସଂକ୍ଷିପ୍ତ ଅଥବା ବିସ୍ତୃତ କରାଯାଇଛି । କଥା ସମୂହ ସ୍ମୃତି ଧୃତ ହେବା ପାଇଁ କାବ୍ୟଶୈଳୀ ଅନୁସୃତ । କିନ୍ତୁ ଏହି ପରିବର୍ତ୍ତନ ପରିବର୍ଦ୍ଧନ ଆଦି ଅନ୍ତରାଳରେ ପାଣ୍ଡିତ୍ୟ ପ୍ରଦର୍ଶନ ବା ଖ୍ୟାତିଲାଭ ଆକାଙ୍‌କ୍ଷା ନାହିଁ ।

ଏହା ବ୍ୟତୀତ ଗ୍ରନ୍ଥ ପ୍ରାରମ୍ଭରେ ସୋମଦେବ ଏହାର ସ୍ୱରୂପ ଓ ବର୍ଣ୍ଣ୍ୟ ବିଷୟର ସୂଚନା ଦେଇଛନ୍ତି । ଅଷ୍ଟାଦଶ ଲମ୍ବକ ରୂପେ ବିଭାଜିତ ଏହି ଗ୍ରନ୍ଥର ପ୍ରଥମ ଲମ୍ବକ- କଥାପୀଠ ,ଦ୍ୱିତୀୟ- କଥାମୁଖ,ତୃତୀୟ- ଲାବଣକ,ଚତୁର୍ଥରେ- କଥାନାୟକ ନରବାହନ ଦତ୍ତର ଜନ୍ମ ବର୍ଣ୍ଣିତ,ପଞ୍ଚମଲମ୍ବକ - ଚତୁର୍ଦାରିକା, ଷଷ୍ଠ-ମଦନମଞ୍ଚୁକା,ସପ୍ତମ- ରତ୍ନପ୍ରଭା, ଅଷ୍ଟମ -ସୂର୍ଯ୍ୟପ୍ରଭା ନବମ- ଅଳଙ୍କାରବତୀ ଦଶମ- ଶକ୍ତିଯଶ, ଏକାଦଶ-ବେଳା,ଦ୍ୱାଦଶ- ଶଶାଂକବତୀ ନାମରେ ଖ୍ୟାତ । ତ୍ରୟୋଦଶ ଲମ୍ବକ- ମଦିରାବତୀ କଥା, ଚତୁର୍ଦ୍ଦଶ- ପଂଚ,ପଞ୍ଚଦଶ-ମହାଭିଷେକ,ଷୋଡ଼ଶ-ସୁରତମଞ୍ଜରୀ,ସପ୍ତଦଶ-ପଦ୍ମାବତୀ ଓ ଅଷ୍ଟାଦଶ ଲମ୍ବକ-ବିଷମଶୀଳ ନାମରେ ପ୍ରସିଦ୍ଧ ।

ଲମ୍ବକ ବା ଲମ୍ଭକ ଶବ୍ଦ ଭାଗ ଅର୍ଥରେ ବ୍ୟବହୃତ ହୋଇଥିଲେ ମଧ୍ୟ ଏହା ବହ୍ୱର୍ଥକ ଶବ୍ଦ । କେତେକଙ୍କ ମତରେ ଗୋଟିଏ ବିବାହରେ ଗୋଟିଏ ସ୍ତ୍ରୀ ପ୍ରାପ୍ତିକୁ ଲମ୍ଭ କୁହାଯାଏ । ତେଣୁ ଅଳଂକାରବତୀ ଲମ୍ବକ, ଶଶାଙ୍କ ବତୀ ଲମ୍ବକ ଆଦି ନାମରେ ଗୋଟିଏ ଗୋଟିଏ ଖଣ୍ଡ ନାମିତ । ବାଦୀଭ ସିଂହ କୃତ ଗଦ୍ୟ ଚିନ୍ତାମଣିରେ ଉକ୍ତ ଅଛି - ନାୟକ ଦ୍ୱାରା ପତ୍ନୀପ୍ରାପ୍ତି ବର୍ଣ୍ଣିତ କଥାଖଣ୍ଡର ନାମ ଲମ୍ଭ । ଲମ୍ଭ ଲଭ ଅର୍ଥରେ ମଧ୍ୟ ବ୍ୟବହୃତ । ଏହି ଗ୍ରନ୍ଥରେ ବତ୍ସରାଜ ଉଦୟନଙ୍କ ଔରସଜାତ ଓ ପତ୍ନୀ ବାସବଦତ୍ତାଙ୍କ ଗର୍ଭଜାତ ସନ୍ତାନ ନରବାହନ ଦତ୍ତର ବିଦ୍ୟାଧର ଚକ୍ରବର୍ତ୍ତିତ୍ୱ ପ୍ରାପ୍ତି ସହିତ ବିଭିନ୍ନ ଅଭିଯାନରେ ବିଭିନ୍ନ କନ୍ୟାପ୍ରାପ୍ତି ଓ ବିବାହ ବର୍ଣ୍ଣିତ ହେତୁ ପ୍ରତ୍ୟେକ ଖଣ୍ଡର ଲମ୍ବକ ନାମ ଯଥାର୍ଥ ମନେ ହୁଏ ।

କିନ୍ତୁ ଗୁଣାଢ୍ୟ ପ୍ରତ୍ୟେକ ଖଣ୍ଡକୁ କେଉଁ ନାମରେ ନାମିତ କରିଥିଲେ ତାହା ଏଥିରୁ ସ୍ପଷ୍ଟ ହୁଏ ନାହିଁ । ପ୍ରଥମ ଅନୁବାଦକ ବୁଧ ସ୍ୱାମୀ ବୃହତ୍ କଥା ଶ୍ଳୋକ ସଂଗ୍ରହକୁ ସର୍ଗରେ ବିଭାଜନ କରିଛନ୍ତି । ସଂଘଦାସ ଗଣିଙ୍କ ପ୍ରାକୃତ ସଂସ୍କରଣର ପ୍ରତ୍ୟେକ ଭାଗ ଶେଷରେ ଲାଭ ଶବ୍ଦ ବ୍ୟବହୃତ । କିନ୍ତୁ କ୍ଷେମେନ୍ଦ୍ର ଓ ସୋମଦେବ ପ୍ରତ୍ୟେକ ଖଣ୍ଡକୁ ଲମ୍ବକ ନାମ ଦେଇଛନ୍ତି । ସୁବନ୍ଧୁକୃତ ବାସବଦତ୍ତା ଗଦ୍ୟକାବ୍ୟର ଗୋଟିଏ ସ୍ଥଳରେ ଉଲ୍ଲେଖ ଅଛି - 'ବୃହତ୍ କଥା ଲମ୍ବୈରିବ ଶାଳଭଂଜିକା ନିବହୈଃ ''

ଅର୍ଥାତ୍ ବୃହତ୍ କଥାର ଲମ୍ବ ବା ପରିଚ୍ଛେଦରେ ନାରୀ ମାନଙ୍କର କଥା ବର୍ଣ୍ଣିତ । '' ଏଥିରୁ ମନେ ହୁଏ ବୃହଦ୍ କଥାର ପ୍ରତ୍ୟେକ ଖଣ୍ଡକୁ ଗୁଣାଢ୍ୟ ଲମ୍ବକ ନାମ ପ୍ରଦାନ କରିଥିବେ ।

ଗଦ୍ୟକାବ୍ୟ ସ୍ରଷ୍ଟା ବାଣ ବୃହଦ୍ କଥାର ମହତ୍ତ୍ୱ ଗାନ କରିବାକୁ ଯାଇ କହନ୍ତି -

'' ସମୁଦ୍ଦୀପିତ କନ୍ଦର୍ପା କୃତଗୌରୀ ପ୍ରସାଧାନା ।
ହରଲୀଳୈବ ଲୋକସ୍ୟ ବିସ୍ମୟାୟ ବୃହତ୍‌କଥା । ''

ସମୁଦ୍ଦୀପିତ କନ୍ଦର୍ପା'ରୁ ଜ୍ଞାତ ହୁଏ, ବୃହତ୍ କଥା କାମକଥା ବା ଶୃଂଗାରକଥା ଭାବରେ ପ୍ରସିଦ୍ଧି ଲାଭ କରିଥିଲା । କୃତ ଗୌରୀ ପ୍ରସାଧନା ରୁ ସୂଚିତ ହୁଏ, ଏହି ବୃହଦ୍ କଥାର ଆରମ୍ଭିକ ପାଠ ଶିବ-ପାର୍ବତୀଙ୍କ ସଂବାଦ ରୂପରେ ପ୍ରତିଷ୍ଠା ଅର୍ଜନ କରିଥିଲା ।

କଥାସରିତ୍‌ସାଗର ଗୁଣାଢ୍ୟଙ୍କ ବୃହତ୍‌କଥା ଆଧାରିତ ହେଲେ ମଧ୍ୟ ସୋମଦେବ ଭଟ୍ଟଙ୍କ ସହଜ୍ଞା ଓ ଉତ୍ପାଦ୍ୟା ପ୍ରତିଭାର ଅପୂର୍ବ ସମନ୍ୱୟରେ କାଳଜୟୀ ସୃଷ୍ଟି ରୂପେ ପାଠକଙ୍କୁ ବିସ୍ମୟାଭିଭୂତ କରି ଆସିଛି । ଏଥିରେ ବର୍ଣ୍ଣିତ ବିଭିନ୍ନ ଚରିତ୍ର ଓ ଘଟଣାର ମଧୁର ସମ୍ମିଶ୍ରଣ ପାଠକ ପ୍ରାଣରେ ଅପୂର୍ବ ପୁଲକ ସଂଚାର କରେ । ଏହି କଥାସାଗରରେ ଅଦ୍ଭୁତ କନ୍ୟା, ସାହସୀ ପ୍ରେମିକ, ରାଜା ଓ ସାଧୁ, ଯକ୍ଷ ଓ ପ୍ରେତ, ମଦ୍ୟପ ଓ ବିଟପ, ବେଶ୍ୟା ଓ କୁଟ୍ଟିନୀ, ନର ଓ ଅସୁର, ରାଣୀ ଓ ଦାସୀ, ଦୂତ ଓ ଦୂତୀ, ମୂର୍ଖ ଓ ପଣ୍ଡିତ, ଚୋର ଓ ଠକ , ଦେବ ଓ ବିଦ୍ୟାଧର, ପିଶାଚ ଓ ବେତାଳ, ଭିଖାରୀ ଓ ଜୁଆରୀ, ପଶୁ ଓ ପକ୍ଷୀ ସବୁକିଛି ଗର୍ଭିତ । ଏକାଧାରରେ ଏ ଗ୍ରନ୍ଥ ଭାରତୀୟ କଳ୍ପନାର ଦର୍ପଣ । ଚରିତ୍ର ଅନୁରୂପ ସୂକ୍ଷ୍ମାତିସୂକ୍ଷ୍ମ ଚିତ୍ରଣ ବାସ୍ତବରେ ବିସ୍ମୟାବହ ।

ଦେବତା, ମନୁଷ୍ୟ ଓ ଅସୁରଙ୍କ ଯୁଦ୍ଧ, ରକ୍ତପାନକ ବେତାଳ କଥା, ଯାଦୁ ଓ ଛଳକପଟ, ରାଜତନ୍ତ୍ର ଓ ଷଡ଼ଯନ୍ତ୍ର, ମନ୍ତ୍ରଯନ୍ତ୍ର, ଋଗ୍‌ବେଦକାଳୀନ ଦ୍ୟୁଲୋକ ଓ ଭୂଲୋକ ନିର୍ମାଣ ସମ୍ବନ୍ଧୀ କଥା ସହିତ ଗ୍ରାମ ଓ ସହର, ନଦୀ ଓ ସାଗର, ବନ ଓ ପର୍ବତ, ପ୍ରଭାତ ଓ ସନ୍ଧ୍ୟା, ଦ୍ୱୀପ ଓ ଜନପଦ ଆଦିର ବିସ୍ତୃତ ବର୍ଣ୍ଣନାରେ ଏ ସୃଷ୍ଟିକର୍ମ ସମୃଦ୍ଧ ।

ସୋମଦେବଙ୍କ ରୁଚିପୂର୍ଣ୍ଣ ଶୈଳୀ, ସରଳ ସୁବୋଧ ଭାଷା, ବର୍ଣ୍ଣନ ମାଧୁର୍ଯ୍ୟ, ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତି ପାଠକକୁ ପଦେପଦେ ମନ୍ତ୍ର ମୁଗ୍ଧ କରେ । ବିଶେଷ କରି ସ୍ତ୍ରୀ ଚରିତ୍ରର ଗୁଣ-ଦୋଷ ଉଦ୍‌ଘାଟନରେ କଥାକାର ସୋମଦେବଙ୍କ ବୈଶିଷ୍ଟ୍ୟ ପ୍ରଣିଧାନ ଯୋଗ୍ୟ । ନାରୀର ଚାରିତ୍ରିକ ପତନ ଓ ପାତିବ୍ରତ୍ୟ, ତ୍ୟାଗ ଓ ସେବା, ଛଳନା ଓ ଈର୍ଷା, ବହୁ ଗଳ୍ପକୁ ମଧୁରତର କରିଦେଇଛି । କାହାଣୀ ଗୁଡିକର ଅତିଶୟୋକ୍ତି ପୂର୍ଣ୍ଣ ରୂପ ହୃଦୟଗ୍ରାହୀ । ମନୋବିନୋଦକ ଅଥଚ ଭୟାନକ ପ୍ରେମ ସମ୍ବନ୍ଧୀ କଥା ଅକୃତ୍ରିମ ଆକର୍ଷକ ଢ଼ଙ୍ଗରେ ଉକ୍ତ ହୋଇ ହୃଦୟକୁ ରସାପ୍ଲୁତ କରେ । ବେତାଳ ପଞ୍ଚବିଂଶତି ଓ ପଞ୍ଚତନ୍ତ୍ରର ବହୁକଥା କଥାସରିତ୍‌ସାଗରରେ ସ୍ଥାନିତ । ଏହା ବ୍ୟତୀତ ରାମାୟଣ ଓ ମହାଭାରତର ବହୁ କାହାଣୀ ପରିବର୍ତ୍ତିତ ରୂପରେ ମିଳେ । କଥା ପ୍ରସଂଗ ମଧ୍ୟରେ ଦ୍ୟୂତର ଗୁଣ, ସ୍ୱପ୍ନର ସ୍ୱରୂପ ଓ ପ୍ରକାରଭେଦ, ରାଜାମାନେ କାହିଁକି ବହୁ ପତ୍ନୀକ ହୁଅନ୍ତି, ଇତ୍ୟାଦି ବିଷୟ ରୋଚକ ଢ଼ଂଗରେ ପ୍ରକାଶିତ ।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଛି - ସୂକ୍ତି ସଂଯୋଜନ । ସୋମଦେବ ନିଜ ଜୀବନରେ ଅନୁଭବ କରିଥିବା ବା ଗ୍ରନ୍ଥ ଅଧ୍ୟୟନରୁ ଉପଲବ୍ଧି କରିଥିବା ସାରନିର୍ଯ୍ୟାସକୁ ନୀତିବାଣୀ ରୂପରେ ଉପସ୍ଥାପନ

କରି ଏକ ଆଦର୍ଶ ଜୀବନ ଯାପନ ପାଇଁ ପାଠକକୁ ପ୍ରେରଣା ଦେଇ ଯାଇଛନ୍ତି । ଜୀବନାନୁଭୂତିର ସାରବସ୍ତୁ ଏଥିରେ ସଂରକ୍ଷିତ ।

ଉଦାହରଣ ସ୍ୱରୂପ - ଶୀଳଂ ହି ବିଦୁଷାଂ ଧନମ୍ ।
ପ୍ରିୟବନ୍ଧୁବିନାଶୋଦ୍ଧଃ ଶୋକାଗ୍ନିଃ କଂ ନ ତାପୟେତ୍ ।
ବରଂ ହି ମାନିନୋ ମୃତ୍ୟୁଃ ନ ଦୈନ୍ୟଂ ସ୍ୱଜନାଗ୍ରତଃ ।
କିଂ ସତ୍ୟେନ ବିନା ବଚଃ ।
ସ୍ତ୍ରୀଷୁ ବାକ୍ ସଂଯମଃ କୁତଃ ।
କିମଜ୍ଞେୟଂ ହ ଧୀମତାମ୍ ।

ଏହିପରି ସହସ୍ରାଧିକ ସୂକ୍ତିରତ୍ନରେ କଥାସରିତ୍ ସାଗର ନିଜର ଅନ୍ୟନାମ 'ରତ୍ନାକର' କୁ ସାର୍ଥକ କରିଅଛି । କେତେକ ମହତ୍ତ୍ୱପୂର୍ଣ୍ଣ ସୂକ୍ତିର ସାଧାରଣ ଅବବୋଧ ପାଇଁ ଓଡିଆ ଅନୁବାଦ ପ୍ରସ୍ତୁତ କରାଯାଉଛି ।

ଯଥା - ସ୍ତ୍ରୀତ୍ୱ, ମଦ୍ୟପାନ, ନିର୍ଜନତା, ପୁରୁଷସଂଗ ଓ ସଂପୂର୍ଣ୍ଣ ସ୍ୱାଧୀନତା ଏହି ପଞ୍ଚାଗ୍ନି ଏକତ୍ରିତ ହେଲେ ଚରିତ୍ରରୂପୀ ତୃଣର ରକ୍ଷା ଏକାନ୍ତ ଅସମ୍ଭବ ।

ଅନ୍ୟାୟ ମାର୍ଗ ଅବଲମ୍ବନ କରି କେହି ମଂଗଳମୟ ବସ୍ତୁ ଲାଭ କରିପାରେ ନାହିଁ ।
ମଦୋନ୍ମତ୍ତା ନାରୀ ଓ ପ୍ରବଳବେଗବତୀ ନଦୀର ନିୟନ୍ତ୍ରଣ ସମ୍ଭବପର ନୁହେଁ ।
ଉତ୍ତମ ଲୋକମାନେ ଶତ୍ରୁକୁ କ୍ଷମା ପ୍ରଦାନ କରି ଶତ୍ରୁତାର ପ୍ରତିଶୋଧ ନିଅନ୍ତି ।
ସଜ୍ଜନବ୍ୟକ୍ତି ପାପାଚରଣ ଅପେକ୍ଷା ମୃତ୍ୟୁକୁ ଶ୍ରେୟସ୍କର ମନେ କରନ୍ତି । ଇତ୍ୟାଦି ।

ସ୍ଥଳେ ସ୍ଥଳେ, ଗଣେଶ, ବିନ୍ଧ୍ୟବାସିନୀ ଦୁର୍ଗା, ଶିବ, ବିଷ୍ଣୁ ଆଦିଙ୍କ ସ୍ତୁତି ସଂଯୋଜନ କରି ସୋମଦେବ ବହୁଶାସ୍ତ୍ରଦର୍ଶିତାର ପରିଚୟ ଦେଇଛନ୍ତି । ସେଥିରେ ଭକ୍ତର ହୃଦୟୋଦ୍‌ଗାର ଓ ଆତ୍ମ ନିବେଦନ ରୂପାୟିତ ହୋଇଥିବା ମନେ ହୁଏ ।

ସଂକ୍ଷେପରେ କହିଲେ, ଗଳ୍ପ ଗୁଡିକୁ ରୋଚକ, ଶିକ୍ଷାପ୍ରଦ, ମନୋବିନୋଦନ ଓ ହୃଦୟାବର୍ଜକ କରିବା ପାଇଁ ସୋମଦେବ ଗୁଣାଢ଼୍ୟଙ୍କ ଗଳ୍ପରେ ପରିବର୍ତ୍ତନ କରିଛନ୍ତି । ଗଳ୍ପଗୁଡିକୁ ପାଠକଲାବେଳେ ସମସ୍ତ ଚରିତ୍ର ଓ ଘଟଣା ପ୍ରତ୍ୟକ୍ଷ ପରି ମନେହୁଅନ୍ତି । ପାଠକ ଗଳ୍ପ ସ୍ରୋତରେ ଭାସିଯାଇ କିଛି ସମୟ ପାଇଁ ଆତ୍ମହରା ହୋଇଯାଏ ।

ଭାରତୀୟଙ୍କ ବିଶ୍ୱାସ, କାହାଣୀ ଶୁଣିଲେ ପାପ ନଷ୍ଟ ହୁଏ । ଏହା ଅକ୍ଷରେ ଅକ୍ଷରେ ସତ୍ୟ । ସୋମଦେବଙ୍କ ଗଳ୍ପ ହୃଦୟର ମାଳିନ୍ୟ, ବୁଦ୍ଧିର ଦୈନ୍ୟ ଓ ମନର କାଳିମା ତଥା ସଂକୀର୍ଣ୍ଣତାକୁ ଧୌତ କରି ପାଠକର ହୃଦୟରେ ବିମଳ ଆନନ୍ଦ ସଂଚାର କରେ ।

**ଓଡିଆ ଅନୁବାଦ :-**

କଥାସରିତ୍‌ସାଗରର ବୈଶିଷ୍ଟ୍ୟ ଓ ବୈଭବ ବିଭିନ୍ନ ଭାଷା ଅନୁବାଦରୁ ପ୍ରମାଣିତ । ପୃଥିବୀର ଏପରି କୌଣସି ଉନ୍ନତ ଭାଷା ନାହିଁ, ଯେଉଁ ଭାଷାରେ କଥାସରିତ୍‌ସାଗରର ଅନୁବାଦ ହୋଇନାହିଁ । ତଥାପି ଓଡିଆ ଭାଷାରେ ଏହି ଗ୍ରନ୍ଥର ଏକ ପୂର୍ଣ୍ଣାଙ୍ଗ ଅନୁବାଦ ହୋଇଥିବା ମୋର ଦୃଷ୍ଟିକୁ ଆସିନାହିଁ । ଅବଶ୍ୟ ବିକ୍ଷିପ୍ତ

ଭାବରେ ଏ ମଧ୍ୟରୁ ବହୁଗଳ୍ପ ପ୍ରକାଶିତ ହୋଇଥିବା ପରିଲକ୍ଷିତ । ଯଥା- ବୀରବରକଥା, ଚାଣକ୍ୟକଥା, ଉଦୟନ ବାସବଦତ୍ତା କଥା, ଜୀମୂତ ବାହନ କଥା, ନାଗାର୍ଜୁନ କଥା ଇତ୍ୟାଦି ।

ବାସ୍ତବରେ ଏପରି ଏକ ବିରାଟ ଗଳ୍ପଗ୍ରନ୍ଥର ଅନୁବାଦକର୍ମ ସହଜସାଧ୍ୟ ନୁହେଁ । ପୁଣି ଅନୁବାଦ କଳା ଏକ ସ୍ୱତନ୍ତ୍ର ପ୍ରତିଭା ସାପେକ୍ଷ । ଗୋଟିଏ ଭାଷାର ପ୍ରକାଶଭଙ୍ଗୀ, ଶବ୍ଦ ସଂଯୋଜନ କୌଶଳ, ରୂଢ଼ି ପ୍ରୟୋଗ ଆଦି ଅନ୍ୟଭାଷାଠାରୁ ସ୍ୱତନ୍ତ୍ର ।

ମୂଳ ଭାଷାର ମୌଳିକ ଶବ୍ଦାର୍ଥକୁ ଉପଲବ୍ଧି କରି ଅନ୍ୟଭାଷାରେ ଯଥାଯଥ ପ୍ରକାଶନ ସହଜ ବ୍ୟାପାର ନୁହେ । ଉଭୟ ଭାଷାରେ ସମାନ ଅଧିକାର ନଥିଲେ ଅନୁବାଦ ସୁଖପାଠ୍ୟ ହୋଇପାରେ ନାହିଁ ମୂଳ ଗ୍ରନ୍ଥର ଭାବ ଗାମ୍ଭୀର୍ଯ୍ୟ ସଂରକ୍ଷଣ କରାଯାଇପାରେ ନାହିଁ ।

ସୁଖର କଥା ସଂସ୍କୃତ, ଇଂରାଜୀ, ହିନ୍ଦୀ ଓ ଓଡିଆ ଭାଷାରେ ସମାନ ଅଧିକାର ରଖିଥିବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗ ମୁଖ୍ୟ ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଏହି ଗ୍ରନ୍ଥର ପୂର୍ଣ୍ଣାଙ୍ଗ ଅନୁବାଦ ପ୍ରସ୍ତୁତ କରିଛନ୍ତି । କିନ୍ତୁ ତିନିଗୋଟି ଭାଗରେ ୧୯୬୯ ରୁ ୧୯୮୫ ମଧ୍ୟରେ ନବମ ଲମ୍ବକ ବା ଅର୍ଦ୍ଧେକ ମାତ୍ର ପ୍ରକାଶିତହୋଇ ଲୋକଲୋଚନକୁ ଆସିପାରିଛି । ଅନ୍ୟ ଅର୍ଦ୍ଧେକ ପାଣ୍ଡୁଲିପି ଭାବରେ ରହିଅଛି । ପ୍ରକାଶିତ ଅଂଶକୁ ପଢ଼ିବା ସୁଯୋଗ ପାଇ ମୁଁ ବିଶେଷ ତୃପ୍ତି ଲାଭ କରିଅଛି । ବିହାର ରାଷ୍ଟ୍ରଭାଷା ପରିଷଦ୍, ପାଟନାରୁ ପ୍ରକାଶିତ କଥା ସରିତ୍ ସାଗରକୁ ଆଧାର କରି ସେ ଅନୁବାଦ ପ୍ରସ୍ତୁତ କରିଛନ୍ତି । ଏଥିରେ ସୋମଦେବ ଭଟ୍ଟଙ୍କ ମୂଳ ସଂସ୍କୃତ ଶ୍ଳୋକ ସହିତ ଅନ୍ୟାନ୍ୟ ପଣ୍ଡିତଙ୍କ ହିନ୍ଦୀ ଅନୁବାଦ ସ୍ଥାନିତ । ଅନୁବାଦକ ଆଚାର୍ଯ୍ୟ ମହାଶୟ ଏ ଦୁଇଗୋଟି ଭାଷାକୁ ଦୃଷ୍ଟିରେ ରଖି ଓଡିଆ ଅନୁବାଦ ପ୍ରସ୍ତୁତ କରିଥିବା ସମ୍ଭାବନା ଉଜ୍ଜ୍ୱଳ । କଥାସରିତ୍‌ସାଗରର ଓଡିଆ ଅନୁବାଦ ସରଳ ସୁନ୍ଦର ରୀତିରେ ଉପସ୍ଥାପିତ । ଅନୁବାଦକ ମୌଳିକ ଗ୍ରନ୍ଥର ମାନ୍ୟତା ଦେବାପାଇଁ ସେ ଯେ ଯଥାସାଧ୍ୟ ଚେଷ୍ଟାକରିଛନ୍ତି ଏଥିରେ ସନ୍ଦେହ ନାହିଁ । ପ୍ରତ୍ୟେକ ଲମ୍ବକକୁ ସରିତ ଆଖ୍ୟା ଦେଇଛନ୍ତି ମାତ୍ର । ସ୍ଥଳ ବିଶେଷରେ ସ୍ତୁତି ଗୁଡିକୁ ଉଦ୍ଧାର କରି ତାର ଅନୁବାଦ କରିଛନ୍ତି । ଏହାଦ୍ୱାରା ପାଠକ ସ୍ତୁତି ଗୁଡିକର ମୂଳ ରୂପ ଗ୍ରହଣ କରିବା ସୁଯୋଗ ପାଇ ପାରିବ ।

ପୂର୍ବରୁ ସୂଚିତ ହୋଇଛି ଯେ କଥାସରିତ୍‌ସାଗରର ଲମ୍ବକ ବା ଭାଗ ସଂଖ୍ୟା - ୧୮ ଓ ତରଂଗ ସଂଖ୍ୟା ୧୨୪ । ଆଚାର୍ଯ୍ୟ ମହାଶୟଙ୍କ ପ୍ରକାଶିତ ଅନୁବାଦରେ ରହିଛି ଲମ୍ବକ - ୯ ଓ ସେଥିରେ ଥିବା ତରଙ୍ଗ ସଂଖ୍ୟା- ୫୫ । ପ୍ରତ୍ୟେକ ଲମ୍ବକରେ ୩ ରୁ ଆରମ୍ଭ କରି ୮ ଯାଏ ତଂରଗ ରହିଛି ଓ ପ୍ରତ୍ୟେକ ତଂରଗରେ ଗଳ୍ପ ସଂଖ୍ୟା ୧ ରୁ ଆରମ୍ଭ କରି ଦଶଯାଏ ରହିଛି । ଅତଏବ କଥାସରିତ୍ ସାଗର ସହସ୍ରାଧିକ ଗଳ୍ପର ସମାହାର ଓ ପ୍ରତ୍ୟେକ ଗଳ୍ପ ମନୋବିନୋଦକ ତଥା ଶିକ୍ଷାପ୍ରଦ । ଅପ୍ରକାଶିତ ଅଂଶ କୌଣସି ପ୍ରକାଶକ ବା ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟରେ ଲୋକ ଲୋଚନକୁ ଆସି ପାରିଲେ ଓଡିଆ ଭାଷାର ସମୃଦ୍ଧି ସାଧିତ ହୁଅନ୍ତା ଓ ଅନୁବାଦକଙ୍କ ଶ୍ରମସାର୍ଥକ ହେବା ସହିତ ଓଡିଆ ପାଠକ ଗଳ୍ପ ଗୁଡିକର ରସାସ୍ୱାଦନ କରିପାରନ୍ତା ।

***ପାଦଟୀକା :***

୧. କୌଶାମ୍ବୀ : ପ୍ରୟାଗ ଠାରୁ ୨୧ କିଲୋମିଟର ପଶ୍ଚିମରେ ଥିବା କୋସମ ଗ୍ରାମ ପ୍ରାଚୀନ କୌଶମ୍ବୀ, ଯେଉଁଠି ପାଣ୍ଡବ ବଂଶ ରାଜଧାନୀ ସ୍ଥାପନ କରିଥିଲେ ଓ ପରେ ବୁଦ୍ଧ ଧର୍ମ ପ୍ରଚାର କରିଥିଲେ ।

୨. ରାଜାରାଣୀମାନଙ୍କ ସହିତ ଜଳକେଳି ସମୟରେ ପ୍ରିୟତମା ପଟ୍ଟମହିଷୀକୁ ବାରଂବାର ଜଳକ୍ଷେପଣ କରିବାରୁ ରାଣୀ କହିଲେ - ''ମୋଦକୈଃ ପରିତାଡୟ ମାମ୍'' ଅର୍ଥାତ୍ ଉଦକୈଃ ମାଂ ମା ପରିତାଡୟ । ଏହାର ଅର୍ଥ - ମୋତେ ଜଳଦ୍ୱାରା ଆଘାତ କରନାହିଁ । ରାଜା କିନ୍ତୁ ବୁଝିଲେ ମୋଦକଦ୍ୱାରା ମୋତେ ଆଘାତକର । ତେଣୁ ସେ ଲଡୁ ମଗାଇଥିଲେ ।

୩. ଯଥାମୂଳଂ ତଥୈବୈତନ ମନାଗପ୍ୟତିକ୍ରମଃ ।
ଗ୍ରନ୍ଥବିସ୍ତାର ସଂକ୍ଷେପମାତ୍ରଂ ଭାଷା ଚ ଭିଦ୍ୟତେ ।
ଔଚିତ୍ୟାନ୍ୱୟ ରକ୍ଷା ଚ ଯଥାଶକ୍ତି ବିଧୀୟତେ ।
କଥାରସବିଘାତେନ କାବ୍ୟାଂଶସ୍ୟ ଚ ଯୋଜନା ।
ବୈଦଗ୍ଧ୍ୟ ଖ୍ୟାତି ଲଭାୟ ମମ ନୈବାୟମୁଦ୍ୟମଃ ।
କିନ୍ତୁ ନାନା କଥାଜାଲ ସ୍ମୃତି ସୌକର୍ଯ୍ୟସିଦ୍ଧୟେ ।

୪. ସ୍ୱପ୍ନ ଏକ ଅର୍ଦ୍ଧ ସୁସୁପ୍ତି ଅବସ୍ଥା, ଏହା ବହୁବିଧ, ସେମଧ୍ୟରେ ନିମ୍ନୋକ୍ତ ତ୍ରିବିଧ ମୁଖ୍ୟ ।
କ) ଅନ୍ୟାର୍ଥ (ଯାହା ଶୀଘ୍ର ଫଳପ୍ରଦାନ କରେ) ।
ଖ) ଯଥାର୍ଥ (ଦେବତାଙ୍କ ଆଦେଶସୂଚକ ସ୍ୱପ୍ନ) ।
ଗ) ଅପାର୍ଥ (ଶରୀରଚିନ୍ତା ବା ଅନୁଭବରୁ ଦୃଷ୍ଟ ସ୍ୱପ୍ନ) ।

*ଅବସରପ୍ରାପ୍ତ ପ୍ରାଧ୍ୟାପକ*
*ଲାଞ୍ଜୀପଲ୍ଲୀ, ଶ୍ରୀ କୃଷ୍ଣ ନଗର - ୪, ବ୍ରହ୍ମପୁର , ଗଂଜାମ*

# ଓଡିଶାର ପୋଥି ସମ୍ପାଦନା : ସୀମା ଓ ସମ୍ଭାବନା

ଡକ୍ଟର ଭଗବାନ ପଣ୍ଡା

## ପୂର୍ବାଭାଷ -

ପ୍ରାଚୀନ ଭାରତରେ ଲେଖାଲେଖି କରିବା ପାଇଁ ଶିଳାଖଣ୍ଡ, ତାମ୍ରପତ୍ର, କାଠପଟା, ତାଳପତ୍ର, ଭୂର୍ଜବଲ୍କଳ, ହାତୀ ଦାନ୍ତ ତିଆରି ପଟା, ପଶୁଚର୍ମ ପ୍ରଭୃତି ବ୍ୟବହୃତ ହେଉଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ଠାରୁ ପୂର୍ବ ପ୍ରଚଳିତ ଶିଳାଲେଖ ଓ ସ୍ତମ୍ଭଲେଖ ସହିତ ରାଜାଦେଶ ଉଦ୍ଦେଶ୍ୟରେ ତାମ୍ରପତ୍ରର ବହୁଳ ବ୍ୟବହାର ଆରମ୍ଭ ହେଲା । ଦୁଷ୍ପ୍ରାପ୍ୟ ଓ ଉପାଦେୟ ଗ୍ରନ୍ଥ, କଳା, ବିଜ୍ଞାନ ଓ ବୈଷୟିକ ବିଦ୍ୟା ସମ୍ବନ୍ଧୀୟ ଶାସ୍ତ୍ର, ସରକାରୀ ନଥି, ପ୍ରତ୍ନତାତ୍ତ୍ୱିକ ଚକ୍ର, ଯନ୍ତ୍ରାଦି ଉପାଦାନ ପ୍ରଭୃତି ମୁଖ୍ୟତଃ ତାଳପତ୍ର, ଭୂର୍ଜ ବଲ୍କଳ ଓ ପଶୁଚର୍ମରେ ଲିପିବଦ୍ଧ କରାଯାଉଥିବାର ଜଣାଯାଏ । ତେଣୁ ଭାରତର ବିଭିନ୍ନ ସଂଗ୍ରହାଳୟ ଓ ପାଠାଗାରରେ ଏ ପ୍ରକାର ହଜାର ହଜାର ପାଣ୍ଡୁଲିପି ଥିବାର ଦେଖାଯାଏ ।

ଭାରତର ଉତ୍ତର ଓ ଉତ୍ତର - ପଶ୍ଚିମ ଅଞ୍ଚଳରେ ଭୂର୍ଜପତ୍ର ଓ କେତେକ କ୍ଷେତ୍ରରେ ପଶୁଚର୍ମରେ ଲିଖିତ ପୋଥି ମିଳିଥିବାର ଜଣାଯାଏ । କିନ୍ତୁ ପୂର୍ବଭାରତର ଉପକୂଳ ଅଞ୍ଚଳରେ ବିଶେଷ କରି ବଂଗପ୍ରଦେଶ ଠାରୁ କେରଳ ପର୍ଯ୍ୟନ୍ତ ମୁଖ୍ୟତଃ ତାଳପତ୍ରରେ ଲିଖିତ ପୋଥି ବହୁସଂଖ୍ୟାରେ ଉପଲବ୍ଧ ହୁଏ । ଓଡିଶା ସହିତ ସମଗ୍ର ଦକ୍ଷିଣ ଭାରତରେ ତାଳ ଓ ଶ୍ରୀତାଳର ସୁଲଭତା ଦୃଷ୍ଟିରୁ ସେଥିରେ ଲେଖିବା ପଦ୍ଧତି ଖ୍ରୀଷ୍ଟୀୟ ଷଷ୍ଠ-ସପ୍ତମ ଶତାବ୍ଦୀଠାରୁ ଆରମ୍ଭ ହୋଇଥିବାର ପ୍ରମାଣ ମିଳେ । ତିବ୍ବତ ଓ ନେପାଳ ସହିତ ପୂର୍ବଭାରତରେ ପାମୀର ନାମକ ବୃକ୍ଷର ପତ୍ରରେ ମୁଖ୍ୟତଃ କାଳିକଲମରେ ଲେଖାଲେଖି ହେଉଥିଲା । ଓଡିଶାରେ ବହୁପୂର୍ବରୁ ତାଳପତ୍ରର ବ୍ୟବହାର ଆରମ୍ଭ ହୋଇଥିଲେ ମଧ୍ୟ ଉପଲବ୍ଧ ପ୍ରାଚୀନତମ ତାଳପତ୍ର ପୋଥିର ସମୟ ହେଉଛି ୧୪୯୩ ଖ୍ରୀଷ୍ଟାବ୍ଦ । କିନ୍ତୁ ଗୁଜୁରାଟ, ତାମିଲନାଡୁ ଓ କେରଳରୁ ଖ୍ରୀଷ୍ଟୀୟ ନବମ - ଦଶମ ଶତାବ୍ଦୀର ତାଳପତ୍ର ପୋଥି ମିଳିଥିବାର ଜଣାଯାଏ । ଖ୍ରୀଷ୍ଟୀୟ ୧୦ମ-୧୧ଶ ଶତାବ୍ଦୀ ଠାରୁ ଭାରତରେ କାଗଜର ବ୍ୟବହାର ଆରମ୍ଭ ହେବା ଫଳରେ ବିଭିନ୍ନ ଅଂଚଳରେ ଲେଖାଲେଖି ପାଇଁ କାଗଜ ମୁଖ୍ୟସ୍ଥାନ ଲାଭକଲା ବେଳେ ଓଡିଶାରେ ଚଳିତ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ମୁଖ୍ୟତଃ ତାଳପତ୍ର ହିଁ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ମଧ୍ୟ ବିଭିନ୍ନ ଚିତ୍ରର ଖୋଦେଇ ଓ ଚିତ୍ରଣ, ଜାତକ ପ୍ରସ୍ତୁତି, ବିବାହ ନିମନ୍ତ୍ରଣ ପ୍ରଭୃତି କାର୍ଯ୍ୟରେ ତାଳପତ୍ର ବ୍ୟବହାର କରାଯାଉଥିବାର ଦେଖାଯାଏ ।

ପ୍ରାଚୀନ ଓଡିଶାର ଉପାଦେୟ ସାଂସ୍କୃତିକ ବିଭବ ମଧ୍ୟରେ ତାଳପତ୍ର ପୋଥିର ମହତ୍ତ୍ୱ ସର୍ବଥା ଉଲ୍ଲେଖନୀୟ । ତାଳପତ୍ର ହେଉଛି ଓଡିଶା ଓ ଓଡିଆ ଜାତିର ଅମୂଲ୍ୟ ସମ୍ପଦ, ଓଡିଶାର ପୁରାଣ-ଇତିହାସ, ଶିଳ୍ପ-କଳା, ସଂଗୀତ-ସାହିତ୍ୟର ଆଧାର ହେଉଛି ଏଇ ତାଳପତ୍ର ପୋଥି । କାଳର କରାଳ ଦୃଷ୍ଟିକୁ ଏଡେଇ ଓ ମଣିଷର ଅମାନୁଷିକ ଅବହେଳାକୁ ସହ୍ୟ କରି ଶହ ଶହ ବର୍ଷ ଧରି ଆଲୋକର ଅପେକ୍ଷାରେ ପଡିରହିଥିବା ପୋଥିଗୁଡିକରୁ , ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ , ଓଡିଆ ଜାତିର ଜାତୀୟ ଜୀବନ

ଧାରା କିପରି ଉନ୍ନତ ଥିଲା, ଲୋକେ କିପରି ଶିକ୍ଷିତ, ସାହସୀ ଓ ଉଦ୍ୟମୀ ଥିଲେ ଏବଂ ଦେଶ ଓ ଜାତିର କଲ୍ୟାଣରେ କିପରି ଓଡିଆମାନେ ନିୟୋଜିତ ଥିଲା ତା'ର ଉଜ୍ଜ୍ୱଳ ସୂଚନା ମିଳେ । ପୋଥିକୁ ବାଦ୍ ଦେଇ ଗୌରବାବହ ଓଡିଶାର ଯଥାର୍ଥ ପରିଚୟ କଳ୍ପନା କରିବା ସମ୍ଭବ ନୁହେଁ ।

ଓଡିଶାର ରାଜା ମହାରାଜା, ଜମିଦାର, ଗ୍ରାମର ମୁଖ୍ୟ ବା ଅଧକ୍ଷ, ସମ୍ଭ୍ରାନ୍ତ ଓ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପୃଷ୍ଠପୋଷଣ ଦ୍ୱାରା ପୋଥିର ପ୍ରସ୍ତୁତି, ଲିଖନ, ଚିତ୍ରଣ ଓ ବିଭିନ୍ନ ଗ୍ରନ୍ଥର ପ୍ରତିଲିପି କରିବା କାର୍ଯ୍ୟ ଏକ ସମୃଦ୍ଧ ପରମ୍ପରା ରୂପେ ପ୍ରଚଳିତଥିଲା । କାରଣ, ଏହା ମର୍ଯ୍ୟାଦାର ଏକ ଅଙ୍ଗରୂପେ ଓ ଶାସ୍ତ୍ରାନୁମୋଦିତ ଧର୍ମକାର୍ଯ୍ୟ ସମାଜରେ ଗୃହୀତ ହୋଇଥିଲା । ଓଡିଶାର ଅଭିଲେଖ ଅନୁଶୀଳନରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ୭ମ-୮ମ ଶତାବ୍ଦୀଠାରୁ ରାଜା, ବ୍ରାହ୍ମଣ ଓ ସମ୍ଭ୍ରାନ୍ତ ପରିବାର ମଧ୍ୟରେ ପରସ୍ପର ପୋଥିର ଆଦାନ ପ୍ରଦାନ ପ୍ରଚଳିତ ଥିଲା । ବ୍ରାହ୍ମଣ ଓ ବିଦ୍ୟାର୍ଥୀମାନଙ୍କୁ ବଦାନ୍ୟ ବ୍ୟକ୍ତି ମାନେ ପୋଥି ଦାନ କରୁଥିଲେ । ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ ଓ ବିବାହିତା କନ୍ୟାକୁ ପୋଥି ଉପହାର ସ୍ୱରୂପ ଦିଆଯାଉଥିଲା । ତେଣୁ ଓଡିଶାର ଧର୍ମୀୟ ଓ ସାମାଜିକ ଜୀବନରେ ପୋଥିର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାଧାରଣତଃ ପୋଥି କହିଲେ ଲୋକେ ତାଳପତ୍ରରେ ଲିଖିତ ଗ୍ରନ୍ଥକୁ ହିଁ ବୁଝନ୍ତି । ଦକ୍ଷିଣ ଓଡିଶାରେ କାଗଜରେ ଲିଖିତ ବା ମୁଦ୍ରିତ ପୁସ୍ତକକୁ ଏବେବି ଲୋକେ ପୋଥିବୋଲି କହୁଛନ୍ତି । ପୂର୍ବରୁ ଶାସ୍ତ୍ର ପୁରାଣମାନ କେଉଁ ଲିପିରେ ତାଳ ପତ୍ର ଉପରେ ଲେଖା ଯାଉଥିଲା ତା'ର ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ନାହିଁ । କିନ୍ତୁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ଠାରୁ ଓଡିଆ ଲିପିର ପ୍ରଚଳନ ଫଳରେ ତାଳପତ୍ରର ବହୁଳ ବ୍ୟବହାର ଘଟିଥିବା ଅନୁମାନ କରାଯାଏ ।

ତାଳପତ୍ରକୁ ସଂଗ୍ରହ କରି, ଶୁଖାଇ, କଷ ଦେଇ, ଆକାର ପ୍ରସ୍ତୁତି ଓ ଲିଖନ ଉପଯୋଗୀ କରିବାରେ ବହୁ ସମୟ ଲାଗେ । ଏହି କାର୍ଯ୍ୟରେ ବିଭିନ୍ନ ଶ୍ରେଣୀର ଲୋକେ ଅଂଶ ଗ୍ରହଣ କରନ୍ତି । ପୋଥି ପ୍ରସ୍ତୁତି ପରେ ତାହା ଲେଖକମାନଙ୍କୁ ଯୋଗାଇ ଦିଆଯାଏ । ଲେଖକ ବା ଲିପିକାର ମାନେ ଲୌହଲେଖନୀ ଦ୍ୱାରା ଉଦ୍ଦିଷ୍ଟ ଶାସ୍ତ୍ର ପୁରାଣ, କାବ୍ୟ କବିତାମାନ ଲେଖିଥାନ୍ତି । ଆବଶ୍ୟକ ସ୍ଥଳେ ଚିତ୍ରକର ମାନେ ପୋଥିରେ ରେଖାଚିତ୍ର ଖୋଦେଇ କରନ୍ତି ଏବଂ ରଂଗିନ୍ ଚିତ୍ର ଚିତ୍ରଣ କରନ୍ତି । କେତେକ କ୍ଷେତ୍ରରେ ଲେଖକ ଓ ଚିତ୍ରକର ଏକ ବ୍ୟକ୍ତି ହୋଇଥିବାର ସୂଚନା ମିଳେ । କାଳକ୍ରମେ ଏକ ପୋଥିରୁ ଅନେକ ପ୍ରତିଲିପି ପ୍ରସ୍ତୁତ ହୁଏ । ପୋଥି ଗୁଡିକର ସୁରକ୍ଷା ପାଇଁ ଦୁଇପାଖରେ କାଠ ବା ବାଉଁଶର ଦୁଇଟି ପଟା ରହେ ଏବଂ ମଝିରେ ବା ପାଖରେ ବିନ୍ଧ କରାଯାଇ ସେଥିରେ ଡୋରଦେଇ ପୋଥିକୁ ବାନ୍ଧି ରଖାଯାଏ । କେତେକ ପୋଥିର ଦୁଇ ପାଖରେ ଥିବା ପଟାକୁ ଚିତ୍ରଣ କରାଯାଇଥିବାର ଦେଖାଯାଏ । ବିଧିବଦ୍ଧ ଭାବେ ପ୍ରସ୍ତୁତ ଓ ସଂରକ୍ଷିତ ତାଳପତ୍ର ପୋଥି ପାଞ୍ଚଶହ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ନିରାପଦରେ ରହିପାରେ । ଜଳ, ତୈଳ,ପୋକ, ଉଇ, ମୂଷା ପ୍ରଭୃତି ପୋଥିର ପରମ ଶତ୍ରୁ । ଶିଥିଳ ଭାବେ ବନ୍ଧା ହୋଇ ପୋଥି ମଧ୍ୟ ଅଳ୍ପ କାଳ ମଧ୍ୟରେ ନଷ୍ଟ ହୋଇଯାଏ । ଏ ବିଷୟରେ ସାବଧାନ ହେବା ପାଇଁ ପୋଥି କହିଛି -

ଜଳାଦ୍ରକ୍ଷ ତୈଳାଦ୍ରକ୍ଷ ରକ୍ଷ ମାଂ ଶ୍ଲଥବନ୍ଧନାତ୍ ।
ଆଖୁଭ୍ୟଃ ପରହସ୍ତେଭ୍ୟ ଏବଂ ବଦତି ପୁସ୍ତକମ୍ ।।

ଓଡିଶା ପରି ଭାରତର ଅନ୍ୟାନ୍ୟ ଅଞ୍ଚଳରେ ପୋଥିର ପ୍ରସ୍ତୁତି ଓ ସୁରକ୍ଷା ପାଇଁ ଭିନ୍ନ ଭିନ୍ନ ପଦ୍ଧତି ଅନୁସୃତ ହେଉଥିବାର ଜଣାଯାଏ । ଜୀବନ ଓ ଜୀବିକା ପାଇଁ ପୋଥିଲେଖକ ମାନେ ଯେଉଁ କଠୋର ସାଧନା କରନ୍ତି, ଶ୍ରମ ଓ ଶାରୀରିକ କଷ୍ଟବରଣକରନ୍ତି ତା'ର ସୂଚନା ନିମ୍ନୋକ୍ତିରୁ ମିଳିଥାଏ -

ଭଗ୍ନପୃଷ୍ଠଃ କଟୀଗ୍ରୀବଃ ତୁଲ୍ୟଦୃଷ୍ଟିରଧୋମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥଃ ପୁତ୍ରବଦ୍ ପରିପାଳୟେତ୍ ।।
ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନା ବିଦ୍ୟତେ ।।
ଗ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସୋ ଲେଖକସ୍ତୁ ବିନାୟକଃ ।
ତୟୋର୍ବିଚଳିତା ବୁଦ୍ଧିର୍ମନୁଷ୍ୟାଣାଂ ଚ କା କଥା ।।
ପୁସ୍ତକଂ ହରତେ ଯସ୍ତୁକାଣୋ ଦୁଃଖୀ ଭବେନ୍ନରଃ ।
ପିତରୋନରକଂ ଯାନ୍ତି ଯାବଚ୍ଚନ୍ଦ୍ରଦିବାକରୌ ।।

ପୋଥି ଲେଖିବା ଏକ କଷ୍ଟସାଧ୍ୟ କଳା । ଓଡିଶାର ବହୁବ୍ୟକ୍ତି ଜାତି ଧର୍ମ ନିର୍ବିଶେଷରେ ଏହି କଳା ସାଧନାରେ ବ୍ୟାପୃତ ଥିଲେ ।

ଓଡିଶାରେ ମିଳୁଥିବା ପୋଥିରେ ପ୍ରକାଶିତ ଗ୍ରନ୍ଥ ବ୍ୟତୀତ ଅପ୍ରକାଶିତ ଥିବା ବେଦ, ବେଦାଙ୍ଗ, ବ୍ରାହ୍ମଣ, ଉପନିଷଦ, ଧର୍ମଶାସ୍ତ୍ର, ଦର୍ଶନଶାସ୍ତ୍ର, ଗଣିତ ଶାସ୍ତ୍ର, ପୁରାଣ, ଜ୍ୟୋତିଷ, ଆୟୁର୍ବେଦ, ଶିଳ୍ପଶାସ୍ତ୍ର, ସଂଗୀତ ଶାସ୍ତ୍ର, ତନ୍ତ୍ରଶାସ୍ତ୍ର ଓ ଲୌକିକ ତନ୍ତ୍ର (ଗୁଣିଗାରେଡି) ସହିତ ବହୁ ଉପାଦେୟ କାବ୍ୟକବିତା ନାଟକାଦି ଗ୍ରନ୍ଥ ଅଦ୍ୟାବଧି ଜରାଜୀର୍ଣ୍ଣ ଅବସ୍ଥାରେ ଆଲୋକ ଦେଖିବାର ଅପେକ୍ଷାରେ ରହିଛି । ସେଗୁଡିକର ସଂରକ୍ଷଣ, ପ୍ରକାଶନ ଓ ବିବରଣାତ୍ମକ ତାଲିକା ପ୍ରସ୍ତୁତି ପାଇଁ ସମୟୋପଯୋଗୀ ଯଥାର୍ଥ ପଦକ୍ଷେପର ଅଭାବ, ପ୍ରାକୃତିକ ବିପଦ, ଜଳବାୟୁର ପ୍ରକୋପ, ସଂରକ୍ଷକ ଓ ଗବେଷକ ମାନଙ୍କର ଯଥେଚ୍ଛା ବ୍ୟବହାର ହେତୁ ସେଥିରେ ଲିପିବଦ୍ଧ ହୋଇ ରହିଥିବା ଓଡିଶାର ପରମ୍ପରା, ଐତିହ୍ୟ, ବିଜ୍ଞାନ ଓ ସଂସ୍କୃତିର ଆଲୋକ ଯେ ଚିରଦିନ ନିର୍ବାପିତ ହୋଇଯିବ, ସେଥିରେ ସଂଦେହ ନାହିଁ ।

ଖ୍ରୀଷ୍ଟୀୟ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଆବିର୍ଭୂତ ଓଡିଶାର ମହାପୁରୁଷ, ସିଦ୍ଧ ସାଧକ ଓ ମହାକବିମାନଙ୍କ ବିପୁଳ ସାହିତ୍ୟ ସମ୍ଭାର ତାଳପତ୍ରରେ ହିଁ ଲିଖିତ ଓ ପ୍ରଚାରିତ ହୋଇଥିଲା । ମହାକବି ସାରଳାଦାସଙ୍କ ମହାଭାରତ, ଭକ୍ତକବି ବଳରାମଦାସଙ୍କ ରାମାୟଣ, ମହାପୁରୁଷ ଜଗନ୍ନାଥଦାସଙ୍କ ଭାଗବତ, ସିଦ୍ଧ ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଦ୍ୱାରା ତତ୍କାଳୀନ ଓଡିଶାର ଧାର୍ମିକ, ସାମାଜିକ ଓ ସାଂସ୍କୃତିକ ଜୀବନରେ ଏକ ଅପୂର୍ବ ଜାଗରଣ ସୃଷ୍ଟି ହୋଇଥିଲା, ଯାହାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ । ଓଡିଆ ଭାଷା, ସାହିତ୍ୟ ଓ ଶିକ୍ଷାକ୍ଷେତ୍ରରେ ପ୍ରମୁଖ ସ୍ଥାନ ଲାଭ କରିଥିଲା ଓଡିଆ ଭାଗବତ ଯାହାର ପ୍ରତିଲିପି ପ୍ରତ୍ୟେକ ଓଡିଆ ଘରେ ରହିବା ଅନିବାର୍ଯ୍ୟ ହୋଇପଡିଲା । ଭାଗବତ ଅଧ୍ୟୟନ ପାଇଁ ପ୍ରତ୍ୟେକ ଗ୍ରାମରେ ଗୋଟିଏ କରି ଭାଗବତ ଟୁଙ୍ଗି, ଭାଗବତ ଘର ଅଥବା ଭାଗବତ ଗାଦି (ପାଠାଗାର) ପ୍ରତିଷ୍ଠା କରାଗଲା । ପୁରାଣ ପାଠ ଓ ଆଲୋଚନା ଏହାର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିଲେ ମଧ୍ୟ ଓଡିଆ ଓ ସଂସ୍କୃତ ଭାଷାରେ ଲିଖିତ ଗ୍ରନ୍ଥ ଗୁଡିକ ଭାଗବତ ଗାଦିରେ ସଂରକ୍ଷିତ ହେଲା ଏବଂ କାଳକ୍ରମେ ଭାଗବତଟୁଙ୍ଗି ଗ୍ରାମର ଶିକ୍ଷା ଓ ସଂସ୍କୃତିର କେନ୍ଦ୍ର ରୂପେ ଗଢ଼ି ଉଠିଲା । ବିଭିନ୍ନ ଅଞ୍ଚଳରୁ ପୋଥିସଂଗ୍ରହ କରାଯାଇ ସେଠାରେ ରଖାଗଲା ଓ ପୋଥିର ପ୍ରତିଲିପି ମଧ୍ୟ ପ୍ରସ୍ତୁତ ହେଲା ।

ବହୁ ବଦାନ୍ୟ ବ୍ୟକ୍ତି ମଧ ଭାଗବତ ଘରକୁ ପୋଥିଦାନ କଲେ । ଫଳରେ ଷୋଡ଼ଶ ଶତାବ୍ଦୀ ଶେଷଆଡକୁ ପ୍ରତ୍ୟେକ ଗ୍ରାମରେ ପୋଥିର ଏକ ସମୃଦ୍ଧ ପାଠାଗାର ପ୍ରତିଷ୍ଠା ହୋଇ ପାରିଥିଲା । ଓଡିଶାର ଏହି ମହାନ୍ ଆଦର୍ଶ ଓଡିଶାର ପଡୋଶୀ ରାଜ୍ୟ ସହିତ ସୁଦୂର ପୂର୍ବୋତ୍ତର ଭାରତରେ ଅନୁସୃତ ହୋଇଥିଲା, ଯାହାର ଦୃଷ୍ଟାନ୍ତ ସମକାଳୀନ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ବିରଳ ।

**ପୋଥି ସର୍ବେକ୍ଷଣ ଓ ସଂରକ୍ଷଣ :-**

ଭାରତ ବର୍ଷରେ ଓଡିଶା ପୋଥିଭଣ୍ଡାର ରୂପେ ସୁବିଦିତ । ଓଡିଶାର ପ୍ରତ୍ୟେକ ବ୍ରାହ୍ମଣ ପରିବାର, ଗ୍ରାମର ସମ୍ଭ୍ରାନ୍ତ ପରିବାର, ମଠ, ମନ୍ଦିର, ପୂର୍ବତନ ରାଜକୀୟ ଗ୍ରନ୍ଥାଗାର ପ୍ରଭୃତିରେ ହଜାର ହଜାର ପୋଥି ଯେପରି ସଂଗୃହୀତ ଓ ସଂରକ୍ଷିତ ହୋଇ ରହିଥିଲା ତାହା ଭାବିଲେ ବିସ୍ମିତ ନହୋଇ ରହି ହେବ ନାହିଁ । ଦୁଃଖର କଥା, ଆଧୁନିକ ଶିକ୍ଷାର ପ୍ରସାର ଦ୍ୱାରା ସମାଜରେ ଭୋଗବିଳାସର ପ୍ରାଧାନ୍ୟ ବୃଦ୍ଧି ପାଇବା ସଂଗେ ସଂଗେ ଓଡିଶାର ପୋଥି ସଂସ୍କୃତିର ଅବକ୍ଷୟ ଘଟିବାରେ ଲାଗିଛି । ତଥାପି ଉପଲବ୍ଧ ତଥ୍ୟ ଅନୁସାରେ ବର୍ତ୍ତମାନ ଓଡିଶା ରାଜ୍ୟ ସଂଗ୍ରହାଳୟ ସତେଇଶଟି ବିଭାଗରେ ବିଭକ୍ତ, ଓଡିଆ, ତେଲୁଗୁ, ଦେବନଗରୀ, ତାମିଲ, ଶାରଦା, ଉର୍ଦ୍ଦୁ, ବଂଗଳା ପ୍ରଭୃତି ଲିପିରେ ଲିଖିତ ପ୍ରାୟ ଅଠେଇଶ ହଜାରରୁ ଅଧିକ ତାଳପତ୍ର ପୋଥି (ଖେଦା ବା ଖଣ୍ଡ) ଚାରି ଶହ ଚିତ୍ରିତ ତାଳପତ୍ର ପୋଥି ଓ ପାଞ୍ଚ ହଜାରରୁ ଅଧିକ କାଗଜ ପାଣ୍ଡୁଲିପି ସଂରକ୍ଷିତ ହୋଇ ରହିଛି । ବିଷୟବସ୍ତୁ ଅନୁସାରେ ପୃଥକ୍ କରାଗଲେ ପୋଥି ସଂଖ୍ୟା ଚାଳିଶ ହଜାରରୁ ଅଧିକ ହେବ । ଏହା ଭାରତର ପ୍ରଥମ ସ୍ଥାନୀୟ ତାଳପତ୍ର ପୋଥିଭଣ୍ଡାର । ଉତ୍କଳ ବିଶ୍ୱବିଦ୍ୟାଳୟ (ଆ : ୬୦୦୦) ସମ୍ବଲପୁର ବିଶ୍ୱବିଦ୍ୟାଳୟ ( ଆ:୧୨୦୦), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ (ଆ:୫୦୦୦), ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ (ଆ:୨୦୦୦), ବିଶ୍ୱଭାରତୀ, ଶାନ୍ତି ନିକେତନ (ଆ:୬୦୦), କେଦାରନାଥ ଗବେଷଣା ପ୍ରତିଷ୍ଠାନ (ଆ:୩୦୦) ମହତାବ ପାଠାଗାର (ଆ : ୮୦୦୦) ବାଞ୍ଛାନିଧି ପାଠାଗାର (ଆ : ୫୦୦୦), ଓଡିଶା ଓ ପଶ୍ଚିମ ବଂଗର ବିଭିନ୍ନ ପାଠାଗାର, ବନାରସ, ଆହ୍ଲାବାଦ, ମାନ୍ଦ୍ରାଜ (ଚେନ୍ନାଇ) ଓ ମହାରାଷ୍ଟ୍ରର ବିଭିନ୍ନ ପ୍ରାଚ୍ୟ- ଗ୍ରନ୍ଥାଗାର ପାଠାଗାର ଓ ସଂଗ୍ରହାଳୟରେ ପ୍ରାୟ ପଚାଶ ହଜାରରୁ ଅଧିକ ଓଡିଆ ତାଳପତ୍ର ପୋଥି ସଂରକ୍ଷିତ ହୋଇ ରହିଥିବାର ଜଣାଯାଏ । ଓଡିଶାର ବହୁ ଉପାଦେୟ ଗ୍ରନ୍ଥ ଓ ଚିତ୍ରପୋଥି ଭାରତ ବାହାରକୁ ବିଶେଷତଃ ଲଣ୍ଡନ, ସୁଇଜରଲାଣ୍ଡ, ହଙ୍ଗେରୀ, ଆମେରିକା, ଜର୍ମାନ, ଜାପାନ, ନେପାଳ, ଚୀନ ପ୍ରଭୃତି ଦେଶକୁ ସ୍ଥାନାନ୍ତରିତ ହୋଇଯାଇଥିବାର ସୂଚନା ମିଳେ । ସମ୍ପ୍ରତି ଓଡିଶାର ପ୍ରତ୍ୟେକ ଶାସନ (ଅଗ୍ରହାର) ଓ ବ୍ୟକ୍ତିଗତ ସଂଗ୍ରହରେ, ଲକ୍ଷାଧିକ ପୋଥି ଥିବାର ଜଣାଯାଏ । ଦୁଃଖର କଥା, ପୋଥି ପରି ଏକ ଦୁର୍ଲଭ ଐତିହାସିକ ଓ ସାଂସ୍କୃତିକ ଉପାଦାନର ସର୍ବେକ୍ଷଣ ଅଦ୍ୟାବଧି ଓଡିଶାରେ କରାଯାଇ ନାହିଁ ।

୧୭୮୪ ରେ ଏସିଆଟିକ୍ ସୋସାଇଟି, ବେଙ୍ଗଲ କଲିକତାରେ ପ୍ରତିଷ୍ଠା ହେବା ପରେ ଓଡିଶାର ଇତିହାସ ଓ ସଂସ୍କୃତି ସମ୍ବନ୍ଧୀୟ ଗବେଷଣାର ଆରମ୍ଭ ହେଲା । ୧୮୦୩ ପରେ ଯେଉଁ ଦେଶୀ ଓ ବିଦେଶୀ ତଥାକଥିତ ଗବେଷକ ମାନେ ଓଡିଶାର ଶାସନ କାର୍ଯ୍ୟରେ ନିଯୁକ୍ତି ହେଲେ ସେଇମାନେ ହିଁ ଏହାର ଐତିହାସିକ ନଥିପତ୍ର, ପ୍ରତ୍ନତାତ୍ତ୍ୱିକ ବିଭବ ଓ ତାଳପତ୍ର ପୋଥିର ସର୍ବେକ୍ଷଣ ଆରମ୍ଭ କଲେ । ୧୮୭୦- ୧୯୪୮ ମଧ୍ୟରେ ପୂର୍ବୋକ୍ତ ସୋସାଇଟି ପକ୍ଷରୁ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ, ରାଜେନ୍ଦ୍ରଲାଲ ମିତ୍ର ପ୍ରଭୃତିଙ୍କ ଦ୍ୱାରା ସମ୍ପାଦିତ ୧୦ ଭାଗରେ ଓ ୨୦ ଖଣ୍ଡରେ ବିଭକ୍ତ ଯେଉଁ ପାଣ୍ଡୁଲିପି (ପୋଥି) ବିବରଣାତ୍ମକ ତାଲିକା

ପ୍ରକାଶ ପାଇଥିଲା ସେଥିରେ ଓଡିଶାରୁ ବହୁ ପୋଥି ସଂଗୃହୀତ ହୋଇଥିବାର ଜଣାଯାଏ । ସେହିପରି ଚେନ୍ନାଇ, ମହାରାଷ୍ଟ୍ର, ଗୁଜୁରାଟ ପ୍ରଭୃତି ଅଞ୍ଚଳରୁ ପ୍ରକାଶିତ ତାଲିକାରେ ଓଡିଶାର ବହୁ ଉପାଦେୟ, ଦୁଷ୍ପ୍ରାପ୍ୟ ଓ ଅଜ୍ଞାତପ୍ରାୟ ପୋଥି ସ୍ଥାନିତ ହୋଇଥିବାର ଦେଖାଯାଏ । ଓଡିଶା ବାହାରର ଗବେଷକମାନେ ତତ୍କାଳୀନ ଉପଲବ୍ଧ ଉପାଦାନ ଆଧାରରେ ନିଜ ରୁଚି ଓ ଜ୍ଞାନ ଅନୁସାରେ ଓଡିଶା ଓ ଓଡିଆ ଜାତି ଉପରେ ଭ୍ରମପୂର୍ଣ୍ଣ ଓ ବିକୃତ ଲେଖାମାନ ପ୍ରବନ୍ଧ ଓ ପୁସ୍ତକ ଆକାରରେ ପ୍ରକାଶ କରିବାକୁ ଲାଗିଲେ । ଦୀର୍ଘ ଏକ ଶତାବ୍ଦୀ ଧରି ଏଇ ଦୁରବସ୍ଥା ଲାଗି ରହିବା ପରେ ୧୯୩୬ରେ ଏକ କ୍ଷୁଦ୍ରାତିକ୍ଷୁଦ୍ର ଭୂଖଣ୍ଡକୁ ନେଇ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଆତ୍ମପ୍ରକାଶ କଲା । ୧୯୪୧-୪୨ ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ପରେ ଓଡିଆ ଗବେଷକ ମାନେ ଗବେଷଣା କ୍ଷେତ୍ରରେ ପ୍ରବେଶ କଲେ । ୧୯୪୯ ମସିହା ଠାରୁ ଓଡିଶାର ଅଭିଲେଖଗୁଡିକ ପୁନଃ ସମ୍ପାଦିତ ହେଲା ଏବଂ ପ୍ରାଚୀନ ପୋଥିର ସମ୍ପାଦନା ଓ ପ୍ରକାଶନ କାର୍ଯ୍ୟରେ ଗବେଷକ ମାନେ ନିୟୋଜିତ ହେଲେ । ଓଡିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱରର ସାମ୍ପ୍ରତିକ ସୌଧକୁ ୧୯୬୦ରେ ସ୍ଥାନାନ୍ତରିତ ହେବା ପରେ ବିଧିବଦ୍ଧ ଭାବେ ତାଳପତ୍ର ପୋଥିର ସଂଗ୍ରହ ଓ ସଂରକ୍ଷଣ ସହିତ ବିବରଣାତ୍ମକ ପୋଥି ତାଲିକା (ପୂର୍ବ ପ୍ରସ୍ତୁତ) ୧୯୫୮ ଠାରୁ କ୍ରମଶଃ ପ୍ରକାଶ ପାଇଲା । କିନ୍ତୁ ଅଦ୍ୟାବଧି ଯେଉଁ ଖଣ୍ଡ ବିବରଣାତ୍ମକ ତାଲିକା ବିଭିନ୍ନ ସଂସ୍ଥା ପକ୍ଷରୁ ପ୍ରକାଶିତ ହୋଇଛି । ତାହା ସଂଗୃହୀତ ପୋଥି ସଂଖ୍ୟା ତୁଳନାରେ ଆଦୌ ସନ୍ତୋଷ ଜନକ ନୁହେଁ । କେତେକ ସଂସ୍ଥାରେ ହଜାର ହଜାର ପୋଥିଥିଲେ ମଧ ତାହାର କୌଣସି ସୂଚନା ଗ୍ରନ୍ଥ ଅଦ୍ୟାବଧି ପ୍ରକାଶପାଇନାହିଁ । ତେଣୁ ଗବେଷକମାନେ ଏ ବିଷୟରେ ଆଉ କାଳ ବିଳମ୍ବ ନ କରି ଯଥାଶୀଘ୍ର ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ ।

ପୋଥି ସମ୍ପାଦନା :-

ଓଡିଶାରେ ପ୍ରଥମ ମୁଦ୍ରାଯନ୍ତ୍ର ୧୮୩୮ରେ ପ୍ରତିଷ୍ଠା ହେଲା । ପ୍ରାୟ ୯୦ ବର୍ଷ ପରେ ‘ପ୍ରାଚୀ ସମିତି’ ନାମରେ ଏକ ଗବେଷଣା ସଂସ୍ଥା ୧୯୨୮ରେ ପ୍ରତିଷ୍ଠା କରାଗଲା । ଏହି ସମୟ ମଧ୍ୟରେ ବହୁ ଓଡିଆ ଓ ସଂସ୍କୃତ ପୁସ୍ତକ ପ୍ରକାଶ ପାଇଥିଲା । ପୁସ୍ତକ ପ୍ରକାଶନରେ ଯେଉଁ ବଦାନ୍ୟ ବ୍ୟକ୍ତିମାନେ ସାହାଯ୍ୟ ଓ ସହଯୋଗ କରିଥିଲେ ସେମାନଙ୍କ ମଧ୍ୟରେ ପଣ୍ଡିତ ଗୋବିନ୍ଦ ରଥ, ବିଶ୍ୱନାଥ କର, ରତ୍ନାକର ଗର୍ଗବଟୁ ପ୍ରଭୃତିଙ୍କ ସହିତ ମୟୂରଭଂଜ, କେନ୍ଦୁଝର, କନିକା, ତାଳଚେର, ପାରଳାଖେମୁଣ୍ଡି, ଚିକିଟି, ଖଲ୍ଲିକୋଟ, ସୋନପୁର, ପାଟନାଗଡ, କଳାହାଣ୍ଡି ପ୍ରଭୃତିର ରାଜାମାନଙ୍କ ଦାନ ଥିଲା ଅତୁଳନୀୟ ଓ ଅବିସ୍ମରଣୀୟ । କିନ୍ତୁ ଏହି ପ୍ରକାଶିତ ଗ୍ରନ୍ଥ ଗୁଡିକ ମଧ୍ୟରୁ ମୁଷ୍ଟିମେୟ ଗ୍ରନ୍ଥ ବ୍ୟତୀତ ବହୁ ଗ୍ରନ୍ଥ ଅଦ୍ୟାବଧି ପ୍ରାୟ ସମ୍ପାଦିତ ଓ ପୁନଃ ପ୍ରକାଶିତ ହୋଇନାହିଁ । ପ୍ରାଚୀ ସମିତି ଦ୍ୱାରା ହିଁ ପ୍ରଥମ କରି ପ୍ରାଚୀନ ଗ୍ରନ୍ଥ ସଂଗ୍ରହ, ସମ୍ପାଦନା ଓ ପ୍ରକାଶନା କାର୍ଯ୍ୟ ଆରମ୍ଭ କରାଯାଇଥିଲା । ଦୁଃଖର କଥା, ଓଡିଶାରେ ଗ୍ରନ୍ଥ ସମ୍ପାଦନାର ସୁଦୀର୍ଘ ୭୦ ବର୍ଷର ପରମ୍ପରା ଥିଲେ ମଧ ସାରଳା ଯୁଗଠାରୁ ଆରମ୍ଭ କରି ଭଂଜଯୁଗ ମଧ୍ୟରେ ସୃଷ୍ଟି ହୋଇଥିବା ବିପୁଳ ସାହିତ୍ୟ ସମ୍ଭାର ମଧ୍ୟରୁ ବହୁ ଗ୍ରନ୍ଥ ବହୁବାର ପ୍ରକାଶ ପାଇଥିଲେ ମଧ ମୁଷ୍ଟିମେୟ ଗ୍ରନ୍ଥ ବ୍ୟତୀତ ଅନେକ ଦୁଷ୍ପ୍ରାପ୍ୟ ଓ ଉପାଦେୟ ଗ୍ରନ୍ଥ ଅଦ୍ୟାବଧି ଯଥାବିଧି ସମ୍ପାଦିତ ହୋଇ ପ୍ରକାଶ ପାଇନାହିଁ । ବହୁ ସଂସ୍କୃତ ଓ ଓଡିଆ ଗ୍ରନ୍ଥ ଏବେ ବି ଜୀର୍ଣ୍ଣଶୀର୍ଣ୍ଣ ତାଳପତ୍ର ପୋଥି ଆକାରରେ ପଡିରହିଛି । ତେଣୁ ଓଡିଶା ଓ ଓଡିଆ ସାହିତ୍ୟର ଇତିହାସ ଓ ଆଲୋଚନା ଗ୍ରନ୍ଥ ଗୁଡିକ ମୁଖ୍ୟତଃ ଅସମ୍ପାଦିତ ଗ୍ରନ୍ଥ ଆଧାରରେ ରଚିତ ହୋଇଥିବାରୁ ସେଗୁଡିକ କେତେଦୂର ତଥ୍ୟ ଭିତ୍ତିକ, ସଂପୂର୍ଣ୍ଣ ଓ ସତ୍ୟ ଉପରେ ଆଧାରିତ ହୋଇପାରିଛି ତାହା ବିଚାରଣୀୟ । ବର୍ତ୍ତମାନ ପ୍ରାଚୀସମିତି ନାହିଁ କି ସଂସ୍କୃତି ବିଭାଗରେ କିଛିକାଳ (୧୯୬୯-୧୯୯୫) ସମ୍ପାଦନା କାର୍ଯ୍ୟ କରୁଥିବା ପ୍ରକାଶନ ଉପବିଭାଗ ନାହିଁ । ଓଡିଶାର ଅନ୍ୟ କେତେକ ସଂସ୍ଥା ବା ବ୍ୟକ୍ତିବିଶେଷ ସମ୍ପାଦନା କାର୍ଯ୍ୟ କରୁଥିଲେ

ମଧ୍ୟ ତାହା ଆବଶ୍ୟକତା ତୁଳନାରେ ଆଦୌ ସନ୍ତୋଷଜନକ ନୁହେଁ । ଏହିସବୁ ଦୃଷ୍ଟିରୁ ବିଚାର କଲେ ଓଡିଶାରେ ପୋଥି ସମ୍ପାଦନା ଓ ଗବେଷଣା କାର୍ଯ୍ୟ ଯେ ଦାରିଦ୍ର୍ୟର ସୀମାରେଖା ତଳେ ଅଛି, ସେଥିରେ ସନ୍ଦେହ ନାହିଁ । ତେଣୁ ସମ୍ପାଦନା ଓ ପ୍ରକାଶନ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ସରକାର, ବିଶ୍ୱବିଦ୍ୟାଳୟ ଓ ସ୍ୱେଚ୍ଛାସେବୀ ସାଂସ୍କୃତିକ ଅନୁଷ୍ଠାନ ଗୁଡିକ ଉଦ୍ୟମୀ ହେବା ସଂଗେ ସଂଗେ ଆଂଚଳିକ ବା ଜିଲ୍ଲାସ୍ତରରେ ଅଥବା ବିଶ୍ୱବିଦ୍ୟାଳୟରେ ଅଥବା ରାଜ୍ୟ ସ୍ତରରେ ସ୍ୱତନ୍ତ୍ର ସଂସ୍ଥା (ଏକାଡେମୀ, ପ୍ରତିଷ୍ଠାନ ବା ନିର୍ଦ୍ଦେଶାଳୟ) ଗଠନ କରାଯିବା ଆବଶ୍ୟକ । କାରଣ, ଓଡିଶାର ସୁସମୃଦ୍ଧ ସାହିତ୍ୟ ପରମ୍ପରାକୁ ଅବହେଳା ବା ପ୍ରତ୍ୟାଖ୍ୟାନ କଲେ ଓଡିଆ ଜାତିର ଗୌରବାବହ ଅତୀତ ଯେ ଚିରଦିନ ପାଇଁ ବିସ୍ମୃତ ଓ ବିଲୁପ୍ତ ହୋଇଯିବ ତାହା କହିବା ଅନାବଶ୍ୟକ ।

ପ୍ରସଙ୍ଗତଃ ସମ୍ପାଦନା ବିଷୟରେ ଦୁଇପଦ ସୂଚନା ଦିଆଯାଇପାରେ । ସର୍ବଭାରତୀୟ ସ୍ତରରେ ବିଶିଷ୍ଟ ଭାରତତ୍ତ୍ୱବିଦ୍‌ଗଣ ଏ ବିଷୟରେ ପୁସ୍ତକ ମାନ ରଚନା କରିଛନ୍ତି । ଓଡିଶାରେ ମଧ୍ୟ କେତେକ ସମ୍ପାଦନା ବିଧି ପୁସ୍ତକ ରଚିତ ହୋଇଛି । କିନ୍ତୁ ବିଧି ପୁସ୍ତକ ଗୁଡିକ ସର୍ବଦା ବା ସର୍ବଥା ସହାୟକ ହୋଇ ପାରେ ନାହିଁ । କାରଣ, ସମ୍ପାଦନା ବେଳେ ପ୍ରତ୍ୟେକ ପୋଥି ବା ପାଣ୍ଡୁଲିପିରେ ପୃଥକ୍ ପୃଥକ୍ ସମସ୍ୟା ଦେଖାଯାଏ । ଆଞ୍ଚଳିକ ଭାଷା କ୍ଷେତ୍ରରେ ଅନେକ ନୂତନ ସମସ୍ୟାର ମଧ୍ୟ ସମ୍ମୁଖୀନ ହେବାକୁ ପଡେ । ତଥାପି ବିଧିପୁସ୍ତକକୁ ଆଦର୍ଶ ରୂପେ ନେଇ ସମ୍ପାଦନା ସମ୍ବନ୍ଧୀୟ ସମସ୍ୟାର ସମାଧାନ କରାଯାଇପାରେ ।

ପ୍ରାଚୀନ ଗ୍ରନ୍ଥର ଶୁଦ୍ଧପୂତ ପାଠ ପ୍ରସ୍ତୁତ କରିବାହିଁ ସମ୍ପାଦନାର ମୂଳ ଲକ୍ଷ୍ୟ । ପୋଥିରେ ଗଦ୍ୟ ଓ ପଦ୍ୟର ଲେଖାରେ କୌଣସି ପାର୍ଥକ୍ୟ ନ ଥାଏ କି ପଦଚ୍ଛେଦ କରାଯାଇ ପାଠ ଲେଖା ହୋଇନଥାଏ । କାଳକ୍ରମେ ଆଞ୍ଚଳିକ ଭାଷାର ଅନୁପ୍ରବେଶ ଓ ଶବ୍ଦର ଉଚ୍ଚାରଣଗତ ବିଭିନ୍ନତା ହେତୁ ମୂଳପାଠରେ ବିକୃତି ଘଟିଥାଏ । ଲିପିକାରମାନଙ୍କ ଦ୍ୱାରା ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ମୂଳପାଠରେ ଅଜସ୍ର ବର୍ଣ୍ଣାଶୁଦ୍ଧି ଓ ବ୍ୟାକରଣଗତ ଅଶୁଦ୍ଧି ସହିତ ଅବାନ୍ତର ପାଠ ସନ୍ନିବେଶିତ ହୋଇଥାଏ । ତେଣୁ ଗ୍ରନ୍ଥର ଶୁଦ୍ଧତା ରକ୍ଷା ପାଇଁ ସମ୍ପାଦନା ଅବଶ୍ୟ କର୍ତ୍ତବ୍ୟ ଏବଂ ସମ୍ପାଦିତ ଗ୍ରନ୍ଥର ଅବିକୃତ ପ୍ରକାଶନ ପାଇଁ ମୁଦ୍ରକ, ପ୍ରକାଶକ ଓ ସମ୍ପାଦକଙ୍କର ମିଳିତ ଉଦ୍ୟମ ଆବଶ୍ୟକ । ପୋଥିପତ୍ର ଭଗ୍ନ, କୀଟଦଷ୍ଟ ଓ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଥିଲେ ଏକାଧିକ ପ୍ରତିଲିପି ଥିବା ଗ୍ରନ୍ଥ ଅପେକ୍ଷା ଏକମାତ୍ର ପ୍ରତିଲିପି ଉପଲବ୍ଧ ହେଉଥିବା ଗ୍ରନ୍ଥର ସମ୍ପାଦନା ଅତୀବ କଷ୍ଟକର । କାରଣ, ନଷ୍ଟଭ୍ରଷ୍ଟ, ଅପାଠ୍ୟ ବା ସନ୍ଦେହ ଜନକ ପାଠର ମୌଳିକତା ଓ ଶୁଦ୍ଧତା ରକ୍ଷା ପାଇଁ ପରୋକ୍ଷ ପାଠର ସାହାଯ୍ୟ ନିଆଯାଇଥାଏ । ଆବଶ୍ୟକ ସ୍ଥଳେ ପାଠକୁ ପୂର୍ଣ୍ଣ ବା ଶୁଦ୍ଧ କରିବା ସଂଗେ ସଂଗେ ପୋଥିର ସେହି ଅଂଶକୁ ଅବିକୃତ ଭାବେ ପାଦଟୀକାରେ ଉଲ୍ଲେଖ କରିବା ବାଞ୍ଛନୀୟ । ପୋଥି ସମ୍ପାଦନା ପାଇଁ ପୋଥିର ପ୍ରାଚୀନ ଓ ଆଧୁନିକ (କରଣୀ) ଅକ୍ଷର ସହିତ ସୁପରିଚିତ ହେବା ଆବଶ୍ୟକ । ଶବ୍ଦ ଓ ଅର୍ଥ ଜ୍ଞାନ ସହିତ ଛନ୍ଦ, ଅଳଂକାର, ବ୍ୟାକରଣ, ବିଭିନ୍ନ ଶାସ୍ତ୍ର ଓ ପ୍ରସଂଗ ବିଷୟର ଜ୍ଞାନ ସମ୍ପାଦନା କାର୍ଯ୍ୟ ପାଇଁ ଅନିବାର୍ଯ୍ୟ ।

ପ୍ରାଚୀନ ଗ୍ରନ୍ଥ ସମ୍ପାଦନା ସମୟରେ ମୁଖ୍ୟତଃ ତିନୋଟି ସମସ୍ୟାର ସମ୍ମୁଖୀନ ହେବାକୁ ପଡେ । ସେଗୁଡିକ ହେଲା - (୧) ମୂଳପାଠର ପଠନ (୨) ପାଠର ପୁନର୍ଗଠନ ଓ (୩) ଉପଯୁକ୍ତ ପାଠର ନିର୍ବାଚନ । ତାଳପତ୍ର ପୋଥିରେ ଓ ପ୍ରାଚୀନ କାଗଜ ପାଣ୍ଡୁଲିପିରେ ବ୍ୟବହୃତ କେତେକ ଅକ୍ଷର ସହିତ ଆଧୁନିକ ଅକ୍ଷରର କୌଣସି ସମ୍ପର୍କ ନ ଥିବାରୁ ପାଠୋଦ୍ଧାର କରିବା କଷ୍ଟକର ହୁଏ । ଉଦାହରଣ ସ୍ୱରୂପ କେତୋଟି ଅକ୍ଷରର ନମୁନା ନିମ୍ନମତେ ଉଲ୍ଲେଖ କରାଯାଇପାରେ ।

| ପୋଥି ଅକ୍ଷର | | ସମ୍ଭାବ୍ୟ ପାଠ |
|---|---|---|
| ତ | | ଉ, ତ, ତ, (ଉଦ୍ଭବ,ତମ୍ବୁରୁ,ତଦ୍ଭବ ) |
| ର | | ର, ରୂ, (ରତ, ରୂତ) |
| କ | | କ, ଳ, (କର , ମିଳନ ) |
| ଯ୍ | | ଯ, ତ୍ୟ, (ଜୟ,ଭୃତ୍ୟ ) |
| ଶ | | ଶ, ଗ, (ଶର, ଗଳ ) |
| ଦ୍ୟ | - | ଦ୍ୟ, ଦା (ସଦ୍ୟ,ସଦା ) |
| ନ୍ୱ | - | ନ୍ଦ, ନ୍ୟ,ନ୍ୱ (ଚନ୍ଦନ,ଅନ୍ୟ,ଅନ୍ୱିତ ) |
| ଓ | - | ଓ, ନ୍ତ, ନ୍ତି, (ଓଦନ, କୁନ୍ତ, ଯାଆନ୍ତି ) |
| ମୁ - | - | ମୁ, ସୁ, (ମୁଖ,ସୁଖ ) |

ପୋଥିରେ ଇ,ଈ, ଉ, ଊ,ଜ, ଯ, ଶ, ଷ, ସ- ଅକ୍ଷର ଓ ମାତ୍ରା ବ୍ୟବହାର ଲେଖନକାରଙ୍କ ଇଚ୍ଛା ଅନୁସାରେ ଲେଖା ହୋଇଥିବାରୁ ସମ୍ପାଦନା ସମୟରେ ଅନେକ ସମସ୍ୟା ସୃଷ୍ଟି ହୋଇଥାଏ । ଭଗ୍ନ,ଛିନ୍ନଓ କୀଟଦଷ୍ଟ ପୋଥିର ପାଠକୁ ପୂର୍ଣ୍ଣକରିବାରେ ସେହିପରି ବହୁ ଅସୁବିଧାର ସମ୍ମୁଖୀନହେବାକୁ ପଡେ । ଗଦ୍ୟ ଅପେକ୍ଷା ପଦ୍ୟର ପୁନର୍ଗଠନ କ୍ଷେତ୍ରରେ ଅଧିକ ଅସୁବିଧା ଅନୁଭୂତ ହୁଏ । କାରଣ,ସେଥିପାଇଁ ଛନ୍ଦଜ୍ଞାନ ଓ ଉପଯୁକ୍ତ ପଦଯୋଜନା ଜ୍ଞାନ ଏକାନ୍ତ ଆବଶ୍ୟକ । ଉପର୍ଯ୍ୟୁକ୍ତ ତିନୋଟି ସମସ୍ୟା ପରସ୍ପର ସମ୍ବନ୍ଧିତ । ଏହି ସମସ୍ୟାଗୁଡିକ ସମ୍ପାଦନା ସମ୍ବନ୍ଧୀୟ ସୂଚନା ମାତ୍ର । ସମ୍ପାଦନା ସମୟରେ ଏହା ବ୍ୟତୀତ ଆହୁରି ଅନେକ ସମସ୍ୟାର ସମ୍ମୁଖୀନ ହେବାକୁ ପଡେ । ଉଦାହରଣ ସହିତ ପ୍ରତ୍ୟେକ ସମସ୍ୟାର ଆଲୋଚନା କରିବା ଏଠାରେ ସମ୍ଭବ ନୁହେଁ । ଓଡିଶାରେ ପୋଥି ସମ୍ପାଦନା ବିଷୟରେ ଏ ପର୍ଯ୍ୟନ୍ତ ବିଶେଷ କିଛି ଉଲ୍ଲେଖନୀୟ କାର୍ଯ୍ୟ କରାଯାଇ ନଥିବାରୁ କ୍ରମଶଃସମସ୍ୟା ଗୁଡିକ ବହୁଗୁଣିତ ହେଉଛି, ଯାହାର ସୀମା ନିର୍ଦ୍ଧାରଣ କରିବା ସହଜ ନୁହେଁ । ପୋଥିର ସର୍ବେକ୍ଷଣ ବିଧିବଦ୍ଧଭାବେ ହୋଇନାହିଁ କି ସଂଗୃହୀତ ପୋଥିଗୁଡିକର ବିବରଣାତ୍ମକ ତାଲିକା ପ୍ରକାଶପାଇନାହିଁ । ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ ମୁଷ୍ଟିମେୟ ଗ୍ରନ୍ଥ ସମ୍ପାଦିତ ହୋଇଥିବାବେଳେ ବହୁ ଗ୍ରନ୍ଥ ଅଦ୍ୟାବଧି ଅସମ୍ପାଦିତ ଓ ଅପ୍ରକାଶିତ ଅବସ୍ଥାରେ ଅଛି । ତେଣୁ ପୋଥିସମ୍ପାଦନାର ଅନେକ ଅନେକ ସମ୍ଭାବନା ରହିଛି । ଏଥିରେ ସନ୍ଦେହ ନାହିଁ ।

ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ବିଗତ ପ୍ରାୟ ତିନି ଦଶନ୍ଧି ଧରି ପୋଥି ସଂଗ୍ରହ,ସମ୍ପାଦନା ଓ ପ୍ରକାଶନ କ୍ଷେତ୍ରରେ ଜଣେ ପ୍ରବୀଣ ଓ ବରିଷ୍ଠ ମାର୍ଗ ଦର୍ଶକ ଭାବେ କିପରି ସଫଳତା ଅର୍ଜନ କରିଛନ୍ତି ତାହା ତାଙ୍କ ଆଲୋଚନାତ୍ମକ ଗ୍ରନ୍ଥଗୁଡିକରୁ ସ୍ପଷ୍ଟ ସୂଚନା ମିଳେ । ବହୁଦୁଷ୍ପ୍ରାପ୍ୟ ଓ ବିସ୍ମୃତପ୍ରାୟ ଗ୍ରନ୍ଥକୁ ଲୋକଲୋଚନ କୁ ଆଣିବାରେ ତାଙ୍କର ଦାନ ଅତୁଳନୀୟ । ପ୍ରିୟ ବନ୍ଧୁ ଡକ୍ଟର ଆଚାର୍ଯ୍ୟ ଅଷ୍ଟୋତ୍ତରଶତ ବର୍ଷ ପର୍ଯ୍ୟନ୍ତ ସୁସ୍ଥ ଓ ନିରାମୟ ଜୀବନ ଯାପନ କରନ୍ତୁ,ଏବଂ ନିରବିଚ୍ଛିନ୍ନ ଭାବେ ତାଙ୍କ ଲେଖନୀର ଧାରା ପ୍ରବାହିତ ହେଉ-ଏହାହିଁ ଶ୍ରୀଜଗନ୍ନାଥଙ୍କ ଠାରେ ପ୍ରାର୍ଥନା ।

| | | |
|---|---|---|
| ଅ - ଅ | କ୍ଟ - କ୍ଟ | ନ୍ତୁ - ନ୍ତୁ |
| ଇ - ଇ | ହ୍ମ - ହ୍ମ | ରୁ - ରୁ |
| ଉ - ଉ | ଲ୍ୟା - ଲ୍ୟା | ରୂ - ରୂ |
| ଯ - ଯ | ଥ୍ୟ - ଥ୍ୟ | ମ୍ର - ମ୍ର |
| ହ - ହ | ର୍ଣ୍ଡ - ର୍ଣ୍ଡ | ଦ୍ଧା - ଦ୍ଧା |
| ଯ - ଯ | ଯ୍ଯୁ - ଯ୍ଯୁ | ଗ୍ୟ - ଗ୍ୟ |
| ଭ୍ରି - ଭ୍ରି ର୍ଭ | ହ୍ୟ - ହ୍ୟ | ଖ୍ୟ - ଖ୍ୟ |
| ତ୍ପ - ତ୍ପ | ହ୍ମ - ହ୍ମ | ବ୍ୟ - ବ୍ୟ |
| ଯ୍ପ - ଯ୍ପ | ଯ - ଯ | ମ୍ୟ - ମ୍ୟ |
| ନ୍ପ - ନ୍ପ | ଯ୍ୟ - ଯ୍ୟ | ସ୍ୟ - ସ୍ୟ |
| ଲ୍ପ - ଲ୍ପ | କ୍ଡି - କ୍ଡି | ହ୍ମୁ - ହ୍ମୁ |
| ହ୍ପ - ହ୍ପ | ବ୍ୟ - ବ୍ୟ | |
| ଙ୍ଗ - ଙ୍ଗ | ସ୍ୟ - ସ୍ୟ | ନ୍ୟ - ନ୍ୟ |
| ଦ୍ୟ - ଦ୍ୟ | ଣ୍ୟ - ଣ୍ୟ | ସ୍ୟ - ସା |
| ହ - ହ | ଟ୍ୟ - ଟ୍ୟ | କ୍ରା - କ୍ରା |
| ଟ୍ୟ - ଟ | ତ୍ର - ତ୍ର | |

ନିର୍ବାଚିତ ସହାୟକ ପୁସ୍ତକ :

1. Evolution of Oriya Language and Script -
Dr. K.B.Tripathy, Utkal University,Cuttack , 1962
2. Introduction to Indian Textual Criticism -
Dr. S.M.Katre, Poona, 1954
3. Rajasudha (Collected papers)-
Dr. K.K.Raja, Madras, 1982
4. Odia Lipira Kramavikasha (Oriya) -
Dr. S.N.Rajaguru, Odisha Shahitya Akademi, BBSR,1983
5. Prachina Odia Lipi, Bhasa O Sahitya (Oriya)
Pt. N. Mishr, Grantha Mandir, Cuttack, 1976.
6. Problem of Editing Ancient Texts -
Ed- V.N. Jha, Poona, 1993
7. Conervation of Manuscripts and Paintings of South East Asia.
London , 1984.
8. Preservation of Art Objects and Library Materials -
O.P.Agrawal, New Delhi, 1993.

ସଂପାଦକ
କେଦାରନାଥ ଗବେଷଣା ପରିଷଦ , ଭୁବନେଶ୍ୱର

# ଲୋକ ସାହିତ୍ୟର ଅଧ୍ୟୟନ ପଦ୍ଧତି

ଡଃ ଶ୍ୟାମସୁନ୍ଦର ମହାପାତ୍ର

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଲୋକସଂସ୍କୃତି ଚର୍ଚ୍ଚାର ଉନ୍ମେଷ ଘଟିବା ପରଠାରୁ ବିଭିନ୍ନ ସମୟରେ ଏହାର ସ୍ୱରୂପ, ବୈଶିଷ୍ଟ୍ୟ, ଉତ୍ପତ୍ତି ଓ ବ୍ୟାପ୍ତି ଆଦି ବିଷୟରେ ନାନା ମତବାଦ ଗଢ଼ିଉଠିଛି । କେତେକ ମତବାଦକୁ ଭିତ୍ତିକରି ଅଧ୍ୟୟନ ପଦ୍ଧତି ମାନ ମଧ୍ୟ ଗୃହୀତ ହୋଇଛି । ଲୋକସଂସ୍କୃତିର ବୈଜ୍ଞାନିକ ଅନୁଶୀଳନ ପାଇଁ ଏଗୁଡିକ ସହାୟକ । କହିବା ବାହୁଲ୍ୟ ଲୋକସାହିତ୍ୟ ଅଧ୍ୟୟନ ପାଇଁ ମଧ୍ୟ ଏଗୁଡିକ ପ୍ରଯୋଜ୍ୟ । ଏଣୁ ନିମ୍ନରେ କେତୋଟି ମତବାଦ ଓ ପଦ୍ଧତିର ପରିଚୟ ଦିଆଗଲା ।

**ତୁଳନାତ୍ମକ ପଦ୍ଧତି :**

ଲୋକବିଦ୍ୟା-ଚର୍ଚ୍ଚା ଜ୍ଞାନର ଏକ ସ୍ୱତନ୍ତ୍ର ମାର୍ଗ ଭାବରେ ସ୍ୱୀକୃତ ହେବା ପୂର୍ବରୁ ଜର୍ମାନ ଭାଷାତତ୍ତ୍ୱବିଦ୍ ଜାକବ୍ ଗ୍ରୀମ ଏହାର ଦୃଢ଼ ଭିତ୍ତି ସ୍ଥାପନ କରିଥିଲେ । ତାଙ୍କର ଅଧ୍ୟୟନ ପଦ୍ଧତିକୁ ତୁଳନାତ୍ମକ ପଦ୍ଧତି କୁହାଯାଏ । ଜର୍ମାନ ଆଞ୍ଚଳିକ ଭାଷାଗୁଡିକର ତୁଳନାତ୍ମକ ଅଧ୍ୟୟନ କରି ଏଗୁଡିକର ଉଦ୍ଭବ ଗୋଟିଏ ମୂଳ ଉତ୍ସରୁହିଁ ହୋଇଛି ବୋଲି ସେ ପ୍ରତିପାଦନ କରିଥିଲେ । ଆନୁଷଙ୍ଗିକ ବିଷୟ ଭାବରେ ଲୋକ ସାହିତ୍ୟର ଚର୍ଚ୍ଚା ମଧ୍ୟ ସେ କରିଛନ୍ତି । ଲୋକ ଗୀତ, ଗାଥା ଓ ପୁରାଣ କାହାଣୀ ଅଧ୍ୟୟନ ପାଇଁ ସେ ଏହି ତୁଳନାତ୍ମକ ପଦ୍ଧତି ଅନୁସରଣ କରିଛନ୍ତି । ଅନୁରୂପ ଭାବରେ ତୁଳନାତ୍ମକ ଭିତ୍ତିରେ ଜର୍ମାନୀର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ପୁରାଣ କାହାଣୀ ଗୋଟିଏ ମୂଳ ଉତ୍ସରୁ ପ୍ରସରିତ ହୋଇଛି ବୋଲି ସେ ଦର୍ଶାଇଛନ୍ତି । ତାଙ୍କ ମତରେ ଏଇ ମୂଳ ଉତ୍ସଟି ହେଉଛି ଇଣ୍ଡୋଇଉରୋପୀୟ ଲୋକଗୋଷ୍ଠୀ । ଜାକବ୍ ଗ୍ରୀମ୍‌ଙ୍କ ଲୋକସାହିତ୍ୟ ଓ ଭାଷା ଚର୍ଚ୍ଚା କ୍ଷେତ୍ରରେ ତାଙ୍କ ଭାଇ ଉଇଲ୍‌ହେମ୍ ଗ୍ରୀମ୍‌ଙ୍କର ମଧ୍ୟ ଅବଦାନ ରହିଛି ।

ତୁଳନାତ୍ମକ ଅଧ୍ୟୟନକୁ ଆଉ ଟିକିଏ ଆଗେଇନେଲେ ପ୍ରାଚ୍ୟତତ୍ତ୍ୱବିଦ୍ ଇଂରେଜ ବିଦ୍ୱାନ ମାକ୍ସ ମୂଲର । ତୁଳନାତ୍ମକ ଅଧ୍ୟୟନ ମାଧ୍ୟମରେ ସେ ଜର୍ମାନ ଓ ଭାରତୀୟ ପୁରାଣ କାହାଣୀ ଗୁଡିକର ମୂଳ ରୂପ ଉଦ୍‌ଘାଟନ କରିବାରେ ପ୍ରୟାସୀ ହେଲେ । ତାଙ୍କ ମତରେ ମିଥ୍‌ର ସୃଷ୍ଟି ଭାଷାର ବିପର୍ଯ୍ୟୟ ବା ରୋଗରୁ । ମଣିଷର ଚିନ୍ତା ଓ ଭାଷା କେତୋଟି ନିର୍ଦ୍ଦିଷ୍ଟ ସ୍ତରଦେଇ ବିବର୍ତ୍ତିତ ହୋଇଛି । ଏଇ ସ୍ତରଦେଇ ଗତି କରିବା ବେଳେ ଗୋଟିଏ ଗୋଟିଏ ଚିନ୍ତାଧାରା ଭିନ୍ନ ଭାବରେ ପ୍ରକାଶ ପାଇଛି । ଦୁର୍ବୋଧ ହୋଇଉଠୁଥିବା କଥାର ନୂତନ ବ୍ୟାଖ୍ୟା ଦେବାର ଚେଷ୍ଟା ହୋଇଛି । ତା'ରି ଭିତରେ ଅନେକ ପୁରାଣ କାହାଣୀ ସୃଷ୍ଟି ହୋଇଯାଇଛି । ପ୍ରକୃତି ଜଗତରେ 'ସୂର୍ଯ୍ୟ ଉଷାକୁ ଅନୁସରଣ କରେ'- ଏହି ବକ୍ତବ୍ୟ ବିଭିନ୍ନ ରୂପରେ ପ୍ରକାଶ ପାଇବା ଭିତରେ ଉଷା ଓ ସୂର୍ଯ୍ୟ ଦୁଇଟି ଚରିତ୍ର ପାଲଟି ଯାଇଛନ୍ତି ଓ ତାଙ୍କୁ କେନ୍ଦ୍ରକରି ମିଥ୍ ଗଢ଼ିଉଠିଛି ।

ଟାଇପ୍ ଓ ମୋଟିଫ୍ ଅନୁଶୀଳନ ଆଧୁନିକ ତୁଳନାତ୍ମକ ଅଧ୍ୟୟନର ଏକ ବିଶେଷ ଦିଗ । ବିଭିନ୍ନ ପ୍ରକାରର ଲୋକଗଳ୍ପକୁ ଚିହ୍ନିତ କରିବା ପାଇଁ ଟାଇପ୍ ଶବ୍ଦ ବ୍ୟବହୃତ ହୋଇଥାଏ । ଯେଉଁ ଗଳ୍ପ ପରମ୍ପରାକ୍ରମେ ନିଜର ସ୍ୱତନ୍ତ୍ର ସତ୍ତା ବଜାୟ ରଖିପାରେ , ତାହାହିଁ ଟାଇପ୍ ଗଳ୍ପ । ସମୟ କ୍ରମେ ଏ ପ୍ରକାର ଗଳ୍ପର କଥାବସ୍ତୁରେ କିଛି ପରିବର୍ତ୍ତନ ହେଉଥିଲେ ମଧ୍ୟ ତାର ଗଢ଼ଣ(Frame)ଟି ଅପରିବର୍ତ୍ତନୀୟ ରହେ । ଏଣ୍ଟିଆର୍ନେ ଓ ଷ୍ଟିଥ୍ ଥମ୍ପସନ୍ ପୃଥିବୀର ବିଭିନ୍ନ ଦେଶର ଲୋକଗଳ୍ପକୁ ନେଇ 'ଦି ଟାଇପ୍ ଅଫ ଦି ଫୋକ୍‌ଟେଲ୍' ନାମକ ଏକ ଗ୍ରନ୍ଥପ୍ରକାଶ କରିଛନ୍ତି । ପ୍ରତ୍ୟେକଟି ଟାଇପ୍ ଗଳ୍ପ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସଂଖ୍ୟାଦ୍ୱାରା

ଚିହ୍ନିତ । ଏହି ଇଣ୍ଡେକ୍ସ ସାହାଯ୍ୟରେ ଲୋକଗଳ୍ପର ବିଶ୍ଳେଷଣ ସହଜସାଧ୍ୟ । ଗଳ୍ପଟି କେଉଁ ସଂଖ୍ୟକ ଟାଇପର ଅନ୍ତର୍ଗତ, ଅନ୍ୟ କେଉଁ ଦେଶରେ ଏ ଶ୍ରେଣୀର ଗଳ୍ପ ପ୍ରଚଳିତ, ତାର ସୂଚନା ଏଥିରୁ ସହଜରେ ମିଳିଥାଏ ।

ଲୋକବିଦ୍ୟା ଆଲୋଚନା କ୍ଷେତ୍ରରେ ଟାଇପ୍ ଅପେକ୍ଷା ମୋଟିଫ୍‌କୁ ଅଧିକ ଗୁରୁତ୍ୱ ଦିଆଯାଏ । କାରଣ ଲୋକଉପାଦାନର କ୍ଷୁଦ୍ରତମ ଅଂଶ ବା ଏକକ (Unit) ଏକ ମୋଟିଫ୍ । ଗୋଟିଏ ଟାଇପ୍ ଗଳ୍ପ ମଧ୍ୟରେ ଏକାଧିକ ମୋଟିଫ୍ ଥାଇପାରେ । ଲୋକଗଳ୍ପରେ କେତେକ ବିଶେଷ ଧରଣର ଉପାଦାନ ବାରମ୍ବାର ଆତ୍ମପ୍ରକାଶ କରିଥାଏ , ଯଥା- କଥାକୁହା ପଶୁ, ରାକ୍ଷସ, ଭୂତ, ପରୀ, ମାଲୁଣୀ, ଜୀବନନାଟି, ଐନ୍ଦ୍ରଜାଲିକ ବସ୍ତୁ ଇତ୍ୟାଦି । ପୃଥିବୀର ବିଭିନ୍ନ ଦେଶର ଲୋକଗଳ୍ପ ମଧ୍ୟରେ ଦେଖାଯାଉଥିବା ଏଇପରି ସାଧାରଣ ଉପାଦାନ ବା ମୋଟିଫ୍‌ର ଏକ ସୂଚୀ (Motif-Index)ଛଅ ଖଣ୍ଡରେ ବିଭକ୍ତ ଏକ ଗ୍ରନ୍ଥରେ ଆମେରିକାର ଲୋକ ସାହିତ୍ୟବିତ୍ ଷ୍ଟିଥ୍ ଥମ୍ପସନ୍ ପ୍ରକାଶ କରିଛନ୍ତି । ପ୍ରତ୍ୟେକ ମୋଟିଫ୍ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସଂଖ୍ୟାଦ୍ୱାରା ଚିହ୍ନିତ । ଗବେଷକ ଏଇ ମୋଟିଫ୍ ଇଣ୍ଡେକ୍ସ ସାହାଯ୍ୟରେ ନିଜ ସଂଗୃହୀତ ଗଳ୍ପର ମୋଟିଫ୍ ନିର୍ଣ୍ଣୟ କରେ । ଇଣ୍ଡେକ୍ସରେ ନ ଥିବା କୌଣସି ନୂଆ ମୋଟିଫ୍ ମିଳିଲେ ତାହାକୁ ସେ ନିର୍ଦ୍ଦେଶ କରେ । ଏହାଦ୍ୱାରା ବିଭିନ୍ନ ଦେଶର ଲୋକଗଳ୍ପ ମଧ୍ୟରେ ଥିବା ସାମ୍ୟ-ବୈଷମ୍ୟ ସହଜରେ ସ୍ଥିରକରାଯାଇପାରେ ।

**ବେନ୍‌ଫିଙ୍କ ସଞ୍ଚରଣ ମତବାଦ :**

ଜର୍ମାନ ପ୍ରାଚ୍ୟତତ୍ତ୍ୱବିତ୍ ଥିଓଡର ବେନ୍‌ଫି ସଂସ୍କୃତ ଲୋକଗଳ୍ପ ଓ ଇଉରୋପୀୟ ଲୋକଗଳ୍ପ ମଧ୍ୟରେବହୁସାମ୍ୟ ଲକ୍ଷ୍ୟ କଲେ । ଏହି ଲୋକଗଳ୍ପ ଗୁଡ଼ିକର ଅନୁଶୀଳନ କରି ସେ ମତ ଦେଲେ ଯେ ମଣିଷର ବାସଭୂମି ପରିବର୍ତ୍ତନ ହେତୁ ଲୋକଗଳ୍ପ ବିଭିନ୍ନ ଅଞ୍ଚଳକୁ ପ୍ରସାରିତ ହୁଏ । ଯୁଦ୍ଧ, ରାଜ୍ୟଜୟ ଓ ଭ୍ରମଣ ମଧ୍ୟରେ ଲୋକଗଳ୍ପର ଆଦାନପ୍ରଦାନ ହୋଇଥାଏ । ଇଉରୋପରେ ପ୍ରଚଳିତ ବହୁ ଲୋକଗଳ୍ପ ଭାରତରୁ ଯାଇଛି ବୋଲି ତାଙ୍କର ମତ । ଭାରତରୁ ଇଉରୋପକୁ ଲୋକଗଳ୍ପ ଗୁଡ଼ିକର ଗତିପଥ ମଧ୍ୟ ସେ ନିର୍ଦ୍ଦେଶ କରିଛନ୍ତି । ତାଙ୍କ ମତରେ ଏଗୁଡ଼ିକ ଭୂମଧ୍ୟସାଗରୀୟ ଅଞ୍ଚଳ, ସୁଦୂର ପ୍ରତିଚ୍ୟ, ସ୍ପେନ ଓ ଗ୍ରୀସ୍ ଦେଇ ଇଉରୋପର ବିଭିନ୍ନ ଅଞ୍ଚଳରେ ପରିବ୍ୟାପ୍ତ ହୋଇଛି । ତାଙ୍କର ଏହି ମତବାଦକୁ ସଞ୍ଚରଣ ମତବାଦ (Migrational Theory)କୁହାଯାଏ ।

**ଐତିହାସିକ-ଭୌଗୋଳିକ ପଦ୍ଧତି :**

ଫିନ୍‌ଲାଣ୍ଡର କେତେକ ଲୋକତତ୍ତ୍ୱବିତ୍ ବେନ୍‌ଫିଙ୍କ ମତବାଦକୁ ଭିତ୍ତିକରି ଲୋକଉପାଦାନ ଅଧ୍ୟୟନର ବୈଜ୍ଞାନିକ ପଦ୍ଧତି ନିର୍ଦ୍ଧାରଣରେ ବ୍ରତୀ ହେଲେ । ଲୋକଉପାଦାନ (କାହାଣୀ)ର ମୂଳରୂପ ଆବିଷ୍କାର କରିବା ଓ ତାର ସଞ୍ଚରଣ ପଥ ନିର୍ଦ୍ଦେଶ କରିବା ଥିଲା ଏମାନଙ୍କ ଲକ୍ଷ୍ୟ । ଗୋଟିଏ ଗୋଟିଏ ଲୋକଗଳ୍ପର ଯେତେ ପ୍ରତିରୂପ (version) ମିଳିଲା ଏମାନେ ସେସବୁର ସଂଗ୍ରହ କଲେ,ଗଳ୍ପଗୁଡ଼ିକୁ ଭାଂଗି ଭାଂଗି ତାର ଅଂଶ ସବୁକୁ ଅଲଗା କଲେ, ବିଭିନ୍ନ ଗଳ୍ପରୁ ବିଶେଷ ବିଶେଷ ଅଂଶମାନ ନେଇ ମୂଳ ଗଳ୍ପଟିର ପୁନଃନିର୍ମାଣ ପାଇଁ ଉଦ୍ୟମ କଲେ । ଏହାକୁ ସେମାନେ ସଂପୃକ୍ତ ଗଳ୍ପଗୁଡ଼ିକର ଆର୍କିଟାଇପ ଭାବରେ ଗ୍ରହଣ କରୁଥିଲେ । ନିର୍ଦ୍ଦିଷ୍ଟ ଗଳ୍ପର ଭିନ୍ନ ରୂପ କେଉଁ କେଉଁ ଅଞ୍ଚଳରେ କିଭଳି ପରିବର୍ତ୍ତିତ ଅବସ୍ଥାରେ ମିଳୁଛି, ତାହା ଲକ୍ଷ୍ୟ କରି ସେମାନେ ଗଳ୍ପର ସଞ୍ଚରଣ ପଥ ସ୍ଥିର କରୁଥିଲେ । ଏ ପଦ୍ଧତିକୁ ଐତିହାସିକ-ଭୌଗୋଳିକ ବା ଫିନିସ୍ ପଦ୍ଧତ କୁହାଯାଏ । କାର୍ଲକ୍ରୋନ ଓ ଓଲ୍‌ରିକ୍ ଏହି ପଦ୍ଧତିକୁ ବୈଜ୍ଞାନିକ ଭିତ୍ତିରେ ପ୍ରତିଷ୍ଠା କରିଛନ୍ତି । (୧)

**ନୃତାତ୍ତ୍ୱିକ ମତବାଦ :**

ଏଡ୍‌ୱାର୍ଡ ଟେଲର୍ ଓ ଆଣ୍ଡ୍ରୁ ଲେଙ୍ଗ୍ ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଚ୍ଛିନ୍ନ ଭାବରେ ରହୁଥିବା ବିଭିନ୍ନ ଜାତିର ଲୋକଙ୍କ ଆଚାର ବ୍ୟବହାର, ଜୀବନ ଧାରଣ ପ୍ରଣାଳୀ, ଧର୍ମବିଶ୍ୱାସ ଆଦିରେ ବହୁ ସାମ୍ୟ ଲକ୍ଷ୍ୟ କଲେ । ସଂସ୍କୃତିର ଆଦାନପ୍ରଦାନ ବା ବାସ ପରିବର୍ତ୍ତନ ହେତୁ ଏପ୍ରକାର ସାମ୍ୟ ପ୍ରକାଶ ପାଇବାର ସମ୍ଭାବନା ସେଭଳି କ୍ଷେତ୍ରରେ ନଥିଲା । ଏ ଦୁଇ ନୃତତ୍ତ୍ୱବିଦ୍ ମନୁଷ୍ୟର ପ୍ରକୃତି ଓ ମାନସିକ ପ୍ରକ୍ରିୟାର ସାମ୍ୟକୁ ଏହାର ହେତୁ ଭାବରେ ନିର୍ଦ୍ଦେଶ କରିଛନ୍ତି । ପୃଥିବୀର ଯେ କୌଣସି ଅଞ୍ଚଳରେ ବାସ କରନ୍ତୁ ପଛକେ ପ୍ରତ୍ୟେକ ଜାତି ଆଦିମ, ବର୍ବର ଓ ସଭ୍ୟ - ଏଇ ତିନୋଟି ସ୍ତରଦେଇ ଗତି କରିଥାନ୍ତି । ଏଣୁ ସଭ୍ୟତା ସଭ୍ୟତା ମଧ୍ୟରେ ସାମ୍ୟ ଅବଶ୍ୟାମ୍ଭାବୀ । ଏହି ମତ ନୃତାତ୍ତ୍ୱିକ ମତବାଦ ନାମରେ ପରିଚିତ ।

**ମନସ୍ତାତ୍ତ୍ୱିକ ମତବାଦ :**

ଫ୍ରେଏଡ୍ ଓ ୟୁଂଙ୍କ ପରି ମନସ୍ତାତ୍ତ୍ୱିକଙ୍କ ମତବାଦ ମଧ୍ୟ ଲୋକ ସାହିତ୍ୟ ଅଧ୍ୟୟନକୁ ପ୍ରଭାବିତ କରିଛି । ଏମାନଙ୍କ ଦୃଷ୍ଟିରେ ଲୋକଗଳ୍ପ ଓ ମିଥ୍‌କୁ ବ୍ୟକ୍ତିଗତ ବା ସାମାଜିକ ଜୀବନର ସ୍ୱପ୍ନ ଭାବରେ ବିଶ୍ଳେଷଣ କରାଯାଇପାରେ । ମଣିଷର ଅନେକ ଅବଦମିତ ଆଶା ସ୍ୱପ୍ନରେ ପରିତୃପ୍ତି ଲାଭ କରିଥାଏ । ସେହିପରି ଲୋକଗଳ୍ପ ଓ ମିଥ୍‌ରେ ଗୋଟିଏ ଗୋଟିଏ ଜାତିର ସାଧାରଣ ଅବଦମିତ ଆଶା ଆତ୍ମପ୍ରକାଶ କରେ । ୟୁଂଙ୍କ ମତବାଦ ଅନୁସରଣରେ ଲୋକତତ୍ତ୍ୱବିଦ୍ ମାନେ ମିଥ୍ ମଧ୍ୟରେ ସାମାଜିକ ଅବଚେତନ ମନ (collective unconscious) ର ସନ୍ଧାନ କରନ୍ତି ।

**ସଂରଚନା ପଦ୍ଧତି :**

ସଂରଚନା (Structural) ପଦ୍ଧତି ଆଧୁନିକ ଲୋକସାହିତ୍ୟ ଅଧ୍ୟୟନ କ୍ଷେତ୍ରରେ ବିଶେଷ ଗୁରୁତ୍ୱ ଲାଭ କରିଛି । ଏ ପଦ୍ଧତିର ଦୁଇଟି ଧାରା-ସିଣ୍ଟାଗ୍-ମେଟିକ୍ ଓ ପାରାଡିଗ୍-ମାଟିକ୍ । ପ୍ରଥମଟିର ପ୍ରବକ୍ତା ରୁଷ୍ ଦେଶର ଲୋକ ସାହିତ୍ୟବିଦ୍ ଭି.ପ୍ରପ; ଦ୍ୱିତୀୟଟିର ଫରାସୀ ନୃତତ୍ତ୍ୱବିଦ୍ ଲେଭିଷ୍ଟ୍ରସ୍ । ସଂରଚନା ପଦ୍ଧତିର ଲକ୍ଷ୍ୟହେଉଛି କୌଣସି ଲୋକ-ଉପାଦାନର ଅଂଶବିଶେଷ ସହ ସାମଗ୍ରିକ ସୃଷ୍ଟିର ସଂପର୍କ ଓ ଅଂଶଗୁଡିକର ପାରସ୍ପରିକ ସଂପର୍କ ବିଶ୍ଳେଷଣ କରିବା । ପ୍ରତ୍ୟେକ ଜଟିଳ ବସ୍ତୁର ବିଶ୍ଳେଷଣ ପାଇଁ ପ୍ରଥମେ ତା'ର ଏକକ (Unit)କୁ ନିର୍ଦ୍ଦିଷ୍ଟ କରିବା ଦରକାର ହୋଇଥାଏ । ଉଭୟ ପ୍ରପ୍ ଓ ଲେଭିଷ୍ଟ୍ରସ୍‌ଙ୍କ ପଦ୍ଧତିରେଏକକ ସ୍ଥିର କରିବା ସର୍ବପ୍ରଥମ କାର୍ଯ୍ୟ ହୋଇଛି । ପ୍ରପ୍‌ଙ୍କ ପଦ୍ଧତିରେ ଏହି ଏକକଟିର ନାମ ଫଙ୍କସନ୍ । ଯେ କୌଣସି ବିଶ୍ଳେଷଣ ପାଇଁ ଗୃହୀତ ଏକକ ସ୍ଥିତିଶୀଳ (Constant) ହେବା ଆବଶ୍ୟକ । ପ୍ରପ୍‌ଙ୍କ ମତରେ କାହାଣୀର ଚରିତ୍ର ମାନେ ସ୍ଥିତିଶୀଳ ନୁହନ୍ତି, ସେମାନଙ୍କ କାର୍ଯ୍ୟହିଁ ସ୍ଥିତିଶୀଳ । ଉଦହରଣ ସ୍ୱରୂପ ଧରାଯାଉ ଗଳ୍ପର ନାୟକକୁ ଦୂର ଦେଶକୁ ଯିବା ପାଇଁ ହଲେ ମ୍ୟାଜିକ କଠାଉ ଦେବା ଦରକାର । ଜଣେ ସନ୍ନାସୀ, କେହି ଦେବଦେବୀ ବା ପରୀ ତାକୁ ଏ ପଦାର୍ଥଟି ଦେଇପାରନ୍ତି । ଏଣୁ ଚରିତ୍ରମାନେ ପରିବର୍ତ୍ତନୀୟ, କିନ୍ତୁ, 'ଉଡିଯିବାରେ ସାହାଯ୍ୟ କରିବା' କାର୍ଯ୍ୟଟି ସ୍ଥିର । ପ୍ରପ୍ ଶହେଟି ଋଷୀୟ ଲୋକଗଳ୍ପ ବିଶ୍ଳେଷଣ କରି ସେଥିରେ ସର୍ବମୋଟ ୩୧ଟି ପ୍ରକାର୍ଯ୍ୟ (Function) ରହିଥିବା କଥା ଦର୍ଶାଇଛନ୍ତି । ଅବଶ୍ୟ ଏହି ପ୍ରକାର୍ଯ୍ୟ ଗୁଡିକର ପ୍ରକାର ଭେଦ ରହିଛି । ପ୍ରପ୍ ପ୍ରତ୍ୟେକ ପ୍ରକାର୍ଯ୍ୟକୁ ଗୋଟିଏ ଗୋଟିଏ ପ୍ରତୀକ ଦ୍ୱାରା ଚିହ୍ନିତ କରିଛନ୍ତି ଯଥା- A, B, C, D, $A^1$, $A^2$, $X^1$, $Z^3$ ଇତ୍ୟାଦି) । ବିଶ୍ଳେଷଣ କରିବାକୁ ଚାହୁଁଥିବା ଗଳ୍ପଟି ଭିତରୁ ପ୍ରଥମେ ସେ ଏହି ପ୍ରକାର୍ଯ୍ୟ ଗୁଡିକୁ ବାଛି ସେଗୁଡିକର ପ୍ରତୀକ ସବୁ ଗୋଟିଏ ଗୋଟିଏ ଛୋଟ ଛୋଟ ବର୍ଗାକାର କ୍ଷେତ୍ର ମଧ୍ୟରେ ଅବଲୀଳାକ୍ରମେ ସଜାଇ ଦିଅନ୍ତି । ବାକ୍ୟ ଗଠନ ପ୍ରକ୍ରିୟାରେ ଯେପରି କର୍ତ୍ତା, କ୍ରିୟା, କର୍ମ ଆଦି କେତେକ ନିର୍ଦ୍ଦିଷ୍ଟ ନିୟମରେ ଆସେ, ଲୋକଗଳ୍ପ ମଧ୍ୟରେ ପ୍ରକାର୍ଯ୍ୟ ଗୁଡିକ ସେହିପରି ନିୟମ-ଅନୁବର୍ତ୍ତୀ । ଏଣୁ ଏ ପ୍ରକାର ଅଧ୍ୟୟନ ରୀତିକୁ ସେ ସିଣ୍ଟାଗ୍‌ମେଟିକ୍ (Syntagmatic) କହନ୍ତି । ପ୍ରକାର୍ଯ୍ୟର ପ୍ରତୀକ ଗୁଡିକ

ସଜାଇଦେବା ପରେ ସେ ତା'ର ବିଶ୍ଳେଷଣ କରନ୍ତି । ଯଦି କୌଣସି ପ୍ରକାର୍ଯ୍ୟ ନିର୍ଦ୍ଦିଷ୍ଟ ସ୍ଥାନରେ ଦେଖା ନଦେଇ ଆଗେ ବା ପରେ ଡିଖାଦିଏ ବା ପୁନରୁକ୍ତ ହୁଏ, ସେ ତା'ର କାରଣ ବ୍ୟାଖ୍ୟା କରନ୍ତି । କେତେକ ଗଳ୍ପରେ ଏ ପ୍ରକାର ପ୍ରକାର୍ଯ୍ୟ ପର୍ଯ୍ୟାୟ କ୍ରମେ ଆବୃତ୍ତ ହେଉଥିବାର ସେ ଦର୍ଶାଇଛନ୍ତି । ପ୍ରତ୍ୟେକ ପର୍ଯ୍ୟାୟକୁ ଗଳ୍ପର ଗୋଟିଏ ଗୋଟିଏ ସ୍ତର (xod or move) କୁହାଯାଏ । ପ୍ରପ୍‌ଙ୍କ ଏ ପଦ୍ଧତି ପୃଥିବୀର ଅନ୍ୟାନ୍ୟ ଦେଶର ଲୋକଗଳ୍ପ କ୍ଷେତ୍ରରେ ସମ୍ପୂର୍ଣ୍ଣ ପ୍ରଯୋଜ୍ୟ ନ ହେଲେ ମଧ୍ୟ ଏହାକୁ ଅଧ୍ୟୟନର ଏକ ବିଶିଷ୍ଟ ମାର୍ଗ ଭାବରେ ଗ୍ରହଣ କରାଯାଇପାରେ । (୨)

ଲେଭି ଷ୍ଟ୍ରସଙ୍କ ମିଥ୍ (ପୁରାଣ କଥା)ର ବିଶ୍ଳେଷଣ ଲୋକସାହିତ୍ୟ ଅଧ୍ୟୟନକୁ ଏକ ନୂତନ ପଦ୍ଧତି ଯୋଗାଇଛି । ତାଙ୍କ ମତରେ ମିଥ୍‌ଗୁଡ଼ିକ ଉଦ୍ଭଟ କଳ୍ପନା ନୁହେଁ, ବରଂ ଅତିମାତ୍ରାରେଯୁକ୍ତିନିଷ୍ଠ । ସାଂସ୍କୃତିକ ଜୀବନରେ ଦୁଇଟି ପରସ୍ପର ବିରୋଧୀ ଚିନ୍ତାଧାରା ଦେଖାଦେଲେ ମିଥ୍ ତାହାର ସମାଧାନ ଦେଇଥାଏ । ସେ ଓଡିପାସ୍ ମିଥ୍‌ର ବିଶ୍ଳେଷଣ କରି ଦର୍ଶାଇଛନ୍ତି ଯେ ମଣିଷ ସ୍ୱୟଂଭୂ (autochthonous) ନା ଦୁଇର ସମିଶ୍ରଣରୁ ଜାତ (born)- ମିଥ୍‌ଟି ଏଇ ଦୁଇ ବିଶ୍ୱାସଗତ ଦ୍ୱନ୍ଦ୍ୱର ଏକ ସମାଧାନ ଯୋଗାଇ ମଣିଷ ସ୍ୱୟଂଭୂ ବୋଲି ନିର୍ଦ୍ଦେଶ ଦେଉଛି । ଏଥିପାଇଁ ସେ ମିଥ୍ ଭିତରୁ ତାର ନ୍ୟୁନତମ ଭଗ୍ନାଂଶ ବା ଏକକ(constituent unit)କୁ ଚିହ୍ନିତ କରନ୍ତି । ମିଥ୍‌ର ଗୁରୁତ୍ୱପୂର୍ଣ୍ଣ ବାକ୍ୟକୁ ହିଁ ସେ ଏକକ ଭାବେ ଗ୍ରହଣ କରନ୍ତି । ଏଗୁଡ଼ିକୁ ମିଥିମ୍ (mytheme) କୁହାଯାଏ । ପୁନଃପ୍ରୟାସ (trial and error) ପଦ୍ଧତିରେସେ ସମପର୍ଯ୍ୟାୟୀ ମିଥିମ୍‌କୁ ଗୋଟିଏ ଗୋଟିଏ ସ୍ତମ୍ଭରେ ଉପରୁ ତଳକୁ ସଜାଇ ଲେଖନ୍ତି । ପ୍ରତ୍ୟେକ ସ୍ତମ୍ଭର ମିଥିମ୍ ଗୁଚ୍ଛରୁ ଗୋଟିଏ ସାଧାରଣ ବକ୍ତବ୍ୟ ପ୍ରକାଶ ପାଏ । ପ୍ରତିଟି ସ୍ତମ୍ଭର ମିଥିମ୍ ସବୁ ଏହିପରି ଏକ ସଂପର୍କରେ ଆବଦ୍ଧ ଥିବାରୁ ଏ ସଂପର୍କକୁ ପାରାଡିଗ୍‌ମାଟିକ (Paradigmatic) କୁହାଯାଏ । ଚାରୋଟି ସ୍ତମ୍ଭ ପର୍ଯ୍ୟାୟକ୍ରମେ ପରସ୍ପର ବିରୋଧୀ ବକ୍ତବ୍ୟ ଉପସ୍ଥାପନା କରେ । ଏ ପ୍ରକାର ବିରୋଧକୁ ପାରସ୍ପରିକ ବିରୋଧ (binary opposition) କୁହାଯାଏ । ଶେଷ ସ୍ତମ୍ଭର ବକ୍ତବ୍ୟକୁ ମିଥ୍‌ର ବକ୍ତବ୍ୟ ଭାବରେ ଗ୍ରହଣ କରାଯାଏ । ଏ ପଦ୍ଧତିକୁ ଆମେରିକାର ମାରଣ୍ଡା ଦମ୍ପତି ଲୋକଗଳ୍ପ ଓ ଗୀତ କ୍ଷେତ୍ରରେ ସଫଳତାର ସହ ପ୍ରୟୋଗ କରିଛନ୍ତି ।(୩)

**ପ୍ରସଂଗଭିତ୍ତିକ ପଦ୍ଧତି :**

ଆମେରିକାର ଡନ୍ ବେନ୍ ଆମସ୍ ଓ ଡେଲ ହାଇମ୍‌ସଙ୍କ ପରି କେତେକ ଭାଷା ଓ ଲୋକତତ୍ତ୍ୱବିଦ୍ ଲୋକଉପାଦାନ (ଟେକ୍‌ଷ୍ଟ) ଅପେକ୍ଷା ତାର ପ୍ରସଙ୍ଗ (କନ୍‌ଟେକ୍‌ଷ୍ଟ) ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ଲୋକଉପାଦାନକୁ ପରିବେଶରୁ ବିଚ୍ଛିନ୍ନ କରି ବିଶ୍ଳେଷଣ କଲେ ତାର ସ୍ୱରୂପ ଧରାପଡିବ ନାହିଁ, ଏଥିପାଇଁ ତାର ପରିବେଶ, ପରିବେଷକ, ଶ୍ରୋତା ବା ଅଂଶଗ୍ରହଣକାରୀଙ୍କ ସଂପର୍କରେ ମଧ୍ୟ ଅନୁଶୀଳନ ଦରକାର ବୋଲି ଏମାନଙ୍କ ମତ । ଡନ୍ ବେନ୍ ଆମସ କହନ୍ତି, ଲୋକଉପାଦନ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ, ଲୋକଗଳ୍ପ, ଗୀତ ବା କଳା ତାର ମୂଳ ପରିବେଶ, ସମୟ ଓ ସମାଜରୁ ବିଚ୍ଛିନ୍ନ ହେଲେ ତା ଭିତରେ ଗୁଣଗତ ପରିବର୍ତ୍ତନ ଦେଖାଦେବ । ସାମାଜିକ ପଟ୍ଟଭୂମି, ସାଂସ୍କୃତିକ ଦୃଷ୍ଟିଭଙ୍ଗୀ, ପ୍ରକାଶଭଙ୍ଗୀ ଓ ବ୍ୟକ୍ତିଗତ ଅଭିରୁଚି ଲୋକଉପାଦାନର ଆକୃତି, କଥାବସ୍ତୁ ଓ ଗଠନ ପରିପାଟୀରେ ପରିବର୍ତ୍ତନ ଆଣିଥାଏ । ଶ୍ରୋତା ବା ଅଂଶଗ୍ରହଣକାରୀ (ଶିଶୁ ହୁଅନ୍ତୁ ବା ବୟସ୍କ ହୁଅନ୍ତୁ, ନାରୀ ହୁଅନ୍ତୁ ବା ପୁରୁଷ ହୁଅନ୍ତୁ ) , ସେମାନଙ୍କ ସମାଜ (ସ୍ଥିତିଶୀଳ ହେଉ ବା ଆକସ୍ମିକ ସମାବେଶ ହେଉ) ଲୋକଉପାଦାନ ଓ ତାର ପରିବେଷଣ ପ୍ରକ୍ରିୟାରେ ପ୍ରଭାବ ପକାଏ । ପରିବେଷଣ ସମୟର ପରିସ୍ଥିତି ସଂଗୃହୀତ ଉପାଦାନର ଗୁରୁତ୍ୱପୂଣ୍ଣ ପ୍ରସଂଗ ଭାବରେ ଗୃହୀତ ହେବା ଉଚିତ୍ । ପରିବେଷଣକାରୀର ପ୍ରତିଭା, ତାର ତତ୍କାଳୀନ ମାନସିକ ଅବସ୍ଥା (mood) ଓ ଶ୍ରୋତାଙ୍କ ପ୍ରତିକ୍ରିୟା ତାର ଗଳ୍ପ ବା ଗୀତ ଉପରେ ପ୍ରଭାବ ପକାଏ । ଲୋକ ଉପାଦାନକୁ ଏହିସବୁ ପରିପ୍ରେକ୍ଷୀରେ

ବିଚାର କରାଯିବା ଉଚିତ୍ ।

ଡେଲ୍ ହାଇମସ୍ ଭାଷା ଅଧ୍ୟୟନରେ ଭାବବିନିମୟ ପ୍ରକ୍ରିୟାର (Communication) ଉପରେ ଗୁରୁତ୍ୱ ଦିଅନ୍ତି । ଭାବବିନିମୟ ପ୍ରକ୍ରିୟାର ଉପାଦାନ (Component) ଗୁଡିକ ହେଲା - ଅଂଶ ଗ୍ରହଣକାରୀ (ଯଥା- ପ୍ରେରକ ଓ ଗ୍ରାହକ ବା ବକ୍ତା ଓ ଶ୍ରୋତା), ବିଭିନ୍ନ ମାଧ୍ୟମ (ଯଥା-କହିବା, ଲେଖିବା, ବଜାଇବା, ଫୁଙ୍କିବା, ସୁସୁରି ମାରିବା, ଗୀତ ଗାଇବା, ଅବୟବ ସଞ୍ଚାଳନ କରିବା), ଭାଷା ଓ ସଙ୍ଗୀତ ଆଦିର ନିୟମ ଓ ପ୍ରସଙ୍ଗ (ଯାହାକୁ ଭିତ୍ତିକରି ଭାବର ପ୍ରକାଶ ଘଟେ), ବାର୍ତ୍ତାର ସ୍ୱରୂପ (ବାକ୍ୟଟିଏ, ଗୀତଟିଏ, ନୀତି ଉପଦେଶଟିଏ ବା ବିଜ୍ଞାପନ ଟିଏ), ଭାବ ପ୍ରକାଶର ଉପଲକ୍ଷ୍ୟ (ତାର ସ୍ୱରୂପ, ବୈଶିଷ୍ଟ୍ୟ) ଇତ୍ୟାଦି । ଲୋକଗଳ୍ପ ଓ ଗୀତ ଆଦିରେ ମଧ୍ୟ ଭାବପ୍ରକାଶ ପ୍ରକ୍ରିୟାର ଗୁରୁତ୍ୱ ରହିଛି । ଏଣୁ ଲୋକଉପାଦାନର ଅଧ୍ୟୟନବେଳେ ଭାବ ବିନିମୟରେ ଉପରୋକ୍ତ ଉପାଦାନ ଗୁଡିକର ଭୂମିକା ଅବଶ୍ୟ ବିଚାର୍ଯ୍ୟ ବୋଲି ତାଙ୍କର ମତ । (୪)

**ଉପସଂହାର :**

ଲୋକସଂସ୍କୃତି ସଂମ୍ପର୍କରେ ନୂତନ ମତବାଦ ଓ ଅଧ୍ୟୟନ ପଦ୍ଧତି ଅନବରତ ପ୍ରକାଶ ପାଇବାରେ ଲାଗିଛି । ପାଶ୍ଚାତ୍ୟ ଦେଶମାନଙ୍କର ବିଶ୍ୱବିଦ୍ୟାଳୟ ଓ ଗବେଷଣା ପ୍ରତିଷ୍ଠାନମାନ ଏ ଦିଗରେ ଉଦ୍ୟମୀ । ନିକଟରେ ଇଣ୍ଡିଆନା ବିଶ୍ୱବିଦ୍ୟାଳୟର ଲୋକସଂସ୍କୃତି - ବିଭାଗ ମୁଖ୍ୟ ଲିଣ୍ଡା ଡେଗ୍ ଉପସ୍ଥାପିତ କରିଥିବା ଲୋକସଂସ୍କୃତି ଆଦାନପ୍ରଦାନର ମାଧ୍ୟମ (conduit)ବିଷୟକ ମତବାଦ ଗୁରୁତ୍ୱପୂର୍ଣ୍ଣ । ତାଙ୍କ ମତରେ ବିଭିନ୍ନ ଲୋକସାହିତ୍ୟିକ ପ୍ରରୂପ ନିଜସ୍ୱ ସ୍ୱତନ୍ତ୍ର ମାର୍ଗରେ ସମାଜରେ ପ୍ରସରିତ ହୋଇଥାଏ । ବିଶେଷ କ୍ଷେତ୍ରରେ ଉକ୍ତ ମାର୍ଗ ଗୁଡିକ ମଧ୍ୟରେ ଯୋଗାଯୋଗ ଘଟିପାରେ । (୫) ସେହିପରି ପ୍ରପ୍ଙ୍କ ସଂରଚନା ପଦ୍ଧତି ଲୋକଗୀତ, ପ୍ରବଚନ ଓ ନାଁ ଦିଆର ଆଲୋଚନାକୁ ପ୍ରଭାବିତ କଲାଣି । ଏ ସବୁ ପଦ୍ଧତି ଲୋକସାହିତ୍ୟର ବୈଜ୍ଞାନିକ ଅନୁଶୀଳନ ମାର୍ଗକୁ ପ୍ରଶସ୍ତ କରିଛି ।

**ସହାୟକ ଗ୍ରନ୍ଥସୂଚୀ :**

୧. Handoo Jawarhalal (1978), Current Trends of Folklore.
୨. Ibid.
୩. Marandas (1971), Structural Models in Folklore and Transformational Essays.
୪. Hymes Dell-Towards Ethnographies of Communication, P-13
୫. Degh Linda & Avdrew Vazsonyi, The Hypothesis of Multui - Coundit Transmission in Folklore in Ben Amos and Goldstein (Ed.), Folklore (1975).
୬. Propp V. (1984), Morphology of the Folklore, University of Texas Press.

ରତନ ପଲ୍ଲୀ
ଶାନ୍ତି ନିକେତନ - ୭୩୧୨୩୫

# ପ୍ରାବନ୍ଧିକ ରାମଚନ୍ଦ୍ର ଆଚାର୍ଯ୍ୟ

**ପ୍ରଫେସର ଡଃ. ବାଉରୀବନ୍ଧୁ କର**

ବିଂଶଶତକର ଆଦିପାଦରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବହୁ ବିକ୍ଷିପ୍ତ ପ୍ରବନ୍ଧର ରଚୟିତା ରାମଚନ୍ଦ୍ର ଆଚାର୍ଯ୍ୟଙ୍କୁ ଜଣେ ପ୍ରାବନ୍ଧିକ ରୂପେ ଏଯାବତ୍ ମୂଲ୍ୟାୟନ କରାଯାଇ ନାହିଁ । ମାତ୍ର ଅଣଚାଳିଶ ବର୍ଷ ଜୀବନ କାଳ ଭିତରେ ପରିମାଣ ଓ ରଚନା ବୈଚିତ୍ର୍ୟ ଦୃଷ୍ଟିରୁ ତାଙ୍କ ସାଧନା ଯଥାର୍ଥରେ ଓଡିଆ ସାହିତ୍ୟରେ ବିସ୍ମୟକର । ମନନଶୀଳ ପ୍ରବନ୍ଧ ରଚନାରେ ସେ ଥିଲେ ଜଣେ ଅସାମାନ୍ୟ ଶିଳ୍ପୀ । ପ୍ରାଚୀନ ଭାରତର ଶିକ୍ଷା, ସଂସ୍କୃତି, ସଭ୍ୟତା, ଧର୍ମ, ଦର୍ଶନ, ସମାଜ ପ୍ରଭୃତି ପ୍ରସଂଗକୁ ଆଧାର କରି ପ୍ରବନ୍ଧ ରଚନାରେ ତାଙ୍କ ସମଧର୍ମୀ ପ୍ରାବନ୍ଧିକ ଓଡିଆ ସାହିତ୍ୟରେ କ୍ୱଚିତ୍ ପରିଲକ୍ଷିତ । ଏପରି ଏକ ପ୍ରସିଦ୍ଧ ପ୍ରାବନ୍ଧିକଙ୍କ କୃତିଗୁଡିକ ପୁସ୍ତକ ଆକାରରେ ସଂକଳିତ ହୋଇ ନଥିବାରୁ ଆଲୋଚକମାନେ ତାଙ୍କ କୃତିତ୍ୱ ଆକଳନ ସକାଶେ ବିଶେଷ ପ୍ରୟାସ କରିନାହାନ୍ତି ।

ରାମଚନ୍ଦ୍ର ଆଚାର୍ଯ୍ୟ ଥିଲେ ଜଣେ ଐତିହ୍ୟ ସଚେତନ ପ୍ରାବନ୍ଧିକ । ବିଂଶଶତକର ଆଦିପାଦରେ ଓଡିଆ ସାହିତ୍ୟରେଏ ଧରଣର ପ୍ରବନ୍ଧ ରଚନାରେ ତାରିଣୀ ଚରଣ ରଥ, କୃପାସିନ୍ଧୁ ମିଶ୍ର, ବିରୂପାକ୍ଷ କର , ଚିନ୍ତାମଣି ଆଚାର୍ଯ୍ୟ, ଜଗବନ୍ଧୁ ସିଂହ ପ୍ରମୁଖ ମନୋନିବେଶ କରିଥିଲେ । ସେ ସମୟରେ ଆମ ପୁରାଣ ଓ ଇତିହାସକୁ ନେଇ ଜାତୀୟ ଭାବୋଦ୍ଦୀପକ ପ୍ରବନ୍ଧ ରଚନା ପାଇଁ ଏକ ପ୍ରେରଣାମୟ ବାତାବରଣ ସୃଷ୍ଟି ହୋଇଥିଲା । '' ଉତ୍କଳ ସମ୍ମିଳନୀ'' (୧୯୦୩), 'ସତ୍ୟବାଦୀ ବନ ବିଦ୍ୟାଳୟ'(୧୯୦୯)ର ଅନୁପ୍ରେରଣା ଏ ସକାଶେ ଅନେକାଂଶରେ ଦାୟୀ । ଏ ଜାତିର ଇତିହାସ ଓ ମହାନ୍ ପରମ୍ପରା ସଂପର୍କରେ ଧାରଣା ଦେଇ ତରୁଣ ମାନଙ୍କୁ ଉଦ୍‌ବୁଦ୍ଧ କରିବା ଥିଲା ସେ ସମୟର ଅଧିକାଂଶ ଲେଖକଙ୍କର ଉଦ୍ଦେଶ୍ୟ । ଊନବିଂଶ ଶତକର ଶେଷପାଦରେ ଆମର ପଡେଶୀ ବଂଗ ସାହିତ୍ୟରେ ମଧ ଏହି ଜାତୀୟ ପ୍ରବନ୍ଧର ଧାରା ପରିଲକ୍ଷିତ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ଅକ୍ଷୟ କୁମାର ଦତ୍ତ, ରାଜେନ୍ଦ୍ର ଲାଲ ମିତ୍ର, ଭୂଦେବ ମୁଖୋପଧ୍ୟାୟ, ବଂକିମ ଚନ୍ଦ୍ର ଚାଟାର୍ଜୀ, ହର ପ୍ରସାଦ ଶାସ୍ତ୍ରୀ ପ୍ରମୁଖ ଭାରତର ଧର୍ମ, ଦର୍ଶନ, ଇତିହାସ, ସଭ୍ୟତା ଇତ୍ୟାଦିକୁ ନେଇ ତତ୍କାଳରେ ବଂଗଳାରେ ପ୍ରବନ୍ଧ ରଚନା କରି କୃତିତ୍ୱ ଅର୍ଜିଥିଲେ । ଏତିକିବେଳେ ଭାରତର ଶିକ୍ଷିତ ସମାଜ ଉପରେ ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ 'ବୈଦାନ୍ତିକ ମତବାଦ', କେଶବଚନ୍ଦ୍ର ସେନ୍‌ଙ୍କ 'ବ୍ରାହ୍ମ ଭାବନା' , ଦୟାନନ୍ଦ ସରସ୍ୱତୀଙ୍କ 'ଆର୍ଯ୍ୟ ସମାଜ' ଓ ମହାଦେବ ଗୋବିନ୍ଦ ରାନାଡେଙ୍କ ' ପ୍ରାର୍ଥନା ସମାଜ' ବିଶେଷ ପ୍ରଭାବ ପକାଇଥିଲା । ଏମାନେ ଭାରତର ସଂସ୍କୃତି, ଭାରତର ଇତିହାସ ଓ ଭାରତର ବେଦ- ଉପନିଷଦ ମାନଙ୍କରୁ ଦୃଷ୍ଟାନ୍ତ ଦେଇ ପ୍ରାଚୀନ ପରଂପରା ଭିତ୍ତିରେ ନୂତନ ଭାରତ ଗଠନର ସ୍ୱପ୍ନ ଦେଖିଥିଲେ । ମତବାଦର ବିଭିନ୍ନତା ସତ୍ତ୍ୱେ , ଏମାନେ ସମସ୍ତେ ଭାରତକୁ ବିଶ୍ୱ ସଂସ୍କୃତି ଓ ବିଶ୍ୱମାନବର ପୁଣ୍ୟ ମିଳନ ପୀଠ ଭାବରେ ସ୍ୱୀକାର କରିଥିଲେ । ପ୍ରାଚୀନ ଭାରତର ମେଦିନୀ ଦୃଷ୍ଟି ପ୍ରତି ସଚେତନ ରହି ସାହିତ୍ୟ ସାଧନା କରବା ସକାଶେ ଏମାନେ ତରୁଣ ମାନଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ । ଆପଣାର ଜୀବନ ଓ ସାହିତ୍ୟ ଭିତରେ ପ୍ରାଚୀନ ଭାରତର ମହାନତାକୁ ଚିହ୍ନି ପ୍ରତିଭାତ କରାଇବାରେ ଏ ସମୟରେ ସାହିତ୍ୟିକ ଆପଣାକୁ କୃତାର୍ଥ ମଣୁଥିଲା । ଭାରତୀୟଶାସ୍ତ୍ରମାନଙ୍କ ଭିତ୍ତିରେ ଭାରତବର୍ଷର ମୁଗ୍ଧ ବନ୍ଦନା ଗାଇବାରେ ଏ କାଳର ଲେଖକ ମାନେ ଥିଲେ ପାରଂଗମ । ରାମଚନ୍ଦ୍ର ଆଚାର୍ଯ୍ୟ ଆମ ଓଡିଆ ସାହିତ୍ୟରେ

ଥିଲେ ଏହି ପରଂପରାର ଜଣେ ସାର୍ଥକ ଲେଖକ । ତାଂକର ପ୍ରବନ୍ଧ ଗୁଡିକ ଭାରତୀୟ ପ୍ରାଚୀନତାକୁ ଆଧାରକରି ରଚିତ ।

ଭାରତର ପ୍ରାଚୀନ ବିଭବକୁ ପ୍ରାବନ୍ଧିକ ଅନ୍ତରଂଗ ଭାବରେ ଭଲପାଇଥିଲେ । ପ୍ରାଚୀନ ଭାରତର ଜ୍ଞାନ-ବିଜ୍ଞାନ ସହିତ ତାଂକର ବେଶ୍ ଆତ୍ମୀୟତା ଥିଲା । ଅତୀତରେ ଭାରତ ଥିଲା, ଐଶ୍ୱର୍ଯ୍ୟଶାଳିନୀ, ବିଦ୍ୟାରତ୍ନଧାରିଣୀ, କାଞ୍ଚିକିରୀଟିନୀ ଓ ଶୋଭାବିଳାସିନୀ - ଏ କଥାଟିକୁ ସେ ବାରମ୍ବାର ତାଂକ ପ୍ରବନ୍ଧମାନଂକରେ ଆମକୁ ସୂଚାଇ ଦେଇଛନ୍ତି । ସଂକ୍ଷେପରେ କହିଲେ ଅତୀତ ଭାରତର ପ୍ରାଣ ଥିଲା, ଶକ୍ତି ଥିଲା ଓ ସବୁକିଛି ଥିଲା ବୋଲି ସେ କହିବାକୁ କୁଣ୍ଠାବୋଧ କରିନାହାନ୍ତି । ପୁଣି ସେ କହନ୍ତି, '' ସେଦିନ ଆଉ ନାହିଁ । ଭାରତରେ ବର୍ତ୍ତମାନ ଅତୀତ ଯୁଗର ସେ ଉଦ୍‌ଯୋଗ ନାହିଁ, ସେ ସ୍ଫୁର୍ତ୍ତି ନାହିଁ, ସେ ପ୍ରଫୁଲ୍ଲତା, ସେ ରସ ନାହିଁ - ସେସବୁ କିଛି ନାହିଁ । ଅଛିକେବଳ ଜ୍ଞାନାର ମାୟା, ବିଜ୍ଞାନର ଛାୟା, ସଭାର ଆଡମ୍ବର ଏବଂ ବକ୍ତୃତାର ବିଡମ୍ବନା । ବର୍ତ୍ତମାନ ଭାରତବାସୀଙ୍କ ଅବସ୍ଥା ଶୋଚନୀୟ କହିଲେ ଚଳେ । '' (୧) ଏ ସବୁରୁ ପ୍ରାବନ୍ଧିକଙ୍କର ଅତୀତ ପ୍ରତି ପ୍ରବଳ ମୋହ ଥିବା ଜଣାପଡେ । ଅତୀତର ଯାହାକିଛି ସବୁ ସୁନ୍ଦର, ସବୁ ଉଚ୍ଚକୋଟୀର, ଏପରି ଧାରଣା ତାଙ୍କର ରହିଥିଲା । ପ୍ରାବନ୍ଧିକଙ୍କ ଅତୀତପ୍ରତି ରହିଥିବା ଏଭଳି ଆନ୍ତରିକତାକୁ ଦେଖିବାବେଳେ ସ୍ୱତଃ Oliver Goldsmithଙ୍କ ଅତୀତ ପ୍ରୀତି ଭାବନା ମନକୁ ଆସେ । ତାହାହେଲା, "I love everything that's old : old friends, old times, old manners, old books, old wines. " (She stoops to conquer) ପ୍ରାବନ୍ଧିକ ଆଚାର୍ଯ୍ୟ ଅତୀତ ଭାରତର ସବୁକିଛି ଜ୍ଞାନ, ବିଜ୍ଞାନ, ସଭ୍ୟତା, ଧର୍ମ, ଶିକ୍ଷା, ନୀତି ପ୍ରଭୃତିକୁ ତାଂକ ପ୍ରବନ୍ଧମାନଙ୍କରେ ଆଦର୍ଶସ୍ଥାନୀୟ ରୂପେ ଗ୍ରହଣ କରିଥିଲେ । ଭାରତ ସମ୍ପର୍କରେ କିଛି ଅଧ୍ୟୟନ କରିବାକୁ ହେଲେ, ଏହାର ପ୍ରାଚୀନ ଗୌରବ ଅନୁଶୀଳନ ଅପରିହାର୍ଯ୍ୟ ବୋଲି ତାଙ୍କର ଧାରଣା ଥିଲା । ଏଥିପାଇଁ ସେ ତାଙ୍କ ପ୍ରବନ୍ଧମାନଂକରେ ଭାରତର ଆତ୍ମାକୁ ତା'ର ପ୍ରାଚୀନ ବିଭବ ଭିତରେ କେବଳ ଅନୁସନ୍ଧାନ କରିଛନ୍ତି ।

ଭାବବସ୍ତୁ ଦୃଷ୍ଟିରୁ ତାଂକ ପ୍ରବନ୍ଧ ଗୁଡିକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ ।

**କ. ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତି ଉପରେ ଆଧାରିତ ପ୍ରବନ୍ଧ :**

ଏହି ପର୍ଯ୍ୟାୟର ପ୍ରବନ୍ଧ ଗୁଡିକ ମଧ୍ୟରେ ' ଭାରତୀୟ ଚିତ୍ରକଳା', ' ପ୍ରାଚୀନ ଭାରତର ଯୁଦ୍ଧସାମଗ୍ରୀ', 'ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଲୋକଶିକ୍ଷା', 'ପ୍ରାଚୀନ ଭାରତର ଜାତି ସମସ୍ୟା', ' ଦକ୍ଷିଣ ଭାରତର ସମରପ୍ରିୟ ଜାତି ସକଳ', 'ମୁସଲମାନ ଭାରତର ସମର ନୀତି', 'ଭାରତର ମହାପୁରୁଷଗଣ', 'ପ୍ରାଚୀନ ଭାରତରେ ସଭ୍ୟତା ବିକାଶ', 'ପ୍ରାଚୀନ ଭାରତର ବିଶ୍ୱବିଦ୍ୟାଳୟ', 'ପ୍ରାଚୀନ ଭାରତର ନଗର ବିନ୍ୟାସ ପ୍ରଣାଳୀ', 'ପ୍ରାଚୀନ ଭାରତର ବିବିଧ ପାଠ୍ୟ ବିଷୟ', 'ପ୍ରାଚୀନ ଭାରତ ଓ ଗ୍ରୀସ', 'ପ୍ରାଚୀନ ଭାରତର ସୈନ୍ୟଓ ସମରସଜ୍ଜା', 'କଳିଙ୍ଗ ଆର୍ଯ୍ୟ ସଭ୍ୟତାର ପ୍ରାଚୀନତା', 'ଭାରତର ମହାପୁରୁଷଗଣ', 'ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ' ପ୍ରଭୃତି ପ୍ରଧାନ । ପ୍ରାଚୀନ ଭାରତର ସଂସ୍କୃତି ଓ ଇତିହାସ ସଂପର୍କରେ ଏତେଗୁଡିଏ ପ୍ରବନ୍ଧ ଲେଖିବା ମୂଳରେ ତାଙ୍କର ଏକ ମହତ୍ ଆଭିମୁଖ୍ୟ ଥିଲା । ସେ ସମୟରେ ଓଡିଶା ଥିଲା ବ୍ରିଟିଶ୍ ଶାସକର ଶାସନାଧୀନ ଓ ସେତେବେଳକୁ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ଗୌରବ ଲାଭ କରି ନଥିଲା । ଓଡିଆ ଭାଷାଭାଷୀ ଲୋକମାନେ ସେ ସମୟରେ ବିଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ ହୋଇ ରହିଥିଲେ । ପାଶ୍ଚାତ୍ୟ ଆଶ୍ରିତ ଶିକ୍ଷା, ସଭ୍ୟତାର ଗ୍ଳାନିରୁ ଏ ଜାତିର ଆତ୍ମମର୍ଯ୍ୟାଦା ରକ୍ଷା ସକାଶେ ସେ ଓଡିଆମାନଙ୍କୁ ତତ୍କାଳରେ ଭାରତର ପ୍ରାଚୀନ ସଂସ୍କୃତି ଓ ପରଂପରା ସମ୍ପର୍କରେ ଶିକ୍ଷାଦେବାକୁ ଉଚିତ ମଣିଥିଲେ । ଭାରତର ଏକ ବୃହତ୍ତର ସାଂସ୍କୃତିକ ପରିବେଶ ଭିତରେ ଓଡିଆମାନେ ଆପଣାକୁ ଚିହ୍ନନ୍ତୁ, ଏହା

ଥିଲା ତାଂକର ଲକ୍ଷ୍ୟ । ସେ ପ୍ରାଚୀନ ଭାରତର ଶିକ୍ଷା, ସଭ୍ୟତା ଓ ସାମରିକ ବିଭବ ପ୍ରଭୃତିର ଆଲୋଚନା କଲାବେଳେ ଓଡିଆମାନଙ୍କର ଯେ ଏସବୁ ମଧ୍ୟରେ ଏକ ସମ୍ମାନଜନକ ଆସନ ଥିଲା, ଏକଥା ଆମକୁ ଶୁଣାଇ ଦେଇଛନ୍ତି । ସେ ଏ ସଂପର୍କରେ ଲେଖିଛନ୍ତି, ''ଦକ୍ଷିଣ ଭାରତର ସମରପ୍ରିୟ ଜାତିମାନଙ୍କ ମଧ୍ୟରେ ଓଡିଆ ମାନଙ୍କ ନାମ ପ୍ରଥମ ଉଲ୍ଲେଖଯୋଗ୍ୟ । ପ୍ରାଚୀନ କାଳରେ ଓଡିଆ ଜାତି ଶିଳ୍ପ, ବାଣିଜ୍ୟ, ସାହିତ୍ୟ ପ୍ରଭୃତିରେ ଅନ୍ୟାନ୍ୟ ଭାରତୀୟ ଜାତି ମଧ୍ୟରେ ଯେପରି ପ୍ରାଧାନ୍ୟଲାଭ କରିଥିଲା, ସୈନିକ ବିଭାଗରେ ମଧ୍ୟ ସେହିପରି ଖ୍ୟାତିଅର୍ଜନ କରି ପାରିଥିଲା । ରାଜପୁତ୍, ଗୁର୍ଖା, ଶିଖ୍, ମରହଟ୍ଟା ପ୍ରଭୃତି ସୈନ୍ୟତୁଲ୍ୟ ସଂଖ୍ୟାରେ ଅଧିକ ନ ହେଲେ ହେଁ ଓଡିଆ ଜାତି ପୁରାକାଳୀନ ଅନେକ ଯୁଦ୍ଧକ୍ଷେତ୍ରରେ ଯେ ଅପୂର୍ବ ସାମରିକ ସ୍ଫୁର୍ତ୍ତି, ସାହସ, ଜାତ୍ୟ ଭିମାନ, ଉତ୍ସାହ ଓ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲା, ଇତିହାସ ହିଁ ତାହାର ସାକ୍ଷୀ । ପ୍ରାଚୀନ ଓଡିଶାର ରାଜାମାନଙ୍କ ଅଧୀନରେ ବହୁସଂଖ୍ୟକ ପାଇକ ବା ସଶସ୍ତ୍ର ଅନୁଚର ଥିଲେ । ଯୁଦ୍ଧ ସେମାନଙ୍କର କର୍ତ୍ତବ୍ୟରୂପେ ପରିଗଣିତ ହେଉଥିଲା । ଏକା ଗଂଜାମରେ ପ୍ରାୟ ସତାବନ ହଜାର ପାଇକ ଥିଲେ । ସେମାନେ ଅସୀଚାଳନା, ବନ୍ଧୁକ ବ୍ୟବହାର, ଅଶ୍ୱାରୋହଣ ଇତ୍ୟାଦି ବିବିଧ ଯୁଦ୍ଧକାର୍ଯ୍ୟରେ ବିଲକ୍ଷଣ ନିପୁଣ ଥିଲେ । '' (୨) ପ୍ରାବନ୍ଧିକ ଓଡିଆ ମାନଙ୍କୁ ସେମାନଙ୍କ ଅତୀତ ବୀରତ୍ୱ ସ୍ମରଣ କରାଇ କର୍ମମୁଖର ହେବା ସକାଶେ ତାଙ୍କ ପ୍ରବନ୍ଧମାନଙ୍କରେ ଦେଇଥିଲେ କାଳୋଚିତ ଆହ୍ୱାନ । ଏବେ ଏ ଆହ୍ୱାନର ବିଶେଷ ପ୍ରାସଙ୍ଗିକତା ନଥିଲେ ସୁଦ୍ଧା ଏହା ଯେ ତରୁଣମାନଙ୍କ ପ୍ରାଣରେ ଜାତୀୟ ଅନୁରାଗ ସଂଚାର କରିବାରେ ସହାୟକ ଏଥିରେ ସଂଦେହ ନାହିଁ । ସେ ତରୁଣ ମାନଙ୍କୁ ସବୁବେଳେ ସ୍ୱଦେଶପ୍ରୀତି ମନ୍ତ୍ରରେ ଦୀକ୍ଷିତ ହେବା ପାଇଁ ଆହ୍ୱାନ ଦେଉଥିଲେ । ମହାପୁରୁଷ ମାନଙ୍କ ତ୍ୟାଗପୂତ ଜୀବନଚରିତ ଶୁଣାଇବା ସେତେବେଳେର ଏକ ଆବଶ୍ୟକତା ଥିଲା । ସେ ମଧ୍ୟ 'ଭାରତର ମହାପୁରୁଷଗଣ' ପ୍ରବନ୍ଧ ଲେଖି ଆମ ତରୁଣ ମାନଙ୍କୁ ଯଥେଷ୍ଟ ଉଦ୍‌ବୋଧନ ଦେଇଥିଲେ । ମହାପୁରୁଷଙ୍କ ଜୀବନୀ ଅଧ୍ୟୟନର ଆବଶ୍ୟକତା ସଂପର୍କରେ ତାଂକର ମନ୍ତବ୍ୟ ଥିଲା ଏହିପରି; 'ମହାପୁରୁଷଙ୍କ ଜୀବନଚରିତ ପାଠକରିବା ପ୍ରତ୍ୟେକ ବ୍ୟକ୍ତିର ପ୍ରଧାନ ଧର୍ମ, ସେମାନଙ୍କ ପଦାନୁସରଣ କରିବା ଶ୍ରେୟସ୍କର । ସେମାନଙ୍କ ନୀତି ବା ଉପଦେଶ କାର୍ଯ୍ୟରେ ପରିଣତ କରିନ ପାରିଲେହେଁ, କେବଳ ଜୀବନଚରିତ ପାଠରେ କମ୍ ଉପକାର ହୁଏ ନାହିଁ । ମହାପୁରୁଷ ଚରିତାନୁଶୀଳନରେ ହୃଦୟରେ ପବିତ୍ରତା, ଉଦାରତା ଉଦିତ ହୁଏ, ମୂର୍ଖତା ଓ ସଂକୀର୍ଣ୍ଣତା ନଷ୍ଟହୁଏ ଏବଂ ଶରୀର, ମନ ଓ ଆତ୍ମାର ଉନ୍ନତି ସାଧିତ ହୁଏ । ସ୍କୁଲ, କଲେଜରେ ମହାପୁରୁଷ ଚରିତ ଆଲୋଚିତ ହେବା ଉଚିତ । ଛୋଟ ସୁକୁମାରମତି ବାଳକ ବାଳିକାମାନଙ୍କୁ ମଧ୍ୟ ଏହା ସରଳ ଭାବରେ, ସହଜ ଉପାୟରେ ପଢ଼ାଇବା ବିଧେୟ । '' (୩) ତାଙ୍କର ଏହି ପ୍ରବନ୍ଧଟି ଉପରେ Thomas Carlyle ଙ୍କ Hero, Heroism anhd Hero worship ର ପ୍ରଭାବ ପରିଲକ୍ଷିତ । ଏହି ପ୍ରବନ୍ଧଟି ଭାରତୀୟ ମହାପୁରୁଷମାନଙ୍କ ପୃଷ୍ଠ ଭୂମି ଉପରେ ରଚିତ । ଭାରତର ପ୍ରାଚୀନ ବିଭବ ମାନଙ୍କୁ ନେଇ ସେ ଯେଉଁସବୁ ପ୍ରବନ୍ଧ ରଚନା କରିଛନ୍ତି ସେଥିରେ ତାଂକର ସ୍ୱଦେଶ ପ୍ରାଣତା ଓ ମମତାମୟୀ ଭାରତ ଜନନୀପ୍ରତି ଆନ୍ତରିକତା ପ୍ରକାଶିତ ।

ପ୍ରାବନ୍ଧିକ ଅତୀତ ଭାରତର ଗୌରବଗାନ ତାଂକ ପ୍ରବନ୍ଧମାନଙ୍କରେ କରିଥିଲେ ସୁଦ୍ଧା ସେ କେବେହେଲେ ବର୍ତ୍ତମାନ ବିମୁଖ ନଥିଲେ । ଅତୀତର ସଂପତ୍ତି ଗୁଡିକ ନେଇ ଆଳସ୍ୟ ଜୀବନ ଯାପନକୁ ସେ ଆଦୌ ପସନ୍ଦ କରୁନଥିଲେ । ଓଡିଆ ଜାତିର ଅତୀତକୁ ଯେଉଁ ମାନେ ପୁଞ୍ଜିକରି ଅଧୁନା ଏକାବେଳକେ କର୍ମଶକ୍ତି ରହିତ ହୋଇ ଗର୍ବ ଅନୁଭବ କରନ୍ତି, ସେମାନଙ୍କୁ ପ୍ରାବନ୍ଧିକ ବେଶ୍ କଠୋର ମନ୍ତବ୍ୟ ମାନ ଶୁଣାଉଥିଲେ । ତାଂକର ଅତୀତପ୍ରିୟ ଓଡିଆମାନଙ୍କ ସଂପର୍କରେ ବେଶ ବିଦ୍ରୂପ ଥିଲା । ତାହା ଏହିପରି ,

''ଅତ୍ୟନ୍ତ ଦୁଃଖର ବିଷୟ ଏହିଯେ, ଆଜିକାଲି ସେମାନଙ୍କ ଧମନୀରେ ବୀର୍ଯଦୃପ୍ତ ପ୍ରାଚୀନ ସୈନିକ ଗଣଙ୍କ ଶୋଣିତ ପ୍ରବାହିତ ହେଲେହେଁ ସେମାନଙ୍କର ଆଉ ସେ ସ୍ଫୂର୍ତ୍ତି ନାହିଁ, ତେଜ ନାହିଁ, ଉତ୍ସାହ ଓ ବଳ ନାହିଁ ଏବଂ ସାହସ ଓ ବୀରତ୍ୱ ନାହିଁ - ଅଛି କେବଳ ପୂର୍ବ ପ୍ରତିଷ୍ଠା ସ୍ମରଣରେ କ୍ଷୀଣ ଗୌରବାନୁଭୂତି ଓ ନିଷ୍ଫଳ ଗର୍ବବୋଧ । ସେମାନେ ବର୍ତ୍ତମାନ ଦୁଃସ୍ଥ, ଦୁର୍ବଳ ଓ ଦୁର୍ଭିକ୍ଷ ପୀଡିତ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଇନାମ, ଭୂମି, ଅସ୍ତ୍ରଶସ୍ତ୍ର ସକଳ ବିକିଭାଂଗି ଖାଇ ସାରିଲେଣି ଏବଂ କେତେଜଣ ପୁରୁଷାନୁକ୍ରମିତ ଫମ୍ପା ଉପାଧିର ଆଡମ୍ବର ଦେଖାଇ ଉଦର ପୂରଣ ନିମିତ୍ତ ବର୍ତ୍ତମାନ ରାଜାମାନଙ୍କ ଦ୍ୱାରସ୍ଥ ହୁଅନ୍ତି । '' (୪) ପ୍ରାଣ ପ୍ରାଚୁର୍ଯ୍ୟଭରା ଅତୀତକୁ କେବଳ ସ୍ମରଣ କରି, ସଂପ୍ରତି ମଣିଷ ଏହାକୁ ସାମଗ୍ରୀ ରୂପେ ବ୍ୟବହାର କରି ବଞ୍ଚିବାକୁ ସେ ଘୃଣା କରୁଥିଲେ । କାରଣ ସେ ଭଲଭାବରେ ବୁଝିଥିଲେ, ଯେଉଁଠାରେ ମଣିଷ ତା'ର ଅତୀତର ସାଂସ୍କୃତିକ ସଂପତ୍ତି ଗୁଡିକ ଉପଭୋଗ କରି ଜୀବନ ଯାପନ କରେ, ସେଠାରେ ସଂସ୍କୃତି ଜୀବନ୍ତ ନହୋଇ ହୁଏ ଜୀବନ୍ମୃତ । କୌଣସି ଜାତିର ଅତୀତ ଗୌରବକୁ ଯେଉଁ ମଣିଷମାନେ ବିକିଭାଂଗି ଚଳନ୍ତି, ସେମାନଂକୁ ଖ୍ରୀଷ୍ଟଧର୍ମ ଗ୍ରନ୍ଥ ବାଇବେଲର 'Philistine' ବା 'ସଂସ୍କୃତି ଭୋଜୀ' ଶବ୍ଦ ବ୍ୟବହାର କରି ଶ୍ରୀ ଅରବିନ୍ଦ ସମାଲୋଚନା କରିଛନ୍ତି ।

ପ୍ରାଚୀନ ଭାରତର ଇତିହାସ, ସଂସ୍କୃତି ଉପରେ ଆଧାରିତ ପ୍ରବନ୍ଧ ଗୁଡିକରେ ତାଂକର ଉଚ୍ଚକୋଟୀର ଗବେଷଣା, ଜାତୀୟ ଭାବନା ଓ ପାଣ୍ଡିତ୍ୟର ସମନ୍ୱୟ ହୋଇଛି । ସେ ଏହି ପ୍ରବନ୍ଧ ଗୁଡିକ ରଚନା କରିବା ପାଇଁ ବେଦ, ଉପନିଷଦ, ପୁରାଣ, ସ୍ମୃତିଶାସ୍ତ୍ର, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଶୁକ୍ରନୀତି ପ୍ରଭୃତି ପ୍ରାଚୀନ ଭାରତୀୟ ଗ୍ରନ୍ଥମାନ ଭଲଭାବରେ ଅଧ୍ୟୟନ କରିଥିଲେ । ଏତଦ୍‌ଭିନ୍ନ ସେ Cunningham's Geography of Ancient India, C.V.Vaidya ଙ୍କ "Epic India.", Rhys Davisଙ୍କ "Budhist India.' V.A.Smithଙ୍କ "Early History of India.' A.Weber ଙ୍କ "History of Indian Literature., Bealଙ୍କ Life of Hiuen Tsang' ରାଜେନ୍ଦ୍ର ଲାଲ ମିତ୍ରଙ୍କ "Antiquities of Orissa" ରମେଶଚଂଦ୍ର ଦତ୍ତଙ୍କ "Civilization in Ancient India" ପ୍ରଭୃତି ପ୍ରସିଦ୍ଧ ଗ୍ରନ୍ଥମାନ ଗଭୀରଭାବେ ଅନୁଶୀଳନ କରିଥିଲେ । ପ୍ରାଚୀନ ଭାରତ ସଂପର୍କରେ ରହିଥିବା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ମତର ସମୀକରଣରେ ତାଂକର ପ୍ରବନ୍ଧ ଗୁଡିକ ରଚିତ ।

**(ଖ) ଧର୍ମ-ଦର୍ଶନକୁ ନେଇ ରଚିତ ପ୍ରବନ୍ଧ :**

ରାମଚନ୍ଦ୍ର ଆଚାର୍ଯ୍ୟଙ୍କର ଭାରତର ଧର୍ମ ଓ ଦର୍ଶନ ସଂପର୍କରେ ପାଣ୍ଡିତ୍ୟ ସୁବିଦିତ । ଭାରତୀୟ ଦର୍ଶନ ସଂପର୍କରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଥିଲା । ସେ ସାଂଖ୍ୟ ଯୋଗ, ନ୍ୟାୟ, ବୈଶେଷିକ, ମୀମାଂସା, ବେଦାନ୍ତ - ଏହି ଷଟ୍ ଦର୍ଶନ ସମ୍ବନ୍ଧରେ ଅନେକତ୍ର ତାଙ୍କ ପ୍ରବନ୍ଧମାନଙ୍କରେ ଉଲ୍ଲେଖ କରିଛନ୍ତି । ଏହି ପର୍ଯ୍ୟାୟର ପ୍ରବନ୍ଧମାନଙ୍କ ମଧ୍ୟରେ 'ତ୍ରିମୂର୍ତ୍ତି' , 'ଗୀତାସାର', 'ମୁକ୍ତିମନ୍ଦିର', 'ଭାରତର ପବିତ୍ର ହ୍ରଦ' ପ୍ରଧାନ । ସେ ଜିଜ୍ଞାସୁ ମନ ନେଇ ଭାରତର ଧର୍ମରହସ୍ୟ ଭେଦ କରିବାକୁ ଚେଷ୍ଟା କରୁଥିଲେ । ଧର୍ମକୁ ନେଇ ସଂପ୍ରଦାୟ ସଂପ୍ରଦାୟ ଭିତରେ ରହିଥିବା ଭେଦଭାବକୁ ସେ ଆଦୌ ପସନ୍ଦ କରୁନଥିଲେ । ସେ ଏହାକୁ ବିଶ୍ୱାସର ଏକ ଯୋଗସୂତ୍ର ଭାବେ ଗ୍ରହଣ କରିଥିଲେ । ଏ ସଂପର୍କରେ ତାଙ୍କର 'ତ୍ରିମୂର୍ତ୍ତି' ପ୍ରବନ୍ଧଟି ବିଶେଷ ଗୁରୁତ୍ୱପୂର୍ଣ୍ଣ । ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଭିତରେ ସେ କୌଣସି ଅନ୍ତର୍ଦ୍ୱନ୍ଦ୍ୱକୁ ସ୍ୱୀକାର କରିବାକୁ ଚାହିଁନାହାନ୍ତି । ସେ ବିଷ୍ଣୁଙ୍କୁ ସତ୍ତ୍ୱ, ବ୍ରହ୍ମାଙ୍କୁ ରଜ ଓ ଶିବଙ୍କୁ ତମୋଗୁଣର ପ୍ରତୀକ ଭାବେ ନେଇଛନ୍ତି । ଏହି ତିନିଗୁଣ ପ୍ରକୃତିରୁ ଉତ୍ପନ୍ନ । ତ୍ରିଗୁଣ ଓ ତ୍ରିମୂର୍ତ୍ତି ମଧ୍ୟରେ ସଂପର୍କ ହେଉଛି ଅବିଚ୍ଛେଦ୍ୟ । ତାଂକ ମତରେ ''ତ୍ରିଗୁଣର ପ୍ରକୃତ ଧର୍ମ ସୁସ୍ପଷ୍ଟରୂପେ ବୁଝି ନ

ପାରିବାରୁ ହିଁ ଜଗତରେ ତ୍ରିମୂର୍ତ୍ତିର ଭକ୍ତ ଓ ସେବକ ମାନଙ୍କ ମଧ୍ୟରେ ନାନାରକମ ଅଶାନ୍ତି, ଗୋଳମାଳ, ବିଦ୍ୱେଷ ଓ ବାଗ୍‌ଯୁଦ୍ଧର ଭୀଷଣ ସୃଷ୍ଟି, ପ୍ରଳୟ ତାଣ୍ଡବ । '' (୫) ସେ ଧର୍ମକୁ ଏକ ଉଦାର ସମନ୍ୱୟବାଦୀ ମନୋଭାବ ନେଇ ବିଚାର କରୁଥିଲେ । ତାଂକର 'ଗୀତାସାର' ପ୍ରବନ୍ଧରେ ଗୀତାର ଦାର୍ଶନିକ ତର୍ଜମା ସେ କରିଥିଲେ । ସେ ଧର୍ମକୁ ମାନବ ସହିତ ମାନବର ମୈତ୍ରୀବନ୍ଧନର ସୂତ୍ର ରୂପେ ଓ ଦର୍ଶନକୁ ବୃହତ୍ତର ଜୀବନ ଦୃଷ୍ଟି ରୂପେ ଦେଖୁଥିଲେ ।

ସେ ଧର୍ମ ଦର୍ଶନମୂଳକ ପ୍ରବନ୍ଧମାନଙ୍କରେ କେତେକ ସ୍ଥଳରେ ତାଂକର ଗଭୀର ଆଧ୍ୟାତ୍ମ ଅନୁଭୂତି ସହିତ ସୂକ୍ଷ୍ମ ସୌନ୍ଦର୍ଯ୍ୟ ଚେତନା ପ୍ରକାଶ କରିଛନ୍ତି । ଏ ପ୍ରସଂଗରେ 'ଭାରତର ପବିତ୍ର ହ୍ରଦ' ପ୍ରବନ୍ଧର କିୟଦଂଶ ଉଲ୍ଲେଖ କରାଯାଇ ପାରେ '' ପୁଷ୍କର ହ୍ରଦ କୂଳରେ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଅନେକ ଗୁଡ଼ିଏ ଦେବାଳୟ ନିର୍ମିତ ହୋଇଅଛି । କେବେ କେବେ ଏହି ସମସ୍ତ ଦେବ ମନ୍ଦିର ଆଗରେ ହ୍ରଦଜଳରେ ଯୁବତୀଦଳ ଅତି ସୂକ୍ଷ୍ମ ବସ୍ତ୍ରରେ ମାତ୍ର ଅବଗୁଣ୍ଠିତ ହୋଇ ନାନା କ୍ରୀଡା କୌତୁକ ଆମୋଦ ପ୍ରମୋଦରେ ମାତି ରହନ୍ତି । ସେମାନଙ୍କ ପ୍ରାଣବିନୋଦନ ସୁମଧୁର କ୍ରୀଡା ବିହିତ ହାସ୍ୟ ଧ୍ୱନିରେ ହ୍ରଦତୀର ପ୍ରତିଧ୍ୱନିତ ହୋଉଉଠେ । ସେତେବେଳେ ଦର୍ଶକର ମନେ ହୁଏ ସତେ ଯେପରି ପ୍ରେମାଧାର ରସିକ ଶେଖର ଶ୍ରୀକୃଷ୍ଣଙ୍କ ସମକ୍ଷରେ କୃଷ୍ଣଗତପ୍ରାଣା ସାତ୍ତ୍ୱିକ ଭାବବିହ୍ୱଳା ଗୋପାଂଗନାଗଣ କୃଷ୍ଣପ୍ରେମରେ ତନ୍ମୟ ହୋଇ ନୃତ୍ୟଗୀତାଦି କରୁଅଛନ୍ତି । ଯୁବତୀ ଦଳ ଥରକୁଥର ଯେତେବେଳେ ଜଳକ୍ରୀଡାରୁ ନିବୃତ୍ତ ହୋଇ ମୁକ୍ତ କୁନ୍ତଳାବୃତ ନଗ୍ନ ସ୍କନ୍ଧରେ କ୍ରୀଡାପର ଚଞ୍ଚଳଶୀଳ ଲହରୀମାଳା ଉପରକୁ ଉଠନ୍ତି, ସେତେବେଳେ ସେମାନଙ୍କୁ ଦେଖି ଦର୍ଶକ ମନରେ କି ଛାୟା ପଡେ, କେଉଁ ସ୍ମୃତିର ଉଦୟ ହୁଏ ? ଅବଶ୍ୟ ଅପସ୍ୱରା ମାନଙ୍କ ସ୍ମୃତି - ବ୍ରହ୍ମା ହୃଦୟ ହାରିଣୀ ଅପୂର୍ବ ରୂପବତୀ ଅପସରାଗଣଙ୍କ ମଧୁର ସ୍ମୃତି । '' (୬) ସେ ଧର୍ମ, ଦର୍ଶନର ତତ୍ତ୍ୱମାନଙ୍କୁ ସରଳ, ସହଜ ଓ ସୁଖବୋଧ ରୀତିରେ ପାଠକ ନିକଟରେ ଉପସ୍ଥାପିତ କରିବାରେ ଥିଲେ ଧୂରୀଣ । ଧର୍ମର ନିଗୂଢ଼ ତତ୍ତ୍ୱକୁ ଗୁହାରୁ ମୁକ୍ତ କରି ସେ ସାଧାରଣ ଜନତା ଆଡକୁ କରିଥିଲେ ପ୍ରସାରିତ ।

**(ଗ) ଜୀବନଚରିତ ମୂଳକ ପ୍ରବନ୍ଧ :**

ଯେଉଁମାନେ ଜୀବନକୁ ଜଗତର ବୃହତ୍ତର କଲ୍ୟାଣ ସକାଶେ ନିୟୋଜିତ କରିଥିଲେ, ସେମାନଙ୍କ ଜୀବନୀକୁ ନେଇ ପ୍ରବନ୍ଧ ରଚନାରେ ରାମଚନ୍ଦ୍ର କେବେହେଲେ ବିମୁଖ ନଥିଲେ । ସେମାନଙ୍କ ତ୍ୟାଗ, ଆଦର୍ଶ ଓ ମହାନୁଭବତା ସଂପର୍କରେ ପ୍ରାବନ୍ଧିକ କେତେକ ଉଚ୍ଚକୋଟୀର ପ୍ରବନ୍ଧ ଲେଖିଥିଲେ । ତାଙ୍କର ଜୀବନଚରିତ ମୂଳକ ପ୍ରବନ୍ଧମାନଙ୍କ ମଧ୍ୟରେ ' ରାମଭକ୍ତ ତୁଳସୀ ଦାସ', ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ', 'ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ' ପ୍ରଧାନ । ରାମଭକ୍ତ ତୁଳସୀ ଦାସଙ୍କୁ ମହାନ୍ ସନ୍ଥ କବି ରୂପେ, ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କୁ ଜଣେ କୃତବିଦ୍ୟ ପଣ୍ଡିତ ରୂପେ ଓ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କୁ ଜଣେ ଉତ୍କଳ ହିତୈଷୀ ରୂପେ ଚିତ୍ରଣ କରିଛନ୍ତି । ରାମଭକ୍ତ ତୁଳସୀ ଦାସ ପ୍ରବନ୍ଧଟିରେ ସନ୍ଥ କବିଙ୍କ ପ୍ରତି ପ୍ରାବନ୍ଧିକଙ୍କର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପିତ ହୋଇଥିବାବେଳେ, ଅନ୍ୟ ପ୍ରବନ୍ଧ ଦୁଇଟି ପରଲୋକଗତ ଆତ୍ମା ଉଦ୍ଦେଶ୍ୟରେ ସ୍ମୃତିତର୍ପଣ ସକାଶେ ରଚିତ । ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କ ମନସ୍ୱିତ, ଐତିହ୍ୟସଚେତନତା ଓ ସ୍ୱଦେଶପ୍ରାଣତାକୁ ପ୍ରାବନ୍ଧିକ ଏଥିରେ ଆଲୋଚନା କରିଥିଲେ । ଏହି ଜୀବନ ଚରିତମୂଳକ ପ୍ରବନ୍ଧଟିରେ ତାଙ୍କର ଆବେଗମୟ ଭାବମୁଗ୍ଧତା ବାସ୍ତବରେ ଓଡିଆ ଜୀବନୀ ସାହିତ୍ୟରେ ଦୁର୍ଲ୍ଲଭ । 'ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ' ପ୍ରବନ୍ଧଟିରେ ସେ ଗୋପବନ୍ଧୁଙ୍କ ତ୍ୟାଗ, ଆଦର୍ଶ ଓ ମହାନୁଭବତାର ସ୍ମୃତିଚାରଣ କରିଛନ୍ତି । ତାଙ୍କର ଅକାଳ ବିୟୋଗରେ ଅଭିଭୂତ ହୋଇ ପ୍ରାବନ୍ଧିକ ଏହି ପ୍ରବନ୍ଧଟିରେ

ପରଲୋକଗତ ଅମରଆତ୍ମା ପ୍ରତି ଶୋକୋଚ୍ଛ୍ୱାସ ବ୍ୟକ୍ତ କରିଛନ୍ତି । ଏହି ପ୍ରବନ୍ଧଟି ଆବେଗ, ଉଚ୍ଛ୍ୱାସ ଓ ଭାବଧର୍ମ ଯେ କୌଣସି ଶୋକଗୀତିକା (Elegy) ସହିତ ସମାନ ।

ପ୍ରାବନ୍ଧିକ ଜୀବନୀପାଠର ଉପାଦେୟତା ଭଲଭାବରେ ବୁଝିଥିଲେ । ସେ ଶ୍ରଦ୍ଧାର ସହିତ କବି, ମହାପୁରୁଷ, ସାଧୁ, ସମାଜସେବୀ, ବୈଜ୍ଞାନିକ ପ୍ରମୁଖଙ୍କ ଜୀବନୀ ଶିଶୁ ଓ କିଶୋରମାନଙ୍କ ସକାଶେ ମଧ ଲେଖିଥିଲେ । ସେ ପୁରାଣର ବିଭିନ୍ନ ଚରିତ୍ରମାନଙ୍କ ଜୀବନୀ ତାଙ୍କ ପାଠ୍ୟପୁସ୍ତକ ଗୁଡ଼ିକରେ ଲେଖିଯାଇଛନ୍ତି । 'ଲବକୁଶ', 'ମାର୍କଣ୍ଡେୟ', 'ଅନସୂୟା' ପ୍ରଭୃତି ପୌରାଣିକ ଚରିତ୍ର ସଂପର୍କରେ ତାଂକର ଛୋଟ ଛୋଟ ପୁସ୍ତକମାନ ରହିଛି ।

ତାଂକର ଜୀବନ ଚରିତମୂଳକ ପ୍ରବନ୍ଧ ଗୁଡ଼ିକରେ ତଥ୍ୟ ଅପେକ୍ଷା ଲେଖକଙ୍କ ଶ୍ରଦ୍ଧା ଅଧିକ ପ୍ରକଟିତ । ବ୍ୟକ୍ତି ବିଶେଷଙ୍କ ଜୀବନୀ ରଚନା ପାଇଁ ପ୍ରଥମେ ଯେ ଅନ୍ତରରେ ସେହି ବ୍ୟକ୍ତିଙ୍କ ପ୍ରତି ଦିବ୍ୟ ଶ୍ରଦ୍ଧା ପୋଷଣ କରିବାକୁ ହେବ, ଏ କଥାଟି ପ୍ରାବନ୍ଧିକ ଆଚାର୍ଯ୍ୟ ଆମକୁ କହିଦେଇଛନ୍ତି । କେବଳ ଶ୍ରଦ୍ଧାଦ୍ୱାରା ହିଁ ଉଚ୍ଚକୋଟୀର ଜୀବନ ଚରିତ ସେ ସମକାଳୀନ ପଣ୍ଡିତ ଓ ସମାଜ ସେବକଙ୍କ ସଂପର୍କରେ ଲେଖିଯାଇଛନ୍ତି । ଏ ଗୁଡ଼ିକ ପାଠକଲେ ପ୍ରାଣ ପୁଲକିତ ହୁଏ ।

ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରବନ୍ଧର ଗୁରୁତ୍ୱ ଉପଲବ୍ଧି କରିବାକୁ ହେଲେ ଏହାର ଶିଳ୍ପ ପ୍ରକରଣକୁ ବୁଝିବା ଆବଶ୍ୟକ । କେବଳ ତଥ୍ୟ ପ୍ରମାଣକୁ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପିତ କରିବା ତାଙ୍କ ପ୍ରବନ୍ଧର ଲକ୍ଷ୍ୟ ନଥିଲା । ସେ ତାଙ୍କ ପ୍ରବନ୍ଧ ଗୁଡ଼ିକୁ ପାଠକ ନିକଟରେ ସାହିତ୍ୟ ସାମଗ୍ରୀ ରୂପେ ପ୍ରକାଶ କରିଥିଲେ । ବୋଧହୁଏ ସେଥିପାଇଁ ପୁରୁଣା ଉପାଦାନ ଭିତ୍ତିରେ ରଚିତ ତାଙ୍କର ପ୍ରବନ୍ଧ ଗୁଡ଼ିକୁ ଏବେବି ପଢ଼ିବା ସକାଶେ ପାଠକ ଆଗ୍ରହ ପୋଷଣ କରେ । ସେ ପ୍ରାଚୀନ ଭାରତର ଶାସ୍ତ୍ରମାନଙ୍କରୁ ଉପାଦାନ ସଂଗ୍ରହକରି ନିଜସ୍ୱ ଭାବନା ଓ ଯୁକ୍ତିରେ ରସାଣିତ କରିବାରେ ଥିଲେ ସିଦ୍ଧହସ୍ତ । ସେ ସଂସ୍କୃତ ଓ ଇଂରାଜୀରୁ ବହୁ ଦୃଷ୍ଟାନ୍ତ ତାଂକ ପ୍ରବନ୍ଧମାନଙ୍କରେ ଉଦ୍ଧାର କରିଛନ୍ତି । ଏ ସତ୍ତ୍ୱେ ସେ ତାଂକ ପ୍ରବନ୍ଧମାନଙ୍କରେ ନିଜର କିଛି ନା କିଛି ବକ୍ତବ୍ୟ ରଖିଥିଲେ । ଅନେକତ୍ର ସେ ଉଦ୍‌ବୋଧନ ଦେବା ଢ଼ଙ୍ଗରେ ମଧ ଏ ଜାତିର ଅତୀତ ବିଭବ ସଂପର୍କରେ ନାନା ବିଶେଷଣ ପ୍ରୟୋଗ କରି ତାଂକର ବକ୍ତବ୍ୟ ବାଢ଼ିଛନ୍ତି । ତାଙ୍କର ଏ ଧରଣର ଉଦ୍‌ବୋଧନଧର୍ମୀ ଗଦ୍ୟ ଦେଖନ୍ତୁ, "କିନ୍ତୁ ଏହି ପ୍ରାଚୀନ-ଗୌରବ-ବିଭବ-ଶାଳିନୀ, ଯଶଃକୀର୍ତ୍ତିମାଳିନୀ, ପୁଣ୍ୟ ବିଧାୟିନୀ ଶୁଭ ପ୍ରଦାୟିନୀ ଏବଂ କୋଟି କବିବର ଶିକ୍ଷୀ ଜନନୀ ଭାରତ ଭୂମିର ସୁଦୀର୍ଘ, ଚିତ୍ର-ବିଚିତ୍ର ଓ ବିଭିନ୍ନ ରଙ୍ଗରଞ୍ଜିତ ଇତିହାସର ଯେଉଁ ସକଳ ସ୍ଥାନରେ ଯତ୍‌କିଞ୍ଚିତ ଆଲୋକ ନିକ୍ଷିପ୍ତ ହୋଇଅଛି , ସେହି ସ୍ଥାନରେ ଭାରତର ଶିକ୍ଷା, ଅଧ୍ୟୟନ ଓ ଧର୍ମପ୍ରତି ଆଗ୍ରହ ଓ ଆସକ୍ତିର ପ୍ରତ୍ୟକ୍ଷ ପ୍ରମାଣ ପ୍ରାପ୍ତ ହେଉ । " (୭)

ପ୍ରାବନ୍ଧିକ ଆଚାର୍ଯ୍ୟ ଅନେକ ସ୍ଥାନରେ ତାଙ୍କ ପ୍ରବନ୍ଧମାନଙ୍କରେ ଆବେଗପୂର୍ଣ୍ଣ ଭାଷା ବ୍ୟବହାର କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଛୋଟ ଛୋଟ ବାକ୍ୟରେ ନାଟକର ସଂଳାପ ପରି ଏଗୁଡ଼ିକ ଆତ୍ମପ୍ରକାଶ କରିଛି । ତାଙ୍କର ନାଟକୀୟ ସଂଳାପସୁଲଭ ଭାଷାବିନ୍ୟାସ ରୀତିର କେତେକ ଉଦାହରଣ ଶୁଣନ୍ତୁ, " ଭାରତବର୍ଷର ଅତୀତ ମିଥ୍ୟା ନୁହେଁ । କଳ୍ପନା ନୁହେଁ । ହିନ୍ଦୁ ଜାତିର ପୂର୍ବ କର୍ମକଳାପ କବିକଳ୍ପନାର ସାମଗ୍ରୀ ନୁହେଁ ; କେବଳ ଧ୍ୟାନ ଧାରଣାର ବିଷୟୀଭୂତ ନୁହେଁ । ଜଗତରେ ତାହାର ଗୁରୁଗିରି ଐତିହାସିକ ସତ୍ୟ ।"(୮) ଏହା କୌଣସି ନାଟକର ଚରିତ୍ର ମୁଖର ସଂଳାପ ପରି ମନେ ହୁଏ ।

ପ୍ରାବନ୍ଧିକ ଆଚାର୍ଯ୍ୟ ତାଙ୍କ ପ୍ରବନ୍ଧମାନଙ୍କରେ କେବେ କେମିତି କବିସୁଲଭ ବର୍ଣ୍ଣନା କରିବାକୁ ମଧ ଭୁଲିନାହାନ୍ତି । ସେ ସଂସ୍କୃତ ଶାସ୍ତ୍ରମାନଙ୍କର ଉପାଦାନକୁ କବିତ୍ୱପୂର୍ଣ୍ଣ ଗଦ୍ୟରେ ତାଙ୍କ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ତାଙ୍କର କବିତ୍ୱପୂର୍ଣ୍ଣ ଗଦ୍ୟର ସ୍ୱରୂପ ଏହିପରି '' ମହୁମାଛି ଫୁଲରୁ ଯେପରି ଧୀରେ ଧୀରେ ରସ ଟାଣିନିଏ, ଜୋକ ଯେପରି ଧୀରେ ଧୀରେ ମନୁଷ୍ୟ ଦେହରୁ ରକ୍ତ ଶୋଷିନିଏ, ବାଛୁରୀକୁ ଭୋକରେ ନରଖି ଏବଂ ଗାଈର ପହ୍ନାକୁ କିଛି ବାଧା ନ ଦେଇ ନିଜ ଲୋକେ ଯେପରି ଦୁଧ ଦୁହିଁଥାନ୍ତି, ବ୍ୟାଘ୍ରୀ ଯେପରି କିଛି ବାଧା ନ ଦେଇ ନିଜ ଛୁଆକୁ ଦାନ୍ତରେ ଧରିବୁଲଚାଲ କରେ ଏବଂ ମୂଷା ଯେପରି ତା'ର ତୀକ୍ଷ୍ଣ ଦନ୍ତରେ ମନୁଷ୍ୟର ପାଦତଳ ଚୋବାଇଦେଲେ କିଛି ଆଘାତ ଲାଗେ ନାହିଁ, ରାଜାକୁ ମଧ ସେହିପରି ପ୍ରଜାମାନଙ୍କୁ କୌଣସି ଅସୁବିଧା ଓ କଷ୍ଟରେ ନ ପକାଇ ସେମାନଙ୍କଠାରୁ କର ଆଦାୟ କରିବାକୁ ହେବ । '' (୯)

ପ୍ରାବନ୍ଧିକ କେତେକ ସ୍ଥଳରେ ତାଂକର ପୂର୍ବଜ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ପରି ତତ୍ସମଶବ୍ଦବହୁଳ ଗଦ୍ୟ ରଚନାରେ କୃତିତ୍ୱ ଦେଖାଇଛନ୍ତି । ଦକ୍ଷିଣ ଓଡିଶାରେ ସେତେବେଳେ ପଣ୍ଡିତ ଗୋପୀନାଥ ନଂଦଶର୍ମା ଓ ଶ୍ରୀ ଶ୍ୟାମ ସୁଂଦର ରାଜଗୁରୁ ସୁଧୀ ପ୍ରାବନ୍ଧିକ ଭାବରେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଥିଲେ । ସୁତରାଂ, ତରୁଣ ଲେଖକ ରାମଚଂଦ୍ର ଆଚାର୍ଯ୍ୟ ସେ ସମୟରେ ଗୋପୀନାଥ ନଂଦଶର୍ମାଙ୍କ ଗଦ୍ୟରୀତି ଦ୍ୱାରା ପ୍ରଭାବିତ ହୋଇ ସଂସ୍କୃତ ଶବ୍ଦବହୁଳ ରବାଡମ୍ବର ପୂର୍ଣ୍ଣ ଗଦ୍ୟ ଲେଖିବାରେ କିଛି ଅସ୍ୱାଭାବିକତା ନଥାଇପାରେ । ଏ ଧରଣର ଗଦ୍ୟ ଯେ ତାଙ୍କର ସଂସ୍କୃତ ସାହିତ୍ୟ ଜ୍ଞାନର ସାକ୍ଷ୍ୟ ପ୍ରଦାନ କରେ; ଏଥିରେ ସାମାନ୍ୟତମ ସନ୍ଦେହ ନାହିଁ । ଏଠାରେ ପ୍ରାବନ୍ଧିକଙ୍କର ଏହି ଗଦ୍ୟର ଏକ ନମୁନା ଦେଖନ୍ତୁ - '' ଭାରତ ବର୍ଷ ଯେ ବହୁ ବିଷୟରେ ମାନବ-ସମାଜର ଜ୍ଞାନଦାତା, ଗୁରୁସ୍ଥାନୀୟ, ଏହା ଅତ୍ୟୁକ୍ତିର ଆଶଙ୍କା ନଥାଇ କୁହାଯାଇପାରେ । ଆଧୁନିକ ଜଗତର ଚିନ୍ତାଶୀଳ ବ୍ୟକ୍ତିମାତ୍ରେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ଭାରତ ପ୍ରାଚୀନ ଯୁଗରେ ସ୍ୱାଧୀନତା ମାର୍ତ୍ତଣ୍ଡର ସହସ୍ର କିରଣରେ ଉଦ୍ଭାସିତ ହୋଇ ଜଗତ୍ ସମ୍ମୁଖରେ ଗୌରବ-ନିଶାଣ ଉଡ୍‌ଡୀନ୍ କରିଥିଲା । '' (୧୦)

ପ୍ରାବନ୍ଧିକ ରାମଚନ୍ଦ୍ର ଆଚାର୍ଯ୍ୟ ଥିଲେ ଅତିମାତ୍ରାରେ ପାଠକ-ସଚେତନ । ତାଙ୍କ ପ୍ରବନ୍ଧରେ ସେ ପାଠକମାନଙ୍କୁ ବହୁବାର ସମ୍ବୋଧନ କରିବାକୁ ଭୁଲିନାହାନ୍ତି । ତାଙ୍କ ପୂର୍ବରୁ ଫକୀରମୋହନଙ୍କ ଉପନ୍ୟାସମାନଙ୍କରେ ଏଭଳି ପାଠକମାନଙ୍କୁ ସମ୍ବୋଧନ କରିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସେ ପାଠକକୁ ତାଙ୍କ ଲେଖା ସହିତ ଆତ୍ମୀୟତା ବନ୍ଧନରେ ବାନ୍ଧି ରଖିବା ସକାଶେ ଏପରି କରିଥିବା ଅସମ୍ଭବ ନୁହେଁ । ଏଠାରେ ପ୍ରାବନ୍ଧିକଙ୍କ ପାଠକ ସଚେତନତାର ଦୁଇଟି ଦୃଷ୍ଟାନ୍ତ ଦିଆଯାଉଛି । ତାହା ଏହିପରି, '' ଭାରତରେ ମୁସଲମାନଗଣଙ୍କ ରାଜତ୍ୱକାଳରେ ଯେଉଁ ସମସ୍ତ ଅଲିଖିତ ବିଧି ଓ ନୀତିର ବଶବର୍ତ୍ତୀ ହୋଇ ମୁସଲମାନ ଶାସକମାନେ ପରସ୍ପର ସହିତ ଏବଂ ସେମାନଙ୍କ ବିଧର୍ମୀ ପଡୋଶୀ ରାଜାମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ, ସେହି ସକଳ ନିୟମ ଓ ନୀତି ପାଠକ ପାଠିକାମାନଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଏହି ପ୍ରବନ୍ଧର ଅବତାରଣା ।'' (୧୧)

''ଭୂମିକା ଦୀର୍ଘ କରି ପାଠକ ପାଠିକାମାନଙ୍କ ସମୟ ନଷ୍ଟ କରିବା ମୋର ଅଭିପ୍ରେତ ନୁହେଁ । ଭାରତ ସମ୍ବନ୍ଧରେ କିଛି ଲେଖିବାକୁ ଯିବା ସମୟରେ ଭାରତର ପ୍ରାଚୀନ ଗୌରବ ଅନୁଧ୍ୟାନ କଲେ, ତାହାର ପୁରାଣ ମହିମା ସ୍ମରଣ କଲେ, କେଜାଣି କାହିଁକି ମନରେ କିଞ୍ଚିତ୍ ଆଶ୍ୱାସନା ଆସେ । ଅତଏବ କିଛି ଦୀର୍ଘ ହୋଇ ଯାଇଅଛି । ଆଶାକରେ, ପାଠକ ପାଠିକାଗଣ ବିରକ୍ତ ହେବେ ନାହିଁ । '' (୧୨)

ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରବନ୍ଧର ଗଦ୍ୟଶୈଳୀକୁ ମୁଖ୍ୟତଃ ଦୁଇଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । (କ) ଯୁକ୍ତିମୂଳକ ଗଦ୍ୟ (ଖ) ବ୍ୟାଖ୍ୟାମୂଳକ ଗଦ୍ୟ । ଯୁକ୍ତିମୂଳକ ଗଦ୍ୟରେ ତାଂକର ଧର୍ମ ଦର୍ଶନ ଉପରେ ଆଧାରିତ ପ୍ରବନ୍ଧ ଗୁଡ଼ିକ ରଚିତ । ଏଥିରେ ପ୍ରାବନ୍ଧିକ ପାଠକ ଚିତ୍ତରେ ସ୍ୱବିଚାରଶକ୍ତି ଦ୍ୱାରା ପ୍ରଭାବ ବିସ୍ତାର କରେ । ଏ ଧରଣର ଗଦ୍ୟର ସଫଳତା ପ୍ରାବନ୍ଧିକର ବୌଦ୍ଧିକତା ଉପରେ ନିର୍ଭରକରେ । ତାଙ୍କର ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତିକୁ ନେଇ ରଚିତ ପ୍ରବନ୍ଧ ଗୁଡ଼ିକରେ ବ୍ୟାଖ୍ୟାମୂଳକ ଗଦ୍ୟର ସଫଳ ପ୍ରୟୋଗ ଦେଖିବାକୁ ମିଳେ । ଏଥିରେ ପ୍ରବନ୍ଧ ଲେଖକ ତା'ର ପ୍ରତିପାଦ୍ୟ ବସ୍ତୁକୁ ସଂଗୃହୀତ ଉପାଦାନଦ୍ୱାରା ସାଧାରଣତଃ ବ୍ୟାଖ୍ୟା କରିଥାଏ । ଏ ଧରଣର ଗଦ୍ୟ ତଥ୍ୟବହୁଳ ହୋଇଥିବାରୁ ବେଳେ ବେଳେ ପାଠକ ପାଇଁ ଏହା ହୁଏ ବିରକ୍ତିକର ।

ସାହିତ୍ୟ ବିଚାରବେଳେ ସାଧାରଣତଃ 'ସାଧୁତା' ଉତ୍ତମ ରୁଚି ରୂପେ ବିବେଚିତ । ଏହା ଅନେକାଂଶରେ ଲେଖକର ଅଧ୍ୟୟନ ଓ ଯଥାର୍ଥ ଚିନ୍ତାଶକ୍ତି ଉପରେ ନିର୍ଭରଶୀଳ । ଏହା ଛଡ଼ା ଲେଖକ ଭିତରେ ଏକ ସମ୍ବେଦନଶୀଳ ଚେତନା ଥିବା ଦରକାର । ରାମଚନ୍ଦ୍ର ଆଚାର୍ଯ୍ୟଙ୍କର ଏହି ତିନିଗୋଟିଯାକ ଶକ୍ତି ଏକାଠି ଥିଲା । ତାଙ୍କ ପ୍ରବନ୍ଧମାନଙ୍କରେ ଗବେଷକର ଅନ୍ୱେଷା, ପଣ୍ଡିତର ବହୁ ଶାସ୍ତ୍ରଦର୍ଶିତା, ତରୁଣର ଉଦ୍ଦାମତା , ଐତିହାସିକର ସ୍ୱଦେଶପ୍ରାଣତା ଓ ଶିକ୍ଷକର ଉଦାରତା ପରିଲକ୍ଷିତ ।

ତରୁଣ ବୟସରୁ ସେ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ସାଧନାରେ ବସି ସିଦ୍ଧିଲାଭ କରିବା ପୂର୍ବରୁ ଅକାଳରେ ସେଇ ତରୁଣ ବୟସରେ ଇହଲୋକରୁ ସେ ବିଦାୟ ନେଲେ । ଆଉ କିଛିକାଳ ବଞ୍ଚିଥିଲେ ହୁଏତ ସେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ଅଧିକ ସମୃଦ୍ଧ କରି ପାରିଥାନ୍ତେ ; ତଥାପି ସ୍ୱଳ୍ପ ଜୀବନକାଳ ମଧ୍ୟରେ ତାଙ୍କର ସାଧନାରେ ଯେ ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଋଦ୍ଧିମନ୍ତ ହୋଇଛି - ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ପାଦଟୀକା :

୧. ଉତ୍କଳ ସାହିତ୍ୟ - ୨୭ଶ ଭାଗ/୫ମ ସଂଖ୍ୟା, ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ , ପୃ - ୧୮୫.
୨. ଉତ୍କଳ ସାହିତ୍ୟ - ୨୭ଶ ଭାଗ/୨ୟ ସଂଖ୍ୟା, ଦକ୍ଷିଣ ଭାରତର  ସମରପ୍ରିୟ ଜାତିସକଳ, ପୃ-୫୩ .
୩. ଉତ୍କଳ ସାହିତ୍ୟ - ୩୧ଶ ଭାଗ/୧ମ ସଂଖ୍ୟା, ଭାରତର ମହାପୁରୁଷଗଣ, ପୃ-୩୩,୩୪.
୪. ଉତ୍କଳ ସାହିତ୍ୟ - ୨୦ଶ ଭାଗ /୨ୟ ସଂଖ୍ୟା, ଦକ୍ଷିଣଭାରତର ସମରପ୍ରିୟ ଜାତିସକଳ,ପୃ- ୫୩.
୫. ଉତ୍କଳ ସାହିତ୍ୟ - ୩୧ ଶ ଭାଗ/୨ୟ ସଂଖ୍ୟା, ତ୍ରିମୂର୍ତ୍ତି, ପୃ-୭୧ .
୬. ଉତ୍କଳ ସାହିତ୍ୟ - ୩୦ଶ ଭାଗ/୯ମ ସଂଖ୍ୟା, ଭାରତର ପବିତ୍ର ହ୍ରଦ, ପୃ-୪୫୫, ୪୫୬.
୭. ଉତ୍କଳ ସାହିତ୍ୟ - ୨୩ଶ ଭାଗ/୨ୟ ସଂଖ୍ୟା, ପ୍ରାଚୀନ ଓ ମଧ୍ୟଯୁଗର ଭାରତରେ ଲୋକଶିକ୍ଷା, ପୃ.୮୩
୮. ଉତ୍କଳ ସାହିତ୍ୟ - ୨୭ଶ ଭାଗ/୫ମ ସଂଖ୍ୟା, ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ, ପୃ-୧୮୫ .
୯. ତତ୍ରୈବ.    ୧୦. ତତ୍ରୈବ.
୧୧. ଉତ୍କଳ ସାହିତ୍ୟ - ୨୭ଶ ଭାଗ/.୧୧ଶ ସଂଖ୍ୟା, ମୁସଲମାନ ଭାରତର ସମରନୀତି , ପୃ-୪୨୯ .
୧୨. ଉତ୍କଳ ସାହିତ୍ୟ - ୨୭ଶ ଭାଗ/୫ମ ସଂଖ୍ୟା, ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ, ପୃ-୧୮୬ .

*ଉପାଧ୍ୟକ୍ଷ ଓଡ଼ିଆ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ଗଂଜାମ*

# ଉତ୍ତର ବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସମାଲୋଚନା ପଦ୍ଧତି

ଡଃ. ଆଦିକନ୍ଦ ସାହୁ

ବିଶ୍ୱ ଗର୍ଭିକ ପ୍ରଭାବ ଯୋଗୁଁ ଆଜି ସର୍ବତ୍ର ସବୁ ସାହିତ୍ୟର ସମାଲୋଚନା ଆଉ ଗଠନ ମୂଳକ (Constructive)ନହୋଇ ହୋଇଛି ଏକାନ୍ତ ସର୍ଜନାତ୍ମକ। ସାହିତ୍ୟ ସମାଲୋଚନା ଆଜି ତେଣୁ ଯେତେ ପ୍ରକାରର ହେଲେବି ତାହା ସାହିତ୍ୟର ଗଳ୍ପ କବିତା ଆଦି ଯେ କୌଣସି ବିଭାବ ପରି ସୃଜନଶୀଳ, ଅଧିକ ଶୈଳୀପ୍ରଧାନ ତଥା ସ୍ୱାଦ୍ୟ ହୋଇ ପାରିଛି ।

ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନା ବିଭିନ୍ନ ଭାବରେ ସଂପ୍ରତି ଅଧିକ ଅନ୍ତର୍ଦୃଷ୍ଟି ମୂଳକ (Introspective) ହୋଇଛି। ଅନ୍ତର୍ଗତ ଭାବଟିକୁ ଚିହ୍ନି ପାରିବା, ତା'ର ଆପେକ୍ଷିକ ସ୍ୱରୂପ କୁ ଅନୁମାନ କରିବା ତଥା ସେ ଭାବ ସଙ୍କେତକୁ ଚିରନ୍ତନତା ସହିତ ସମ୍ବନ୍ଧିତ କରିବାର ଗୋଟେ ଯୌଗିକ ତଥା ସାମଗ୍ରିକ ବ୍ୟାପାରଟି ହେଉଛି ଆଜିର ସାହିତ୍ୟ ସମାଲୋଚନା ।

ଆର୍କିଟାଇପ-ସମାଲୋଚକ ମାନେ ସାହିତ୍ୟର ବିଷୟ ଭେଦକୁ ଆଦୌ ଗୁରୁତ୍ୱପୂର୍ଣ୍ଣ ବିଷୟ ବୋଲି ମନେ କରନ୍ତି ନାହିଁ। କେତେକ ସାହିତ୍ୟର ବିଷୟ ବୈଚିତ୍ର୍ୟକୁ ଆଦୌ ସ୍ୱୀକାର କରନ୍ତି ନାହିଁ। ଯୁଗ ଯୁଗ ଧରି ସାହିତ୍ୟର ବିଷୟ ପିଣ୍ଡ ବା ଆତ୍ମା ଅପରିବର୍ତ୍ତନୀୟ ବୋଲି ନର୍ଥପ ଫ୍ରେ ପ୍ରମୁଖ ଆର୍କିଟାଇପ ସାହିତ୍ୟ ସମାଲୋଚକ ମାନେ ଯୁକ୍ତି ବାଢ଼ିଛନ୍ତି । ସେ କହିଛନ୍ତି ସାହିତ୍ୟର ବିଷୟ ଆଦୌ ବଦଳୁ ନଥିବା କାରଣରୁ ସାହିତ୍ୟର ଇତିହାସ ବୋଲି କିଛି ନାହିଁ; ଯଦିଥାଏ ତାହା କେବଳ ଆଂଗିକର ଇତିହାସ; ଆଦୌ ଆତ୍ମିକର ନୁହେଁ ।

ନର୍ଥପ ଫ୍ରେଙ୍କ ପରି ସମାଲୋଚକ ମାନେ କହନ୍ତି, ଏ ଯାବତ୍ ଯୁଗ ଯୁଗ ଧରି ବିଶ୍ୱର ପ୍ରିତିଟି ସାହିତ୍ୟରେ ଆମେ ଯାହା ଲେଖିଆସିଛୁ ତାହା ବସ୍ତୁତଃ କେବଳ ଗୋଟିଏ ବିଷୟ । ନାରୀ ପୁରୁଷର ମିଳନ ଚିତ୍ର ହିଁ ଗଦ୍ୟପଦ୍ୟ ନିର୍ବିଶେଷରେ ସବୁ ସାହିତ୍ୟର ଗୋଟିଏ ବିଷୟ ପିଣ୍ଡ। ତାହା ରାମଲୀଳା ହେଉ କି କେଦାର ଗୌରୀ ହେଉ, ତାହା ଶେକ୍‌ସପିୟରଙ୍କ ହାମଲେଟ ହେଉ କି କାଳିଦାସଙ୍କ ଅଭିଜ୍ଞାନ ଶାକୁନ୍ତଳାମ ହେଉ ସବୁଥିରେ ଆମେ ନାରୀ ପୁରୁଷଙ୍କ ମିଳନ ଚିତ୍ର ହିଁ ଦେଖୁ; ମାତ୍ରାଧିକ ବିରହ ଓ ବିପ୍ରଲମ୍ଭର କଥା ଲେଖା ହୋଇଥିଲେବି । ନରଥ୍ରୋପ୍ ଫ୍ରାଇ (Northrop Frye) ତାଙ୍କର ("The Anatomy of Criticism")ଗ୍ରନ୍ଥରେ ସାହିତ୍ୟକୁ ଅଧିକାଂଶରେ ମଣିଷର ଅନ୍ତଶ୍ଚେତନ ନିରପେକ୍ଷ ସାଂସ୍କୃତିକ ପରିମଣ୍ଡଳର ଆଭାସହୀନ ଏକ କାଳ୍ପନିକ ବ୍ୟାପାର ବୋଲି ଆଦୌ ଗ୍ରହଣ କଲେ ନାହିଁ। ସାହିତ୍ୟରେ ସେ ମଣିଷର ଅନ୍ତରୀଣ ସତ୍ତାକୁ ଅଧିକରୁ ଅଧିକତର ଦେଖି ପାରିଲେ। ସାହିତ୍ୟରେ ନୃତାତ୍ତ୍ୱିକ ଭାଷାକୁ ଅଧିକ ଗରୁତ୍ୱ ପୂର୍ଣ୍ଣ ବୋଲି ବିଚାର କଲେ। ମଣିଷ ଜୀବନର ଉଷ୍ମ ସମ୍ବେଗ ନଥାଇ କୌଣସି ସାହିତ୍ୟ ସାର୍ବଜନୀନ ଓ ସାର୍ବକାଳୀନ ହୋଇ ପାରିବ ନାହିଁ ବୋଲି ସେ ମନେ କଲେ।

ସାହିତ୍ୟ ବୁଦ୍ଧି ବା ଜ୍ଞାନର ପିଣ୍ଡ ନୁହେଁ । ସେଥିରେ ବରଂ ମଣିଷର ସୂକ୍ଷ୍ମତର ପ୍ରତ୍ୟୟ ସବୁ ଅତି ଇଙ୍ଗିତ ପୂର୍ଣ୍ଣ ହୋଇଥାଏ । ଆର୍କିଟାଇପୀୟ ସମାଲୋଚକ ମାନେ ସାହିତ୍ୟରେ ସବୁପ୍ରକାରର ସାଦୃଶ୍ୟକୁ ଲକ୍ଷ୍ୟ କରିଛନ୍ତି । ଗୋଟିଏ ସାହିତ୍ୟକୃତି ସହିତ ଅନ୍ୟ ଏକ ସାହିତ୍ୟକୃତିର ତୁଳନା ଏହି ପ୍ରକାର ସାଦୃଶ୍ୟ ଦେଖିବାରେ ହିଁ ଅଧିକ ଅର୍ଥପୂର୍ଣ୍ଣ ବୋଲି ସେ ମନେ କରିଛନ୍ତି । ସମାଲୋଚକର ଅନ୍ତର୍ଦୃଷ୍ଟି (Introspection)ତଥା ତା'ର ବିଶ୍ୱଦୃଷ୍ଟି (World view) ଯୋଗୁଁ କେବଳ ସେ କବି ଠାରୁ ଉଚ୍ଚତର ଉପଲବ୍ଧିର ଅଧିକାରୀ ହୋଇଥାଏ । ଫ୍ରେଙ୍କ ପରି ଆଧୁନିକ ସାହିତ୍ୟ ସମାଲୋଚକ ସମାଲୋଚନା ସାହିତ୍ୟକୁ ଅଧିକ ମର୍ଯ୍ୟାଦା ଦେଇ ବିଚାର କରିଛନ୍ତି । ସମାଲୋଚନା ଏକ ଟୀକା କେବଳ ନୁହେଁ ବୋଲି ସେମାନେ ଉପଲବ୍ଧି କରିଛନ୍ତି ।

ପାଶ୍ଚାତ୍ୟ ସମାଲୋଚନା ଉତ୍ତର ବିଂଶ ଶତାବ୍ଦୀରେ ଅଧିକରୁ ଅଧିକ ଜ୍ଞାନମୟ ହୋଇଛି । ସାହିତ୍ୟର ରସ ପରିଣାମ ତଥା ତଦ୍‌ଜନିତ ଚିତ୍ତବିନୋଦନର ଅର୍ଥପୂର୍ଣ୍ଣ ବ୍ୟାପାରଟିକୁ ଆଉ ଆଧୁନିକ ସମାଲୋଚକ ଗୁରୁତ୍ୱ ଦେଇ ବୁଝୁନାହିଁ । କାବ୍ୟକଳାକୁ ଆନନ୍ଦର ଅନୁବର୍ତ୍ତୀ ବୋଲି ସେ ଆଦୌ ଜ୍ଞାନ କରୁନାହିଁ । ସମାଲୋଚନା ମଣିଷର ଆନନ୍ଦଲୋକର ସ୍ୱରୂପକୁ ଆଉ ଚିହ୍ନଟ କରି ପାରୁନାହିଁ । ଉତ୍ତର ବିଂଶ ଶତାବ୍ଦୀର ସମାଲୋଚନାର ପରିଭାଷା ତେଣୁ ପ୍ରାକ୍ତନ ରୋମାଣ୍ଟିକ ସାହିତ୍ୟ ସମାଲୋଚନାର ପରିଭାଷା ଠାରୁ ଯଥେଷ୍ଟ ଅଲଗା ମନେ ହୁଏ । ପ୍ରାଣର ଉଲ୍ଲାସକୁ, ପ୍ରବୋଧିତ ଆତ୍ମାର ଉପଲବ୍ଧିକୁ ଚିହ୍ନଟ କରିବା ପରିବର୍ତ୍ତେ ଆଜିର ସମାଲୋଚନା ମଣିଷର ଜ୍ଞାନମୟ କୋଷ ସବୁକୁ ଯେପରି ଉନ୍ମୋଚନ କରିବାରେ ଲାଗିଛି ।

କବିତାକୁ ଆଜିର ପାଶ୍ଚାତ୍ୟ ସାହିତ୍ୟ ସମାଲୋଚକ ଏକ ଜ୍ୟାମିତିକ ଅଙ୍କନ ପରି ମନେ କରୁଛି । କବିତାକୁ ବିମ୍ବ ସଜ୍ଜୀକରଣ ଗତ ଏକ ଉଚ୍ଚମାନର ଶିଳ୍ପସଜ୍ଜା (Super Structure) ବୋଲି ଜ୍ଞାନ କରୁଛି । କବିତାର ଚିତ୍ତ ଉଲ୍ଲାସକ ଆନନ୍ଦ ଦାନକାରୀ ସୃଜନ ଶୀଳ ପ୍ରକ୍ରିୟାକୁ ଏବର ସମାଲୋଚକ କବିକର୍ମର ଏକ ଉଚ୍ଚତର ଆଦର୍ଶ ବୋଲି ଆଉ ମନେ କରୁନି ।

ପଚାଶ ଉତ୍ତର ପାଶ୍ଚାତ୍ୟ ସମାଲୋଚକ ଗଣ ସାହିତ୍ୟକୁ ସେତେବେଶୀ ଆଉ ଚିତ୍ତ ଉଲ୍ଲାସକ ନାନ୍ଦନିକ ବ୍ୟାପାର ବୋଲି ଆଉ ମନେ କଲେ ନାହିଁ । ଚିତ୍ରକଳ୍ପ, କବିର ଆବେଗ ଓ ତା'ର ଆତ୍ମଲୀନ ମଗ୍ନ ଚୈତନ୍ୟକୁ ଏମାନେ କବିତାର ଖାସ ଏକ ମୁଖ୍ୟ ବ୍ୟାପାର ବୋଲି ମଧ ଆଉ ମନେ କଲେ ନାହିଁ । ସମାଲୋଚନାର ଉଦ୍ଦେଶ୍ୟ ଏକ ଅନ୍ତରୀଣ ତଥା ଘନବଦ୍ଧ ଶୃଙ୍ଖଳାକୁ ଚିହ୍ନଟ କରିବା ବୋଲି ସେମାନେ କହିଲେ ।

ସମାଲୋଚନାରୁ ଅତି ଆପେକ୍ଷିକ ଭାବେ ରୋମାଣ୍ଟିକ ଗୁଣ ଓ ଲକ୍ଷଣ ତିରୋହିତ ହେବାକୁ ଲାଗିଲା । ଶବ୍ଦର ସ୍ୱପ୍ନିଳ ଓ ସୂକ୍ଷ୍ମତର ଭାବବଳୟ ଦ୍ୱାରା ନୂତନ ସମାଲୋଚକ ଆଉ ପ୍ରବୋଧିତ ହେଲେନି । ଅଥଚ ଅନ୍ୟପକ୍ଷରେ ସମାଲୋଚନାରେ ଆମେ କ୍ଲାସିକ ସାହିତ୍ୟ ପ୍ରତି ସେମିତି ବିଶେଷ ମାନ୍ୟତା ଆଉ ଲକ୍ଷ୍ୟ କରି ପାରିଲୁନି ।

ଆଧୁନିକ ସାହିତ୍ୟରେ ଆମ ମୋହଭଂଗର ବହୁ ବିଷୟ ପ୍ରତୀକିତ ହୋଇଛି । ମଣିଷ ଜୀବନର ଗୌରବ ବିଷୟରେ ଆମେ ପୁଣି ସନ୍ଦିଗ୍ଧ ହୋଇଛୁଁ । ଆଧୁନିକ ବିଜ୍ଞାନ ମଧ ମଣିଷ ଜୀବନର ଗରିମା ଓ ମହତ୍ତ୍ୱକୁ ନାନାଭାବରେ ଖର୍ବ କରିଛି । ରସାସ୍ୱାଦନ ଅପେକ୍ଷା ମୂଲ୍ୟାୟନ ମାତ୍ରାଧିକ ଭାବେ ପଚାଶ ଉତ୍ତର ପାଶ୍ଚାତ୍ୟ ସମାଲୋଚନାରେ ଗୁରୁତ୍ୱ ଲାଭ କରିଛି ।

ସମାଲୋଚନା ବସ୍ତୁତଃ ଆଜି ଉତ୍କର୍ଷ ଅପକର୍ଷ ନିର୍ଣ୍ଣୟ କରିବାର ପରିସଂଖ୍ୟାନଗତ ଏକ ବିଚାର (judgement) ମାତ୍ର ନୁହେଁ । ପୁଣି କଳା ବା ଆର୍ଟକୁ ସେମାନେ ଭାବ ପ୍ରବଣ ମଣିଷର ଏକ ଅଦରକାରୀ ଆସ୍ୱାଦନ ବୋଲି କହିଛନ୍ତି । ଅତଏବ ପଚାଶ ଉତ୍ତର ୟୁରୋପରେ ରୋମାଣ୍ଟିକ ସମାଲୋଚନାର ଗୌରବମୟ ପ୍ରତିଷ୍ଠା ବିନଷ୍ଟ ହୋଇଛି । ଅବଶ୍ୟ ବ୍ୟକ୍ତି ସ୍ୱାଧୀନ ନିଷ୍ଠ 'Impressionst Criticism' ତଥା ପୁନଃସର୍ଜନମୂଳକ(Re-creative) ସମାଲୋଚନାର ଗୁଣ ଓ ଉପାଦାନ ଅଣରୋମାଣ୍ଟିକ ଆଧୁନିକ ସମାଲୋଚନା ଧାରାରେ ନାନା ଭାବରେ ପରିଲକ୍ଷିତ ହେଉଛି ।

ଆଧୁନିକ ବିଜ୍ଞାନ ଓ କୁହୁକ ପରି ସବୁ କଥାକୁ ନିମିଷକେ ସଂପାଦନ କରୁଥିବା ଆଧୁନିକ ପ୍ରଯୁକ୍ତି ବିଦ୍ୟା ଯୋଗୁଁ ମଣିଷର ମୂଲ୍ୟ ମାନ (Value standard) ପରିବର୍ତ୍ତିତ ହୋଇଛି । ଏହାର ପ୍ରତିବନ୍ଧ ପ୍ରତିଫଳନକୁ ଆମେ ଉଭୟ ଆଧୁନିକ ସାହିତ୍ୟ ତଥା ଆଧୁନିକ ସମାଲୋଚନାରେ ଲକ୍ଷ୍ୟ କରୁଛୁଁ । ଉଚ୍ଚତର ଆଧ୍ୟାତ୍ମିକ ଅଭିଲିପ୍ସା, ଅଲୌକିକତା, ଧାର୍ମିକ ପରମାର୍ଥ ତଥା ସାଧୁତା ଆଦି ଅନେକ ବିଷୟ ପ୍ରତି ଆଧୁନିକ ସାହିତ୍ୟରେ ଆକ୍ଷେପୋକ୍ତି ପ୍ରକାଶ ପାଇଛି ଓ ଗୋଟେ ଉପଭୋକ୍ତା ବାଦୀ ସ୍ଥୂଳ ମୂଲ୍ୟବୋଧ ପ୍ରତି ନୂତନ ବିଶ୍ୱାସର ସଞ୍ଚାର ହୋଇଛି ।

ବାସ୍ତବବାଦୀ କାବ୍ୟ ଆନ୍ଦୋଳନ ଠାରୁ ନବସମୀକ୍ଷା (New Criticism)ର ଧାରା ପ୍ରବର୍ତ୍ତିତ ହେବା ପର୍ଯ୍ୟନ୍ତ ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳକୁ ଆମେ ଆଧୁନିକ ସମାଲୋଚନାର ଯୁଗ ବୋଲି ହୁଏତ କହି ପାରିବା । ଅସ୍ତିତ୍ୱବାଦୀ ଲେଖକ ଓ ଦାର୍ଶନିକ ମାନେ ସାହିତ୍ୟ ସମାଲୋଚନାର ଧାରାକୁ ଉଲ୍ଲେଖ ଯୋଗ୍ୟ ଭାବେ ବଦଳାଇ ଦେଇଛନ୍ତି । ସେମାନେ ସାହିତ୍ୟ ଓ ଜୀବନ ମଧ୍ୟରେ ବିଶେଷ ପାର୍ଥକ୍ୟ ନରହିବା ଉଚିତ ବୋଲି ମତ ବ୍ୟକ୍ତ କରିଛନ୍ତି । କଳାରୁ ଅତ୍ୟଧିକ କଳ୍ପନା ଧର୍ମକୁ ବାଦ ଦେବା ପାଇଁ ସେମାନେ ଯୁକ୍ତି କରିଛନ୍ତି । ନିତସେ, ଆଲବର୍ଟ କାମ୍ୟୁ, ଫ୍ରାନଜ୍ କାଫକା, ଜାଁ ପଲ ସାର୍ତ ପ୍ରମୁଖ ଅସ୍ତିତ୍ୱ ବାଦୀ ଲେଖକ ନିଜ ନିଜ ରଚନାରେ ମଣିଷର ଚତୁପାର୍ଶ୍ୱକୁ ଓ ତା'ର ଯାବତୀୟ ବାସ୍ତବ ନୈକଟ୍ୟକୁ ନାନା ଭାବରେ ପ୍ରତୀକିତ କରିଛନ୍ତି । ସାହିତ୍ୟରେ ଆତ୍ମ ସ୍ୱୀକାରୋକ୍ତି (Confessional) ଧର୍ମ ଏହି ଅସ୍ତିତ୍ୱବାଦୀ ଲେଖକ ମାନଙ୍କ ଯୋଗୁଁ ଅଧିକ ପରିଲକ୍ଷିତ ହୋଇଛି । ପଚାଶ ଉତ୍ତର ପାଶ୍ଚାତ୍ୟ ଉପନ୍ୟାସ ଏହି ପରିପ୍ରେକ୍ଷୀରେ କମବେଶୀରେ 'Case history'ର ଗୁଣ ଗ୍ରହଣ କରିଛି ।

ୟୁରୋପୀୟ ନବଚେତନାର ଭୂମି ହେଲା ଆଧୁନିକ ନଗର ଜୀବନ । ତଦନୁଯାୟୀ ଯେଉଁ ଭାଷା ମଣ୍ଡଳ 'Linguistic Circle' ସୃଷ୍ଟି ହେଲା ତାହା ପରବର୍ତ୍ତୀ ସମାଲୋଚନାର ପରିଭାଷାକୁ ନାନା ଭାବରେ ପ୍ରଭାବିତ କରିଛି । ୧୯୨୨ରେ ପ୍ରକାଶିତ ଆଇ.ଏ.ରିଚାର୍ଡ ଓ ସି.କେ.ଅଗଡ଼େନଙ୍କ ଦ୍ୱାରା ରଚିତ 'The meaning of meaning' ସମାଲୋଚନାର ପରିବର୍ତ୍ତିତ ପରିଭାଷାକୁ ନାନାଦୃଷ୍ଟିରୁ ଲକ୍ଷ୍ୟ କରିଛି ।ସେତେବେଳେ ବିନ୍ୟାସବାଦ ବା ଷ୍ଟ୍ରକଚରାଲିଜ୍‌ମ ସାହିତ୍ୟ ସମୀକ୍ଷାର ମୂଳ ଧାରା ଥିଲା ।

ହର୍କହାଇମେର, ଆଦୋର୍ଣୋ, ମାର୍କ୍ୟୁଜ୍, ବେନଜାମିନ୍ ଆଦି 'The Institute of Social Research'ର ସଦସ୍ୟ ମାନେ ମାର୍କସ ତଥା ଫ୍ରୟେଡଙ୍କ ଭାବଧାରାକୁ ମିଶାଇ ଗୋଟିଏ ନୂତନ ସମାଲୋଚନାତ୍ମକ ସିଦ୍ଧାନ୍ତ (Critical Theory) ସୃଷ୍ଟିକଲେ । ସେମାନେ ହିଗେଲଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ମଣିଷକୁ ଏମାନେ ତା'ର ବୌଦ୍ଧିକ ଜୀବନ ତଥା ସାଂସ୍କୃତିକ ପରିମଣ୍ଡଳ

(Cultural Elevation) ଠାରୁ ଆଦୌ ଅଲଗା କରି ଦେଖି ନାହାନ୍ତି । ଗୋଟିଏ ମଣିଷର ଆତ୍ମ ପରିଚୟ ତା'ର ସାଂସ୍କୃତିକ ଜୀବନ ତଥା ବୌଦ୍ଧିକ ଜୀବ ପ୍ରତି ଉନ୍ମୁଖତାରୁ ହିଁ ଜଣାପଡେ । ମଣିଷ ଜୀବନର ଚରମ ଅଭିଳାଷ ହେଉଛି ଉତ୍ତର ଦାୟାଦ ସୃଷ୍ଟି ପାଇଁ ଦୁର୍ବାର ପ୍ରଜନନ କାମନା ତଥା ଆତ୍ମ ପରିଚୟ ପ୍ରତିଷ୍ଠାରପ୍ରଚେଷ୍ଟା । ସାମାଜିକ ବ୍ୟବସ୍ଥାକୁ ସେମାନେ ଏକ ସଂଗତି ସମ୍ପନ୍ନ (Coherent)ବାସ୍ତବତା ବୋଲି ବର୍ଣ୍ଣନା କଲେ ଓ ସମାଜ ନିରପେକ୍ଷ କୌଣସି କଳାବୋଧକୁ ଗ୍ରହଣ କଲେ ନାହିଁ ।

କଳା ବା ସାହିତ୍ୟ ବିଚାରରେ ସମାଜ ପ୍ରସଂଗ କ୍ରମଶଃ ଅଧିକ ଗୁରୁତ୍ୱ ଲାଭ କଲା । ଏହି ସାମାଜିକ ଅଙ୍ଗୀକାର ବଦ୍ଧତା ୧୯୬୦ ପରବର୍ତ୍ତୀ ରୁମାନିଆର ଗୋଲଡମେନ, ଫ୍ରାନସର ଆଲଥୁସେଙ୍କ ବିନ୍ୟାସବାଦୀ ମାର୍କସବାଦୀ ଚିନ୍ତନରେ ପ୍ରତିଫଳିତ ହୋଇଛି ।

ଏହି ସମୟ ଖଣ୍ଡରେ 'Feminist critical theory' ଅନ୍ୟ ଏକ ଉଲ୍ଲେଖ ଯୋଗ୍ୟ ସାହିତ୍ୟ ସମାଲୋଚନା ଧାରା । ସାଇମନ ଡି ବାଭୋର, କେଟେ ମିଲେଟ, ଗେଲପ (Jane Gallop), ଗ୍ରୀଅର(Germaine Greer), ଏଲମେନ (Mary Ellmann), ବାରେ(Michele Barrer) ଆଦି ସମାଲୋଚକ ଏହି ବାମାବାଦୀ (Feminism) ଧାରାର ବିଶିଷ୍ଟ ପ୍ରବକ୍ତା ।

ଏହି ସମାଲୋଚକ ମାନଙ୍କୁ ମୁଖ୍ୟତଃ ତିନି ପ୍ରଧାନ ଭାଗରେ ବିଭକ୍ତ କରାଯାଇପାରେ । ବାମାବାଦୀ ମାର୍କସବାଦୀ, ଭାଷାତତ୍ତ୍ୱ ବାଦୀ ତଥା ଅସ୍ତିତ୍ୱ ବାଦୀ, ଏମାନେ ସମସ୍ତେ ପୁରୁଷ ପ୍ରଧାନ ସମାଜରେ ନାରୀ ସ୍ୱାଧୀନତା ସପକ୍ଷରେ ସ୍ୱର ଉତ୍ତୋଳନ କରିଛନ୍ତି । ସେମାନେ ଏହି ପୃଥିବୀର ବିଶାଳ ଶବ୍ଦ ଜଗତକୁ କେବଳ ପୁରୁଷର ବୋଲି ଅଭିହିତ କରିଛନ୍ତି । ପୁରୁଷ ନାରୀକୁ କେବଳ ନ୍ୟୁନ କରି ଦେଖି ନାହିଁ ,କେବଳ ତା'କୁ ଏକ ଚିତ୍ତ ଉଲ୍ଲାସକ ଯୌନ ସାମଗ୍ରୀ କରି ଦେଖିନାହିଁ । ତା'କୁ ଯୁଗ ଯୁଗ ଧରି ସବୁମତେ ଶୋଷଣ କରିଛି । ଏହି ପୁରୁଷ ପ୍ରଧାନ (Petriarchar) ସମାଜରେ ନାରୀ ନିଜକୁ ପୁରୁଷର ବିଳାସ ପାଇଁ ଉତ୍ସର୍ଗ କରିଛି । ପୁରୁଷ କବି ତେଣୁ ନାରୀ ଦେହର ଏତେ ନିଃସଂକୋଚ ବର୍ଣ୍ଣନା କରିଛି । ଡେରିଦା, ଫ୍ରୟେଡ ଓ ସୋସୁରଙ୍କ ଭାଷାତାତ୍ତ୍ୱିକ ଅବବୋଧ ଦ୍ୱାରା ବହୁ ବାମାବାଦୀ ସାହିତ୍ୟ ସମାଲୋଚକ ପ୍ରଭାବିତ ।

ପଚାଶ ପରବର୍ତ୍ତୀ ୟୁରୋପରେ ଯେଉଁ ସମାଲୋଚକ ସମାଲୋଚନାର ଧାରାକୁ ଯଥାସମ୍ଭବ ପୁଷ୍ଟ ଓ ପ୍ରସାରିତ କରିଛନ୍ତି ଓ ଯେଉଁ ଗ୍ରନ୍ଥସବୁ ଏଦିଗରେ ସହାୟତା କରିଛି ତାହା ଏକାନ୍ତ ଉଲ୍ଲେଖଯୋଗ୍ୟ ୧୯୫୦ ଖ୍ରୀରେ ଟେରେନସ ହାଓକିସଙ୍କ ରଚିତ 'Structuralism and Semiotics' ଜନାଥନ କଟରଙ୍କ 'Structuralist poetics 1975' ଟେରୀ ଇଗଲଟନଙ୍କ ଦ୍ୱାରା ରଚିତ 'Marxism and Literary Criticism- 1976'ଗ୍ରନ୍ଥ ଆଧୁନିକ ସମାଲୋଚନାକୁ ବହୁଭାବରେ ପ୍ରସାରିତ କରିପାରିଛି ।

ଆଜିର ପାଶ୍ଚାତ୍ୟ ସମାଲୋଚନାରେ ବହୁ ବିଦ୍ୟା ସଂମିଶ୍ରିତ ହୋଇ ରହିଛି । ଆନ୍ତର୍ବିଦ୍ୟା ମୂଳକ ସାହିତ୍ୟ ସମାଲୋଚନା (Inter-disciplinary Criticism) ଧାରା କ୍ରମଶଃ ପ୍ରସାରିତ

ହେବାକୁ ଲାଗିଛି । ସାହିତ୍ୟ ଭିତରେ ପୁରାଣ, ଦର୍ଶନ, ସମାଜତତ୍ତ୍ୱ, ମନସ୍ତତ୍ତ୍ୱ , ବିଜ୍ଞାନ, ଧର୍ମ, ସଂସ୍କୃତି ଆଦି ବହୁ ବିଷୟ ଅତି ଆପେକ୍ଷିକ ଭାବେ ରହିଛି । ଏ ସମସ୍ତ ବିଷୟର ଉଦ୍ଦେଶ୍ୟ ହେଉଛି ଜୀବନର ବାସ୍ତବତାକୁ ବୁଝିବା । ସାହିତ୍ୟ ସର୍ବୋତ୍ତମ ଭାବେ ସବୁକାଳରେ ତାହାହିଁ କରିଥାଏ । ସଂପ୍ରତି ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନା କ୍ରମଶଃ ଅଧିକରୁ ଅଧିକ ଆନ୍ତର୍ବିଦ୍ୟାମୂଳକ ହୋଇଛି ।

ମନୋବିଜ୍ଞାନ, ଦର୍ଶନ, ସମାଜତତ୍ତ୍ୱ, ନୃତତ୍ତ୍ୱ, ପୁରାଣ ଆଦି ବହୁ ବିଷୟକୁ ସୂତ୍ର କରି ସାହିତ୍ୟର ସୌନ୍ଦର୍ଯ୍ୟ ତଥା ବାସ୍ତବ ଜୀବନ ଜିଇଁବା ପ୍ରତି ତା'ର ସତ୍ୟଶୀଳତାକୁ ସଠିକ ଭାବେ ଚିହ୍ନଟ କରିବାର ପ୍ରୟାସ କରାଯାଇଛି ।

ସମାଲୋଚନା ନୂତନ ନୂତନ ପଦ୍ଧତି ନାମରେ ଯେତେ ପ୍ରକାରର ତତ୍ତ୍ୱ ଆଜି ଖଂଜୁଥିଲେ ହେଁ ସମାଲୋଚନାକୁ କେହି କେବେ ଗୋଟେ ସୂତ୍ର ସର୍ବସ୍ୱ ବିଜ୍ଞାନ କରିନଦେଉ । ରିଚାର୍ଡଙ୍କ ପରେ ଏପରି ଦୁଆ ୟୁରୋପରେ ଅନେକ ସାହିତ୍ୟ ଛାତ୍ର ଓ ସୌନ୍ଦର୍ଯ୍ୟଶାସ୍ତ୍ରୀ ଉଠାଇ ଛନ୍ତି । ସାହିତ୍ୟର ବିଶ୍ଳେଷଣ ଯେତେ ଧାରଣାଧର୍ମୀ ତଥା ଅନୁଶୀଳନାତ୍ମକ ହେଲେ ବି ତାହା ଶୁଷ୍କ ଏକ ପ୍ରାଣହୀନ ବସ୍ତୁରେ ପରିଣତ ନହେଉ ।

ସମାଲୋଚନାର ଅନ୍ୟ ଏକ ପରିଭାଷା 'Appreciation' । ସମାଲୋଚକ ତେଣୁ ସେ ପରିପ୍ରେକ୍ଷୀରେ ଜଣେ 'ଏପ୍ରିସିଏଟର' । ସମାଲୋଚନା ଯେତେ ଅଧିକ ସର୍ଜନାତ୍ମକ ହେବ ତା'ର ଉଦ୍ଦେଶ୍ୟ ସେତିକି ସଫଳ ହେବ । ଗତ କେତେ ଦଶନ୍ଧିରେ ଏପରି ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା (Creative Criticism) ସପକ୍ଷରେ ଅନେକ ଲେଖକ ଓ ପାଠକ ନିଜ ନିଜର ମତ ଦେଇଛନ୍ତି ।

ଲିଭିସ୍ ପାଶ୍ଚାତ୍ୟରେ ଅନ୍ୟଜଣେ ପ୍ରମୁଖ ସାହିତ୍ୟ ସମାଲୋଚକ ଯେ ଯେକୌଣସି ଶବ୍ଦର ପ୍ରଚ୍ଛନ୍ନ ସାଂସ୍କୃତିକ ଇଙ୍ଗିତ (Cultural Context) କୁ ଖୋଜିଛନ୍ତି । ସାହିତ୍ୟ ତା'ର ଅତିବଡ ଐତିହ୍ୟ ତଥା ପରଂପରା ସହିତ ସମ୍ବନ୍ଧିତ ହୋଇ ବର୍ତ୍ତମାନକୁ ଅଧିକ ଆକର୍ଷଣୀୟ ଓ ଅର୍ଥମୟ କରୁବୋଲି ଲିଭିସ୍ ପ୍ରମୁଖ ସମାଲୋଚକ ମାନେ ଚାହିଁଛନ୍ତି ।

ସମାଲୋଚନାର ପଦ୍ଧତି ଯେକୌଣସି ପରିସ୍ଥିତିରେ ବି ଅଧିକକାଳ ଉପଯୋଗୀ ହେଉବୋଲି ଆଧୁନିକ ୟୁରୋପୀୟ ସମାଲୋଚକମାନେ ଯୁକ୍ତି କରିଛନ୍ତି । ପାଶ୍ଚାତ୍ୟରେ ସଂପ୍ରତି ବହୁ ପଦ୍ଧତିର ବ୍ୟବହାର ହେଉଛି । ଯଥା : ସମାଜତାତ୍ତ୍ୱିକ ପଦ୍ଧତି, ପ୍ରଗତିବାଦୀ ପଦ୍ଧତି, ଐତିହାସିକ ପଦ୍ଧତି, ଶୈଳୀତାତ୍ତ୍ୱିକ ପଦ୍ଧତି, ଆର୍କିଟାଇପାଲ ପଦ୍ଧତି, ମନସ୍ତାତ୍ତ୍ୱିକ ପଦ୍ଧତି, ଭାଷାତାତ୍ତ୍ୱିକ ପଦ୍ଧତି, ପରିସଂଖ୍ୟାନ ପଦ୍ଧତି ଇତ୍ୟାଦି । ଏ ସମସ୍ତ ପ୍ରକାର ସମାଲୋଚନା ପଦ୍ଧତିକୁ ମୁଖ୍ୟତଃ ଦୁଇ ପ୍ରଧାନ ଭାଗରେ ବିଭକ୍ତ କରାଯାଇପାରେ ।

୧. ସୌନ୍ଦର୍ଯ୍ୟ ତାତ୍ତ୍ୱିକ ସମାଲୋଚନା (Aesthetic Criticism)

୨. ପାରିବେଶିକ ସମାଲୋଚନା (Environmental Criticism)

ସାହିତ୍ୟ ସମାଲୋଚନା କ୍ରମଶଃ ଶୈଳୀ ପ୍ରଧାନ ହେବା କାରଣରୁ ତାହା ଅଧିକ ବ୍ୟକ୍ତିଗତ (Personal Criticism) ପରି ମନେ ହେଉଛି । ସୃଷ୍ଟି ଧର୍ମୀ ପ୍ରବନ୍ଧ, ଲଳିତ ନିବନ୍ଧ, ଆତ୍ମଜୀବନୀ କିମ୍ବା ଡାଇରୀ ରଚନା ପରିଏହି ବ୍ୟକ୍ତିନିଷ୍ଠ ସମାଲୋଚନାରେ ଶୈଳୀ ପ୍ରଧାନତା, ଭଙ୍ଗୀ ପ୍ରଧାନତା (Mannerism) ତଥା ସୃଜନଶୀଳତା ଅଧିକ ଲକ୍ଷଣୀୟ ।

ସମାଲୋଚନା ଅଧିକ ସର୍ଜନାତ୍ମକ ହେବା ସବୁ ଦୃଷ୍ଟିରୁ ଶୁଭଙ୍କର ବିଷୟ । ତାହା ପ୍ରାକ୍ତନ ନୀରସ ଟୀକା କିମ୍ବା ଶବ୍ଦାର୍ଥସର୍ବସ୍ୱ ଗୋଟେ ଆଭିଧାନିକ ବ୍ୟାଖ୍ୟା ହୋଇ ରହିନାହିଁ ।

ସଂପ୍ରତି ଆନ୍ତର୍ବିଦ୍ୟା ମୂଳକ ଆର୍କିଟାଇପାଲ ପଦ୍ଧତିର ସାହିତ୍ୟ ସମାଲୋଚନା ଅଧିକ ପ୍ରଚଳିତ । ମେଟା କ୍ରିଟିସିଜମ (Meta Criticism)ର ଆଂଶିକ ପ୍ରଭାବ ସଂପ୍ରତି ଅଧିକାଂଶ ସମାଲୋଚନାରେ ପରିଲକ୍ଷିତ । ଯେଉଁ ମାନେ ପାରିବେଶିକ ସମାଲୋଚନାରେ ବ୍ରତୀ ହୋଇଛନ୍ତି ସେମାନେ ନାନା ତଥ୍ୟ, ନାନା ସୂତ୍ର ଓ ଆନୁସଂଗିକ ବିବରଣୀ ପ୍ରଦାନ କରି, ମୂଳଭାବର ମହତ୍ତ୍ୱ ବା ପ୍ରାସଙ୍ଗିକତାକୁ ପ୍ରତିପାଦନ କରିଥାନ୍ତି । ଏହି ପାରିବେଶିକ ସାହିତ୍ୟ ସମାଲୋଚନାର ଗୁରୁତ୍ୱ ରହିଛି; ମାତ୍ର ମୂଳ ଶୈଳୀ ବା ସୌନ୍ଦର୍ଯ୍ୟ ତାତ୍ତ୍ୱିକ ସମାଲୋଚନା ଆଜି ଅନେକଙ୍କ ଦ୍ୱାରା ସ୍ୱାଦ୍ୟ ଓ ସୁଖପାଠ୍ୟ ହେଉଛି, ଏହାର ସର୍ଜନାତ୍ମକତା ପାଇଁ କେବଳ ।

ଏହି ସମୟରେ ପାଶ୍ଚାତ୍ୟରେ ଅନ୍ୟ ଏକ ସମାଲୋଚନା ପଦ୍ଧତି ବିଶେଷ ଭାବେ ପ୍ରଚଳିତ ତାହା ହେଲା - 'Generic Criticism' । ଏ ସଂପର୍କରେ ସମାଲୋଚକ ଏଲାନ ରଦଓ୍ୱେ କହିଛନ୍ତି , 'ଏହି ଜାଁ କ୍ରିଟିସିଜମ ଗୋଟିଏ ପଦ୍ଧତିଗତ ଶୃଙ୍ଖଳା ଯାହା ସାହିତ୍ୟକୁ ସ୍ଥାନ କାଳ ଭେଦରେ ବିଭାଜନ ନକରି ସାହିତ୍ୟରେ ସଂଯୋଜିତ ଉପାଦାନ ଗୁଡ଼ିକର ତଥା ତା'ର ପାରସ୍ପର୍ଯ୍ୟାତ୍ମକ ସଂରଚନାର ବର୍ଗୀ କରଣ କରିଥାଏ । ଏହି ପଦ୍ଧତିର ସମାଲୋଚକ ମାନେ ନୂଆ ପୁରୁଣାର ଭେଦ ବାରିଛନ୍ତି । ପୁରୁଣା ସମାଲୋଚନା ସାହିତ୍ୟର ଉପାଦାନ ଗୁଡ଼ିକର ପୃଥକ ସତ୍ତାକୁ ବେଶୀ ସ୍ୱୀକାର କରେ । ସେପାଇଁ 'Classical theory is regulative and prescriptive'.

ବିଂଶ ଶତାବ୍ଦୀର ଉତ୍ତର ସାହିତ୍ୟ ସମାଲୋଚନାକୁ ଅଧିକ ଆନ୍ତର୍ଜାତିକ କରିଛି । ପ୍ରାଚ୍ୟ ପାଶ୍ଚାତ୍ୟ ତଥା ସେହିପରି ଆଞ୍ଚଳିକ ବୈଷମ୍ୟକୁ ଦୂର କରି ପାରିଛି । ଏପରିକି ପ୍ରାଚ୍ୟ ଭୂଖଣ୍ଡର କାବ୍ୟତାତ୍ତ୍ୱିକ ସିଦ୍ଧାନ୍ତ ପ୍ରତି ୟୁରୋପ ଓ ଆମେରିକାର ସମାଲୋଚକ ମାନେ ଆକୃଷ୍ଟ ହୋଇଛନ୍ତି । ସାହିତ୍ୟ ସମାଲୋଚନାର ଅନାବଶ୍ୟକ ପ୍ରକାର ଭେଦ ସଂପର୍କରେ ବିରକ୍ତ ହୋଇ ୱାଲଟର ରଲେ (Walter Raleigh) ଥରେ କହିଥିଲେ 'I begin to hate criticism, Nothing can come of it.'

ପାଶ୍ଚାତ୍ୟ ସମାଲୋଚନାର ବିକାଶ ଅନେକାଂଶରେ ସେ ଦେଶ ମାନଙ୍କର ବିଶ୍ୱ ବିଦ୍ୟାଳୟକୁ ନେଇ ତ୍ୱରାନ୍ୱିତ ହୋଇଛି । ବିଂଶ ଶତାବ୍ଦୀର ସାହିତ୍ୟ ଯେତେବେଳେ ଅଧିକ ବାସ୍ତବ ଓ ଜୀବନ ନିଷ୍ଠ ହୋଇଛି ସେତେ ବେଳେ ତାହା ଆଉ ପ୍ରାକ୍ତନ ଯୁଗର ସାହିତ୍ୟ ପରି ଚିତ୍ତବିନୋଦର ମାଧମ ହୋଇନାହିଁ । ସାହିତ୍ୟର ଚମତ୍କାରିତା ଜୀବନ ବୃତ୍ତକୁ କେନ୍ଦ୍ର କରି ପ୍ରକଟିତ ହୋଇଛି । ତା'ର ସମ୍ବନ୍ଧ ଓ ପ୍ରାସଂଗିକତାକୁ ଏହି ସମୟ ଖଣ୍ଡର ପାଶ୍ଚାତ୍ୟ ସାହିତ୍ୟ ସମାଲୋଚକ ନୃତତ୍ତ୍ୱ, ସମାଜ ବିଜ୍ଞାନ, ଦର୍ଶନ ମନୋବିଜ୍ଞାନ ଆଦି ବିଷୟରେ ଖୋଜିଛି ଓ ଏହି ପରିପ୍ରେକ୍ଷୀରେ ଆନ୍ତର୍ବିଦ୍ୟାମୂଳକ ସାହିତ୍ୟ ସମାଲୋଚନା ଗଢ଼ି ଉଠିଛି ।

ପୁରୁଣା ଧର୍ମ ବିଶ୍ୱାସ ଓ ନାନାଦି ଲୋକ ବିଶ୍ୱାସ ସଂଜାତ ଅବୈଜ୍ଞାନିକ ଧାରଣା ସବୁ ସାହିତ୍ୟର ଶକ୍ତି, ସୌନ୍ଦର୍ଯ୍ୟ ଓ କଲ୍ୟାଣକର ସୃଜନଶୀଳତାକୁ ଚିହ୍ନଟ କରିବା କ୍ଷେତ୍ରରେ ସମାଲୋଚକର କଳାବୋଧକୁ ଆଉ ପ୍ରଭାବିତ କରିପାରିନି । ବିଶ୍ୱ ବିଦ୍ୟାଳୟ ଗୁଡ଼ିକ ଏକ୍ଷେତ୍ରରେ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି ।

ଡାରଉଇନ, ମାର୍କସ, ଫ୍ରୟେଡ ପ୍ରମୁଖ ଚିନ୍ତାନାୟକ ମାନେ ମଣିଷର ବିଶ୍ୱାସ ଓ ଅବବୋଧ ସବୁକୁ ଯଥା ସମ୍ଭବ ବୈଜ୍ଞାନିକ କରିବାରେ ସହାୟତା କରିଛନ୍ତି । ବିଂଶ ଶତାବ୍ଦୀର ବସ୍ତୁନିଷ୍ଠ ସାହିତ୍ୟ ସମାଲୋଚନା ବହୁ ଭାବରେ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବେ ଏହି ଯୁଗ ପୁରୁଷମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛି । ଏହା ଦ୍ୱାରା ନୂତନ ଚିନ୍ତାଶୀଳ ସମାଲୋଚନାର ଭାଷା (New Critical Diction) ସୃଷ୍ଟି ହୋଇଛି । ସମାଲୋଚନା ଭାଷାର ନିରର୍ଥକ ବର୍ଣ୍ଣନାତ୍ମକତା ଏହାଦ୍ୱାରା ନଷ୍ଟ ହୋଇଛି ।

ଯେଉଁ ବିଷୟ ମଣିଷ ଜୀବନର ଗଭୀର ପ୍ରାଣ ପିପାସା ଓ ତା'ର ସକଳ ସୂକ୍ଷ୍ମ ତଥା ବୌଦ୍ଧିକ ଜୀବନ ବୋଧକୁ ପ୍ରକାଶ କରିବାରେ ସହାୟତା କଲାନାହିଁ । ଉତ୍ତର ବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସାହିତ୍ୟ ସମାଲୋଚକ ତାହାକୁ ଅନାବଶ୍ୟକ ଓ ନିରର୍ଥକ ବୋଲି ମନେ କରିଛି । ଏହି କାରଣରୁ ଆଳଂକାରିକ ସାହିତ୍ୟ ସମାଲୋଚନା କ୍ରମଶଃ ତିରୋହିତ ହୋଇଛି ଛନ୍ଦ, ଯତି, ଯମକ, ସରସ ଶବ୍ଦ ଯୋଜନା, ଶ୍ଳେଷ ଆଦି ବହୁ ବିଷୟର ପ୍ରାସଙ୍ଗିକତା ଆଉ ରହିନାହିଁ । ଜୀବନ ପରିଧିର ମୂଳ ସମ୍ବେଗ ସବୁକୁ ନାନା ରୂପକରେ ବର୍ଣ୍ଣନା କରିବାର ଶିଳ୍ପଚେଷ୍ଟା ଉତ୍ତର ବିଂଶ ଶତାବ୍ଦୀର ସାହିତ୍ୟରେ ପରିଲକ୍ଷିତ; ଯେଉଁଥିପାଇଁ ସମାଲୋଚନାର ଭାଷା ଓ ଆଦର୍ଶ ମଧ ଆପକ୍ଷିକ ଭାବେ ପରିବର୍ତ୍ତିତ ହୋଇଛି ।

ଅଧୁନିକ ସାହିତ୍ୟ ସମାଲୋଚନାକୁ ଏକ ଅତି ଗୁରୁତ୍ୱ ପୂର୍ଣ୍ଣ ମୋଡ ଦେବାରେ ଟି.ଏସ.ଇଲିୟଟଙ୍କ ଭୂମିକା ବହୁଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଇଲିୟଟଙ୍କ ନେତୃତ୍ୱରେ ଉତ୍ତର ବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନା ଅଧିକ ବାସ୍ତବ, ସତ୍ୟଶୀଳ ତଥା ଅର୍ଥପୂର୍ଣ୍ଣ ହୋଇପାରିଛି ।

ନୂତନ ସମାଲୋଚନା (New Criticism) ୧୯୪୦ ବେଳକୁ ଆତ୍ମ ପ୍ରକାଶ ଲାଭ କଲା । ରବର୍ଟପେନ, ଓ୍ୟାରେନ, କ୍ଳିନେଥ ବ୍ରୁକ, ଜନ କ୍ରୋ ରେନସମ, ଏମ୍ପସନ ଆଦି ସମାଲୋଚକ ପରସ୍ପର ବିରୋଧୀ ବହୁ ମୂଲ୍ୟବୋଧର କବିତା ଅପୂର୍ବ ସମାବେଶ ବୋଲି ବର୍ଣ୍ଣନା କଲେ । ନୂତନ ସମାଲୋଚନା ଅଧିକ ମୂଲ୍ୟବୋଧ ପ୍ରୟାସୀ ବୋଲି ତାହା କବିତାର ପ୍ରକୃତ ଅନୁଶୀଳନ କରିପାରେ ନାହିଁ ।

ୟୁରୋପରେ ସେତେବେଳକୁ ନାନା ବ୍ୟକ୍ତି ଓ ଗୋଷ୍ଠୀ ନାନା ମତବାଦ ପୋଷଣ କରୁଥିଲେ । ୧୯୬୦ ବେଳକୁ ଯୁଦ୍ଧୋତ୍ତର ପୃଥିବୀ ଯୁଦ୍ଧର କ୍ଷତିକୁ ଭରଣା କରି ଆଗକୁ ଯିବା ପାଇଁ ଅତ୍ୟନ୍ତ କ୍ଷିପ୍ର । ମୂଲ୍ୟବୋଧର ଦ୍ରୁତ ପରିବର୍ତ୍ତନ ସମଗ୍ର ୟୁରୋପରେ ନାନା ପରୀକ୍ଷା ନିରୀକ୍ଷାର ସୂତ୍ରପାତ କରୁଥିଲା । ପରବର୍ତ୍ତୀ ସାହିତ୍ୟ ସମାଲୋଚକ ମାନେ ଭାଷାଭିତ୍ତିକ ସାହିତ୍ୟ ସମାଲୋଚନାରେ ବ୍ରତୀ ହେଲେ ଓ ସାହିତ୍ୟ ସମାଲୋଚନାରେ ତେଣୁ ଭାଷା ବୈଜ୍ଞାନିକ ଅନୁଶୀଳନ କରିଆରେ ଅଧିକ ସମାଜ ବୈଜ୍ଞାନିକ ସୂତ୍ର ଓ ଦାରଣା ପ୍ରବେଶ ଲାଭ କଲା । ଯେଉଁ ସାହିତ୍ୟ ସମାଲୋଚନା ୧୯୫୦, ୬୦ ବେଳକୁ ଲେଖାଗଲା । ତାହା ଅଧିକାଂଶରେ ଅନ୍ତର୍ଦୃଷ୍ଟି ମୂଳକ ସୂତ୍ର (Speculative theory) ଉପରେ ଗୁରୁତ୍ୱ ଆରୋପ କରିଥିଲା । ତାହା ମୁଖ୍ୟତଃ ଦୁଇ ପ୍ରକାରର ଥିଲା । ଗୋଟିଏ ସାହିତ୍ୟତତ୍ତ୍ୱ (Poetiecs) ସାହିତ୍ୟରୁ ସୃଷ୍ଟି ହୋଇଥିଲା ଓ ଆଉ ଗୋଟିଏ ସାହିତ୍ୟ ବିଷୟରେ ସୃଷ୍ଟି ହୋଇ ଥିଲା । ଗ୍ରାହାମହଫ (Graham Hough) ଏହି ସାହିତ୍ୟ ସମାଲୋଚନାକୁ ସାମାଜିକ ମୂଲ୍ୟବୋଧ ତଥା ଅପରିବର୍ତ୍ତନୀୟ ଐତିହାସିକତା ଦ୍ୱାରା ପୁଷ୍ଟ ଓ ପ୍ରଭାବିତ ବୋଲି ମନ୍ତବ୍ୟ ଦେଲେ । ଫ୍ରାନସ୍‌ରେ ଗଢ଼ି ଉଠିଥିବା 'Structuralism' ଏହି ଇତିହାସ ଓ ତା'ର ଉପାଦାନକୁ କଳାକୃତିର ନିଦାଅଂଶ ବୋଲି ପ୍ରତିପାଦନ କଲା । ଏଫ. ଆର ଲେଭିସ୍ ଓ ଆମେରିକୀୟ

ସମାଲୋଚକ ରେନେ ୱେଲେକ ସାହିତ୍ୟରେ ସାମାଜିକ ମୂଲ୍ୟ ବୋଧ ତା'ର ଐତିହାସିକ ପ୍ରଭାବ ତଥା ସାଧାରଣ ସାଂସ୍କୃତିକ ପ୍ରସଂଗ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ସମାଲୋଚନାରେ ଉଲ୍ଲିଖିତ, ଧର୍ମ, ସମାଜ ଓ ଇତିହାସର ଅର୍ଥପୂର୍ଣ୍ଣ ବ୍ୟାଖ୍ୟା ରହିବ ବୋଲି ଏହି ମାନେ ମତ ଦେଇଛନ୍ତି । ଗ୍ରାହାମ ହଫ ତାଙ୍କ 'Criticism as a Humanist Discipline' ପ୍ରବନ୍ଧରେ ସବୁତତ୍ତ୍ୱ, ସିଦ୍ଧାନ୍ତ ଉର୍ଦ୍ଧ୍ୱରେ ସମାଲୋଚନାକୁ ମାନବ ସଂପର୍କିତ ଏକ ଆଧାର ବୋଲି ବର୍ଣ୍ଣନା କରିଛନ୍ତି । ଏବେ ପ୍ରତ୍ୟେକ ସମାଲୋଚକ ସାହିତ୍ୟରୁ ସେହି ଉଚ୍ଚତର ମଣିଷ ଜୀବନର ସଂକେତ ଲୋଡୁଛନ୍ତି ।

ଏ ଶତାବ୍ଦୀର ଜଣେ ମହାନ ସାରସ୍ୱତ ପୁରୁଷ ଫରାସୀ କଥାଶିଳ୍ପୀ ଜାଁ ପଲ ସାର୍ତ ସାହିତ୍ୟରେ ଜୀବନ ବୃତକୁ ଅତି ନିବିଡ ଭାବେ ଦେଖିବା କାରଣରୁ ସାହିତ୍ୟ ସମାଲୋଚନାର ଉଦ୍ଦେଶ୍ୟ ଜୀବନର ବିରଳ ତଥା ପରିବୋଧନୀୟ ମୁହୂର୍ତ୍ତକୁ ଠାବ କରିବ ବୋଲି କହିଛନ୍ତି । ସାର୍ତଙ୍କ ପରି କାମ୍ୟୁ ଓ କାଫକା ମଧ୍ୟ ଚଳିତ ଶତାବ୍ଦୀର ସାହିତ୍ୟାଦର୍ଶ ଓ କଳାବୋଧକୁ ନାନା ଭାବରେ ପ୍ରଭାବିତ କରିଛନ୍ତି । ପ୍ରକୃତି ଓ କାଳକୁ ଏମାନେ ମଣିଷ ଜୀବନର ଚିନ୍ତନ ଓ ଅନୁଭବ ପରିସର ଭିତରକୁ ଆଣିଛନ୍ତି । ଏମାନଙ୍କ ଦ୍ୱାରା ସାହିତ୍ୟର ବୁଦ୍ଧିବାଦୀ ବ୍ୟାଖ୍ୟା ଆପାତତଃ ଅଧିକ ପ୍ରସାରିତ ହୋଇଛି ବୋଲି ମନେ ହେଉ ଥିଲେ ହେଁ ଏମାନଙ୍କ ପରି ଅସ୍ତିତ୍ୱବାଦୀ ଲେଖକ ମାନେ ଜୀବନର ସ୍ୱନିଷ୍ଠ ପ୍ରେମାନୁଭୂତି ଓ ଆବେଗକୁ ମଣିଷର ସୃଜନଶୀଳ କଳା ବୋଧର ଏକ ବଡ ଅଂଶ ବୋଲି ଯୁକ୍ତି କରିଛନ୍ତି । ଏମାନେ ସାହିତ୍ୟର ଅତି ନାଟକୀୟତା, ଆଖ୍ୟାନଭାଗ ତଥା କୃତ୍ରିମ କାଳ୍ପନିକତାକୁ ମୂଲ୍ୟହୀନ ଓ ଅତିମାତ୍ରାରେ କଳା ବିରୋଧୀ ବୋଲି ବର୍ଣ୍ଣନା କରିଛନ୍ତି ।

ଅସ୍ତିତ୍ୱବାଦ ସହିତ ମାର୍କସବାଦୀ ଚିନ୍ତନ ଏ ଶତାବ୍ଦୀର କଳାବୋଧ ତଥା ସୌନ୍ଦର୍ଯ୍ୟବାଦୀ ଦୃଷ୍ଟିଭଙ୍ଗୀ କୁ କମ ପ୍ରଭାବିତ କରିନି । ସମାଲୋଚନାର ସାମାଜିକ ପ୍ରସଂଗକୁ ଏମାନେ ଗୁରୁତ୍ୱ ଦେଇଥିଲେ ହେଁ ତା'ର ସୌନ୍ଦର୍ଯ୍ୟତାତ୍ତ୍ୱିକ ସୃଜନାତ୍ମକ ଦିଗକୁ ଅବହେଳା କରିନାହାନ୍ତି । ସାହିତ୍ୟ ସମାଲୋଚନା ପ୍ରକୃତରେ ପ୍ରବୋଧିତ କରେ ବୋଲି କହିବାକୁ ଯାଇ ଇଲିୟଟ କହିଛନ୍ତି । 'Criticism is also closely related to the coming of a new self conciousness or an aesthetic revisionism in the arts' ବିଂଶ ଶତାବ୍ଦୀର ସାହିତ୍ୟ ସମାଲୋଚନା ତା'ର ସକଳ ବସ୍ତୁନିଷ୍ଠ ଗୁଣ ଓ ଲକ୍ଷଣ ସତ୍ତ୍ୱେ ଆତ୍ମନିଷ୍ଠ ହୋଇଛି ଏଇଥି ପାଇଁ ଯେ ସମାଲୋଚକ ଓ ସମାଲୋଚନା ଗ୍ରନ୍ଥର ପାଠକ ଏହାଦ୍ୱାରା ନିଜର ଅନୁଭବ ଓ ନାନ୍ଦନିକ ବୋଧକୁ ନାନାଭାବରେ ପୁଷ୍ଟ ଓ ପ୍ରସାରିତ କରିବାର ସୁଯୋଗ ପାଆନ୍ତି ।

ଡେରିଡା (Derrida)ବିମୃଷ୍ଟି (de-construction) ସାହିତ୍ୟର ପ୍ରଧାନ ଗୁଣ ବା ଲକ୍ଷଣ ବୋଲି ବର୍ଣ୍ଣନା କଲେ । ଏ ପ୍ରକାର ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ କେବଳ ୟୁରୋପରେ କାହିଁକି ସମଗ୍ର ବିଶ୍ୱରେ ଅନେକ ପାଠକ ଓ ସମାଲୋଚକଙ୍କ ମଧ୍ୟରେ ଆଲୋଡନ ସୃଷ୍ଟି କଲା ।

ବିଭିନ୍ନ ସମାଲୋଚନା ପଦ୍ଧତିର ନିଜସ୍ୱ ଯୁକ୍ତି ଓ ନିଜସ୍ୱ ବୈଶିଷ୍ଟ୍ୟ ରହିଛି । ଡେରିଡାଙ୍କ ଡି-କନଷ୍ଟ୍ରକ୍ସନ ଥିଓରୀ ସେ ଦୃଷ୍ଟିରୁ ଆଦୌ ନିରର୍ଥକ ନୁହେଁ । ପ୍ଲାଟୋ, ଆରିଷ୍ଟଟଲ, ଲଙ୍ଗିନସ, ଡାନ୍ତେ,

ସିଡନୀ, ଜନସନ, ଡ୍ରାଏଇଡେନ, କଲେରିଜ, ପୋପ, ୱାର୍ଡସଓ୍ୱାର୍ଥ ପ୍ରମୁଖ ପୂର୍ବ ସମାଲୋଚକ ମାନେ ଯୁକ୍ତି, ବିଚାର, ଔଚିତ୍ୟ ଆଦି ବହୁ ବିଷୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ ହେଁ ନବ୍ୟ ସମାଲୋଚକ ବ୍ୟାଖ୍ୟା ଉପରେ ହିଁ ପ୍ରାଧାନ୍ୟ ଦେଉଛନ୍ତି । ଏହି ନୂତନ ସମାଲୋଚନା ଅଧିକାଂଶରେ ବର୍ଣ୍ଣନା ପ୍ରଧାନ ଓ ବ୍ୟକ୍ତିନିଷ୍ଠ ସମାଲୋଚନାକୁ ପରବର୍ତ୍ତୀ ସମାଲୋଚକ ଏକ ବ୍ୟକ୍ତିକ ପ୍ରକ୍ରିୟା (Individual Activity) ବୋଲି ବର୍ଣ୍ଣନା କରିଛନ୍ତି ।

ସମାଲୋଚନାର ବର୍ଣ୍ଣନାତ୍ମକତା ତଥା ପ୍ରତିଟି ବିଷୟକୁ ଚିହ୍ନିତ କରିବାର ସଫଳତା ଯୋଗୁଁ ନର୍ଥପ ଫ୍ରେ (Northop Frye) ମନ୍ତବ୍ୟ ଦେଇ କହିଛନ୍ତି - 'Criticism can talk and all the arts are dumb.' ସମାଲୋଚନା ପ୍ରକୃତରେ କଳାକୁ ପ୍ରତ୍ୟକ୍ଷ କରିଥାଏ । ତା'ର ସଂବୃତ ସଂଗୋପନୀୟତାକୁ ପ୍ରକଟନ କରିଥାଏ । ସମାଲୋଚନା କଳା କବିତାର ମହତ୍ତ୍ୱ ପ୍ରତିପାଦନକାରୀ ଏକ କଳା; ଯେଉଁଥିପାଇଁ ପେଟର(Pater)କହିଥିଲେ, 'Literary Criticism is an art about art.'

ଏଇ ମାତ୍ର ଗତ କେତେ ଦଶକରେ ୟୁରୋପରେ ଚିତ୍ରକଳ୍ପ ପ୍ରଧାନ ସାହିତ୍ୟ ସମାଲୋଚନା (Imagist Criticism), ଧାରଣାଧର୍ମୀ ସାହିତ୍ୟ ସମାଲୋଚନା (Conceptual Criticism), ସମାଲୋଚନାର ସମାଲୋଚନା (Meta - Criticism), ବାମାବାଦୀ ସାହିତ୍ୟ ସମାଲୋଚନା(Feminist Criticism), ଇାଁ କ୍ରିଟିସିଜମ, ମିଥ୍ କ୍ରିଟିସିଜମ୍, ଆର୍କିଟାଇପାଲ କ୍ରିଟିସିଜମ, ଏସ୍ଥେଟିକ କ୍ରିଟିସିଜମ, ଶୈଳୀତାତ୍ତ୍ୱିକ ସାହିତ୍ୟ ସମାଲୋଚନା ଆଦି କମବେଶୀରେ ବିକଶିତ ହୋଇଛି ।

ଏ ସମସ୍ତ ସମାଲୋଚନା କ୍ରମଶଃ କମବେଶୀରେ ତୁଳନାତ୍ମକ ହୋଇଛି । କାରଣ ପ୍ରତ୍ୟେକ ସମାଲୋଚକ ପରିବର୍ତ୍ତିତ ବିଶ୍ୱର ବୃହତର ସାଂସ୍କୃତିକ ପରିମଣ୍ଡଳ (boarder Cultural Elevation) ରେ ବାସ କରୁଛି । ଜଗତୀକରଣ (globalisation) ବଢୁଛି । ସାହିତ୍ୟ ପାଠକ ତଥା ସମାଲୋଚକ ମାନଙ୍କର ବିଶ୍ୱ ଦୃଷ୍ଟି ଅଧିକ ପରିବ୍ୟାପ୍ତ ହେଉଛି । ଜନ ଫ୍ଲେଚର ତାଙ୍କ 'The Criticism of Comparison: The Approch through comparative Literature and Intellectual History' ପ୍ରବନ୍ଧରେ ତୁଳନାତ୍ମକ ସାହିତ୍ୟ ସମାଲୋଚନାର ସାଂପ୍ରତିକ ପ୍ରାସଙ୍ଗିକତାକୁ ପ୍ରତିପାଦନ କରି ତୁଳନାତ୍ମକ ସାହିତ୍ୟକୁ ଆନ୍ତର୍ଜାତିକ ବୁଝାମଣା ତଥା ବିଶ୍ୱ ଭ୍ରାତୃତ୍ୱର ମାଧମ ବୋଲି ବର୍ଣ୍ଣନା କରିଛନ୍ତି ।

ସେ ଯୁକ୍ତି କରି କହିଛନ୍ତି ତୁଳନାତ୍ମକ ଅଧ୍ୟୟନ ଏହି ସମୟ ଖଣ୍ଡରେ ସର୍ବତ୍ର ଅଧିକ ପ୍ରତିଷ୍ଠିତ ହେଉଛି ଓ ସେଥିପ୍ରତି ପ୍ରାଚ୍ୟ ପାଶ୍ଚାତ୍ୟ ସବୁଠି ସମସ୍ତେ ଆକୃଷ୍ଟ ହେଉଛନ୍ତି । ସମଭାବରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଧର୍ମ, ସଂସ୍କୃତି, ଜାତୀୟତା, ଭୂଗୋଳ, ଇତିହାସର ତୁଳନାତ୍ମକ ଅନୁଶୀଳନ ପାଇଁ ଆପେକ୍ଷିକ ଅବସର ସୃଷ୍ଟି କରିଥାଏ । କଂପାରେଟିଭ ଏନାଟୋମି (Anatomy), ତୁଳନାତ୍ମକ ଧର୍ମ, ତୁଳନାତ୍ମକ ବ୍ୟାକରଣ (Comparative grammar) ଅଧ୍ୟୟନ ଅପେକ୍ଷା ତୁଳନାତ୍ମକ ସଙ୍ଗୀତ ଅଧ୍ୟୟନ ଅଧିକ ସମାନତା ସୂଚିତ କରିଥାଏ । କାରଣ ଧାର୍ମିକ, ସାଂସ୍କୃତିକ ତଥା ଭାଷାଗତ ବୈଭିନ୍ନ୍ୟ ଊର୍ଦ୍ଧ୍ୱରେ ସଂଗୀତର ଅନ୍ତରୀଣ ବ୍ୟାପାରଟି ଅଧିକ ସାର୍ବକାଳୀନ ଓ ସାର୍ବଜନୀନ ।

ଏହି ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ସହିତ ଆମେ ଅତି ଆପେକ୍ଷିକ ଭାବେ ପ୍ରାକୃତିକ ବିଜ୍ଞାନ ତଥା ସମାଜ ବିଜ୍ଞାନକୁ ମଧ୍ୟ ଅନୁଶୀଳନ କରିଥାଉଁ । ଜର୍ଜ ଷ୍ଟେନ୍‌ଏର (George Steiner) କହନ୍ତି - 'Literature should be taught and interpreted in a comparative way . ***** it is the comparison of one literature with another or others and the comparison of literature with other spheres of human expression'.

ପାଶ୍ଚାତ୍ୟରେ ବହୁ ପ୍ରଚଳିତ ଓ ପ୍ରତିଷ୍ଠିତ ଏହି ତୁଳନାତ୍ମକ ଅଧ୍ୟୟନ ଯେପରି ଅଧିକ ସଂଶ୍ଳେଷଣାତ୍ମକ ସେହିପରି ଅଧିକ ପଦ୍ଧତିଗତ ଅଧ୍ୟୟନର ଅପେକ୍ଷା ରଖେ । ଏହି ପ୍ରକାର ଅଧ୍ୟୟନ ଦର୍ଶନ ଓ ଇତିହାସ, ସୌନ୍ଦର୍ଯ୍ୟ ଶାସ୍ତ୍ର ଓ ମନୋବିଜ୍ଞାନକୁ ଅନ୍ତର୍ଭୁକ୍ତ କରି ମଣିଷ ମନର ସହଜାତ ତଥା ଶାଶ୍ୱତ ସୃଜନଶୀଳ ସ୍ୱପ୍ନ ଓ କଳ୍ପନା ବିଳାସର ସ୍ୱରୂପକୁ ଚିହ୍ନଟ କରିଥାଏ । ସମାଲୋଚକ ଡେଭିଡ଼.ଏଚ.ମେଲୋନ ଯଥାର୍ଥରେ ତୁଳନାତ୍ମକ ସାହିତ୍ୟକୁ 'The investigation of literature both geographically and generically' ବୋଲି ଅଭିହିତ କରିଛନ୍ତି ।

ମଣିଷର ସମ୍ମାନ ଓ ବ୍ୟକ୍ତିର ଇଚ୍ଛାକୁ କୌଣସି ରାଷ୍ଟ୍ର, ଧର୍ମ ବା ସମାଜ ଲୁଣ୍ଠିତ ନକରୁ ଏହାହିଁ ବିଂଶ ଶତାବ୍ଦୀର ସାହିତ୍ୟାଦର୍ଶ । ଏହି ଆଦର୍ଶପ୍ରତି ଅନେକ ସ୍ଥିତିବାଦୀ ଅତ୍ୟନ୍ତ ବଦ୍ଧମୂଳ । କାମ୍ୟୁ, କାଫକା ଓ ଜାଁ ପଲ ସାର୍ତ୍ରେ ପରି ଅସ୍ତିତ୍ୱବାଦୀ ମାନେ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଉପରେ ବହୁକାରଣରୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେମାନଙ୍କ ସାହିତ୍ୟାନୁଶୀଳନକୁ ତାହା ପ୍ରଭାବିତ କରିଛି । ସମାଲୋଚନା ମଧ୍ୟ ସାହିତ୍ୟର ଅନ୍ୟାନ୍ୟ ବିଭାବ ପରି ମଣିଷ ସଂପର୍କରେ ଅଧିକ ବାସ୍ତବ ଓ ଅର୍ଥପୂର୍ଣ୍ଣ କଥା କହୁ । ତାହା କାବ୍ୟର କେବଳ ଅଙ୍ଗ ବ୍ୟବଚ୍ଛେଦ ସର୍ବସ୍ୱ ନହେଉ । ଯେଉଁ ସମାଲୋଚନା କବିର ମୂଳ ବକ୍ତବ୍ୟକୁ ଆହୁରି ପରିଚ୍ଛନ୍ନ ଓ ଅଧିକ ବଳଶାଳୀ କରି କହି ପାରେନା ତାହା ଅସଫଳ ସମାଲୋଚନା ନିଶ୍ଚୟ । ଏମିତି ସମାଲୋଚନାର ବିଫଳତାକୁ ଲକ୍ଷ୍ୟକରି ଫିଲଡିଂଙ୍କ ସମ୍ପର୍କରେ ଡକ୍ଟର ଜନସନ୍ କହିଥିଲେ ସେ ଜଣେ 'barren rascal' ଅସକାର ୱାଇଲଡ ଉତ୍ତମ ସମାଲୋଚନାର ଲକ୍ଷଣ ନିର୍ଦ୍ଦେଶ କରି କହିଥିଲେ, 'Critic's sole aim is to chronicle his own impression'.

ପ୍ରାକ୍ତନ ବୋଧ ଓ ସଂସ୍କାରକୁ ବିରୋଧ କରୁଥିବା ସାଂପ୍ରତିକ ପାଶ୍ଚାତ୍ୟ ସମାଲୋଚନା କିଛିକାଳ ପାଇଁ କିଛି ଅଧିକ ମାନସିକ ଉଷ୍ଣତା ଓ ଉତ୍ତେଜନା ସୃଷ୍ଟି କରି ତିରୋହିତ ହୋଇଯାଇଛି । ଶୁଦ୍ଧ ସୌନ୍ଦର୍ଯ୍ୟତାତ୍ତ୍ୱିକ ଆଲୋଚନାକୁ ବିରୋଧ କରୁଥିବା ମାର୍କସବାଦୀ ସମାଲୋଚକ ମାନେ ସାହିତ୍ୟାମୋଦୀ ପାଠକର ପରିବୋଧନୀୟ ମାନସିକତାରେ ବେଶୀକାଳ ଆଉ ତିଷ୍ଠି ରହି ପାରିଲେନି । ଅନ୍ୟପକ୍ଷରେ କାବ୍ୟ ଆଂଗିକର ନିହାତି ଶୁଷ୍କ ପରିସଂଖ୍ୟାନଗତ ତଥା ଜ୍ୟାମିତିକ ବ୍ୟାଖ୍ୟା କରୁଥିବା ନବ୍ୟ ସମାଲୋଚକମାନେ ଭାବବାଦୀ ସାହିତ୍ୟପାଠକର ଶ୍ରଦ୍ଧା ଲାଭ କରିପାରିଲେନି ।

ପାଠ୍ୟ ଭିତ୍ତିକ ସାହିତ୍ୟ ସମାଲୋଚନା (Textual Criticism)ର ନୂତନ ଆଭିମୁଖ୍ୟ ସମାଲୋଚନାର ଭାବ ବଳୟକୁ ସୀମିତ ଅନୁଶୀଳନର ପ୍ରଭାବ ଓ ତୀକ୍ଷଣତା ନାମରେ ସଂକୀର୍ଣ୍ଣ କରିଦେଲା । ଆମେରିକାରେ ବିଶେଷ ଭାବେ ପ୍ରଚଳିତ ଓ ପ୍ରତିଷ୍ଠିତ ଏହି 'New Criticism' ର

ଧାରା ବିଶ୍ୱ ବିଦ୍ୟାଳୟର ଏକ ଆଧୁନିକ ପଦ୍ଧତି ଭାବେ କେବଳ ପ୍ରଚଳିତ ହେଲା । ତାହା ଏକ ଲୋକପ୍ରିୟ ସମାଲୋଚନା ପଦ୍ଧତି ଭାବେ ପ୍ରତିଷ୍ଠିତ ହୋଇ ପାରିଲା ନାହିଁ । ତଥାପି କବିତାର ବସ୍ତୁନିଷ୍ଠ ଅନୁଶୀଳନରେ ଟି.ଏସ.ଇଲିୟଟ ଯେଉଁ ଧାରାର ପ୍ରବର୍ତ୍ତନ କରିଥିଲେ ତାହା ଅନେକାଂଶରେ 'ନିଉ କ୍ରିଟିସିଜମ' ଭିତରେ ପରିଲକ୍ଷିତ ହୁଏ । ଇଲିୟଟ କହୁଥିଲେ, 'Honest criticism and sensitive appreciation is directed not upon the poet, but upon the poetry' ଯଦିଓ ପରବର୍ତ୍ତୀ ସମୟରେ ଆମେରିକାର ବିଶିଷ୍ଟ ଦାର୍ଶନିକ Elisco Vivas ଓ ଉଇଣ୍ଟର ପ୍ରମୁଖ ସମାଲୋଚକ ମାନେ ଇଲିୟଟଙ୍କ 'Objective Correlative 'କୁ ଅବିକଳ ସେହିପରିଭାବେ ଗ୍ରହଣ କରିପାରି ନାହାନ୍ତି ।

ସଫଳ ସାହିତ୍ୟ ସମାଲୋଚନା ସର୍ବଦା ସୃଷ୍ଟିଶୀଳ ସାହିତ୍ୟ ସମାଲୋଚନା ଯାହା ନୂତନ ମୂଲ୍ୟବୋଧ ତଥା ଚେତନା ସମ୍ବଳିତ । ତାହା ଭାଷାତାତ୍ତ୍ୱିକ ହେଉ, କି ଶୈଳୀତାତ୍ତ୍ୱିକ ହେଉ ସାହିତ୍ୟର ବାସ୍ତବ ଆଦର୍ଶ ନିରୂପଣରେ ଓ ସାହିତ୍ୟର ଚମତ୍କାରିତାକୁ ଚିହ୍ନଟ କରିବାରେ ତା'ର ସ୍ୱଷ୍ଟ ଓ ନିର୍ଦ୍ଦିଷ୍ଟ ଭୂମିକା ରହିବା ଉଚିତ ।

ସାହିତ୍ୟର ବହୁବିଧ ପରିଚୟ ରହିଛି । ବିଶେଷତଃ ତା'ର କଳାତ୍ମକ ତଥା ଐତିହାସିକ ପରିଚୟ ନିର୍ଣ୍ଣୟରେ ସମାଲୋଚନା ଅଧିକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିବା ଉଚିତ । ସାହିତ୍ୟରୁ ଯେହେତୁ ସମାଜିକ ବିବର୍ତ୍ତନର ସୂଚନା ମିଳେ ଓ ସାହିତ୍ୟର ଅନେକ ବିଷୟ ଯେହେତୁ ପୁଣି ସମାଜ ସଂପର୍କିତ ସେହେତୁ ସାମାଜିକ ବିବର୍ତ୍ତନ ସହିତ ସାହିତ୍ୟର କଳାତ୍ମକ ପରିଚୟ ନିର୍ଣ୍ଣିତ ହେବା ଉଚିତ । ଜଣେ ଶିଳ୍ପୀର ଦ୍ୱିବିଧ ଦାୟିତ୍ୱ କଥା ତେଣୁ ସମାଜବାଦୀ ସାହିତ୍ୟ ସମାଲୋଚକ ମାନେ ଉଠାଇଛନ୍ତି । ଗୋଟିଏ ହେଲା ଶିଳ୍ପୀର ନାନ୍ଦନିକ ଦାୟିତ୍ୱ (Aesthetic responsibility) ଓ ଅନ୍ୟଟି ସାମାଜିକ ଦାୟିତ୍ୱ (Social responsibility) । ଜଣେ ନିଷ୍ଠାପର ଶିଳ୍ପୀ କମ୍‌ବେଶୀରେ ଏ ଉଭୟ ପ୍ରକାର ଦାୟିତ୍ୱ ତୁଲାଇବା ଉଚିତ ।

ପାଶ୍ଚାତ୍ୟରେ ବିଂଶ ଶତାବ୍ଦୀର ଉତ୍ତର ଭାଗ କଳା ଚେତନାର ଆନ୍ଦୋଳନ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ସମୟ ଖଣ୍ଡରେ ସାହିତ୍ୟର କୌଣସି ଚେତନାଗତ ଆନ୍ଦୋଳନ ଦୀର୍ଘକାଳଧରି ଗୋଟିଏ ଭୌଗୋଳିକ ସୀମା ଭିତରେ ଆଉ ସୀମିତ ହୋଇ ରହିନାହିଁ ।

*ପ୍ରାଧ୍ୟାପକ, ଉପାଧ୍ୟକ୍ଷ ଓଡ଼ିଆ ବିଭାଗ*
*ସମ୍ବଲପୁର ବିଶ୍ୱ ବିଦ୍ୟାଳୟ, ଜ୍ୟୋତି ବିହାର - ୭୬୮୦୧୯*

# ଭଂଜୀୟ କାବ୍ୟରେ ଶୃଙ୍ଗାର ଭାବନା

ଡକ୍ଟର ବନମାଳୀ ବାରିକ

ରୀତିଯୁଗର ଅନ୍ୟ ପ୍ରମୁଖ କବିଙ୍କ ଭଳି ଉପେନ୍ଦ୍ରଭଂଜଙ୍କ କାବ୍ୟ କୃତିରେ ଶୃଙ୍ଗାରିକତାର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୋଇଥାଏ । ଏଥିପାଇଁ ସେ ଯୁଗର ସାମନ୍ତବାଦୀ ସମାଜ ବ୍ୟବସ୍ଥା ଓ ମୋଗଲ ଶାସନ ପରଂପରା ମୁଖ୍ୟତଃ ଦାୟୀ । ଦରବାରୀ ସାହିତ୍ୟ ଚର୍ଚ୍ଚା, ସଂସ୍କୃତ ସାହିତ୍ୟର ଆଦର୍ଶ, ସଂଭ୍ରାନ୍ତଶ୍ରେଣୀ ବିଳାସବ୍ୟସନ, ଶାସ୍ତ୍ରଜ୍ଞାନର ଆସ୍ପର୍ଦ୍ଧା, ରାଜକୀୟ ପ୍ରୋତ୍ସାହନଭିତ୍ତିରେ କବିତାର ଆଭିମୁଖ୍ୟ ନିର୍ଦ୍ଦିଷ୍ଟ ହୋଇଥିଲା । କାଳର ଏଇ ଆବଶ୍ୟକତା ଓ ସଂକେତକୁ ଉପେକ୍ଷାକରିବା ଯେ କୌଣସି କବିପକ୍ଷରେ ସାଧାରଣତଃ ଏକ କଠିନ ବ୍ୟାପାର ବରଂ ସ୍ରୋତର ଅନୁକୂଳ ଗତିରେ ଯାଇ ତାହାର ପରପୁଷ୍ଟି ସାଧନା କରିବା ଓ ବିଜୟ ଟୀକା ବହନ କରି ଗୌରବାନ୍ୱିତ ହେବା - ଅନେକଙ୍କର କାମନା । ଧନଂଜୟ, ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, କବିସୂର୍ଯ୍ୟଙ୍କ ଭଳି କବିମାନେ ଏଇ ଶୃଙ୍ଗାର କାବ୍ୟଧାରାର ଜଣେ ଜଣେ ବିଶିଷ୍ଟ ଶିଳ୍ପୀ । କିନ୍ତୁ ଉପେନ୍ଦ୍ର ଭଂଜ ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରେଷ୍ଠ । ସତେ ଯେପରି ସେ ମଧ୍ୟାହ୍ନର ଦୀପ୍ତିମାନ ସୂର୍ଯ୍ୟ ।

ଓଡିଶାର କାଳେ କାଳେ ସଂସ୍କୃତ କାବ୍ୟର ଆଦର ରହିଆସିଛି । କାଳିଦାସ, ଶ୍ରୀହର୍ଷ, ଜୟଦେବଙ୍କ ପ୍ରତି ଗଭୀର ଶ୍ରଦ୍ଧାର ନିଦର୍ଶନ ସ୍ୱରୂପ ବହୁ କବି ସଂସ୍କୃତ କାବ୍ୟ ରଚନା କରି ପାଣ୍ଡିତ୍ୟ ଓ କବିତ୍ୱର ପରାକାଷ୍ଠା ଦର୍ଶାଇଛନ୍ତି । ଭଂଜ ତଥା ତାଙ୍କ ଯୁଗର କବିଗଣ ପୂର୍ବ ଆଦର୍ଶ ଅନୁସରଣ କରି ଓଡିଆରେ ସଂସ୍କୃତ ସମକକ୍ଷ କାବ୍ୟ ରଚନା କରିବାରେ ସମର୍ଥ ହୋଇଛନ୍ତି । ସୁତରାଂ ଶୃଙ୍ଗାର ପରଂପରା ଓ ଅଳଂକାର ପରଂପରା ଆମ କାବ୍ୟରାଜିକୁ ପ୍ରଭାବିତ କରିବା ଏକ ଆକସ୍ମିକ ବ୍ୟାପାର ନୁହେଁ । ଓଡିଶାର ମନ୍ଦିର କଳାରେ ନଗ୍ନ ନଟନଟୀ ତଥା କାମ କଳାର ବିବିଧ ଭଂଗୀ ସମ୍ବଳିତ ଚିତ୍ରର ଉପସ୍ଥିତି ଉତ୍କଳୀୟ ସ୍ଥାପତ୍ୟ ବିଦ୍ୟାରେ ଶୃଙ୍ଗାର ଚର୍ଯ୍ୟାର ନିର୍ଦ୍ଦିଷ୍ଟ ଭୂମିକା ଥିବାର ସୂଚନା ଦିଏ । ଏସବୁର ବହୁ ଧାର୍ମିକ, ଆଧ୍ୟାତ୍ମିକ ଓ ଐତିହାସିକ ବିଶ୍ଳେଷଣ ହୋଇ ଥିଲେ ହେଁ ଏହା ଯୌନଜୀବନର ଗୁରୁତ୍ୱ ଘୋଷଣା କରେ । ଭାରତୀୟ ଧର୍ମଧାରାରେ ବୌଦ୍ଧସହଜସାଧନା ତଥା ତାନ୍ତ୍ରିକସାଧନାର ମହତ୍ତ୍ୱ ଏବଂ ସେ କ୍ଷେତ୍ରରେ ଓଡିଶାର ପ୍ରସିଦ୍ଧି ଉଲ୍ଲେଖଯୋଗ୍ୟ । ସୁତରାଂ ଗୋଟିଏ ଯୁଗର ଅନୁକୂଳ ପରିବେଶରେ ଶୃଙ୍ଗାରିକତା ତାର ବିପୁଳ ପରପାଟୀ ଘେନି ଓଡିଆ ସାହିତ୍ୟକୁ ସଂପୂର୍ଣ୍ଣ ଗ୍ରାସ କରିଥିବା ବିସ୍ମୟକର ହୋଇପାରେ; କିନ୍ତୁ ଓଡିଆ ଭାଷାର ଶବ୍ଦ ଓ କଳ୍ପନା - ସାମ୍ରାଜ୍ୟ ଯେ ଆଦିଗନ୍ତ ବିସ୍ତୃତି ଲାଭ କରିଛି - ଏଥିରେ ସଂଦେହ ନାହିଁ ।

ଶୃଙ୍ଗାରଚିତ୍ର ଉପସ୍ଥାପନ କରିବାରେ ଉପେନ୍ଦ୍ରଭଂଜ ଅନନ୍ୟ କୃତିତ୍ୱର ଅଧିକାରୀ । ସେ କାଳର କବି ମଣ୍ଡଳୀ ତାଙ୍କର କାବ୍ୟ ପ୍ରତିଭାରେ ଯେତିକି ମୁଗ୍ଧ ହୋଇଛନ୍ତି, ପରବର୍ତ୍ତୀ କାଳ କବିମଣ୍ଡଳୀ ତାଙ୍କ ଦ୍ୱାରା ସେତିକି ପ୍ରଭାବିତ ହୋଇଛନ୍ତି । ନୀତିବାଦୀ ସମାଲୋଚକ ମାନେ ଉପେନ୍ଦ୍ରଙ୍କ ସାହିତ୍ୟର ଶୃଙ୍ଗାର-ଭାବନାକୁ କଳୁଷିତ, ଅଶ୍ଳୀଳ ଓ ରୁଚିହୀନ ବୋଲି ଘୋଷଣା କଲାବେଳେ ରସବାଦୀ ମାନେସାଂସାରିକ, ରସାଳ ଓ ଅନୁଭବ ସିଦ୍ଧ ବୋଲି ସ୍ୱୀକାର କରିଛନ୍ତି । ମାତ୍ର ନିରପେକ୍ଷ ଦୃଷ୍ଟିରୁ ଏହିସବୁ ରଚନାର ଐତିହାସିକ,

ତୁଳନାତ୍ମକ ଓ ଆଳଂକାରିକ ବିଚାର ଏକାନ୍ତ ଆବଶ୍ୟକ । ପ୍ରତିଯୁଗରେ କାବ୍ୟିକ ରୁଚିବୋଧର ପରିବର୍ତ୍ତନ ଘଟେ , ତେଣୁ ଗୋଟିଏ ଯୁଗର ମାନସିକତା ଭିତ୍ତିର ଅନ୍ୟ ଏକ ଯୁଗର ଆକଳନ ଏକ ଦୋଷଯୁକ୍ତ ସିଦ୍ଧାନ୍ତ । ଆମର ପ୍ରାଚୀନ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଏହିଭଳି ଅନେକ ସମସ୍ୟା ସାଧାରଣତଃ ମନକୁ ଆନ୍ଦୋଳିତ କରିଥାଏ । ଉପେନ୍ଦ୍ରଭଂଜଙ୍କ ବହୁପାଠିତା, ଶାସ୍ତ୍ରଜ୍ଞାନ, ରାମ ତାରକ ମନ୍ତ୍ର ସିଦ୍ଧି, ଏକପତ୍ନୀବ୍ରତ ତଥା ଜାତିପ୍ରୀତି ସମ୍ପର୍କରେ ସମସ୍ତେ ସୁପରିଚିତ । ସିଂହାସନ ବଂଚିତ ଜଣେ ରାଜପୁତ୍ର ନିଜର ପୈତୃକ ଅଧିକାର ପ୍ରତି ଉଦାସୀନ ରହି ଆଜୀବନ କାବ୍ୟ ଚର୍ଚ୍ଚାରେ ନିୟୋଜିତ ହେବା ତାଙ୍କ ସମୁଚ୍ଚ ସାଂସ୍କୃତିକ ପ୍ରାଣବତ୍ତାର ପରିଚୟ ବହନ କରେ । ସୁତରାଂ ସେ ଅଶ୍ଳୀଳ ଓ ଅରୁଚିକର ମାର୍ଗର ପଥିକ ହେବାପାଇଁ ମନ ବଳାଇଥିବେ ଏହା ଆଦୌ ଯୁକ୍ତିସିଦ୍ଧ ହୋଇନପାରେ । ଭଂଜୀୟ ଶୃଙ୍ଗାର ଭାବନାକୁ ତେଣୁ ଏକ ନିର୍ଦ୍ଦିଷ୍ଟ ଯୁଗର କାବ୍ୟିକ ବ୍ୟାପାର ଦୃଷ୍ଟିରୁ ବିଚାର କରାଯିବା ଯଥାର୍ଥ ।

**ସମ୍ଭୋଗ ଓ ବିପ୍ରଲମ୍ଭ :**

ଶୃଙ୍ଗାର ଭାବନାର ଦୁଇଟି ମୁଖ୍ୟ ବିଭାବ-ସମ୍ଭୋଗ ଓ ବିପ୍ରଲମ୍ଭ । ପ୍ରୀତି ଆସକ୍ତ ନାରୀ ପୁରୁଷର ଚୁମ୍ବନ, ଆଲିଙ୍ଗନ ରତି ସୁଖାଦିର ବର୍ଣ୍ଣନା ସଂଭୋଗର ଚିତ୍ର ବହନ କରେ । ସେହିପରି ପରସ୍ପର ବିଚ୍ଛେଦରେ ଦୁହେଁ ଯେଉଁ ଦୈହିକ ଓ ମାନସିକ ଅନୁଭବର ଅଧିକାରୀ ହୁଅନ୍ତି ତାହା ବିପ୍ରଲମ୍ଭର ବିଷୟ । ସଂଭୋଗ ଚିତ୍ର ପ୍ରାୟତଃ ସୀମିତ । କାବ୍ୟରେ ଏହାର ବିଶଦ ବର୍ଣ୍ଣନା ସାଧାରଣତଃ ଅନୁଚିତ ପ୍ରସଂଗ ରୂପେ ଗୃହୀତ ହୋଇଥାଏ । କେବଳ ରସଧ୍ୱନି ବା ସାଂକେତିକ ବକ୍ତବ୍ୟ ମାଧମରେ ଏହାକୁ ସରସ ସୁନ୍ଦର କରାଯାଇପାରେ । ଏ କଥା ସତ ଯେ ଭଂଜୀୟ କାବ୍ୟରେ ସଂଭୋଗ ବିଳାସର ପ୍ରାଚୁର୍ଯ୍ୟ ରହିଛି ଏବଂ ବହୁସ୍ଥଳରେ ଏହା ଦେହାଧାରିତ । ବାତ୍ସାୟନଙ୍କ 'କାମସୂତ୍ର' ର କେତେକ ଅଂଶ ସହ ଏହାର ସାମଂଜସ୍ୟ ରହିଛି । ଭଂଜ ନିଜେ ଏହାର ସ୍ପଷ୍ଟୀକରଣ ଦେବାକୁ ଯାଇ କହିଛନ୍ତି -

ବାତ୍ସାୟନ ଋଷିଙ୍କୁ ଏ ରସ ଅଗଚୋର
ଗୀତେ କହେ ଉପେନ୍ଦ୍ର ଭଂଜ ବୀର ବର ।

(ରସିକହାରାବଳୀ : ୬/୨୯)

ଅର୍ଥାତ ବାତ୍ସାୟନଙ୍କ କାମସୂତ୍ରରେ ଯେଉଁ ଆଲୋଚନା ଅଛି ତାହାଠାରୁ ଅଧିକ ଅନୁଭବ୍ୟ ବିଷୟ କବି ବିଭିନ୍ନ ସ୍ଥଳରେ ଉଲ୍ଲେଖ କରିଛନ୍ତି । ଏହି ଦେହାଶ୍ରିତ ଶୃଙ୍ଗାର ଭାବନାରେ ରତିକୁ ପରମପଦାର୍ଥ ବୋଲି କୁହାଯାଇଛି । ସାଂସାରିକ ଦୃଷ୍ଟିରେ ଓ ବୈଜ୍ଞାନିକ ବିଚାରରେ ନାରୀ ପୁରୁଷର ଯୌନ ଜୀବନରେ ବିଶୃଙ୍ଖଳା ଦେଖାଦେଲେ, ତାହା ପାରିବାରିକ ସୁଖ ଶାନ୍ତି ନଷ୍ଟ କରିଥାଏ । କାମ ତୃଷ୍ଣା ଅଦମନୀୟ ଏବଂ ସୁରତିରେ ତାହା ପରିପୂର୍ଣ୍ଣତା ଲାଭକରେ । ତେଣୁ ଉପେନ୍ଦ୍ର ଯଥାର୍ଥରେ କହିଛନ୍ତି -

ପରମ ଦ୍ରବ୍ୟ ପୀରତି, ପରମ ସୁଖ ସୁରତି
ରତିରୁ ଜାତ ପୀରତି, ପ୍ରୀତିରୁ ରତି ।

(ପ୍ରେମ ସୁଧାନିଧି : ୭/୮)

ଏହି ଦୈହିକ ଭାବନା ଉର୍ଦ୍ଧ୍ୱରେ କବି ନିଜସ୍ୱ ବିଚାର ଆରୋପ କରି କହିଛନ୍ତି ଏହି ପ୍ରୀତି/ ରତି ସୁଖ କେବଳ ଦାମ୍ପତ୍ୟ ଜୀବନରେ ହିଁ ସଂଭବ । ତାଙ୍କର ଭାଷାରେ ।

ମହାସୁଖ ନାହିଁ ଦମ୍ପତିରୁ, କି ହେବ କୁବେର ସଂପତିରୁ ।

(ରସିକ ହାରାବଳୀ : ୮/୭)

ପୁଣି ସେ କହିଛନ୍ତି - ଦୈହିକ ସୁଖ ପାଇଁ ପରନାରୀ ହରଣ ଏକ ନୀତିହୀନ କାର୍ଯ୍ୟ । ସଂଭୋଗ ନାମରେ ଆଦର୍ଶର ହତ୍ୟା ଓ ବିଶୃଙ୍ଖଳିତ ସମାଜ ବ୍ୟବସ୍ଥାକୁ କେବେ ପ୍ରଶ୍ରୟ ଦିଆଯାଇ ନପାରେ । ହୁଏତ ପରକୀୟା ପ୍ରୀତିର କିଂଚିତ୍ ଆବେଗ ଓ ଉଚ୍ଛ୍ୱାସ ଅଛି, ପରଘର ବୁଡ଼ାପଣର ପରିଣାମ କି ଅଛି । କେଉଁ କବି ପାଇଁ, କେଉଁ ରସିକ ପାଇଁ, କେଉଁ ପଣ୍ଡିତ ପାଇଁ ଏହା ଜୀବନ ବା ସାଧନାର ମାର୍ଗ ହୋଇପାରେ, ମାତ୍ର ଏକ ସୁସ୍ଥ ସମାଜ ପାଇଁ ଏପରି ବ୍ୟବସ୍ଥା ଏକାନ୍ତ ଅନିଷ୍ଟକର ଓ ବ୍ୟକ୍ତି ପାଇଁ ଅସ୍ଥିରତା ଓ ବିକୃତିର କାରଣ ।

ଦାମ୍ପତ୍ୟ ସଂଭୋଗର ପରିଧି ଭିତରେ କବି ଉପେନ୍ଦ୍ର ଅବଶ୍ୟ ଦୈହିକ କାମନାର ସ୍ଥୂଳ ବର୍ଣ୍ଣନା କରିଛନ୍ତି । ସମାଲୋଚକମାନେ ଏଥିପ୍ରତି ନାସିକା କୁଂଚନ କରିବାକୁ ପଶ୍ଚାତ୍ ପଦ ହୋଇ ନାହାନ୍ତି । ଏସବୁ ପ୍ରସଂଗରେ କଳାର ଗୁରୁତ୍ୱ ହ୍ରାସ ପାଇଛି । ଅନ୍ୟ ଦୃଷ୍ଟିରୁ ଦେହଭୋଗ କାଳରେ ନଖ ଚାଳନ, ଗଣ୍ଡ ଚୁମ୍ବନ, ଅଧରପାନ, ଆଲିଙ୍ଗନ, ବିବସନ, ସ୍ତନର ଲେହନ, ନିତମ୍ବ ମର୍ଦନ ଆଦି କାମ ବିଧିର ପରଂପରା ଶାସ୍ତ୍ରସମ୍ମତ ଓ ରତିକଳା ସମ୍ମତ । ସ୍ୱାମୀ - ସ୍ତ୍ରୀ ସଂପର୍କର ଗଭୀରତା ଓ ଅନୁକୂଳ ପରିବେଶର ମଧୁରତା ମଧ୍ୟରେ ଏହି ଲୀଳା ପ୍ରତି ପରିବାରରେ ନିତ୍ୟ ଅନୁଷ୍ଠିତ ହେଉଅଛି । ସୁରୁଚି ବିଚାରରେ ଏହା ସ୍ପୃହଣୀୟ ନୁହେଁ, କିନ୍ତୁ ସଂଭୋଗର କଳାତ୍ମକ ମର୍ଯ୍ୟାଦା ଦୃଷ୍ଟିରୁ ବରଣୀୟ । ଏତଦ୍ ବ୍ୟତୀତ ଉପେନ୍ଦ୍ରଭଂଜ ସଂଭୋଗକୁ କୃଷିକର୍ମ (ପ୍ରେମ ସୁଧାନିଧି ୬/୪), ମଲ୍ଲଯୁଦ୍ଧ (ତଦ୍ରୈବ : ୬/୭), ଯଜ୍ଞକର୍ମ (ତଦ୍ରୈବ : ୬/୧୦-୧୩), ପ୍ରେମ ପୁସ୍ତକ (ସୁଭଦ୍ରା ପରିଣୟ : ୧୭/୭), ଷଡ ଋତୁ (ବୈଦେହୀଶ ବିଳାସ : ୧୫/୧୮-୨୦), ଶ୍ଳେଷ ଆଦି ଅଳଂକାର (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ :୩୪/୪୪-୪୬), ଦ୍ୟୂତ କ୍ରୀଡ଼ା (ତଦ୍ରୈବ : ୩୪/୪୭), ଇନ୍ଦ୍ର ସଂପରି (ସୁବର୍ଣ୍ଣ ରେଖା : ୫/୧୪) ସହ ତୁଳନା କରିଛନ୍ତି । ସେହିପରି ବିପରୀତ ରତିକୁ ସେ ନର୍ତ୍ତକୀରଉଲ୍ଲାସ୍ୟଲୀଳା (ପ୍ରେମ ସୁଧାନିଧି : ୬/୧୬) ବୋଲି କହିଛନ୍ତି । ଏସବୁ ଉପମା ନଷ୍ଟ କଳ୍ପିତ ଓ କାବ୍ୟିକ ସୌକୁମାର୍ଯ୍ୟ ବର୍ଜିତ ।

ଭଂଜୀୟ କାବ୍ୟର କେତେକ ସ୍ଥଳରେ ସଂଭୋଗ ମୋକ୍ଷ ଭାବନା ସହ ସଂଶ୍ଲିଷ୍ଟ । ଭାରତର ଦାର୍ଶନିକ ବିଚାରରେ ଧର୍ମ, ଅର୍ଥ, କାମ, ମୋକ୍ଷକୁ ଚାରିଗୋଟି ପୁରୁଷାର୍ଥ ରୂପେ ସ୍ୱୀକାର କରାଯାଇଛି । ଧନ, ଅର୍ଥ ଓ କାମରେ ପାର୍ଥିବ ସଫଳତା ନିହିତ ଥିଲାବେଳେ ମୋକ୍ଷ ବା ମୁକ୍ତି ଭାବନାରେ ଅଧ୍ୟାତ୍ମିକ ଦୃଷ୍ଟିର ସଂବନ୍ଧ ରହିଛି । ମାତ୍ର କବି ନିଛକ ଦୈହିକତା ଭିତରେ ଏହି ମୋକ୍ଷର କଳ୍ପନା କରିଛନ୍ତି । ନାରୀର ନୀବୀ ମୋକ୍ଷଣରେ ପୁରୁଷର ମୋକ୍ଷପ୍ରାପ୍ତି କାମନା ଫଳବତୀ ହୋଇଛି । ଯଥା :-

ତାର ମୋର ନୀବୀ ମୋକ୍ଷ ମୋକ୍ଷ (ପ୍ରେମ ସୁଧାନିଧି : ୭/୧୯)

କିଂବା

ନୀବୀ ମୋକ୍ଷ ମୋକ୍ଷକୁ ପାଇଲା ପ୍ରାୟ ହେଲା । (ରସିକ ହାରାବଳୀ : ୬/୧୬)

ଅନ୍ୟତ୍ର ସେ କହିଛନ୍ତି :-

ଜବାଧାରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର । (ଲାବଣ୍ୟବତୀ - ୪/୧୧)

ବସ୍ତୁତଃ ଯୌବନର ସବୁଜ ସ୍ୱପ୍ନିଳ ଆକାଶରେ ପୁରୁଷ ପାଇଁ ନାରୀ ହୁଏ ବର୍ଣ୍ଣିଳ ଇନ୍ଦ୍ରଧନୁ । ସୁନ୍ଦରୀ ନାରୀର ପ୍ରୀତି ଓ ସାନ୍ନିଧ୍ୟ ପାଇଁ ଯୁବକର ଅହରହ ବ୍ୟାକୁଳତା ଦେହର ମିଳନରେ ବୈକୁଣ୍ଠ ପ୍ରାପ୍ତିର ଭାବନା ଆଦୌ ଅଳୀକ ନୁହେଁ । ପ୍ରବୀଣ ବା ପଣ୍ଡିତର ମାନସିକତା ଦୃଷ୍ଟିରୁ ଏହା ମୂଲ୍ୟହୀନ ହୋଇ ପାରେ । କିନ୍ତୁ ଯେ କୌଣସି ରସୋଚ୍ଛଳ ସ୍ୱପ୍ନ ପ୍ରବଣ ଯୁବକ ପାଇଁ ଏହି କଳ୍ପନା ବେଶ୍ ରସୋତ୍ତୀର୍ଣ୍ଣ ।

ରାମ ଉପାସକ ଉପେନ୍ଦ୍ର ଭଂଜ ପରିଣତ ବୟସରେ କୃଷ୍ଣକାବ୍ୟ ରଚନାରେ ମନୋନିବେଶ କରିଥିଲେ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଆକ୍ଷେପୋକ୍ତି (କୃଷ୍ଣ ଉପାସକ ନୋହିଁ କି କାର୍ଯ୍ୟ ତହିଁ ଯେ - ଯୁଗଳ ରସାମୃତ ଲହରୀ : ୪୮/୫୪) ହିଁ ଏହାର କାରଣ ହୋଇପାରେ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ରଚନା କାଳରେ ଗୋପୀକୃଷ୍ଣ ପରକୀୟା ପ୍ରୀତି ବିରୋଧରେ ଯାହା କହିଥିଲେ, ତାର ପରିବର୍ତ୍ତନ ଭିନ୍ନଉପାୟରେ ହୋଇଥିଲା । କୃଷ୍ଣଲୀଳା ରହିବ ଓ ସଂଭୋଗ ଲୀଳା ମଧ୍ୟ ରହିବ । ମାତ୍ର ତାହା ଆଦର୍ଶ ବଂଚିତ ହେବ ନାହିଁ । ତେଣୁ କୃଷ୍ଣଙ୍କୁ ଯଜ୍ଞ ପୁରୁଷ ଓ ଗୋପାଙ୍ଗନା ମାନଙ୍କ ରାସଲୀଳାକୁ ଯୋଗମାୟାର ପରିଣାମ ବୋଲି ସେ ଦେଖାଇଦେଲେ । ଯଥା :-

ଯୋଗମାୟା ବଶେ ହେଲେ ହରି ନାରୀ
ଗୋଟିକେ ଗୋଟିଏ ରୂପ ଯେ । (ଛାନ୍ଦ ଭୂଷଣ : ୨୬/୫)

ଏଠାରେ ସୂଚାଇ ଦେବା ଉଚିତ୍ ହେବ ଯେ ଏହି କୃଷ୍ଣ ଆମର ଜଗନ୍ନାଥଙ୍କ ଠାରୁ ଅଭିନ୍ନ ଏବଂ କାବ୍ୟର ବିଭିନ୍ନ ସ୍ଥଳରେ କବି ରାମଚନ୍ଦ୍ରଙ୍କୁ ସ୍ମରଣ କରିବାକୁ ଭୁଲି ନାହାନ୍ତି ।

ସଂଭୋଗ ଅପେକ୍ଷା ବିପ୍ରଲମ୍ଭ ବର୍ଣ୍ଣନାରେ କବିମାନଙ୍କର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ବିଚ୍ଛେଦ ଯନ୍ତ୍ରଣାରେ ସଂଭୋଗର ଓ ଆତ୍ମୀୟତାର ମୂଲ୍ୟ ଅନୁଭବ କରାଯାଇଥାଏ । ଶାସ୍ତ୍ରୀୟ ରୀତି ଅନୁଯାୟୀ ଏହି ବିପ୍ରଲମ୍ଭ ପୂର୍ବରାଗ, ମାନ, ବିରହ, ପ୍ରବାସ ଓ କରୁଣ ଭେଦରେ ଆଲୋଚ୍ୟ । ଏହା ଛଡା ସ୍ୱପ୍ନ, ସତ୍ୟରକ୍ଷା, ଦିବାଗମନ, ପୁଷ୍ପକାଳ ହେତୁ ମିଳନରେ ବାଧା ସୃଷ୍ଟି ହୋଇଥାଏ । ଭଂଜୀୟ କାବ୍ୟରେ ଏହି ପର୍ଯ୍ୟାୟ କେତେକ ସ୍ଥଳରେ ଅଳଂକାର-ଶାସ୍ତ୍ରୀୟତାକୁ ସ୍ୱୀକାର କରିଛି । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ନାୟିକାର ପୂର୍ବରାଗ ପ୍ରସଂଗ ବିସ୍ତୃତ ରୂପେ ବର୍ଣ୍ଣିତ । ମାତ୍ର ସ୍ତମ୍ଭ, ସ୍ୱେଦ, ରୋମାଂଚ ଆଦି କ୍ରମରେ ବିରହାବସ୍ଥା ଚିତ୍ରଣ ପ୍ରାଣକୁ ସ୍ପର୍ଶ କରିପାରେ ନାହିଁ । (କୋ: ୧୮/୧୯-୨୯) 'ଲାବଣ୍ୟବତୀ'ରେ ନାୟିକାର ବିରହ ଭାବନା ମଧ୍ୟ ସୁଦୀର୍ଘ । ଇନ୍ଦ୍ରଜାଲ ଦର୍ଶନ, ଚିଟାଉ ଆଦାନପ୍ରଦାନ, ସ୍ୱପ୍ନ ଦର୍ଶନ, ଋତୁ କ୍ରମିକ ପ୍ରୀତି ଭାବନା, ବିବାହାନ୍ତର ଉଦ୍‌ବେଗ ଆଦିର ବର୍ଣ୍ଣନାରେ ନାରୀ ପ୍ରାଣର ରସାଳ ମଧୁର ଅଭିବ୍ୟକ୍ତି ପ୍ରକାଶିତ ହୋଇଛି । ସ୍ଥଳ ବିଶେଷରେ ସଂସ୍କୃତ ପରଂପରାର ପ୍ରଭାବ ସୁସ୍ପଷ୍ଟ । ଯଥା :-

ଫାଟି ଫୁଟି ପଡୁଅଛି ମୁକୁତା ମାଳିକା
ଚନ୍ଦନ ପଡି ତନୁରେ ହେଉଛି ଫୋଟକା

* * *

ଉଶୀରର ଲେପ ଯହିଁ
ତପତ ଲୋହେ ଜମ୍ୱାଳ ପରାୟେ ଶୁଖଇ । (ଲା : ୧୭/୨୭-୨୯)

ରସିକ ହାରାବଳୀ, ପ୍ରେମ ସୁଧାନିଧି ଓ ସୁବର୍ଣ୍ଣରେଖା କାବ୍ୟରେ ପ୍ରବାସ ବିପ୍ରଲମ୍ଭର ବିପୁଳ ବର୍ଣ୍ଣନା ଉପଲବ୍ଧ । ସବୁ କ୍ଷେତ୍ରରେ ବର୍ଷା, ବସନ୍ତ, ଗ୍ରୀଷ୍ମ ଆଦି ଋତୁରେ କାମ ବିଳାସର ସ୍ମୃତି ନାୟକ ପ୍ରାଣକୁ ବ୍ୟାକୁଳ ଓ ବ୍ୟଥିତ କରିଛି । ନାୟିକାର ବିବସନ ଜାନୁ, ସ୍ତନ ଓ ଯୌବନ ଚିତ୍ର ଦେବାକୁ କବି କୁଣ୍ଠା ପ୍ରକାଶ କରିନାହାନ୍ତି । (ପ୍ରେମ ସୁଧାନିଧି : ୯/୨୧-୨୨) । ଏପରିକି ନଗ୍ନ ନାରୀ ଦେହର ମାଂସଳ ସୌନ୍ଦର୍ଯ୍ୟ ବର୍ଣ୍ଣନା ଅବସରରେ କାମ ମନ୍ଦିରର ଚିତ୍ର ପ୍ରଦାନ କରିବାକୁ ସେ ପ୍ରଗଳ୍ଭ ହୋଇ ଉଠିଛନ୍ତି । (ସୁବର୍ଣ୍ଣରେଖା : ୨/୬. ୪/୨୨, ଲାବଣ୍ୟବତୀ : ୪୨/୪୩) ଏହି ସବୁ ପ୍ରସଂଗ ପୁରୁଷର ଦେହ ପ୍ରତି ପ୍ରବଳ ଆକର୍ଷଣ ବା ନିର୍ଲଜ୍ଜ କାମୁକତାର ପକ୍ଷ ସମର୍ଥନ କରେ ।

କେତେକ କ୍ଷେତ୍ରରେ ଦେହାତିରିକ୍ତ ସୌନ୍ଦର୍ଯ୍ୟ ମଣ୍ଡିତ ହୋଇ ବିପ୍ରଲମ୍ଭ ଭାବନା ଚାରୁତା ଓ ପ୍ରୀତିମୟତାର ସ୍ପର୍ଶଲାଭ କରିଛି । ବୈଦେହୀଶବିଳାସରେ ବିରହୀ ରାମଚନ୍ଦ୍ରଙ୍କ ବାରିବାହ ସଂବୋଧନ ସହ ସୀତା-ପ୍ରାଣତାର ରସାଳ କରୁଣ ଅଭିବ୍ୟକ୍ତି ଅତୀବ ମଂଜୁଳ । ଯଥା :-

ବଲ୍ଲଭୀ ବୋଲି ମୋର ତାକୁ ଚିହ୍ନିବ ଶଯ୍ୟା କରିଥିବଧରା
ବିଶୀର୍ଣ ଶାଣ ବସ୍ତା ରତ୍ନ ଗଣ୍ଠିରୁ ଫିଟି ପତନ ହେବପରା
ବାରିବାହ ହେ ! ବସିଥିବ ଅବା ଦେଖିବ,
ବେଣୀ ପୃଷ୍ଠଭାଗେ ମନ୍ତ୍ର ଧୂଳିପାତ ସ୍ଥଗିତ ନାଗ ପ୍ରାୟଥିବ । ( ବୈ.ବି : ୨୯/୨୧ )

ସେହିପରି ନାୟିକା ସୀତାଙ୍କର ବିରହ ପ୍ରସଂଗ ଅତି ସଂକ୍ଷିପ୍ତ ହେଲେ ହେଁ ଅତୀବ ମାର୍ମିକ । ପ୍ରିୟ ସ୍ମରଣ, ବନପ୍ରିୟ ସଂବୋଧନ ଓ ହୃଦୟର ନିବେଦନ ବେଶ, ମାର୍ଜିତ ଓ ସୁରୁଚି ସଂପନ୍ନ । ଯଥା :-

ବଲ୍ଲଭେ ! ବନପ୍ରିୟ କହ ଏତେ ଯେ
ବ୍ରହ୍ମାଣ୍ଡ ନାଥ ହାତ ଧରି ଅନାଥ କି ଶୁଭୁଛି ଜଗତେ ଯେ ।
(ବୈ.ବି : ୩୪/୭)

ନାୟକ ଚନ୍ଦ୍ରଭାନୁର ବିରହ ଭାବନାରେ ନାୟିକ ପ୍ରତି ଗଭୀର ମମତା ପ୍ରକାଶ ପାଇଛି । ଦେହର ଭୂମିରେ ବିଦେହୀ ଭାବନାର ରାଜପଣ ପ୍ରସଂଗଟିକୁ କରିଛି ରସମୟ ଓ ବର୍ଣ୍ଣମୟ । ଯଥା :-

ପୁଣି ବିରହ ଅନଳେ ଦହନ । ହୋନ୍ତା ଏ ମୋହର ତନୁ ବହନ ।
ଭସ୍ମ ଉଡାଇ କୃପାରେ ପବନ । ନେଇ ପକାନ୍ତା କାନ୍ତା ସନ୍ନିଧାନ
କିସ ବୋଲି ବାଳା କରନ୍ତା ଦୃଷ୍ଟି । ତହିଁ ପରେ ହୋନ୍ତା ସୁଧାବୃଷ୍ଟି ।
ହୋଇ ମୂର୍ତ୍ତିମନ୍ତ ମୁଁ ଚାହିଁ ମୁଖ । କର ଯୋଡି କୁହନ୍ତି ସବୁଦୁଃଖ ।।
( ଲାବଣ୍ୟବତୀ : ୪୨/୨୬-୨୮ )

ଆଧୁନିକ ଯୁଗର କବି ମାନସିଂହଙ୍କ ଉକ୍ତି ଏ କ୍ଷେତ୍ରରେ ଆମର ସ୍ମରଣୀୟ ।

**ନାୟକ ଓ ନାୟିକା :**

ଶୃଙ୍ଗାର ଭାବନା ପରିସରମଧରେ ନାୟକ ଓ ନାୟିକା ଚରିତ୍ରର ସମ୍ୟକ ଅନୁଶୀଳନ ଆମର ଆବଶ୍ୟକ । ସାଧାରଣତଃ ପୁରୁଷଠାରେ ବୀରତ୍ୱ, ସାହସିକତା, ଯୋଦ୍ଧୃପଣ, ପାଣ୍ଡିତ୍ୟ ଓ ଐଶ୍ୱର୍ଯ୍ୟାଦି ଆମେ ଆଶା କରିବା ସ୍ୱାଭାବିକ । ସେହିପରି ନାରୀ ଚରିତ୍ରରେ ସେବା, ସହିଷ୍ଣୁତା, କୋମଳତା, ବାତ୍ସଲ୍ୟମମତା, ନୃତ୍ୟ/ସଂଗୀତ ପ୍ରତି ଆକର୍ଷଣ ବିଶେଷ ଭାବେ ପରିଦୃଷ୍ଟ ହୁଏ । ମାତ୍ର ଭଂଜୀୟ କାବ୍ୟରେ ଏହାର ଆଲେଖ୍ୟ ଥାଇ ନଥିଲା ପରି । ଆଳଂକାରିକ ରୀତିରେ ଉଭୟ ଚରିତ୍ରରେ ସମସ୍ତ ସୁଗୁଣର ଉଲ୍ଲେଖ ଥିଲେ ହେଁ ବାସ୍ତବ କ୍ଷେତ୍ରରେ ତାହାର କୌଣସି ନିର୍ଦ୍ଦିଷ୍ଟ ପରିଚୟ ନାହିଁ । ନାୟକ ଚନ୍ଦ୍ରଭାନୁ ବିଷୟରେ କୁହାଯାଇଛି -

ବେଦ ବେଦାନ୍ତେ ବିଧାତା ବ୍ୟାକରଣେ ହର
ସଂଗୀତରେ ନାରଦ ଶୃଙ୍ଗାର ଶାସ୍ତ୍ରେ ମାର ।

* * *

ବଳିଷ୍ଠରେ ବାଳୀ ଧର୍ମିଷ୍ଠରେ ଯୁଧିଷ୍ଠିର
ସୁନ୍ଦର ପଣେ ତାହାଙ୍କୁ ସେହି ପଟାନ୍ତର ।
(ଲାବଣ୍ୟବତୀ : ୧/୬୫-୬୮ )

ମାତ୍ର କାବ୍ୟର ଆରମ୍ଭରେ ଅଛି -

ତପ ତା ଅକଥନୀୟ ଦିବ୍ୟ ନାରୀ ଶ୍ରଦ୍ଧେ ।

(ତତ୍ରୈବ : ୧/୧୮)

ଏଇ ନାରୀ ଶ୍ରଦ୍ଧା ବ୍ୟତୀତ ସମଗ୍ର କାବ୍ୟରେ ନାୟକର ବୀରତ୍ୱ ବା ପୌରୁଷର ଦାମ୍ଭିକତା ନାହିଁ କହିଲେ ଚଳେ । ଚନ୍ଦ୍ରଭାନୁର ରାମେଶ୍ୱର ଗମନ (୨୭ଶ ଛନ୍ଦ) ବର୍ଣ୍ଣନାରେ ୧ରୁ ୬ ପଦ ଯାଏ ଯୁଦ୍ଧ ସାଜସଜ୍ଜା ବ୍ୟତୀତ ଅନ୍ୟ ପଦଗୁଡିକରେ ବିଭିନ୍ନ ଶ୍ରେଣୀର ପୁରୁଷ ନାରୀ ପ୍ରୀତି ଆଳାପ ତଥା ଚନ୍ଦ୍ରଭାନୁର କୀର୍ତ୍ତି ଓ ଯୁଦ୍ଧ ବର୍ଣ୍ଣନା (୪୫ଶ ଛନ୍ଦ) ରେ କେବଳ କାବ୍ୟିକ ଅତିରଂଜନ ସ୍ଥାନ ପାଇଛି । ଚନ୍ଦ୍ରଭାନୁର ଶିକାର (୨୪ଶ ଛାନ୍ଦ) ପ୍ରସଂଗରେ ଅରଣ୍ୟର ବିବିଧ ଫଳ ଯଥା- ଗୁଆ, ନାରଙ୍ଗ, ଶ୍ରୀଫଳ, ମାତୁଳଙ୍ଗ, ଲାଙ୍ଗଳୀ, କରମଙ୍ଗା ସହ ଶିଶୁ ଠାରୁ ଜରତୀ ପର୍ଯ୍ୟନ୍ତ ସେମାନଙ୍କ ସ୍ତନର ତୁଳନା କରାଯାଇଛି । ଜୀବ ଜନ୍ତୁଙ୍କ ଶିକାର ଦୃଶ୍ୟ ଆଳଂକାରିକ ମାୟାଜାଲରେ ଶ୍ରୀହୀନ । ଅନ୍ୟତ୍ର ନାୟକର ପରିଚୟ ହେଉଛି ମିଳନ ଓ ବିରହର ଦୋଳିରେ ଝୁଲୁଥିବା ଜଣେ ଭୋଗୀ ପୁରୁଷ । ନାରୀ ଚରଣର ଅଳତା ବା ନାରୀ ଅଂଗର ବସନ ଭାଗ୍ୟ ଲାଭ କରିବା ପାଇଁ ତାର କାମନାର ଅନ୍ତ ନାହିଁ । ଯଥା :-

ଚରଣେ ଅଳତାପରି ପଛେ ପଛେ ଛାଇପରି
ଅନୁସରି ଥିବାକୁ ମୋ ହେଉଛି ମନ ।
ମତେ ଦିଅ ବସନ ଭାଗ୍ୟ ।
ହେଲିଣି ସବୁ ମତେ ମୁଁ କୃତାର୍ଥ ଯୋଗ୍ୟ । (ଲା: ୧୧/୩୪)

ଅନ୍ୟତ୍ର ସେ କହିଛି :-

କଲେ ତୁ ଅଂଗୀକାର ସୁଦନ୍ତୀ
ଅଳତା ଚିତ୍ରେ ଚିତ୍ରକାର ହୁଅନ୍ତି ।
ସେବାରେ ଆଜି ଫୁଲ ଗୁଚ୍ଛାରେ ମାଳୀ
ହୋଇ ଇଗାନ୍ତି କାମ ବଦନେ କାଳି । (ଲା : ୧୪/୧୦)

କବିଙ୍କ ରସଲେଖାରେ ମଧ୍ୟ ନାୟକର ଅବସ୍ଥା ତଦ୍ରୂପ :-

ପାଦେ ପିଙ୍ଗିଦେଲେ ତୁହି ଅଳତା ପରାୟେ ମୁହିଁ
ଲାଗି ରହିଥିବି ତୋ ଚିତ୍ତେ କିଂଚିତେ କରୁଣା ହୋଇବା ପାଇଁ ।

(ର : ୯/୨)

ନାୟିକା ସହ ମିଳନ ପାଇଁ ନାୟକର ଆତୁରତା ଏଥିରୁ ସହଜରେ ଅନୁମାନ କରାଯାଇ ପାରେ । ପୌରୁଷ ଅପେକ୍ଷା ପ୍ରବୃତ୍ତିର ଦାସ ହେବାକୁ , ରାଜପୁତ୍ରର ଅହଂକାର ଅପେକ୍ଷା ରତିଯୋଦ୍ଧାର ଗୌରବକୁ ସେ ଶ୍ରେୟସ୍କର ମନେ କରିଛି ।

ଭଂଜୀୟ କାବ୍ୟର ନାୟିକା ମଧ୍ୟ ଆଳଂକାରିକ ରୀତିରେ ସର୍ବଗୁଣ ସଂପନ୍ନା , ଅନିନ୍ଦ୍ୟ ରୂପ ସୌନ୍ଦର୍ଯ୍ୟର ଅଧିକାରିଣୀ ଓ ସକଳ ଶାସ୍ତ୍ରରେ ପଣ୍ଡିତା । ଲାବଣ୍ୟବତୀର ବିଦ୍ୟାଶିକ୍ଷା ସଂପର୍କରେ କବି କହିଛନ୍ତି ;-

ସରସ୍ୱତୀ ଗୋଚରରେ ବିଦ୍ୟାଥିଲା ଯେତେ
ଦେଲେ କହି ସେ ଦ୍ୱନ୍ଦ୍ୱ ତୁ ନକରିବୁ ମନେ ।

(ଲା :୨/୬୮)

ମାତ୍ର କୌଣସିଠାରେ ଏ ବିଦ୍ୟାର ପରିଚୟ ନାୟିକା ଚରିତ୍ରରୁ ମିଳେ ନାହିଁ । ଅଥଚ ରତି ଶାସ୍ତ୍ର ପଠନ ବା ରତି ସେବନରେ ତାର ଆଗ୍ରହ ଅଧିକ । ଯେପରି -

ବାସ ଅଂଗୀ ସ୍ମର ଭୟରୁ ରତି ସେବନେ ସ୍ନେହୀ ।
(ବୈ.ବି : ୭/୪୧)

କବି ନାୟିକାକୁ କେତେବେଳେ ମନ୍ମଥରେ ମନଭେଦୀ ଶର ରୂପେ, କେତେବେଳେ ହାବ-ଭାବ-ଲୀଳା-ବିଳାସର ମୂର୍ତ୍ତିମନ୍ତ ବିଗ୍ରହ ରୂପେ କଳ୍ପନା କରିଛନ୍ତି । (ଲା : ୭/୭୧ ,୭/୭୫) ନାୟିକା ରୂପର ପ୍ରଶଂସା କରିବାକୁ ଯାଇ ତାର ବିଭିନ୍ନ ଅଂଗ ସହ କୁନ୍ତଳ ମତ୍ସ୍ୟ, ନିଷେଧ, ମଘ, ବିଦେହ, କନୌଜ, ମରୁଦେଶ, ଅଂଗ, କଳିଙ୍ଗ, ମରହଟ୍ଟା, ସୌରାଷ୍ଟ୍ର, ଚୋଳ, ଦ୍ରାବିଡ, ଉତ୍କଳ, ଗୌଡ, ନେପାଳ, ଯମନ, ସିନ୍ଧୁ, ବିଦର୍ଭ ଆଦି ନାମଗତ ତର୍କଣା କରାଯାଇଛି । (ଲା : ୮/୨୧-୩୬) ଅର୍ଥାତ ନାୟିକାକୁ ନେଇ ସର୍ବତ୍ର ଶୃଙ୍ଗାରମୟ ପରିବେଶ ସୃଷ୍ଟିର ଲୋଭନୀୟ ପ୍ରଚେଷ୍ଟା ଦେଖିବାକୁ ମିଳେ । ତାର ବ୍ୟକ୍ତିତ୍ୱର ଅନ୍ୟ କୌଣସି ଦିଗ ଏଥିରେ ସ୍ଥାନ ପାଇନାହିଁ ।

**ଦେଶ ଓ ନଗର :**

ମଧ୍ୟଯୁଗୀୟ କାବ୍ୟର ବହୁ ସ୍ଥଳରେ ଦେଶ ଓ ନଗର ମାନଙ୍କର ବର୍ଣ୍ଣନା ପ୍ରଦତ୍ତ । ଲାବଣ୍ୟବତୀରେ ସିହଳ ଦ୍ୱୀପ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଚମ୍ପାପୁର ଓ ପୁଷ୍ପପୁର,ବୈଦେହୀଶ ବିଳାସରେ ଲଙ୍କା ନଗରୀର ଚିତ୍ର ଦେଖିବାକୁ ମିଳେ । ସିଂହଳବାସୀଙ୍କ ବିପୁଳ ଐଶ୍ୱର୍ଯ୍ୟର ବର୍ଣ୍ଣନା ଅତିରଂଜିତ ହେଲେ ହେଁ ପଣ୍ଡିତ-ପାଠକମାନଙ୍କ ପାଇଁ ଖୁବ୍ ଆକର୍ଷଣୀୟ । (ଲା : ୨/୧-୨୪) ଚମ୍ପାନଗରୀର ଚିତ୍ର ଉପସ୍ଥାପନ ବେଳେ କବି ନୈଷଧୀୟ ପରିକଳ୍ପନାର ଅନୁସରଣ କରିଛନ୍ତି । ଅଳକା ଓ କାଞ୍ଚି ନଗରୀ ଶୋଭାନ୍ୟୂନତା ହେତୁ ତରୁଣୀର ଶରଣାପନ୍ନ ହେବା ଏବଂ କମ୍ପ, ସ୍ତମ୍ଭ, ତନ୍ଦ୍ରା ଆଦି ବିକାର ଲାଭ କରିବା ନିଶ୍ଚିତ ଭାବେ ଶୃଙ୍ଗାର ଭାବନା ଯୁକ୍ତ । ନଗରର ବହି ଦ୍ୱାରର ଶୋଭା ପ୍ରସଂଗରେ ଏହାର କଳଶ, ଦ୍ରୋଣସ୍ତମ୍ଭ ଓ ନାରୀପଦ ନୂପୁର ଯଥାକ୍ରମେ କୁଚ, ବାହୁ ଓ ବାଦ୍ୟରୂପେ ସ୍ୱୀକୃତି ପାଇଛି । ଏଠାକାର କନ୍ୟାସ୍ତମ୍ଭ ଗୁଡିକୁ ରୂପଜୀବା ମନେ କରି ବିଦେଶାଗତ ପଥିକ କାମ ପୀଡାରେ ଅଧୀର ହେବା ବେଶ୍, କୌତୁହଳୋଦ୍ଦୀପକ । (କୋ : ୨/୭, ୨/ ୧୫, ୨/୧୭-୧୮) ଲଙ୍କା ନଗରୀର ବର୍ଣ୍ଣନା ପ୍ରସଂଗରେ ରାବଣର ରାଜ ଅନ୍ତପୁରର ଶୃଙ୍ଗାର ରସଘନ ଚିତ୍ର ଉପସ୍ଥାପନ କରାଯାଇଛି । ହସ୍ତୀ ମଦ୍‌ଥିତ ପଦ୍ମିନୀଲତା ଭଳି ସ୍ଥାନେ ସ୍ଥାନେ ଶାୟିତା ସଂଭୋଗ କ୍ଳାନ୍ତା ଦିବ୍ୟାଙ୍ଗନାମାନଙ୍କର ଅଂଗ ଶୋଭା କିଂବା ରାବଣ- ଅଙ୍କଶାୟିନୀ ବାରାଙ୍ଗନାର ପୂର୍ଣ୍ଣ କୁମ୍ଭ ସମ ସ୍ତନଦ୍ୱୟର କଳ୍ପନାରେ ଗଭୀର ଆନ୍ତରିକତା ପ୍ରଦର୍ଶିତ । ନଗରର ବାସ୍ତବ ବର୍ଣ୍ଣନା ଅପେକ୍ଷା ତନ୍ମୟ ଶୃଙ୍ଗାର ଭାବନା ପ୍ରସଂଗଟିକୁ ଅଧିକ ରସସିକ୍ତ କରିଛି । (ବୈ :ବି :- ୩୪/୨୯-୩୭)

**ପ୍ରକୃତି ଓ ପରିବେଶ :**

'ବୈଦେହୀଶ ବିଳାସ'ରେ ଉପେନ୍ଦ୍ର ଭଂଜ ଗଂଗା ଓ ଗୋଦାବରୀ ନଦୀର ଉଲ୍ଲେଖ କରିଛନ୍ତି । ଶ୍ରୀରାମଙ୍କ ଗଂଗାରେ ନୌଯାତ୍ରା ଏକ ପ୍ରସିଦ୍ଧ ଓ ସର୍ବାଦୃତ ଛାନ୍ଦ । ମାତ୍ର ଗୋଟିଏ ପଦରେ ଗଂଗାଙ୍କୁ 'ଉଚ୍ଛନ୍ନ ରତି ସମାନ' ବୋଲି ଅଭିହିତ କରାଯାଇଛି । (୯/୧) ସେହିପରି ଅନ୍ୟତ୍ର ଗୋଦାବରୀ ଶୁକ୍ଳା - ଅଭିସାରୀ-ରୂପେ କଥିତ । (୨୨/୫୩) ନଦୀ ବର୍ଣ୍ଣନାରେ ଭଂଜଙ୍କ କୃତିତ୍ୱ ସୀମିତ କହିଲେ ଚଳେ । ସେହିପରି ପର୍ବତ ଦୃଶ୍ୟ ଅଙ୍କନ କଲାବେଳେ କବି ନାରୀ ଦେହକୁ ସ୍ମରଣ କରିଛନ୍ତି । 'ସୁଭଦ୍ରା ପରିଣୟ'ରେ ରୈବତକର ଦୀର୍ଘ ବର୍ଣ୍ଣନା ରହିଛି । ଗିରିଶୃଙ୍ଗକୁ ଅବନୀ ବନିତାର ସ୍ତନ ଓ ମଣି ଗହ୍ୱରକୁ ସ୍ମରଶାସ୍ତ୍ର ରୂପେ ଏଠାରେ କଳ୍ପନା

କରାଯାଇଛି । (୫/୩, ୫/୮) କବିଙ୍କ ଅରଣ୍ୟ ବର୍ଣ୍ଣନାରେ ମଧ୍ୟ ଏହି ଭାବନା ପରିଲକ୍ଷିତ । 'ବୈଦେହୀଶ ବିଳାସ'ରେ ଶାପମୁକ୍ତା ଅହଲ୍ୟା ଓ ଅରଣ୍ୟ (କାମ୍ୟକ ବନ)ର ଏକ ଦୀର୍ଘ ଆଳଂକାରିକ ଚିତ୍ର ପ୍ରଦତ୍ତ । ଯେପରି -

ବାସରେ ଆଛନ୍ନ ଶୋଭା ତୁଙ୍ଗ ପୟୋଧରେ
ବାସରେ ଆଛନ୍ନ ଶୋଭା ତୁଙ୍ଗ ପୟୋଧରେ ।
(ବୈ.ବି : ୭/୩୬)

ନାୟକ ନାୟିକାଙ୍କ ପ୍ରେମାଳାପ ଛରିଆରେ ପ୍ରକୃତିର ରୂପ ସଂଭାର ଅପୂର୍ବ ସୁଷମାରେ ମଣ୍ଡିତ ହେବା ସଂଗେ ସଂଗେ ଯମକ, ଅନ୍ତର୍ଲିପି, ବହର୍ଲିପି, ସିଂହାବଲୋକନ, ଗୋମୂତ୍ରିକା ଆଦି ଅଳଂକାର ପ୍ରୟୋଗରେ କାବ୍ୟିକ କ୍ଲିଷ୍ଟତା ଲାଭ କରିଛି । ଚିତ୍ରକୂଟ ଅରଣ୍ୟକୁ ଏକ ବନିତା ଏବଂ ଝିଲ୍ଲି ଝଂକାରକୁ ବାଳା-ପଦ-ଅଳଂକାର ଧ୍ୱନି ବୋଲି କୁହାଯାଇଛି । (୧୯/୩) ପଞ୍ଚବଟୀର ତରୁ ସମୂହରେ ପୁତ୍ରବତୀ, ବ୍ୟଭିଚାରୀ, ନଷ୍ଟଦୂତୀ, ସ୍ୱୟଂଦୂତୀ ନାୟିକାର ଭାବ ଆରୋପଣ ଶୃଙ୍ଗାରଭାବନାର ପୁଷ୍ଟି ସାଧନା କରେ । (୨୨/୬୮-୭୮) ପୁଷ୍ପିତ କଦମ୍ବ ବୃକ୍ଷର ଶୋଭା ନିରୀକ୍ଷଣ କରି ବିରହୀ ରାମଚନ୍ଦ୍ରଙ୍କ ବିବସନା ପ୍ରିୟତମାର ରୋମାଞ୍ଚିତ ଶରୀରକୁ ସ୍ମରଣ କରିବା କବିଙ୍କ ରସିକତାର ଅନ୍ୟତମ ନିଦର୍ଶନ । ଯଥା :-

ବିବସନ କରି ନଖ ଚାଳନ୍ତେ କିଂଚିତ
ବିବଶରୁ ହେବ କି ରୂପେ ରୋମାଞ୍ଚିତ । (ବୈ.ବି ୨୭/୨)

'ରସଲେଖା' କାବ୍ୟରେ ବର୍ଣ୍ଣିତ ରସୋଦୟ ବନର ପରିକଳ୍ପନା ସେହିପରି କମୋଦ୍ଦୀପକ । ସେ ଭୂମିରେ ଉପଗତ ହେବା ମାତ୍ରେ ଉର୍ଦ୍ଧ୍ୱରେତା ଋଷିମାନଙ୍କ ମତି ବିଭ୍ରମ ହେବା ବିସ୍ମୟ କର ଘଟଣା । 'ଛାନ୍ଦ ଭୂଷଣ'ରେ ଗୋ ବତ୍ସା-ଚାରଣ=ବନଭୂମିକୁ ଚତୁରୀ ନାରୀ ସହ ତୁଳନା କରାଯାଇଛି । ତରୁଲତା ଶ୍ରେଣୀ ଏଠାରେ କାମୀ କାମିନୀ, ପୁଷ୍ପବତୀ, ବାସକ ସଜ୍ଜିକାଦି ରୂପେ ଚିତ୍ରିତ । ସୁତରାଂ ଅଧିକାଂଶ ସ୍ଥଳରେ ନଦୀ, ପର୍ବତ, ଅରଣ୍ୟାଦି ନିଜ ନିଜର ସ୍ୱାଭାବିକତା ହରାଇ କାମ ବା ଭୋଗ ବାସନା ସହ ସଂପର୍କ ସ୍ଥାପନା କରିଛନ୍ତି ।

ଗ୍ରୀଷ୍ମ, ବର୍ଷା, ବସନ୍ତାଦି ଋତୁମାନଙ୍କ ଚିତ୍ରଣରେ ମଧ୍ୟ ଏହି ଭାବନା ପରିଲକ୍ଷିତ । 'ଲାବଣ୍ୟବତୀ'ରେ ଗ୍ରୀଷ୍ମକୁ ପ୍ରୌଢ଼ା ଯୁବତୀ, ଭ୍ରମର ଗୁଂଜନକୁ ରସିକର ଚାଟୁ, ଦାବାଗ୍ନିକୁ ବିରହାନଳ ରୂପେ ପରିକଳ୍ପନା କରାଯାଇଛି । (ଲା : ୯/୧-୨) ଅନ୍ୟତ୍ର ଗ୍ରୀଷ୍ମ କାଳର ଶୁଷ୍କ ନଦୀକୁ ଜରତୀ ସହ, ରସିକ ରାଜାର ରାଣୀ ସହ ଏକତ୍ର ବାସକୁ ପୁଷ୍କରଣୀରେ ମହିଷୀର ନିବାସ ସହ, ମୃଗର ପ୍ରକଟ ରସନାକୁ ବିପରୀତ-ରତା ସହ, ପତ୍ରହୀନ ତରୁକୁ ଗତାନ୍ତ - ନାୟିକା ସହ ତୁଳନାରୁ ଗ୍ରୀଷ୍ମ ବର୍ଣ୍ଣନାର ସ୍ୱରୂପ ସହଜରେ ଅନୁମେୟ । (ଲା :୪୦/୨) 'ପ୍ରେମ ସୁଧାନିଧି'ରେ ପ୍ରବାସୀ ନାୟକ ଦିବ୍ୟ-ଉରୁ ଅବଲମ୍ବନକୁ ଗ୍ରୀଷ୍ମ ଉତ୍ତାପ ଅତିକ୍ରମ କରିବାର ଏକମାତ୍ର ପନ୍ଥା ବୋଲି ମନେ କରିଛି । (ପ୍ରେ: ୧୨/୨୦) 'ବୈଦେହୀଶ ବିଳାସ'ର ବର୍ଷା ବର୍ଣ୍ଣନା ମେଘଦୂତର ସ୍ମୃତି ଜାଗରିତ କରେ । (ବୈ:୨୯ଶ) ମାତ୍ର 'ଲାବଣ୍ୟବତୀ' ରେ ବର୍ଷାର ଚିତ୍ର ରସିକତାପୂର୍ଣ୍ଣ । ଆକାଶରେ ନବ ମେଘମାଳାର ସଂଦର୍ଶନରେ ନାୟିକାର କାମପୀଡା ଓ ଏଥି ନିମନ୍ତେ ସଖୀମାନଙ୍କର ବିବିଧ ଉପଚାର ଆୟୋଜନ ଅତୀବ ରମଣୀୟ । (ଲା:୨୨/୧) 'ସୁଭଦ୍ରା ପରିଣୟ'ରେ ବର୍ଷାର ପ୍ରାକୃତିକ ଦୃଶ୍ୟ ବିସ୍ତୃତ ଓ ସ୍ୱାଭାବିକ । ମାତ୍ର କ୍ଲିଷ୍ଟ ବର୍ଣ୍ଣନା ରୀତି ଯୋଗୁଁ ଏହାର ନିରସ । ପ୍ରସଂଗ କ୍ରମେ ଦର୍ଦ୍ଦୁରର ଧୈବତ୍ ରାଗକୁ ସୁରତ ରାଗ ରୂପେ ସ୍ୱୀକୃତି ମିଳିଛି । ଯଥା :-

ରାଗ ଧଇବତ,

ସୁରତ ରାଗେ ଲୋକ ଗାଏ ଗୀତ । (ସୁ.ପ - ୧୭/୨୦)

ବସନ୍ତର ଶୋଭା ବର୍ଣ୍ଣନାରେ କବିଗଣ ସାଧାରଣତଃ ଶତମୁଖ । ମଧ ଯୁଗର ଅନ୍ୟ କବି ମାନଙ୍କ ପରି ଉପେନ୍ଦ୍ରଙ୍କ କାବ୍ୟରେ ଏହାର ଲଳିତ ଓ ମଧୁର ଅଭିବ୍ୟକ୍ତି ଦୃଷ୍ଟିଗୋଚର ହୁଏ । ଯଥା :-

ମଳୟ ଶିଖରୀ ଶିରୀ ଚୋରି କରି ବହିଲାଣି ମନ୍ଦ ସମୀର । (ଲା : ୫/୨)
ଅତନୁ ଫୁଲର ବିଶିଖ କାର୍ମୁକ ଘେନି ଚଢିଲାଣି କାମୁକେ । (ଲା : ୫/୩)

* * * *

ଅତି ରସମୟ ବସନ୍ତ ସମୟ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ରଚାଇ ଚର୍ଚ୍ଚରୀ ବିହାର (କୋ : ୬/୧)

ମାତ୍ର ସବୁ ସ୍ଥଳରେ କନ୍ଦର୍ପର ଔଦ୍ଧତ୍ୟକୁ ଲକ୍ଷ୍ୟ କରିବାର କଥା । ଅନ୍ୟାନ୍ୟ ଋତୁର ଚିତ୍ରଣ ମଧ ଏହିପରି ଶୃଙ୍ଗାର ଭାବନା ଦ୍ୱାରା ରୁଦ୍ଧିମନ୍ତ ।

ଉପବନ ବିହାର, ସରୋବର ସ୍ନାନ, ସ୍ୱପ୍ନ ଦର୍ଶନ ବା ବିବାହ ଆଦି ବର୍ଣ୍ଣନା ପ୍ରସଂଗରେ କବିର ଭାବନା ଶୃଙ୍ଗାର ରସସିକ୍ତ । ନାୟିକା ଲାବଣ୍ୟବତୀର ସହଚରୀ ମାନଙ୍କ ସହ ଉପବନ ପ୍ରବେଶକୁ ମନ୍ମଥର ରଥଯାତ୍ରା ସହ ତୁଳନା କରାଯାଇଛି । ଅନ୍ୟତ୍ର ତାର କନିଅର ଫୁଲ ପ୍ରତି ଆସକ୍ତିକୁ ବୀରର ଆଲିଙ୍ଗନ ପାଶରେ ଆବଦ୍ଧ ସୁନ୍ଦରୀର ମଲ୍ଲି ଉଚ୍ଚାରଣ ବୋଲି ଛଳୋକ୍ତି ପ୍ରକାଶ ପାଇଛି । ଯଥା :-

ମନମଥ ରଥ ଯାତ୍ରା କି କରୁଛି ପଥ ମନୋରଥ ପୂରାଇ । (ଲା: ୫/୭)

* * *

ବଣ କରବୀରେ ହୋଇଲା ଉଭାରୁ ମଲ୍ଲି ମଲ୍ଲି ହେଉ କି ପାଇଁ । (ଲା: ୫/୧୭)

ସେହିପରି ନାୟିକାର ସରୋବର ସ୍ନାନ କାଳୀନ ଦୃଶ୍ୟ ଅତୀବ ରସାଳ ଓ ଉପଭୋଗ୍ୟ । ଏଥିରେ ବାସ୍ତବତା ସହିତ ନାରୀ ଦେହ ପ୍ରତି ଗଭୀତ ଆସକ୍ତି ପ୍ରକଟିତ । ଲୋକପ୍ରିୟତା ଦୃଷ୍ଟିରୁ ପଦ ଗୁଡିକ କାଳର ସୀମା ଅତିକ୍ରମ କରିପାରିଛି । ଉଦାହରଣ ସ୍ୱରୂପ :-

କବି ବିଚାରିଲା ବିଚିତ୍ର ହେଲା ତୁମ୍ଭି ବୁଡିଲା । (ଲା : ୬/୧୧)

* * *

ଉଭାନ ପ୍ଲବନେ ଉରଜମାନେ କି ମନୋହର । (ଲା: ୬/୩୧)

* * *

ନାରୀ ବାରି ବାରି ନୋହିଲା ତହିଁ ଘଡିଏ ଯାଏ (ଲା : ୬/୩୪)

ଲାବଣ୍ୟବତୀର ସ୍ୱପ୍ନ ଦର୍ଶନ ଓ ସ୍ୱପ୍ନାନ୍ତ ବିଳାପ ଦୃଶ୍ୟରେ ପରିବେଶକୁ ଯଥାକ୍ରମେ ରସ ମଧୁର ଓ କାରୁଣ୍ୟ ଜର୍ଜର କରାଯାଇଛି । ଏକ୍ଷେତ୍ରରେ ନାୟିକାକୁ କେତେବେଳେ ସୁବାସ ମନ୍ଦିର ବା କେତେବେଳେ ଅଣିମାଦି ସୁଖଦାୟୀ ଏବଂ ନାୟକକୁ କେତେବେଳେ ମର୍ତ୍ତ୍ୟର ଇନ୍ଦ୍ର, କେତେବେଳେ ଫୁଲଶର ନଥିବା ମାର ବା କେତେବେଳେ କଳଙ୍କରହିତ ସୁଧାକର ବୋଲି କୁହାଯାଇଛି । (ଲା : ୧୧ଶ) ସବୁଠାରେ ଦେହ ଭୋଗର ଅଦମ୍ୟ ତୃଷା ।

ଗୋଟିଏ ସ୍ଥାନରେ ବିବାହ ମଣ୍ଡପକୁ ମଧ୍ୟ ଏକ ସୁନ୍ଦରୀ ରୂପେ କଳ୍ପନା (ମଣ୍ଡପ ଯେମନ୍ତ ତହିଁ ପ୍ରଧାନ ସୁନ୍ଦରୀ , ଲା : ୩୦/୨ ) କରାଯାଇଛି । ଏହା ଭଂଜୀୟ ଶବ୍ଦ - ଚାତୁର୍ଯ୍ୟର ଅନ୍ୟତମ ପ୍ରମାଣ । ମାତ୍ର ଏଥିରେ ଶୁଷ୍କ - ରସିକତା ପ୍ରତିଫଳିତ । ମନେହୁଏ ପରିବେଶର ଗୁରୁତ୍ୱ ପ୍ରତି ଲକ୍ଷ୍ୟ ନରଖି କେବଳ ଆଭିମୁଖ୍ୟ ଦୃଷ୍ଟିରୁ କବି ଏସବୁ ସଫଳ/ଅସଫଳ ସଂଯୋଜନାର ଉଦ୍ୟମ କରିଛନ୍ତି ।

**ଉପସଂହାର :-**

ଉପେନ୍ଦ୍ରଭଂଜଙ୍କ ସଂଭୋଗ ଓ ବିପ୍ରଲମ୍ଭ ବର୍ଣ୍ଣନାରେ ଦେହ ବା ଇନ୍ଦ୍ରିୟର ପ୍ରାଧାନ୍ୟ ଅବଶ୍ୟ ରହିଛି । ମାତ୍ର ଏଥିରେ ପ୍ରୀତିର ମହନୀୟତା , ଦେହୋତ୍ତର ଭାବନା, ଇନ୍ଦ୍ର/କୁବେର ସଂପଦର ତୁଚ୍ଛତା, ଅଣିମାଦି ସୁଖର ପରିକଳ୍ପନା ମଧ୍ୟ କରାଯାଇଛି । ନାୟକ ଓ ନାୟିକା ଚରିତ୍ରରେ ଶୃଙ୍ଗାରାତିରିକ୍ତ ଦ୍ୟୁତି ନାହିଁ କହିଲେ ଚଳେ । ନଦୀ, ଅରଣ୍ୟ, ବର୍ଷା, ବସନ୍ତ, ସ୍ୱପ୍ନ, ସ୍ୱପ୍ନଭଙ୍ଗ, ଯୁଦ୍ଧ, ଶିକାର ଆଦି ବର୍ଣ୍ଣନାରେ ନାରୀ ବା ନାରୀର ବିଭିନ୍ନ ଅଂଗ ତଥା ରତି ବା ବିପରୀତ ରତିର ସାଦୃଶ୍ୟ ଦେଖିବାକୁ ମିଳେ । ଭଂଜୀୟ ଶୃଙ୍ଗାର ଭାବନାର ଅନୁଶୀଳନ କ୍ଷେତ୍ରରେ ଏହା ଏକ ସଂକ୍ଷିପ୍ତ ଉଦ୍ୟମ ମାତ୍ର ।

ଭି.ଏ - ୧୪/୨
ୟୁନିଟ୍ - ୨, ଭୁବନେଶ୍ୱର

# ସାହିତ୍ୟରେ ଔଚିତ୍ୟ ବିଚାର

## ପ୍ରଫେସର୍ ଡକ୍ଟର ଗଙ୍ଗାଧର ବଳ

ସଂସ୍କୃତ ସାହିତ୍ୟ ସମାଲୋଚନାର ଏକ ଉଲ୍ଲେଖ ଯୋଗ୍ୟ ବୈଶିଷ୍ଟ୍ୟ ହେଉଛି ଏହିଯେ ସାହିତ୍ୟ କଳାର ବ୍ୟାପକ ଦର୍ଶନ ଅନୁସନ୍ଧାନରେ ସାହିତ୍ୟତତ୍ତ୍ୱବିତ୍ ମାନେ କାବ୍ୟ, ନାଟକ, ଗଦ୍ୟ ଓ ପଦ୍ୟକୁ ପୃଥକ୍ ବିଚାର କରନ୍ତି ନାହିଁ । ଭରତ ମୁନି ନାଟ୍ୟଶାସ୍ତ୍ରରେ ନାଟକର ସଂଜ୍ଞା ଦେବାକୁ ଯାଇ କହିଛନ୍ତି : ଏହା ତ୍ରିଭୁବନର ଅନୁକରଣ । ବିଭିନ୍ନ ସ୍ୱଭାବର ଲୋକଙ୍କର କ୍ରିୟାକଳାପର ଅଭିବ୍ୟକ୍ତି ଫଳରେ ଭରତ 'ଲୋକଧର୍ମୀ' ଚିନ୍ତାଧାରାର ଉପସ୍ଥାପନ କରିଛନ୍ତି । 'ଲୋକଧର୍ମୀ' ଶବ୍ଦର ଅର୍ଥ ହେଉଛି : ଜଗତ୍‌ର ଧର୍ମ ବା ପ୍ରକୃତି (ସ୍ୱଭାବ) ଏବଂ ଏହା ଭରତଙ୍କର ରଂଗମଂଚର ବାସ୍ତବ ବିଭାବକୁ ସୂଚିତ କରେ । 'ପ୍ରକୃତି' ଚିନ୍ତାଧାରାରେ ଭରତ ଜଗତ୍‌ରେ ଦେଖାଯାଇଥିବା ବିଭିନ୍ନ ପ୍ରକାର ମାନବିକ ପ୍ରକୃତି ସମ୍ପର୍କରେ ଆଲୋକପାତ କରିଛନ୍ତି । 'ପ୍ରବୃତ୍ତି' ଚିନ୍ତାଧାରାରେ ସେ ପୋଷାକ ପରିଧାନ ଓ ଅନ୍ୟାନ୍ୟ କ୍ରିୟାକଳାପରେ ପ୍ରାଦେଶିକ, ଜାତିଗତ ଓ ଜାତୀୟ ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି । ସେ 'ଆହାର୍ଯ୍ୟ ଅଭିନୟ' ପୋଷାକ ଓ ନେପଥ୍ୟବିଧାନ (ଯାହାକି ରସ ଓ ଭାବର ଉପଯୋଗୀ ହେବା ଆବଶ୍ୟକ) ସଂପର୍କରେ ବିସ୍ତୃତଭାବରେ ଆଲୋଚନା କରିଛନ୍ତି ।

ଭାବାନୁଯାୟୀ ନାଟକରେ ଶୁଦ୍ଧ ବଚନିକାର ଯଥାର୍ଥ ମାର୍ଗ, ପ୍ରତ୍ୟେକ ଭାବ ପାଇଁ ଯଥୋଚିତ ସ୍ୱର, ବିଭିନ୍ନ ରସ ଓ ଭାବୋପଯୋଗୀ ସଂଗୀତ ମୂର୍ଚ୍ଛନା ଏବଂ ଜାତ୍ୟଶଂକର ବିଚାର ପାଇଁ ସେ ପୃଥକ ବିଭାଗ କରିଛନ୍ତି । ଭରତ ନାଟ୍ୟବିଷୟ ବସ୍ତୁ ବିଶ୍ଳେଷଣ କରିଛନ୍ତି ଏବଂ କୋମଳତା ଓ ପରୁଷତା ପ୍ରଭୃତି ଶବ୍ଦଗୁଣ ଓ ଅଳଙ୍କାର ରୂପରେ ପ୍ରକାଶିତ ନହୋଇଥିବା କଳ୍ପନା-ଚାତୁର୍ଯ୍ୟ ପରିବେଷିତ ମାନସିକ ବ୍ୟବସ୍ଥା ଓ ରସର କିପରି ଉପଯୋଗୀ ହେବା ଉଚିତ୍, ତାହା ସୂଚିତ କରିଛନ୍ତି । ଏହିପରି ଭାବରେ ପ୍ରତ୍ୟେକ ବିଚାର ଶେଷରେ କେଉଁଟା କାହାପାଇଁ ଉପଯୋଗୀ, ଭରତ ତା'ର ସୂଚନା ଦେଇଛନ୍ତି । ନାଟକ ବିଚାରରେ ଶୈଳ୍ପିକ ସାର୍ଥକତାର ଭିତ୍ତି ହେଉଛି ଏହି ଜଗତ୍ । ଭରତ ଜୋର ଦେଇ କହିଛନ୍ତିଯେ ମାନବିକ ପ୍ରକୃତିର ଅଗଣିତ ବୈଚିତ୍ର୍ୟ ସମ୍ପର୍କରେ ନାଟ୍ୟକାରକୁ ଅବଗତ ହେବାକୁ ହେବ ; ଏହା ଉପରେ ନାଟ୍ୟ ପ୍ରତିଷ୍ଠିତ (୧) ।

ଭରତଙ୍କ ଅନୁଯାୟୀ ନାଟକ ହେଉଛି ଭାବାନୁକୀର୍ତ୍ତନ । ଏହି ଭାବରୁ କ୍ରିୟା, ଚରିତ୍ର , ପୋଷାକ ଓ ବକ୍ତବ୍ୟର ପ୍ରକୃତି ଆଦିର ପ୍ରେରଣା ଆସିଥାଏ । ଅନ୍ୟସବୁ ବସ୍ତୁମୂଳରେ ରହିଛି ରସ, ପୁଣି ସେଗୁଡିକର ଉପସ୍ଥାପନରେ ଯୌକ୍ତିକତା ରହିଛି କି ନାହିଁ, ବିଚାର କରିବାକୁ ହେବ । ବିଭିନ୍ନ ଭାବରେ ବସ୍ତୁଗୁଡିକର ବିଚାର ହୋଇ ପାରିବ ନାହିଁ । ଗୁଣ କିମ୍ବା ଦୋଷ ଚିରନ୍ତନଭାବରେ ସ୍ୱଭାବତଃ କୌଣସି ବସ୍ତୁର ନଥାଏ । ଏହା ସାଧାରଣତଃ ପରିସ୍ଥିତି ଅନୁଯାୟୀ ଦେଖାଯାଇଥାଏ । ପରିସ୍ଥିତିର ଉପଯୋଗିତା ବା ଅନୁପଯୋଗିତାରେ ଦୋଷବା ଗୁଣ ନିହିତ ଥାଏ । ଭରତ କହନ୍ତି : ପାଦରେ ହାର, କଣ୍ଠରେ ମେଖଳା ପରିଧାନ ଅନୁଚିତ । ଏ ପ୍ରକାର ବେଶବିନ୍ୟାସ ବ୍ୟବସ୍ଥା କେବଳ ହାସ୍ୟ ସୃଷ୍ଟି କରିଥାଏ । ପ୍ରବାସରେ ଥିବା କୌଣସି ସ୍ୱାମୀର ଦୀନା ବିରହିଣୀ ସ୍ତ୍ରୀ ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ ବିଭିନ୍ନ ଅଳଂକାରରେ ମଣ୍ଡିତ କରିବାର ବର୍ଣ୍ଣନା ଗୁରୁତର ଔଚିତ୍ୟ ହାନିର ଦୃଷ୍ଟାନ୍ତ । କଳାସୃଷ୍ଟି ପ୍ରତି ସେହି ନିୟମଟି ପ୍ରଯୋଜ୍ୟ । ଯେଉଁଠି ରସର ଯଥାର୍ଥ ପରିବେଷଣ କରାଯାଇଥିବ, ସେ କ୍ଷେତ୍ରରେ କବି ଯଦି ଗୁଡାଏ ଅଳଂକାର ପ୍ରୟୋଗ କରେ, ତାହା ହେଲେ ରସ ପରିବେଷଣ

କ୍ଷେତ୍ରରେ ସେ ସବୁଠାରୁ ବଡ ତ୍ରୁଟି କରୁଛି ବୋଲି ବୁଝିବାକୁ ହେବ । ଏହି ଉପାୟରେ ରସର ଉପଯୋଗୀ ବସ୍ତୁ ଗୁଡିକର ଯଥୋଚିତ ଉପସ୍ଥାପନ ଏବଂ ଅନୁପଯୋଗୀ ବସ୍ତୁ ଗୁଡିକର ପରିହାର ହେଉଛି ଶୈଳ୍ପିକ ସୃଷ୍ଟିର ନିର୍ଯ୍ୟାସ, ଏହାହିଁ ହେଉଛି 'ଔଚିତ୍ୟ' । ସଂସ୍କୃତ ସାହିତ୍ୟ ଶାସ୍ତ୍ର ଇତିହାସରେ ପ୍ରକାଶ୍ୟଭାବରେ ରସତତ୍ତ୍ୱ ସଂପର୍କରେ ଯେପରି ସୂଚନା ରହିଛି , ପ୍ରଚ୍ଛନ୍ନ ଭାବରେ ଔଚିତ୍ୟତତ୍ତ୍ୱ ସଂପର୍କରେ ମଧ୍ୟ ସେହିପରି ସୂଚନା ରହିଛି । ଅବଶ୍ୟ ପରବର୍ତ୍ତୀ କାଳରେ ନବମ, ଦଶମ ଓ ଏକାଦଶ ଶତାବ୍ଦୀରେ ରସ ଓ ଔଚିତ୍ୟ ଏହି ଦୁଇ ତତ୍ତ୍ୱ ଉପରେ ପୁଣି ଶୃଙ୍ଖଳିତ ଭାବରେ ଗୁରୁତ୍ୱ ପ୍ରଦାନ କରାଯାଇଛି ।

ଔଚିତ୍ୟ ହେଉଛି ସମତାନ ଏବଂ ଗୋଟିଏ ଦୃଷ୍ଟିରୁ ସମଗ୍ର ଓ ଅଂଶ ପ୍ରଧାନ ଓ ଅପ୍ରଧାନ ମଧ୍ୟରେ ସମାନାନୁପାତ । ଏକ ତତ୍ତ୍ୱଭାବରେ ଏହାର ଅଭିବ୍ୟକ୍ତିର ଚୂଡାନ୍ତ ସ୍ତରରେ ଏହା (ଔଚିତ୍ୟ) କାବ୍ୟର ଜୀବିତ (ଜୀବନ) ଭାବରେ କଥିତ ହୋଇଛି ।

ମହାକବି ମାଘ ତାଙ୍କର 'ଶିଶୁପାଳ ବଧ' ମହାକାବ୍ୟରେ ରାଜନୀତିର ଦୃଷ୍ଟାନ୍ତ ସହ ଔଚିତ୍ୟ ନିୟମକୁ ସୃଷ୍ଟିକରିଛନ୍ତି । କୌଶଳ, ସମୟ ଓ ପରିସ୍ଥିତି ରାଜାଙ୍କର ନୀତିର ନିଷ୍ପତ୍ତି-କ୍ଷମ ଉପାଦାନ ହୋଇଥିବାରୁ ଏଥିପ୍ରତି ଲକ୍ଷ୍ୟରଖି ତାଙ୍କୁ ତାଂକର ଉଦ୍ଦେଶ୍ୟ ସାଧନ କରିବାକୁ ହେବ । ଶକ୍ତି କିମ୍ବା ସହିଷ୍ଣୁତାର ସ୍ୱତଃ ଅର୍ନ୍ତନିହିତ ସୁଫଳ ନାହିଁ; କିନ୍ତୁ ନୀତିର କାର୍ଯ୍ୟକାରିତାରେ ସମୟୋପଯୋଗୀ କାର୍ଯ୍ୟକ୍ରମର ପ୍ରୟୋଗରେ ଧାର୍ଯ୍ୟ ନୀତିର ସୁଫଳ ନିହିତ ଅଛି । ରାଜାଙ୍କ ପକ୍ଷରେ କେବଳ ଉପଯୋଗିତା ହେଉଛି ଉତ୍ତମନୀତି । କବି ପକ୍ଷରେ ଘଟଣାଟି ହେଉଛି ଏକା । ରସ ଓ ଭାବ ଏବଂ ସେଗୁଡିକର ସୂକ୍ଷ୍ମ ପ୍ରକୃତିର ଉପଲବ୍ଧି ସହିତ କବିର ପ୍ରଧାନ ସଂପର୍କ । ଚରିତ୍ର ଓ ସେମାନଙ୍କ କ୍ରିୟା କଳାପ ବର୍ଣ୍ଣନାରେ କବି କେବଳ ପ୍ରସାଦ କିମ୍ବା ଓଜସ କୌଣସି ଗୋଟିଏ ଗୁଣ ଉପରେ ଜୋର ଦେଲେ ଚଳିବ ନାହିଁ । ଯେତେବେଳେ ବୀର, ଅଦ୍ଭୁତ ଓ ରୌଦ୍ର ରସ ପରିବେଷଣ କରିବାକୁ ହେବ, ସେତେବେଳେ ତେଜ, ଉତ୍ସାହ, ଶକ୍ତି ଓ ଦୀପ୍ତିର ଉପଯୋଗୀ ଓଜସ୍ ଗୁଣର ଆଶ୍ରୟ ନେବାକୁ ହେବ । ଯେତେବେଳେ ମନ୍ଦ୍ର ଓ ଶାନ୍ତ ଭାବାବେଗ ସୃଷ୍ଟି କରିବାକୁ ହେବ , ସେତେବେଳେ କବିର ପ୍ରୟୋଜନୀୟ ଗୁଣ ହେଉଛି ପ୍ରସାଦ । ଏହା ହେଉଛି ଗୁଣର ଔଚିତ୍ୟ ବା ଗୁଣୌଚିତ୍ୟ ।

ପୁଣି ଗୁଣ ସଂପର୍କରେ ଭାମହ ଓ ଆଚାର୍ଯ୍ୟ ଦଣ୍ଡୀଙ୍କ ରଚନାର କେତେକ ଅଂଶରେ ଆମେ ଔଚିତ୍ୟ ଚିନ୍ତାଧାରାର ପରବର୍ତ୍ତୀ ସୂଚନା ପାଉଁ । ଗୋଟିଏ ଦିଗରେ କାବ୍ୟର ସର୍ବଶ୍ରେଷ୍ଠ ଗୁଣ ହେଉଛି ଔଚିତ୍ୟ ଏବଂ ଅନ୍ୟ ସମସ୍ତ ଗୁଣ ଏହାର ଅନ୍ତର୍ଭୁକ୍ତ । ସବୁଠାରୁ ବଡ ଦୋଷ ହେଉଛି ଔଚିତ୍ୟର ଅଭାବ ବା ଅନୌଚିତ୍ୟ ଦୋଷ । ଯେଉଁଠି ରୀତି ରସର ଉପଯୋଗୀ ନୁହେଁ, ସେଠି ରହିଛି ରୀତି ଅନୌଚିତ୍ୟ ଦୋଷ । ଦୋଷ ସେଠାରେ 'ଅରୀତିମତ୍' ନାମରେ ଅଭିହିତ ହୁଏ । ଗୌଡୀରୀତି ଶୃଙ୍ଗାର ଓ ପ୍ରେମର ଉପଯୋଗୀ ନହେଲେ ମଧ୍ୟ ସବୁ କବିତା ପ୍ରତି ଚିରନ୍ତନ ଭାରେ ଅନୁପଯୋଗୀ କହିବା ଠିକ୍ ହେବ ନାହିଁ । ଏହା ବୀର, ଅଦ୍ଭୁତ, ରୌଦ୍ର ପ୍ରଭୃତି ଶକ୍ତିଶାଳୀ ରସଗୁଡିକୁ ସାର୍ଥକ ରୂପେ ବ୍ୟଞ୍ଜିତ କରିପାରେ ଏବଂ ଏ କ୍ଷେତ୍ରରେ ଶୃଙ୍ଗାରର ଉପଯୋଗୀ ବୈଦର୍ଭୀରୀତି ଅନୁଚିତ ହୋଇପାରେ । ମଧୁର ଉଚ୍ଚାରଣ ଓ କୋମଳ ଧ୍ୱନି ଶୃଙ୍ଗାର ରସର ପରିପୋଷକ ସେଥିପାଇଁ ଭାମହ ଓ ଦଣ୍ଡୀଙ୍କ ଦ୍ୱାରା ବିଭିନ୍ନ ବିଭାଗରେ ଆଲୋଚିତ ହୋଇଥିବା ଦୋଷ ଗୁଡିକ ଅନିତ୍ୟ । ଅନ୍ୟଭାବରେ କହିବାକୁ ଗଲେ କେତେକ ପରିସ୍ଥିତିରେ ଦୋଷ ଗୁଡିକ ଦୋଷ ହୋଇ ରହନ୍ତି ନାହିଁ । ନିର୍ଦ୍ଦିଷ୍ଟ ଗୁଣ ବା ଦୋଷ ବୋଲି କିଛି ନାହିଁ । ଗୋଟିଏ କ୍ଷେତ୍ରରେ ଯାହା ଗୁଣ, ଅନ୍ୟ କ୍ଷେତ୍ରରେ ତାହା ଦୋଷ ହୋଇ ପାରେ ଏବଂ ଗୋଟିଏ କ୍ଷେତ୍ରରେ ଯାହା ଦୋଷ, ଅନ୍ୟ କ୍ଷେତ୍ରରେ ତାହା ଗୁଣ ହୋଇପାରେ ।

ଏ ପ୍ରକାର ମନ୍ତବ୍ୟ ମୂଳରେ ରହିଛି ଔଚିତ୍ୟ ବା ଅଭିଯୋଜନ; ପୁଣି ଭାମହ ତାଙ୍କର 'କାବ୍ୟାଳଙ୍କାର'ର ଚତୁର୍ଥ ଅଧ୍ୟାୟରେ କାବ୍ୟର ଏ ପ୍ରକାର ଦୋଷକୁ ଲୋକ ବିରୁଦ୍ଧ ବୋଲି କହିଛନ୍ତି । ଏହା ହେଉଛି; ଜଗତ୍ ଓ ପ୍ରକୃତିର ଘଟଣା ବିରୁଦ୍ଧରେ ଯିବା । ଏପ୍ରସଂଗରେ ସେ ସୂଚିତ କରିଛନ୍ତି ଯେ ପୁନରୁକ୍ତି ଭୟ, ଦୁଃଖ, ଇର୍ଷା, ଆନନ୍ଦ ଓ ବିସ୍ମୟ ପ୍ରକାଶ କ୍ଷେତ୍ରରେ ଏକ ଶକ୍ତିଶାଳୀ ମାଧ୍ୟମର କାର୍ଯ୍ୟ କରେ ।

ଆଚାର୍ଯ୍ୟ ଦଣ୍ଡୀଙ୍କ ସେହି ଦୋଷ ଅଧ୍ୟାୟରେ ଔଚିତ୍ୟ ନିୟମ ଅନ୍ତର୍ନିହିତ ଅଛି । ଦଣ୍ଡୀ ତାଙ୍କ ଗ୍ରନ୍ଥର (କାବ୍ୟାଦର୍ଶ) ଚତୁର୍ଥ ଅଧ୍ୟାୟରେ ଦୋଷ ସଂପର୍କରେ ଆଲୋଚନା କରିଛନ୍ତି । ଗୋଟିଏ ଗୋଟିଏ ଗୁଣ ସହିତ ପ୍ରତ୍ୟେକ ଦୋଷର ଉଲ୍ଲେଖ ରହିଛି ; ତାର ଅର୍ଥ : କେତେକ ପରିସ୍ଥିତିରେ ଦୋଷ ଗୁଡିକ ଦୋଷ ଭାବରେ ନରହି ଗୁଣରେ ପରିଣତ ହୋଇଥା'ନ୍ତି । ଦୃଷ୍ଟାନ୍ତ ସ୍ୱରୂପ 'ଅପ' ଅର୍ଥ ଏକ ଦୋଷ ହେଲେ ମଧ୍ୟ ପାଗଳର ପ୍ରଳାପ, ଶିଶୁର ମଧୁର ଦରୋଟି ବଚନ କିବା ରୋଗୀର ବକ୍ତବ୍ୟ ପ୍ରକାଶ କରିବା ପାଇଁ ଏକ ସର୍ବୋତ୍କୃଷ୍ଟ ମାଧ୍ୟମ । ବିରୁଦ୍ଧାର୍ଥ ବା ବ୍ୟର୍ଥ ଦୋଷ ପ୍ରତି ସେହି ଉକ୍ତି ପ୍ରଯୋଜ୍ୟ । ପୁନରୁକ୍ତି ଏକ ଦୋଷ ନୁହେଁ; କିନ୍ତୁ ସହାନୁଭୂତି କିମ୍ବା ପୁନରାବୃତ୍ତି ଆବଶ୍ୟକ କରୁଥିବା କୌଣସି ଭାବର ଗୁରୁତ୍ୱ ପ୍ରକାଶ ପାଇଁ ଏହା ଏକ ଶକ୍ତିଶାଳୀ ଉପାୟ । ସଂଶୟ ବା ସଂଶୟାତ୍ମକ ଶବ୍ଦ ସାଧାରଣତଃ ଦୋଷ ହୋଇପାରନ୍ତି ; କିନ୍ତୁ ଏ ପ୍ରକାର ଶବ୍ଦ ଯେତେବେଳେ ଇଚ୍ଛାକୃତ ଭାବରେ ପ୍ରଯୁକ୍ତ ହୁଅନ୍ତି, ସେତେବେଳେ ପୂର୍ଣ୍ଣ ଗୁଣର କାର୍ଯ୍ୟ କରନ୍ତି ।

ଭୋଜରାଜ 'ଗୁଣ' ଶିରୋନାମାରେ ବୈଶେଷିକ ଗୁଣ ନାମରେ ଗୁଣର ଏକ ବିଶେଷ ଶ୍ରେଣୀ ନିର୍ଦ୍ଦିଷ୍ଟ କରି ସେହି ଏକ ଚିନ୍ତାଧାରାର ବିକାଶ ଘଟାଇଛନ୍ତି । ଏ ଗୁଡିକ ହେଉଛନ୍ତି ପୂର୍ବକଥିତ ଦୋଷ, ଯାହାକୁ ଭାମହ ଓ ଦଣ୍ଡୀ ସମୟେ ସମୟେ ଗୁଣ ଭାବରେ ଗ୍ରହଣ କରିଛନ୍ତି (୨) । ଭୋଜ ସେ ଗୁଡିକୁ ଦୋଷ ଗୁଣ ନାମରେ ଅଭିହିତ କରଛନ୍ତି । ବସ୍ତୁତଃ ସବୁଗୁଣ ଓ ଦୋଷ ହେଉଛନ୍ତି ବୈଶେଷିକ । ଯଦି ଦୋଷ ଓ ଗୁଣର ବିଶ୍ଳେଷଣ କିଛି ସୂଚିତ କରିଥାଏ, ତା' ହେଲେ ସାହିତ୍ୟ ରାଜ୍ୟରେ କେବଳ ସର୍ବନିୟାମକ ଔଚିତ୍ୟ ନିୟମକ ଉତ୍ତମ ବିବେଚିତ ହୁଏ । ସେଥିପାଇଁ ଅଳଂକାରକୁ କାବ୍ୟରେ ଅନିତ୍ୟ କୁହାଯାଏ । ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ ଧ୍ୱନ୍ୟାଲୋକରେ କହନ୍ତି - ଦୋଷ ହେଉଛି ଆପେକ୍ଷିକ (ଅନିତ୍ୟ) ଏବଂ ପୃଥକ୍ ଗୁଣ ବା ଦୋଷ ବୋଲି କିଛି ନାହିଁ ।

ଅଷ୍ଟମ ଶତାବ୍ଦୀର ପ୍ରଥମାର୍ଦ୍ଧରେ କନୌଜର ରାଜା ଯଶୋବର୍ମନ ତାଙ୍କର 'ରାମାଭ୍ୟୁଦୟ' ନାଟକର ପ୍ରସ୍ତାବନାର ଏକ ଶ୍ଳୋକରେ ପ୍ରଥମକରି ଔଚିତ୍ୟ ଚିନ୍ତାଧାରାର ନାମୋଲ୍ଲେଖ କରିଛନ୍ତି । ଭୋଜ ତାଙ୍କର 'ଶୃଙ୍ଗାର ପ୍ରକାଶ'ରେ ସେହ ଶ୍ଳୋକଟି ଉଦ୍ଧାର କରିଛନ୍ତି (୩) । ଯଶୋବର୍ମନ୍ ଏଠାରେ ନାଟକର କେତୋଟି ଉତ୍ତମ ଗୁଣ କଥା ଉଲ୍ଲେଖ କରିଛନ୍ତି । ସେ ଗୁଡିକ ମଧ୍ୟରେ ବକ୍ତ୍ରୃଔଚିତ୍ୟ (ଚରିତ୍ରର ସ୍ୱଭାବ ଓ ସାମାଜିକ ସ୍ତର ଅନୁଯାୟୀ ଭାଷା) ଓ ରସଔଚିତ୍ୟ ହେଉଛନ୍ତି ପ୍ରଥମ । ଏହି ଦୁଇଟି ହେଉଛନ୍ତି : ବହିରୌଚିତ୍ୟ, ଆନ୍ତରୌଚିତ୍ୟ ।

କାବ୍ୟର କାହାଣୀର ଆବଶ୍ୟକତା ପ୍ରତି ଦୃଷ୍ଟି ନଦେଇ ପରବର୍ତ୍ତୀ କାଳର କବିମାନେ ମହାକାବ୍ୟର ବିଭିନ୍ନ ଉପାଦାନ, ଯଥା- ନଗର, ପର୍ବତ, ଋତୁ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଇତ୍ୟାଦିର ବର୍ଣ୍ଣନାର ମାତ୍ରା ପ୍ରତି ଦୃଷ୍ଟି ଦେଇ ନାହାନ୍ତି । ନାଟ୍ୟସୂତ୍ରର ଭାଷ୍ୟକାର ଲୋଲ୍ଲଟ ତାଂକର ତିନୋଟି ଶ୍ଳୋକରେ ଔଚିତ୍ୟର ଏକ ବିଭାବ ପ୍ରତି ଦୃଷ୍ଟି ଆକର୍ଷଣ କରି ଏହାର ଦୃଢ଼ ସମାଲୋଚନା କରିଛନ୍ତି । ଭୂଷଣ ଗୁଡିକ ଯଦି ଶରୀରର

ଅଂଗ ସୁଷମାର ଅନୁକୂଳ ନୁହନ୍ତି , ତା'ହେଲେ ସେ ଗୁଡିକ ଶରୀରର ଅଂଗ ସୁଷମାକୁ ପ୍ରଚ୍ଛାଦିତ କରି ଦିଅନ୍ତି । ସେହିପରି ବର୍ଣ୍ଣନା ଗୁଡିକ ପ୍ରୟୋଜନ ହେତୁ କାହାଣୀ ଓ ତାର ରସର ଜଟିଳ ମାର୍ଗରୁ ସ୍ୱତଃ ନିଃସୃତ ହେବା ଉଚିତ । ନାଟକରେ ଗୌଣ ବିଷୟଚିତ୍ର(plot), ପତାକା, ପ୍ରକରୀ ଓ ସନ୍ଧ୍ୟଂଗ କିମ୍ବା ନାଟକୀୟ ବିଷୟ ବସ୍ତୁର ଆକର୍ଷଣୀୟ ବିଭାବ ଗୁଡିକର ନିଜର କିଛି ମହତ୍ତ୍ୱ ରହିଛି ବୋଲି ବିଚାର କରିବା ଉଚିତ୍ ନୁହେଁ - ସେଗୁଡିକର ରସ ସହିତ କେତେଦୂର ପ୍ରାସଙ୍ଗିକତା ରହିଛି, ବିଚାର କରିବାକୁ ହେବ । ଆନନ୍ଦବର୍ଦ୍ଧନ ଏହାରି ଉପରେ ଗୁରୁତ୍ୱ ଦେଇଛନ୍ତି । ମହାକାବ୍ୟ ସଂପର୍କରେ ଲୋଲ୍ଲଟ ରାଜଶେଖରଂକର ପଦାଙ୍କ ଅନୁସରଣ କରିଛନ୍ତି । ରସର ମୁଖ୍ୟ ଉପାଦାନ ଓ ଅଂଶଗୁଡିକ ମଧ୍ୟରେ ପୂର୍ଣ୍ଣ ସାମଞ୍ଜସ୍ୟ, ଅନୁପାତ ଓ ସାମରସ୍ୟ ଦୃଷ୍ଟିରୁ ଔଚିତ୍ୟ ପାଇଁ ସହାନୁଭୂତି ଶବ୍ଦ ବ୍ୟବହାର କରାଯାଇପାରେ ।

ସାହିତ୍ୟ ଶାସ୍ତ୍ରର ଇତିହାସରେ ରୁଦ୍ରଟଙ୍କର ରଚନା (କାବ୍ୟାଳଂକାର) ବିଶେଷ ଗୁରୁତ୍ୱ ପୂର୍ଣ୍ଣ ଅଟେ । ଯେତେବେଳେ ସମାଲୋଚନାର ପ୍ରାଚୀନ ପଦ୍ଧତି ରସ ଓ ଧ୍ୱନିର ନୂତନ ସମାଲୋଚନା ପାଇଁ ପଥ ପରିଷ୍କାର କରୁଥିଲା, ସେତେବେଳେ ଏହା ଏକ ମଧ୍ୟବର୍ତ୍ତୀକାଳୀନ ଉପାଦାନ ଭାବରେ ଦେଖା ଦେଇଥିଲା । ଏହା କାବ୍ୟାଳଂକାର : ଏହି ପ୍ରାଚୀନ ନାମ ଧାରଣ କରିଥିଲେ ମଧ୍ୟ ଏବଂ ଶେଷରେ ଅଳଂକାର ବିଷୟରେ ଆଲୋଚନା କରିଥିଲେ ମଧ୍ୟ ଆନନ୍ଦବର୍ଦ୍ଧନଙ୍କ ପାଇଁ ପଥ ପ୍ରସ୍ତୁତ କରିଦେଇଛି । ସଂଶିତ ବିଷୟରେ ରୁଦ୍ରଟ ଔଚିତ୍ୟର ଚିନ୍ତାଧାରା ସଂପର୍କରେ ଉଲ୍ଲେଖ କରିଛନ୍ତି । ଧ୍ୱନ୍ୟାଲୋକରେ ଏ ଗୁଡିକର ଗୁରୁତ୍ୱ ପୂର୍ଣ୍ଣ ଆଲୋଚନା ହୋଇଛି । ଅଳଂକାର ସଂପର୍କରେ ରୁଦ୍ରଟ ରସର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ତାଙ୍କ ଦୃଷ୍ଟିରେ ରସର ଉପଯୋଗିତା ପାଇଁ ଅଳଂକାର ଗୁଡିକର ଅସ୍ତିତ୍ୱ ପ୍ରୟୋଜନ ହୋଇଥାଏ । ଅନ୍ୟଥା ଏଗୁଡିକର ଅସ୍ତିତ୍ୱ ମୂଲ୍ୟ ହୀନ ଅଟେ । ଅଳଂକାର ରସ ଓ ରସୌଚିତ୍ୟ ଦ୍ୱାରା ନିୟନ୍ତ୍ରିତ ହେବାର ଚିନ୍ତାଧାରା ରୁଦ୍ରଟଙ୍କ ଦ୍ୱାରା ପ୍ରକାଶ ପାଇଛି । ନାଟ୍ୟକାର ଯଶୋବର୍ମାଙ୍କୁ ଛାଡିଦେଲେ ରୁଦ୍ରଟହିଁ ପ୍ରଥମ ଅଳଂକାରିକ , ଯେ କି ଔଚିତ୍ୟ ଶବ୍ଦର ଉଲ୍ଲେଖ କରିଛନ୍ତି । କେତେ ଗୁଡିଏ ଶବ୍ଦାଳଂକାରର ଆଲୋଚନା ପରେ ରୁଦ୍ରଟ କହିଛନ୍ତି ଯେ ପ୍ରଧାନ ବିଷୟ ବସ୍ତୁର ଔଚିତ୍ୟ ପ୍ରତି ଦୃଷ୍ଟି ଦେଇ ଅଳଂକାର ଗୁଡିକର ପ୍ରୟୋଗ କରାଯିବ । ଯଥାଯଥ ସ୍ଥଳରେ ସେ ଗୁଡିକର ବିରଳଭାବେ ବିକ୍ଷିପ୍ତ ପ୍ରୟୋଗ ହେବା ଉଚିତ୍ । ରଚନାର ଦୀର୍ଘ ପରିସର ମଧ୍ୟରେ ସେଗୁଡିକ ବିଷୟ-ସନ୍ନିବିଷ୍ଟ ହୋଇ ପ୍ରଯୁକ୍ତ ହେବା ଉଚିତ୍ (୪) । ଏହା ହେଉଛି ଅଳଂକାରୌଚିତ୍ୟ; ଆନନ୍ଦବର୍ଦ୍ଧନ ଧ୍ୱନ୍ୟାଲୋକର ଦ୍ୱିତୀୟ ଅଧ୍ୟାୟରେ ଏହା ବିସ୍ତୃତ କରିଛନ୍ତି ।

ରୁଦ୍ରଟଙ୍କର ରଚନାର ପରବର୍ତ୍ତୀ ତୃତୀୟ ଅଧ୍ୟାୟରେ ଔଚିତ୍ୟ ଶବ୍ଦର ପୁନଃ ପ୍ରୟୋଗ ହୋଇଛି । ରୁଦ୍ରଟ ସେଠାରେ ଯମକ ପ୍ରଭୃତି ଶବ୍ଦାଳଙ୍କାରର ବିପଦ ସଂପର୍କରେ ସତର୍କ କରିଦେଇ କହିଛନ୍ତି ଯେ ଔଚିତ୍ୟ ସଂପର୍କରେ ଜ୍ଞାନଥିବା ବ୍ୟକ୍ତିହିଁ ସେଥିରେ ହାତ ଦେବା ଉଚିତ୍ (୫) । ଦଣ୍ଡୀଙ୍କ ପରି ରୁଦ୍ରଟ ଔଚିତ୍ୟର ଅଭିଯୋଜନ-ବିଭାବ ସଂପର୍କରେ ଉଲ୍ଲେଖ କରିଛନ୍ତି (ଦୋଷ ସମ୍ପର୍କୀୟ ଆଲୋଚନା କାଳରେ, ଯେଉଁ ଦୋଷ କେତେକ କ୍ଷେତ୍ରରେ ଗୁଣରେ ପରିଣତ ହୋଇଥାଏ ) । ରୁଦ୍ରଟ ଉପସଂହାରରେ କହିଛନ୍ତିଯେ ଯେତେବେଳେ ଦୋଷର ଅନୁକରଣ ଆବଶ୍ୟକ ହୁଏ, ସେତେବେଳେ ପ୍ରାୟ ସମସ୍ତ ପ୍ରକାର ଦୋଷ ଗୁଣରେ ପରିଣତ ହୋଇଥାଏ । କବି ଓ ନାଟ୍ୟକାରଙ୍କୁ ବିଭିନ୍ନ ପରିସ୍ଥିତିରେ ଅସଂଖ୍ୟ ପ୍ରକାରର ମନୁଷ୍ୟ ଓ ସେମାନଙ୍କର ସ୍ୱଭାବ ବର୍ଣ୍ଣନା କରିବାକୁ ହୁଏ । ଯେତେବେଳେ ଗୋଟିଏ ପାଗଳ ଚରିତ୍ରର ଉପସ୍ଥାପନ ଆବଶ୍ୟକ, ସେତେବେଳେ ତାର ବାଚାଳ ଉକ୍ତି ଅନୁସରଣ କରିବାକୁ ହୁଏ ଏବଂ ତାହା ଶିଳ୍ପୀ ଦୃଷ୍ଟିରେ ସେତେବେଳେ ଅର୍ଥପୂର୍ଣ୍ଣ ।

ରୁଦ୍ରଟଙ୍କୁ ଅନୁସରଣ କରି ଭୋଜ ତାଙ୍କର 'ସରସ୍ୱତୀ କଣ୍ଠାଭରଣ'ରେ ଗୁଣତ୍ୱ ଲାଭ କରୁଥିବା ଦୋଷ ସମ୍ପର୍କୀୟ ଆଲୋଚନାର ଆରମ୍ଭରେ ମଧ୍ୟ ଏ ପ୍ରକାର କହିଛନ୍ତି ଯଥା -

ପଦାଦ୍ୟାଶ୍ରିତ ଦୋଷାଣାଂ ଯେ ଚାନୁକରଣାଦିଷୁ ।
ଗୁଣତ୍ୱାପରଯେ ନିତ୍ୟଂ ତେଽତ୍ର ଦୋଷଗୁଣାଃ ସ୍ମୃତାଃ ॥
(ସରସ୍ୱତୀ କଣ୍ଠାଭରଣ, ୧.୮୯)

ଅନୁକରଣ ପରିସ୍ଥିତିରେ ଦୋଷ କିପରି ଗୁଣରେ ପରିଣତ ହୁଏ । ଆମେରିକାର ସମୀକ୍ଷକ ଜେ.ଇ.ସ୍ପିଙ୍ଗାର୍ଣ୍ଣଙ୍କର ମତ ବିଶ୍ଳେଷଣ କଲେ ମନେହୁଏ ସତେ ଯେପରି ସେ ଔଚିତ୍ୟ ନିୟମ ବ୍ୟାଖ୍ୟା କରିଛନ୍ତି । ସ୍ପିଙ୍ଗାର୍ଣ୍ଣ ତାଙ୍କର'Seven Arts and the seven confusion'ରେ କହିଛନ୍ତି ଯେ କାବ୍ୟ ଓ ନାଟକରେ ଦୋଷ ଓ ଗୁଣ ସୁନିଶ୍ଚିତ ନୁହନ୍ତି, କିନ୍ତୁ ଆପେକ୍ଷିକ । ସେ ମତବ୍ୟ ପ୍ରକାଶ କରିଛନ୍ତିଯେ ଆଧୁନିକ ଚିନ୍ତାଶୀଳ ବ୍ୟକ୍ତି ଉତ୍ତମ ଅଭିବ୍ୟକ୍ତିର ଜଟିଳ ବିମୂର୍ତ୍ତ ପରୀକ୍ଷା (abstract test) ଉପରେ ଯେ ଗୁରୁତ୍ୱ ଅର୍ପଣ କରିବେ , ଏହା କଳ୍ପନା କରାଯାଇ ନପାରେ ; କାରଣ ସ୍ୱାଭାବିକ ପ୍ରସଂଗରେ ଆମେ ଯେତେବେଳେ ଏହା ଲକ୍ଷ୍ୟ କରିବୁଁ, ସେତେବେଳେ ଏହା ଭଲ କି ମନ୍ଦ, ଆମେ ସ୍ପଷ୍ଟଭାବରେ କହିପାରିବୁଁ । କଳାଦୃଷ୍ଟିରୁ କୌଣସି ଶବ୍ଦର ପ୍ରୟୋଗ ମନ୍ଦ ନୁହେଁ । କୌଣସି ନାଟକ କିମ୍ବା ଗଳ୍ପରେ ନିରକ୍ଷର ଚରିତ୍ର ମୁଖରେ 'ଇଷ୍ଟେଶନ୍' ଶବ୍ଦ ଯେପରି ସ୍ୱାଭାବିକ, ସେହିପରି ଚମତ୍କାର । ରୁଦ୍ରଟଙ୍କ ଭାଷାରେ ସ୍ପିଙ୍ଗାର୍ଣ୍ଣ କହନ୍ତି ଯେ ଅନୁକରଣ କ୍ଷେତ୍ରରେ ଗୋଟିଏ ଗ୍ରାମ୍ୟଶବ୍ଦର ପ୍ରୟୋଗ ସବୁଠାରୁ ଉପଯୁକ୍ତ । ସେଥିପାଇଁ ଉକ୍ତି, ଚିନ୍ତାରାଜ୍ୟ, କ୍ରିୟା ଓ ଅନୁଭୂତିର ରାଜ୍ୟ ଏବଂ ଭାବ ଜଗତ୍‌ରେ ଯାହା ପ୍ରସଙ୍ଗୋଚିତ, ଯାହା ରସର ଉପଯୋଗୀ, ଯା'ର ବିଭିନ୍ନ ଅଂଶମଧ୍ୟରେ ପାରସ୍ପରିକ ସାମଞ୍ଜସ୍ୟ ରହିଛି , ତାହା ସର୍ବୋତ୍କୃଷ୍ଟ ଓ ସବୁଠାରୁ ସୁନ୍ଦର ।

ଏକାଦଶ ଅଧ୍ୟାୟରେ ରୁଦ୍ରଟ ଚିନ୍ତା ଓ ଭାବାବେଗ କ୍ଷେତ୍ରରେଦୋଷ ସଂପର୍କରେ ଆଲୋଚନା କରିଛନ୍ତି । ସେଠାରେ ସେ ଗ୍ରାମ୍ୟ ଦୋଷ ପର୍ଯ୍ୟାୟରେ ଦେଶ, ପରିବାର, ଜାତି, ସଂସ୍କୃତି, ସଂପଦ, ବୟସ ଓ ପଦବୀ ପ୍ରସଂଗରେ କାର୍ଯ୍ୟ ଚେହେରା ପୋଷାକ ଓ ବାକ୍ୟର ଅନୌଚିତ୍ୟ କଥା କହିଛନ୍ତି । ପ୍ରତ୍ୟେକଠି ଆମେ ଏହି ଔଚିତ୍ୟର ଉଦାହରଣ ଦେଇ ପାରିବା । ଦୃଷ୍ଟାନ୍ତ ସ୍ୱରୂପ ନ୍ୟୂନୋପମା (ନ୍ୟୂନବସ୍ତୁ ସହ ତୁଳନା) ଓ ଅଧିକୋପମା (ଉଚ୍ଚ ବସ୍ତୁ ସହ ତୁଳନା) ସାଧାରଣ ଭାବରେ ଦୋଷ ଅଟନ୍ତି ; କିନ୍ତୁ କୌଣସି ଚରିତ୍ରକୁ ବ୍ୟଙ୍ଗ କରିବାକୁ ହେଲେ ଏ ଦୁଇଟିର ପ୍ରୟୋଗ ତା'ର କୃତିତ୍ୱର ଗୂଢ଼ କାରଣ ହୋଇ ଉଠନ୍ତି ।

ଔଚିତ୍ୟ ଚିନ୍ତାଧାରା ଓ ଔଚିତ୍ୟ ଶବ୍ଦ ଧ୍ୱନ୍ୟାଲୋକରେ ସ୍ପଷ୍ଟରୂପେ ଦେଖା ଦେଇଛି ; ବହୁ କ୍ଷେତ୍ରରେ ତା'ର ବ୍ୟଞ୍ଜନା ମାତ୍ର ରହିଛି । ଔଚିତ୍ୟକୁ କାବ୍ୟର ଜୀବିତ ରୂପେ ବିଧିବଦ୍ଧ ଭାବରେ ଉପସ୍ଥାପିତ କରିଥିବା କ୍ଷେମେନ୍ଦ୍ର ଆନନ୍ଦ ବର୍ଦ୍ଧନଙ୍କଠାରୁ ପ୍ରେରଣା ଲାଭ କରିଥିଲେ ।

ଆନନ୍ଦ ବର୍ଦ୍ଧନ ରସବା ଧ୍ୱନିକୁ କାବ୍ୟର ଆତ୍ମା ବୋଲି ଉପସ୍ଥାପନ କରିଛନ୍ତି । ତାଙ୍କ ମତରେ ଧ୍ୱନି ହେଉଛି ଏକମାତ୍ର କଳାତ୍ମକ ପଦ୍ଧତି, ଯା'ଦ୍ୱାରା କବି ରସର ବ୍ୟଞ୍ଜନା ଘଟାଇଥା'ନ୍ତି ଏବଂ ସହୃଦୟ ପାଠକ ବା ଦର୍ଶକ ତାହା ଉପଲବ୍ଧି କରିଥାଆନ୍ତି । ସର୍ବତ୍ର ସୁନିପୁଣ ଭାବରେ ପ୍ରଚ୍ଛନ୍ନ ରଖାଯିବା ଦ୍ୱାରା ଏବଂ ପ୍ରତୀକ ଧର୍ମିତା ସୂତ୍ରରେ ପ୍ରଚ୍ଛାଦନ ଜନିତ ବ୍ୟଞ୍ଜନା ହେତୁ ବିଷୟବସ୍ତୁ ପାଠକ ଚିତ୍ତରେ ଅନୁକୂଳ ଆବେଦନ ସୃଷ୍ଟିକରିଥାଏ । ଏହାରି ଭିତ୍ତିରେ ଆନନ୍ଦ ବର୍ଦ୍ଧନ ଧ୍ୱନିକୁ କାବ୍ୟର ଆତ୍ମା ଭାବରେ ଉପସ୍ଥାପନ କରିଛନ୍ତି । ତାଙ୍କ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ସେ ପ୍ରକାଶ୍ୟ ଭାବରେ କହିଛନ୍ତି ଯେ ରସ ବା ରସ ଧ୍ୱନି ହେଉଛି କାବ୍ୟର

ଆତ୍ମା । ରସରେ ସବୁଠାରୁ ପ୍ରୟୋଜନୀୟ ବସ୍ତୁ ହେଉଛି ଔଚିତ୍ୟ ; ଭାବ ଓ ଅଳଙ୍କାର କିମ୍ବା ଅଳଙ୍କାର ମଣ୍ଡିତ ଶୈଳ୍ପିକ ଅଭିବ୍ୟକ୍ତି ଓ ରୀତି ହେଉଛି ରସର ବାହ୍ୟ ପୋଷାକ ମାତ୍ର । ସେ ଗୁଡିକ ରସଠାରୁ ନ୍ୟୂନ ଏବଂ ସେମାନଙ୍କର କେବଳ ଅର୍ଥ ରହିଛି । ଏହି ପ୍ରଣାଳୀରେ ଆନନ୍ଦବର୍ଦ୍ଧନ ରସ ସଂପର୍କରେ ବସ୍ତୁ ଔଚିତ୍ୟ ଓ ଅଳଂକାର ଔଚିତ୍ୟ କଥା କହିଛନ୍ତି । ତାଙ୍କ ମତରେ ଅଳଙ୍କାର ଗୁଡିକର ନିଜର କୌଣସି ଗୁଣ ନାହିଁ; ରସର ପ୍ରକାଶ ପାଇଁ ଏଗୁଡିକୁ ପ୍ରାସଙ୍ଗିକ ଓ ସହାୟକ ହେବାକୁ ହେବ; ତା' ହେଲେ ଅଳଙ୍କାର ନାମର ସାର୍ଥକତା ରହିଛି ବୋଲି ବୁଝିବାକୁ ହେବ (୭) । ଅଳଂକାର ଗୁଡିକର ଯଥୋଚିତ ପ୍ରୟୋଗ ହେଲେ 'ଅଳଂକାରୌଚିତ୍ୟ' ଘଟିଛି ବୋଲି ବୁଝାଯାଏ ।

ସେହିପରି ଆନନ୍ଦବର୍ଦ୍ଧନ ଗୁଣକୁ ରସ ସହ ଅନ୍ୱିତ କରି (କାରଣ ଗୁଣ ରସର ଅନ୍ତର୍ଭୁକ୍ତ)'ଗୁଣୌଚିତ୍ୟ' ସଂପର୍କରେ ବ୍ୟାଖ୍ୟା କରିଛନ୍ତି । ମାଧୁର୍ଯ୍ୟ ଗୁଣ ଶୃଙ୍ଗାର, ବିପ୍ରଲମ୍ଭ ଓ କରୁଣରସରେ ଅନ୍ତର୍ନିହିତ ଏବଂ ରୌଦ୍ରରସର ଗୁଣ ହେଉଛି ଦୀପ୍ତି (ହୃଦୟର ଦେଦୀପ୍ୟ ମାନ ଅବସ୍ଥା) । ସେହିପରି ଉଭୟ କ୍ଷେତ୍ରରେ ବ୍ୟବହୃତ ଶବ୍ଦ ଓ ଶବ୍ଦ ବିନ୍ୟାସ ଏପରି ହେବା ଉଚିତ ଯେପରି ଏ ଗୁଡିକ ଗୁଣ ଓ ରସର ସ୍ୱରୂପ ଓ ବାତାବରଣ ସହିତ ସାମଞ୍ଜସ୍ୟ (ସାମରସ୍ୟ) ରକ୍ଷା କରନ୍ତି କିମ୍ବା ଗୁଣ ଓ ରସକୁ ବ୍ୟଞ୍ଜିତ କରନ୍ତି । କରୁଣ ଓ ଶୃଙ୍ଗାର ପରି କୋମଳ/ସୁକୁମାର ରସର ଅଭିବ୍ୟଞ୍ଜନା ପାଇଁ କୋମଳ ତଥା ସୁକୁମାର ବର୍ଣ୍ଣ, ଅନୁନାସିକ ସଂଯୁକ୍ତ ବର୍ଣ୍ଣବିନ୍ୟାସ ପ୍ରୟୋଜନ ଏବଂ ରୌଦ୍ର ରସର ଅଭିବ୍ୟକ୍ତି ପାଇଁ ପରୁଷ ବର୍ଣ୍ଣର ପ୍ରୟୋଗ ସମୀଚୀନ ଅଟେ (୭) । ରସାନୁଯାୟୀ ବର୍ଣ୍ଣଗୁଡକର ଯଥୋଚିତ ପ୍ରୟୋଗକୁ 'ବର୍ଣ୍ଣୌଚିତ୍ୟ' କୁହାଯାଏ । ଆନନ୍ଦବର୍ଦ୍ଧନଙ୍କ ଭାଷାରେ ଏହା ହେଉଛି ବର୍ଣ୍ଣଧ୍ୱନି (ବର୍ଣ୍ଣ ଓ ଧ୍ୱନିର ବ୍ୟଞ୍ଜନାତ୍ମକତା, କୁନ୍ତକଙ୍କ ଭାଷାରେ ବର୍ଣ୍ଣ ବକ୍ରତା) । ରସର ବ୍ୟଞ୍ଜନାତ୍ମକ ପଦବିନ୍ୟାସ ବା ରସୋପଯୋଗୀ ପଦ ବିନ୍ୟାସକୁ 'ସଂଘଟନୌଚିତ୍ୟ' (ପଦ ସଂଘଟନା ଅର୍ଥ ପଦରଚନା) କୁହାଯାଏ । ଅଭିବ୍ୟକ୍ତିରେ ଯେଉଁଠି ରସର ବ୍ୟଞ୍ଜନାତ୍ମକତା ରହିଛି, ଏହା ବର୍ଣ୍ଣ, ପୃଥକ୍ ଶବ୍ଦ, ପଦ ସମବାୟ, ପ୍ରକରଣ (ବିଷୟ ବସ୍ତୁର ଅଂଶ) ହେଉ ବା ସମଗ୍ର ରଚନାର (ପ୍ରବନ୍ଧର) ଉପାଦାନ ହେଉ ରସଦୃଷ୍ଟିରୁ ସେହି ଉପାଦାନ ଗୁଡିକର ଔଚିତ୍ୟ ରହିଛି ବୋଲି ବୁଝିବାକୁ ହେବ । ଏହା ହେଉଛି ଧ୍ୱନି ଓ ଔଚିତ୍ୟ ମଧ୍ୟରେ ସଂପର୍କ ।

ଆନନ୍ଦ ବର୍ଦ୍ଧନଙ୍କର ପ୍ରବନ୍ଧ ଧ୍ୱନି ସମ୍ପର୍କୀୟ ଆଲୋଚନା, କାବ୍ୟ କିମ୍ବା ନାଟକର ସାରାଂଶ, ତାର ଏକ ସାମୂହିକ ଅର୍ଥ ଓ ମର୍ମ ସଂପର୍କୀୟ ବ୍ୟଞ୍ଜନାର ବିଚାର ବିଶେଷ ଗୁରୁତ୍ୱ ପୂର୍ଣ୍ଣ । ଏ ସଂପର୍କରେ ଔଚିତ୍ୟର ନିୟମ ହେଉଛି : ରସର ପ୍ରକାଶ ଦୃଷ୍ଟିରୁ କାହାଣୀକୁ ଗଢ଼ିବାକୁ ହେବ । ଯଦି ପ୍ରଚଳିତ କାହାଣୀକୁ କେନ୍ଦ୍ରକରି କିଛି ଲେଖାଯାଉଛି, ଯଦି ତା'ର କିୟଦଂଶ ରସର ପ୍ରତିକୂଳ ହୁଏ , ତା' ହେଲେ ରସର ଅନୁକୂଳ ହେବାଭଳି ପରିବର୍ତ୍ତନ ଘଟାଇବାକୁ ହେବ । ଘଟଣାର ବହୁଳତା ଥିଲେ ତନ୍ମଧ୍ୟରୁ ରସ ପ୍ରକାଶର ଅନୁକୂଳ ଘଟଣା ଗୁଡିକୁ ନିର୍ବାଚନ କରିବାକୁ ହେବ । ଗୁଡିଏ ଦୃଷ୍ଟାନ୍ତ - ମୂଳକ ଘଟଣା ସନ୍ନିବେଶର ପ୍ରୟୋଜନ ନାହିଁ । ଆନନ୍ଦ ବର୍ଦ୍ଧନ କହନ୍ତି ପ୍ରବନ୍ଧର ମୁଖ୍ୟ ବିଷୟବସ୍ତୁ (ଅଂଗୀ) ଓ ତାର ରସର ଉପଯୋଗୀ ହେବାଭଳି ପ୍ରବନ୍ଧର ବିଭିନ୍ନ ଅଂଗ ଏବଂ ଆନୁଷଂଗିକ ରସଗତ ଆବେଦନର ବିକାଶ ଘଟାଇବାକୁ ହେବ । ଏହିପରି ନାଟକର ମୁଖ୍ୟ ଓ ଗୌଣ ଘଟଣା, ପତାକା ଓ ପ୍ରକରୀ ଏବଂ ମହାକାବ୍ୟର ବିଭିନ୍ନ କ୍ଷେତ୍ରରେ ଔଚିତ୍ୟର ନିୟମ ମାନିବାକୁ ହେବ । ଘଟଣା ବୈଚିତ୍ର୍ୟ ମଧ୍ୟରେ ପାଠକ ଓ ଶ୍ରୋତ୍ୟମାନେ ଯେପରି ନାଟକ ଓ ମହାକାବ୍ୟର ମୁଖ୍ୟ ସୂତ୍ରକୁ ଭୁଲିଯିବାର ଅବସର ନ ପାଆନ୍ତି ।

ଶେଷରେ ଆନନ୍ଦବର୍ଦ୍ଧନ ରସସହ ସଂପୃକ୍ତ ଏବଂ ବିଭାବ, ଅନୁଭାବ ଓ ସଞ୍ଚାରୀ ଭାବ ଉଦ୍‌ବୁଦ୍ଧ କରୁଥିବା ଉପାଦାନ ଓ ଅବସ୍ଥା: ଔଚିତ୍ୟର ଏହି ଅନ୍ତରଂଗ ରୂପ ସଂପର୍କରେ ଆଲୋଚନା କରିଛନ୍ତି । ଚରିତ୍ର ଔଚିତ୍ୟ ଭାବାବେଗର ମାନବିକ ଭିତ୍ତି ରସୌଚିତ୍ୟର ଅଂଶ । ଧ୍ୱନ୍ୟାଲୋକର ତୃତୀୟ ଅଧ୍ୟାୟରେ ଔଚିତ୍ୟ ସଂପର୍କରେ ବିଶେଷ ଉଲ୍ଲେଖ ରହିଛି । ଏହି ଅଧ୍ୟାୟରେ ଆନନ୍ଦ ବର୍ଦ୍ଧନ ଔଚିତ୍ୟ ଚିନ୍ତାଧାରା ଓ କାବ୍ୟରେ ତା'ର ସ୍ଥାନ ସଂପର୍କିତ ଏକ ପ୍ରସିଦ୍ଧ ଶ୍ଳୋକ ରଚନା କରିଛନ୍ତି । ସେ କହିଛନ୍ତି : ଅନୌଚିତ୍ୟ ଠାରୁ ରସଭଙ୍ଗର କାରଣ ଆଉ କିଛି ନାହିଁ । ଔଚିତ୍ୟ ହେଉଛି ରସର ମହାନ ଗୂଢ଼ତତ୍ତ୍ୱ (୮) ।

ଆନନ୍ଦବର୍ଦ୍ଧନ ତା'ପରେ ଅନ୍ୟ ପ୍ରକାର ଔଚିତ୍ୟ ସଂପର୍କରେ ଆଲୋଚନା କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି ଯେ କେବଳ ବିଷୟ ଚିତ୍ରର ନିବନ୍ଧ ନୁହେଁ, ଅଳଂକାର ମାଧ୍ୟମରେ ଭାବର ଅଭିବ୍ୟକ୍ତି ନୁହେଁ; କିନ୍ତୁ ଶବ୍ଦରାଜି, ପ୍ରତିଶବ୍ଦ, କାରକ, ଧାତୁ ଓ ଶବ୍ଦର ରୂପ ସାଧନ, ବାଚ୍ୟ ପ୍ରଭୃତି ରସ ଦୃଷ୍ଟିରୁ ବ୍ୟଞ୍ଜନାତ୍ମକ ହେବା ଉଚିତ୍ । ଅନ୍ୟଭାବରେ କହିବାକୁ ଗଲେ କବି ଭାଷାର ସମସ୍ତ ସମ୍ଭାବନା ଆବିଷ୍କାର କରିବା ଉଚିତ୍ । ଯଦି ଧ୍ୱନିର ସମ୍ପତା ତାକୁ ସାହାଯ୍ୟ କରୁଥାଏ , ତା' ହେଲେ ରଚନାରେ ତାକୁ ସ୍ଥାନ ଦେବାକୁ ହେବ । ଯଦି କର୍ତ୍ତୃବାଚ୍ୟ ଅପେକ୍ଷା କର୍ମବାଚ୍ୟର ପ୍ରୟୋଗ ଅଧିକ ଶକ୍ତିଶାଳୀ, ତା'ହେଲେ ତା'ର ପ୍ରୟୋଗ କାମ୍ୟ । କ୍ରିୟାର ଗୋଟିଏ ରୂପ ଅନ୍ୟରୂପ ଅପେକ୍ଷା ବ୍ୟଞ୍ଜନାରେ ଅଧିକ ସାହାଯ୍ୟ କରୁଥିଲେ ତା'ର ପ୍ରୟୋଗ କରିବା ଉଚିତ୍ । ଏହିପରି ଭାବରେ ଧ୍ୱନି, ଶବ୍ଦ, ବାକ୍ୟରେ ଶବ୍ଦର ସ୍ଥାନ ଇତ୍ୟାଦି ଭାଷାର ପ୍ରତ୍ୟେକ ବିଭାବ ଆବିଷ୍କାର କରି ତା'ର ସର୍ବଶ୍ରେଷ୍ଠ ପ୍ରୟୋଗ କରିବାକୁ ହେବ । ଆନନ୍ଦବର୍ଦ୍ଧନ ପଦୌଚିତ୍ୟ ସଂପର୍କରେ ଧ୍ୱନ୍ୟାଲୋକର ତୃତୀୟ ଅଧ୍ୟାୟ ଆରମ୍ଭରେ ଆଲୋଚନା କରିଛନ୍ତି । ଆନନ୍ଦବର୍ଦ୍ଧନ ଓ କ୍ଷେମେନ୍ଦ୍ରଙ୍କର ବ୍ୟଞ୍ଜନାତ୍ମକ ଶବ୍ଦ ବା ଯଥାଯଥ ଶବ୍ଦ ଇଂରାଜୀ ସମାଲୋଚକଙ୍କ ଦ୍ୱାରା ସୂଚିତ ଅନିବାର୍ଯ୍ୟ ଶବ୍ଦ(Inevitable word) ବା ବଳିଷ୍ଠ ଶବ୍ଦ (Strong Word) ସହିତ ସମାନ । ତୃତୀୟ ଅଧ୍ୟାୟରେ ଆନନ୍ଦ ବର୍ଦ୍ଧନ 'ବୃତ୍ତି' ଓ 'ରୀତି' ଔଚିତ୍ୟ ସଂପର୍କରେ ଆଲୋଚନା କରିଛନ୍ତ । ଏଥିରେ ଭାଷା ମାଧ୍ୟମର ସମସ୍ତ ସମ୍ଭାବ୍ୟ ବ୍ୟଞ୍ଜନାତ୍ମକ ଉପାୟର ଆବିଷ୍କାର କରାଯାଇଛି ।

ରସ ସଂପର୍କୀୟ ଔଚିତ୍ୟ : ଅଙ୍ଗୀରସର କିପରି ପରିବେଷଣ କରାଯିବ, ଅଙ୍ଗୀରସକୁ ପରିପୁଷ୍ଟ କରିବା ପାଇଁ ଗୌଣରସ ଗୁଡ଼ିକର କିପରି ପରିବେଷଣ ହେବ, କେଉଁ ରସଗୁଡ଼ିକ ପରସ୍ପରର ଉପଯୋଗୀ, କେଉଁ ଗୁଡ଼ିକ ପରସ୍ପରର ଅନୁପଯୋଗୀ, ରସ ପରିବେଷଣରେ ମାତ୍ରାତିରିକ୍ତତା ପରିହାର (ଶୃଙ୍ଗାର ବା କରୁଣର ମାତ୍ରାତିରକ୍ତ ପରିବେଷଣ ପାଠକ ଚିତ୍ତରେ ବିତୃଷ୍ଣା ଆଣେ ) ଇତ୍ୟାଦି ଆନନ୍ଦ ବର୍ଦ୍ଧନ ଧ୍ୱନ୍ୟାଲୋକର ତୃତୀୟ ଅଧ୍ୟାୟରେ ଆଲୋଚନା କରିଛନ୍ତି । ଏ ସଂପର୍କରେ ଯାହାକୁ ରସଦୋଷ କୁହାଯାଏ , ରୁଦ୍ରଟ ତାଙ୍କ ରଚନାରେ ତା'ର କିଞ୍ଚିତ୍ ସୂଚନା ଦେଇଛନ୍ତି । ମୁଖ୍ୟରସ ପ୍ରବାହରେ ଯଦି କୌଣସି ଅବାନ୍ତର ପରସ୍ପର ବିରୋଧୀ ରସ ଆସି ମିଶେ ରୁଦ୍ରଟ ତାହାକୁ 'ବିରସ' ନାମକ ଦୋଷ ବୋଲି କହିଛନ୍ତି । ମୁଖ୍ୟରସ ବିକାଶ ଯଦି ମାତ୍ରା ଲଙ୍ଘନ କରେ, ଆନନ୍ଦ ବର୍ଦ୍ଧନ ତାକୁ 'ଅତି ଦୀପ୍ତି' ନାମକ ଦୋଷରେ ଅଭିହିତ କରିଛନ୍ତି ।

ରସର ପ୍ରୟୋଗ ସଂପର୍କରେ ଆନନ୍ଦବର୍ଦ୍ଧନ ସମସ୍ତ ଚିନ୍ତାଧାରାର ସମନ୍ୱୟ ସାଧନ କରି ସେ ଗୁଡ଼ିକର ଶୃଙ୍ଖଳିତ ପ୍ରକାଶ ଘଟାଇଛନ୍ତି । ନିୟମଗୁଡ଼ିକ ସଂପର୍କରେ ସେ ଦୃଷ୍ଟାନ୍ତ ଦେଇ ଦେଖାଇଛନ୍ତି ଯେ ଅତିରିକ୍ତ ରସ ଗୁଡ଼ିକର ଆବିର୍ଭାବ ମୁଖ୍ୟରସ ପ୍ରବାହରେ ସହସା ପ୍ରତିବନ୍ଧକ ସୃଷ୍ଟି କରନ୍ତି (ଅକାଣ୍ଡ ବିଚ୍ଛିତ୍ତି) । ଗୋଟିଏ ରସର ଆକସ୍ମିକ ସୂଚନା ଏବଂ ଅନୁପଯୁକ୍ତ ବାତାବରଣ ବା ପ୍ରବୃତ୍ତି ସେହି ରସ ପ୍ରବାହ କ୍ଷେତ୍ରରେ

ଦୋଷ ରୂପେ ପରିଗଣିତ । ଶେଷରେ କୁହାଯାଇଥିବା ବୃତ୍ତି-ଅନୌଚିତ୍ୟ ହେଉଛି ଭାବ, ଚରିତ୍ରର ବିକାଶ, କ୍ରିୟା, ଘଟଣାର ଚିତ୍ରଣ ଏବଂ ସଂଳାପ କ୍ଷେତ୍ରରେ ଦେଖାଯାଉଥିବା ଦୋଷ । ବୀର ଓ ରୌଦ୍ର ରସରେ ଥିବା ତୀବ୍ର ଦ୍ୱନ୍ଦ୍ୱ ଦୃଷ୍ଟିରୁ ଜଣେ ଧୀର ସ୍ୱଭାବ ବିଶିଷ୍ଟ ବ୍ୟକ୍ତିର ଚରିତ୍ର ଅନୁପଯୋଗୀ ଅଟେ । ପ୍ରେମର ଆନନ୍ଦମୟ ବାତାବରଣ ଏବଂ ବିପ୍ରଲମ୍ଭ ଓ କରୁଣ ରସର କୋମଳତା ଓ ସୌକୁମାର୍ଯ୍ୟ ଦୃଷ୍ଟିରୁ ବିଶୃଙ୍ଖଳ ପରିସ୍ଥିତି ଅନୁପଯୁକ୍ତ ଅଟେ । ଏହିପରି ଭାବରେ ଆନନ୍ଦ ବର୍ଦ୍ଧନ  ଦେଖାଇଛନ୍ତି : ଔଚିତ୍ୟ କିପରି ରସର ସବୁଠାରୁ ଗୂଢ଼ରହସ୍ୟ , ପରାଉପନିଷଦ । ରସର ଶରୀର କିମ୍ବା ପ୍ରତୀକଧର୍ମୀ ଭଙ୍ଗିର ପ୍ରତ୍ୟେକ ଅଂଶକୁ ରୂପଦାନ କରିବାରେ ଏକମାତ୍ର ଶକ୍ତିଶାଳୀ ନିୟମ ହେଉଛି ଔଚିତ୍ୟ । ଏ ସମ୍ପର୍କରେ କେବଳ ଶବ୍ଦ ନିର୍ବାଚନ, କାରକ, ଛନ୍ଦ, ପଦବିନ୍ୟାସ, ଶୈଳୀ, ଗୁଣ, ଅଳଂକାର ପ୍ରଭୃତି ବ୍ୟଞ୍ଜନାର ପ୍ରତ୍ୟେକ ମାଧ୍ୟମ ସୁବୋଧ ହୋଇଥାଏ ।

କାବ୍ୟ ମୀମାଂସାକାର ରାଜଶେଖର କାବ୍ୟିକ ବ୍ୟୁତ୍ପତ୍ତି ଓ ପାଣ୍ଡିତ୍ୟ ପ୍ରସଂଗରେ ଔଚିତ୍ୟ ସଂପର୍କରେ କହିଛନ୍ତି । ସେ ମତ ପ୍ରକାଶ କରନ୍ତିଯେ ସମସ୍ତ କାବ୍ୟିକ ସଂସ୍କୃତି ହେଉଛି ଉଚିତ୍ ଓ ଅନୁଚିତ୍ ମଧ୍ୟରେ ପାର୍ଥକ୍ୟ ନିରୂପଣ (୯) । ଏକ ବହୁଉଦ୍ଧୃତ ସଂସ୍କୃତ ଶ୍ଳୋକରେ ପୃଥିବୀରେ ମାନବ ବ୍ୟବହାରର ଉତ୍କୃଷ୍ଟ କଳା ସଂପର୍କରେ ଏହି ଏକ ଚିନ୍ତାଧାରା ପରିବେଷିତ ହୋଇଛି, ଯଥା - 'ଯେ ଦେଶ, କାଳ ଓ କାର୍ଯ୍ୟ ସଂପର୍କରେ ସଚେତନ, ସେ ପ୍ରକୃତରେ ଜଣେ ପଣ୍ଡିତ ବ୍ୟକ୍ତି । ଯେ ସଚେତ ନୁହେଁ ; ସେ ଶୁଣିଲେ ମଧ ବଧିର' ଦେଖିଲେ ମଧ ଏବଂ ଜାଣିଲେ ମଧ ଜଡ (୧୦) । ରାଜଶେଖରଙ୍କ ପତ୍ନୀ ଅବନ୍ତୀ ସୁନ୍ଦରୀ ଔଚିତ୍ୟ ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି, କାରଣ ସେ କହନ୍ତି ଯେ ପାକ (କାବ୍ୟିକ ଶକ୍ତିର ପରିପକ୍ୱତା) ହେଉଛି ରସୋଚିତ ଶବ୍ଦ, ଅର୍ଥ, ଚିନ୍ତା ଓ କଳ୍ପନା ପ୍ରଭୃତିର ନିବନ୍ଧନ (୧୧) । ରାଜଶେଖର ତାଙ୍କ ରଚନାର କବି ରହସ୍ୟ ଅଧ୍ୟାୟ ଶେଷରେ କହିଛନ୍ତି - ଔଚିତ୍ୟ ପ୍ରତି ଧ୍ୟାନରଖିଥିବା କବି ତଥାକଥିତ ଦୋଷଗୁଡିକ ପ୍ରୟୋଗ କରି ଗୁଣରେ ପରିଣତ କରେ; କିନ୍ତୁ ଅସାବଧାନ କବି ଔଚିତ୍ୟର ଅଭାବରେ ଗୁଣର ଅପପ୍ରୟୋଗ କରିଉକ୍ତିର ସୌନ୍ଦର୍ଯ୍ୟ ନଷ୍ଟ କରିଦିଏ । (୧୨)

ଧ୍ୱନ୍ୟାଲୋକର ତୃତୀୟ ଅଧ୍ୟାୟରେ ଆନନ୍ଦବର୍ଦ୍ଧନଙ୍କ ଔଚିତ୍ୟ ଆଲୋଚନାରୁ ଏହା ସ୍ପଷ୍ଟ ଯେ ରସଓ ଧ୍ୱନିତତ୍ତ୍ୱରୁ ଔଚିତ୍ୟ ସ୍ୱାଭାବିକ ଭାବରେ ସୃଷ୍ଟ ଏବଂ ଏ ତିନୋଟି (ରସ, ଧ୍ୱନି, ଔଚିତ୍ୟ) କୌଣସିମତେ ପୃଥକ ରହି ପାରିବେ ନାହିଁ । ଅଭିନବଗୁପ୍ତ କାବ୍ୟ -ଜୀବିତର ଏହି ତିନୋଟି ବିଭାବ ଉପରେ ତାଙ୍କର ଆଲୋଚନା ଦୃଢ଼ କରିଛନ୍ତି (ପ୍ରଥମେ ରସ, ତା'ପରେ ଧ୍ୱନି ଏବଂ ତା'ପରେ ଔଚିତ୍ୟ) ସେ କହନ୍ତି- ''ଉଚିତ୍ ଶବ୍ଦେନ ରସ ବିଷୟମୌଚିତ୍ୟଂ ଭବତୀତି ଦର୍ଶୟନ୍ ରସଧ୍ୱନେଃ ଜୀବିତତ୍ୱଂ ସୂଚୟତି'' ।

ଧ୍ୱନ୍ୟାଲୋକର ଦ୍ୱିତୀୟ ଅଧ୍ୟାୟରେ ଆନନ୍ଦବର୍ଦ୍ଧନ 'ଅଳଂକାରୌଚିତ୍ୟ' ସଂପର୍କରେ ବହୁତ କିଛି କହିଛନ୍ତି । ଅଭିନବ ଗୁପ୍ତ କହନ୍ତି : ଯଦି ଅଳଂକାର୍ଯ୍ୟ (ଆତ୍ମା) ରହିଛି , ତା'ହେଲେ ଅଳଂକାର ଶବ୍ଦର କିଛି ଅର୍ଥ ଅଛି ବୋଲି ବୁଝିବାକୁ ହେବ । ତାହାହିଁ ହେଉଛି ସର୍ବଶ୍ରେଷ୍ଠ 'ଅଳଂକାରୌଚିତ୍ୟ' । ଅଳଂକାର୍ଯ୍ୟ ନଥାଇ ଅଳଂକାରର ପ୍ରୟୋଗ ରହିଥିଲେ ତାହା ମୃତ ଶରୀରକୁ ଅଳଂକୃତ କଲା ପରି ହେବ । କେତେକ କ୍ଷେତ୍ରରେ ଜୀବିତ ଶରୀରକୁ ଅଳଂକୃତ କରିବା ମଧ ଅନୁଚିତ - ଯଥା ଜଣେ ସଂସାରତ୍ୟାଗୀ ବାଳତପସ୍ୱୀ ଶରୀରରେ ଖଚିତ ଅଳଂକାର ଅନୁଚିତ ଓ ହାସ୍ୟାସ୍ପଦ । ରସ ପ୍ରତି ଦୃଷ୍ଟି ନଦେଇ ଅନାବଶ୍ୟକ ସ୍ଥଳରେ ଅଳଂକାର ପ୍ରୟୋଗ ଏକାନ୍ତ ଅନୁଚିତ ।

ବକ୍ରୋକ୍ତିପରି ଔଚିତ୍ୟ ଚିନ୍ତାଧାରା କାଶ୍ମୀରର ସାହିତ୍ୟତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ଦୀର୍ଘକାଳ ଧରି ବହୁଳ ବ୍ୟବହୃତ ଶବ୍ଦ ଥିଲା । ବକ୍ରୋକ୍ତି ଅଳଂକାରରୁ ଏବଂ ଔଚିତ୍ୟ ରସ ଓ ଧ୍ୱନିର ଆବିର୍ଭାବରୁ ଜାତ ହେଲା । ଆନନ୍ଦବର୍ଦ୍ଧନଙ୍କ ପରେ ଔଚିତ୍ୟ ପ୍ରଚଳିତ ହୋଇଥିବ (ଆନନ୍ଦବର୍ଦ୍ଧନ ଏହା ସଂପର୍କରେ ବିଶେଷ ଆଲୋଚନା କରି କହିଛନ୍ତି ଯେ ଏହାର ଉପସ୍ଥିତି ଓ ଅନୁପସ୍ଥିତି ରସ ଓ କାବ୍ୟକୁ ଯଥାକ୍ରମେ ସୃଷ୍ଟିକରେ ଓ ନଷ୍ଟ କରିଦିଏ) । ଏକ ଶୃଙ୍ଖଳିତ ତତ୍ତ୍ୱରୂପରେ 'ଔଚିତ୍ୟ'ର ଉପସ୍ଥାପନ ପାଇଁ ଜଣେ ଆଳଂକାରିକଙ୍କର ପ୍ରୟୋଜନ ଉପଲବ୍ଧ ହୋଇଥିଲା । ସାହିତ୍ୟ ସମୀକ୍ଷକମାନେ ଅନେକ ସମୟରେ ରସ ଅପେକ୍ଷା ଔଚିତ୍ୟକୁ କାବ୍ୟର ସାର ବୋଲି କହୁଥିଲେ । ଏହି ସମୀକ୍ଷକ ମାନଙ୍କର ମତ ସମାଲୋଚନା କରି ଅଭିନବ ଗୁପ୍ତ କହିଛନ୍ତି- ଔଚିତ୍ୟ ଶବ୍ଦର ଏ ପ୍ରକାର ଅବିବେଚକ ପ୍ରୟୋଗ ଠିକ୍ ନୁହେଁ । ଯା'ପ୍ରତି ବସ୍ତୁ ଗୁଡିକ ଉପଯୁକ୍ତ ତା'ବିନା ଔଚିତ୍ୟ କହିଲେ କିଛି ବୁଝାଯାଏନା । ଔଚିତ୍ୟ ହେଉଛି ଏକ ସମ୍ପର୍କ ଯା' ସହିତ ବସ୍ତୁଗୁଡିକ ଅନ୍ୱିତ ହେବାଉଚିତ୍; ତାହା ରସ ବ୍ୟତୀତ ଅନ୍ୟକିଛି ନୁହେଁ । ଅଭିନବ ଗୁପ୍ତ ପ୍ରଥମତଃ ପ୍ରମାଣ କରିବାକୁ ଯାଇଛନ୍ତି ଯେ ରସ ବିନା ଔଚିତ୍ୟର କୌଣସି ଅର୍ଥ ନାହିଁ (୧୩) । ସେ ପ୍ରମାଣ କରିଛନ୍ତି ଯେ ଔଚିତ୍ୟ ରସ ଓ ଧ୍ୱନିକୁ ବୁଝାଏ । ଅଭିନବ ଗୁପ୍ତଙ୍କର ଏ ପ୍ରକାର ସମୀକ୍ଷଣରୁ ସ୍ପଷ୍ଟ ବୁଝିଯାଏ ଯେ କେତେକ ସମାଲୋଚକ ଥିଲେ, ଯେଉଁମାନେ କାବ୍ୟକୁ ବୁଝାଇବା ପାଇଁ ଔଚିତ୍ୟକୁ ଏକମାତ୍ର ତତ୍ତ୍ୱ ବୋଲି କହୁଥିଲେ । ସେମାନଙ୍କ ମତରେ ଔଚିତ୍ୟ ହେଉଛି ସୁନ୍ଦର ଭାବ ଓ ଶବ୍ଦ ରାଜିର ଶୃଂଖଳିତ ସମନ୍ୱୟ । ଏ ସମାଲୋଚକ ମାନେ ସେମାନଙ୍କର ପରିଭାଷାରୁ ରସ ଶବ୍ଦ ଲୋପକରି ନେଇ ଧ୍ୱନିକୁ ଗ୍ରହଣ କରିଥିଲେ । ଯେଉଁମାନେ ନିଜର ଉକ୍ତିର ମର୍ମ ବୁଝନ୍ତି ନାହିଁ, ଅଭିନବଗୁପ୍ତ ସେମାନଙ୍କୁ ସମାଲୋଚନା କରିଛନ୍ତି ।

ଏହିପରିଭାବରେ ଅଭିନବଗୁପ୍ତ ରସ, ଧ୍ୱନି ଓ ଔଚିତ୍ୟ ଏହି ତ୍ରିତତ୍ତ୍ୱ ଉପରେ ନିଜର ମତ ପ୍ରତିଷ୍ଠା କରିଛନ୍ତି । କୌଣସି ଅଳଂକାରକୁ ଭାବର ଉପଯୋଗୀ ବା ଉଚିତ ବୋଲି ଯଦି କୁହାଯାଏ, ଏହାର ଅର୍ଥ ସେହି ଅଳଂକାର ଭାବକୁ ସାର୍ଥକ ରୂପେ ବ୍ୟଞ୍ଜିତ କରେ । ଗୁଣୌଚିତ୍ୟ ରହିଛି ବୋଲି ଯଦି କୁହାଯାଏ, ତା'ହେଲେ ସେଠି ଗୁଣଦ୍ୱାରା ବ୍ୟଞ୍ଜିତ ହୋଇଥିବା ରସ ରହିଛି ବୋଲି ବୁଝାଯିବ । ରସର ବ୍ୟଞ୍ଜନା ହେଉଛି ଔଚିତ୍ୟର ପରୀକ୍ଷା । ଏହି ଦୃଷ୍ଟିରୁ ଗୋଟିଏ ଶବ୍ଦ, ଗୋଟିଏ ଲିଙ୍ଗ କିମ୍ବା ସାମାନ୍ୟ ଉଦ୍‌ବୋଧନକୁ ଉଚିତ ବୋଲି କୁହାଯାଇପାରେ ।

ଅଭିନବଗୁପ୍ତ ଆଉ ଏକ ଚିନ୍ତା ଉପସ୍ଥାପନ କରିଛନ୍ତି । ତାଙ୍କ ମତରେ ଔଚିତ୍ୟଭଂଗ 'ଆଭାସ'ରେ ପରିଣତ ହୁଏ । କାବ୍ୟରେ ଔଚିତ୍ୟର ଅଭାବ ହେଲେ ତାହାକୁ 'କାବ୍ୟାଭାସ' କୁହାଯାଏ । ଅନୁଚିତ ଅଳଂକାରକୁ ଅଳଂକାରାଭାସ ବୋଲି କୁହାଯାଏ । ଔଚିତ୍ୟ ରହିଥିଲେ ରସ ରହିଛି ବୋଲି ବୁଝିବାକୁ ହେବ । ପ୍ରକୃତ୍ୟୌଚିତ୍ୟ ଇତ୍ୟାଦିର ଅଭାବରେ ଯଦି ଅନୌଚିତ୍ୟ ଦେଖାଯାଏ, ତା'ହେଲେ ରସାଭାସ ଘଟିଛି ବୋଲି ବୁଝାଯିବ (୧୪) ।

**ଭୋଜରାଜ :**

ଭୋଜ ତାଙ୍କ 'ସରସ୍ୱତୀ କଣ୍ଠାଭରଣ' କିମ୍ବା ' ଶୃଙ୍ଗାର ପ୍ରକାଶ'ରେ ଔଚିତ୍ୟ ନାମକ ପୃଥକ୍ ଶିରୋନାମାରେ କୌଣସି ବିଷୟର ଉଲ୍ଲେଖ କରିନାହାନ୍ତି । କିନ୍ତୁ ତାଙ୍କ ଗ୍ରନ୍ଥ ଦୁଇଟିରେ ଔଚିତ୍ୟ ଚିନ୍ତାଧାରାର ସଂପୂର୍ଣ୍ଣ ଅଭାବ ନାହିଁ । ଏକାଧିକ ସ୍ଥାନରେ ଏକ ମୌଳିକ ଚିନ୍ତାରୂପରେ ଏହା ପରିଲକ୍ଷିତ ହୁଏ । ସାହିତ୍ୟ କ୍ଷେତ୍ରରେ ଔଚିତ୍ୟ ଚିନ୍ତାଧାରାର ଅରୁଣୋଦୟ ପୂର୍ବରୁ କୌଣସି ପ୍ରସଙ୍ଗରେ ଶବ୍ଦର ଅର୍ଥ

ନିର୍ଦ୍ଦିଷ୍ଟ କରିବାର ଅନ୍ୟତମ ଅବସ୍ଥା ଭାବରେ (ଯେଉଁଠି ଗୋଟିଏ ଶବ୍ଦର ଏକାଧିକ ଅର୍ଥଥାଏ ) ବ୍ୟାକରଣରେ ଗୃହୀତ ହୋଇଥିଲା । ଭର୍ତ୍ତୃହରି ତାଙ୍କ 'କାବ୍ୟପଦୀୟ'ରେ କହନ୍ତି -

ବାକ୍ୟାତ୍ ପ୍ରକରଣାତ୍ ଅର୍ଥାତ୍ ଔଚିତ୍ୟାତ୍ ଦେଶକାଳତଃ ।
ଶବ୍ଦାର୍ଥାଃ ପ୍ରବିଭଜ୍ୟନ୍ତେ ନ ରୂପାଦେବ କେବଳାତ୍ ।।( ୨ /୩୧୫ )

ଅନ୍ୟ ଲେଖକ (ବୟାକରଣ) ମାନେ ଏହି ଶବ୍ଦାର୍ଥ 'ପ୍ରତିଭାଜନ' ଔଚିତ୍ୟ ଇତ୍ୟାଦିକୁ 'ଅନବଚ୍ଛିନ୍ନ' ଶବ୍ଦାର୍ଥ ବିଶେଷ ସ୍ମୃତି ହେତୁସ ବୋଲି କହିଥାନ୍ତି । ଭୋଜ ତାଙ୍କର 'ଶୃଂଗାର ପ୍ରକାଶ' ରେ ଔଚିତ୍ୟର ଅର୍ଥ ନିର୍ଦ୍ଦିଷ୍ଟ କାରକ ବିଶେଷତ୍ୱ ସଂପର୍କରେ ଦୁଇଥର ଉଲ୍ଲେଖ କରିଛନ୍ତି ।

ଏକାଦଶ ଅଧ୍ୟାୟରେ ଭୋଜ ତାଙ୍କର 'ଶୃଙ୍ଗାର ପ୍ରକାଶ'କୁ 'ସାହିତ୍ୟ ପ୍ରକାଶ' ବୋଲି ଉଲ୍ଲେଖ କରିଛନ୍ତି ଏବଂ କହିଛନ୍ତି ଯେ ଅନ୍ୟାନ୍ୟ ବସ୍ତୁ ମଧ୍ୟରେ ଔଚିତ୍ୟର ବାରମ୍ବାର ଉଲ୍ଲେଖ ରହିଛି, ଯଥା- ''ଏତସ୍ମିନ୍ 'ଶୃଙ୍ଗାର ପ୍ରକାଶ' ସୁପ୍ରକାଶ ମେବ ଅଶେଷ ଶାସ୍ତ୍ରାର୍ଥ ସଂପଦୁପନିଷଦାଂ ଅଖିଳ କଳାକାବ୍ୟ- ଔଚିତ୍ୟ-କଳ୍ପନା ରହସ୍ୟାନଂ ଚ ସନ୍ନିବେଶୋ ଦୃଶ୍ୟତେ ।''

ଭୋଜଙ୍କର ହୃଦ୍‌ବୋଧ ହୋଇଥିଲାଯେ ଔଚିତ୍ୟ ହେଉଛି ଏକ ସ୍ଥିତି ସ୍ଥାପକ ବିଶାଳ ନିୟମ । ଭୋଜଙ୍କ ରଚନାର ଦୋଷ ବିଭାଗରେ ଆମେ ପ୍ରଥମେ ଔଚିତ୍ୟ ଲକ୍ଷ୍ୟ କରୁଁ, ଯେଉଁଠାରେ ସେ ଅପଦ' ନାମକ ପଦଦୋଷ କଥା କହିଛନ୍ତି । ସେ କହନ୍ତି- କବି ଚରିତ୍ରାନୁରୂପ ଭାଷା ପ୍ରୟୋଗ କରିବା ଉଚିତ । ଗ୍ରାମ୍ୟ ଚରିତ୍ର ସଭ୍ୟ ନାଗରିକର ଭାଷା ବ୍ୟବହାର କରି ପାରିବ ନାହିଁ । ଅନୁପଯୋଗୀ ପଦର ବ୍ୟବହାର ଔଚିତ୍ୟ ବିରୋଧୀ; ଏହାକୁ ଅପଦ ଦୋଷ କୁହାଯାଏ (୧୫)। ବସ୍ତୁ କିମ୍ବା ଅର୍ଥ ଅନୌଚିତ୍ୟର ଏଗୁଡିକ ନିର୍ଦ୍ଦିଷ୍ଟ ନାମ ମାତ୍ର । ଅନୁମାନ ବିରୁଦ୍ଧରେ ଭୋଜ ଔଚିତ୍ୟବିରୁଦ୍ଧ ନାମକ ଏକ ପ୍ରକାର ଦୋଷର ଉଲ୍ଲେଖ କରି ଏକ ନୀଚ ପାମରର ବର୍ଣ୍ଣନା ପ୍ରସଂଗରେ (ପାମର ସଭ୍ୟ ରେଶମ ପୋଷାକ ପରିଧାନ କରିବା) ଏହାର ଦୃଷ୍ଟାନ୍ତ ଦେଇଛନ୍ତି । ଶବ୍ଦ ଗୁଣ-ଭାବିକ ପ୍ରସଂଗରେ (ସରସ୍ୱତୀ କଣ୍ଠାଭରଣ) ସେ 'ଅର୍ଥ - କଳ୍ପନ' ନାମକ ଅନୌଚିତ୍ୟର ତରୁଲ୍ୟ ଦୃଷ୍ଟାନ୍ତ ଦେଇଛନ୍ତି । ଏଠାରେ ସେ ଅଭିଯୋଜନ ବା ଉପଯୋଗୀ କରଣ ଔଚିତ୍ୟର (ଯାହା ଦୋଷକୁ ଗୁଣରେ ପରିଣତ କରେ ) ଦୃଷ୍ଟାନ୍ତ ଦେଇଛନ୍ତି । ଏହାଛଡା ସରସ୍ୱତୀ କଣ୍ଠାଭରଣର ପ୍ରଥମ ଅଧ୍ୟାୟ ଶେଷରେ 'ବୈଶେଷିକ ଗୁଣ' ଶୀର୍ଷକ ଏକ ବିଭାଗ ରହିଛି । ଏଠାରେ ସେ ଦେଖାଇଛନ୍ତି ଯେ ପରିସ୍ଥିତି, ବିଶେଷ ପ୍ରକରଣ (ପ୍ରସଂଗ) ଓ ଔଚିତ୍ୟ ଫଳରେ ଦୋଷ ଗୁଡିକ ଦୋଷ ନ ହୋଇ ଗୁଣ ହୋଇ ପାରନ୍ତି ।

ଭୋଜଙ୍କର ଅଳଂକାର ବିଭାଗରେ ମଧ୍ୟ ଔଚିତ୍ୟର ସ୍ଥାନ ରହିଛି । ଉପଯୁକ୍ତ ଭାଷାନିର୍ବାଚନ (ଭାଷୌଚିତ୍ୟ) ଓ ଭାବର ବିସ୍ତୃତୀକରଣ ପାଇଁ ସେ ଅଳଂକାରର ତାଲିକା ଦେଇଛନ୍ତି । 'ଭାଷୌଚିତ୍ୟ' ତାଙ୍କ ଦୃଷ୍ଟିରେ 'ଜାତି' ନାମକ ଏକ ଅଳଂକାର । କେତେକ ବିଷୟ ସଂସ୍କୃତରେ , କେତେ ପ୍ରାକୃତ କିମ୍ବା ଅପଭ୍ରଂଶରେ ଉତ୍ତମ ରୂପେ ଅଭିବ୍ୟକ୍ତ ହୋଇପାରେ । ଦେଶ ଓ ପାତ୍ରୌଚିତ୍ୟ ଦ୍ୱାରା ମଧ୍ୟ ଭାଷା ସ୍ଥିରୀକୃତ ହୋଇପାରେ । ଭରତଙ୍କ ନାଟ୍ୟଶାସ୍ତ୍ରର ଅଷ୍ଟାଦଶ ଅଧ୍ୟାୟରେ (ଭାଷାବିଧାନ) ଉଲ୍ଲେଖ ଥିବା ସମସ୍ତ ଔଚିତ୍ୟ ସଂପର୍କରେ ଭୋଜ ଓ ରତ୍ନେଶ୍ୱର ସୂଚିତ କରିଛନ୍ତି । ଭୋଜ ନିଜେ ଏଠାରେ ଔଚିତ୍ୟ ଶବ୍ଦ ପ୍ରୟୋଗ କରିଛନ୍ତି ଏବଂ 'ଜାତି' ଶବ୍ଦାଳଂକାର ସହ ସଂପୃକ୍ତ ଔଚିତ୍ୟ ସଂପର୍କରେ ରତ୍ନେଶ୍ୱର ସ୍ପଷ୍ଟଭାବରେ ବୁଝାଇଛନ୍ତି । ଏକାଦଶ ଅଧ୍ୟାୟରେ ଭୋଜ ପ୍ରବନ୍ଧ - ଉଭୟ-ଗୁଣଂ (ସମଗ୍ର ଗ୍ରନ୍ଥର ଶବ୍ଦ ଓ ଅର୍ଥର ବ୍ୟାପକଗୁଣ, ପାତ୍ରାନୁରୂପ ଭାଷା) ସଂପର୍କରେ କହିଛନ୍ତି : ଔଚିତ୍ୟ ବିନା ଏହି ଆନୁରୂପ୍ୟ ଅନ୍ୟ କିଛି ହୋଇ ନପାରେ । ଏହି ପ୍ରବନ୍ଧ ଭାଷୌଚିତ୍ୟ

'ଛାତି' ନାମକ କାବ୍ୟାଳଂକାରର ଅଂଶମାତ୍ର । ଭୋଜଙ୍କର ଦ୍ୱିତୀୟ ଶବ୍ଦାଳଙ୍କାର ଔଚିତ୍ୟର ଏକ ନିୟମ । ଏହା 'ଗତି' ନାମରେ ଅଭିହିତ । ଏହା ଗଦ୍ୟ କିମ୍ବା ପଦ୍ୟ କିମ୍ବା ଚଂପୂ ପ୍ରଭୃତି ପ୍ରକୃତ କାବ୍ୟ ରୂପର ଏବଂ ପଦ୍ୟ ଶ୍ରେଣୀର ରସର ବ୍ୟଞ୍ଜନାତ୍ମକ ଛନ୍ଦର ନିର୍ବାଚନ । ଶେଷଟି ବୃତ୍ତୌଚିତ୍ୟର ଅନ୍ୟ ନାମ ମାତ୍ର ଏହି 'ଗତି' ସଂପର୍କରେ ବୁଝାଇବାକୁ ଯାଇ ଭୋଜ ଅର୍ଥୌଚିତ୍ୟ ଉପରେ ତାଙ୍କର ଅଳଂକାରକୁ ପ୍ରତିଷ୍ଠିତ କରିଛନ୍ତି ( ସରସ୍ୱତୀ କଣ୍ଠାଭରଣ, ୨.୧୮ ) ।

ଏକାଦଶ ଅଧ୍ୟାୟରେ ଭୋଜ ପ୍ରବନ୍ଧ ଉଭୟଗୁଣ ଭାବରେ ଯଥୋଚିତ ଛନ୍ଦ ନିର୍ବାଚନ କଥା କହିଛନ୍ତି (ଅର୍ଥାନୁରୂପ ଛନ୍ଦସ୍ତ୍ୱମ୍ ଅର୍ଥାତ ଅର୍ଥାନୁରୂପ ଛନ୍ଦ (୧୬) । ସେ ମଧ୍ୟ ରସାନୁରୂପ ସନ୍ଦର୍ଭତ୍ୱ ନାମରେ ଅଭିହିତ (ପ୍ରବନ୍ଧ ଉଭୟ ଗୁଣ ଭାବରେ) ଔଚିତ୍ୟର ଅନ୍ୟ ଏକ ତତ୍ତୁଲ୍ୟ ନିୟମ ସଂପର୍କରେ ଉଲ୍ଲେଖ କରିଛନ୍ତି ।

ଯେତୋଟି ଔଚିତ୍ୟ ସଂପର୍କରେ କୁହାଗଲା ଭୋଜ ସେ ଗୁଡିକୁ ରସ ସହିତ ସଂପୃକ୍ତ କରିଛନ୍ତି । ସେ ଔଚିତ୍ୟ ନିୟମକୁ ଦୋଷହୀନ ଭାବରେ ଗ୍ରହଣ କରିଛନ୍ତି । ତାଂକର ଆଲୋଚନା ଅନୁଯାୟୀ ଔଚିତ୍ୟ, ଗୁଣ ଓ ଅଳଂକାର : ଏହି ତିନୋଟି ରସ ତଥା ରସ ଅଭିଯୋଗର ନିତ୍ୟ ଉପସ୍ଥିତି ନିମିତ୍ତ ଉପାୟ ମାତ୍ର ।

ଶେଷରେ ଭୋଜ କାହାଣୀରେ ଥିବା ଅନୌଚିତ୍ୟ ସଂପର୍କରେ ଆଲୋଚନା କରିଛନ୍ତି । ସେ କହନ୍ତି ଯେ କାହାଣୀରେ ଥିବା ରସର ବାଧକ ଦୋଷ ବା ଅନୌଚିତ୍ୟ ପରିହାର କରି ନୂତନ ଢଂଗରେ ବିଷୟ ଚିତ୍ର (plot) ପରିକଳ୍ପନା କରିବାକୁ ହେବ । ଭୋଜ ଏହାକୁ ପ୍ରବନ୍ଧଦୋଷହୀନ ଏବଂ ଅନୌଚିତ୍ୟ ପରିହାର ବୋଲି କହିଛନ୍ତି ।

କୁନ୍ତକ ଅଭିନବ ଗୁପ୍ତଙ୍କ ଅପେକ୍ଷା ବୟୋକନିଷ୍ଠ ବା ସେ ଠିକ୍ ତାଙ୍କ ପରେ ପରେ ତାଙ୍କର ବିଖ୍ୟାତ ' ବକ୍ରୋକ୍ତି ଜୀବିତ ' ରଚନା କରିଥିଲେ । କାବ୍ୟର ଆତ୍ମାକୁ ସୂଚିତ କରୁଥିବା ସେ ସମୟର ପ୍ରଚଳିତ ଶବ୍ଦ ମନେହୁଏ ଜୀବିତ(ଯା'ର ଅର୍ଥ ଜୀବନ) । ଲୋଚନଟୀକାରେ ଅଭିନବଗୁପ୍ତ ଆନନ୍ଦବର୍ଦ୍ଧନଙ୍କର' ଆତ୍ମା' ଶବ୍ଦକୁ ଜୀବିତ ଭାବରେ ରୂପାନ୍ତରିତ କରିଛନ୍ତି । କୁନ୍ତକ ତାଙ୍କର 'ବକ୍ରୋକ୍ତି'ର ଗୁରୁତ୍ୱ ଉପସ୍ଥାପନ କରିବାକୁ ଯାଇ ସେହି ଏକ ଶବ୍ଦ 'ଜୀବିତ'ର ବ୍ୟବହାର କରିଛନ୍ତି ଏବଂ କ୍ଷେମେନ୍ଦ୍ର 'ଔଚିତ୍ୟ'ର ସ୍ଥାନ ସୂଚିତ କରିବାକୁ ଯାଇ ସେହି ଏକ ଶବ୍ଦର ସାହାଯ୍ୟନେଇଛନ୍ତି । କାବ୍ୟରେ କୁନ୍ତକ ଯେଉଁ ଦୁଇଟି ବସ୍ତୁ ସ୍ୱୀକାର କରିଛନ୍ତି ତାହା ହେଉଛି : ଉକ୍ତି ଓ ତାର ଅଳଂକରଣ କିମ୍ବା ଅଳଂକାର ବା ବକ୍ରୋକ୍ତି ନାମରେ ଅଭିହିତ ଚମତ୍କାରିତା । ଏହା ସହିତ ସେ କେତୋଟି ସାଧାରଣ ଚିନ୍ତାଧାରା ଉପସ୍ଥାପନ କରି କାବ୍ୟର ସଂଜ୍ଞାକରଣ କରିଛନ୍ତି । ଏଗୁଡିକ ମଧ୍ୟରୁ ଉଲ୍ଲେଖଯୋଗ୍ୟ ହେଉଛି ତାଙ୍କର ସାହିତ୍ୟ ସମ୍ପର୍କୀୟ ଚିନ୍ତାଧାରା । କୁନ୍ତକ ସାହିତ୍ୟ ସହିତ 'ଔଚିତ୍ୟ ଓ ସୌଭାଗ୍ୟ' ନାମକ ଦୁଇଟି ସାଧାରଣ ଗୁଣ କଥା ଉଲ୍ଲେଖ କରିଛନ୍ତି । କାବ୍ୟର ରୀତି ସମ୍ପର୍କିତ ସାଧାରଣ ଗୁଣଗୁଡିକୁ ଅସାଧାରଣଗୁଣ ଠାରୁ ପୃଥକ୍ କରିବାକୁହେବ, ଯାହା ରୀତିକୁ ସୁକୁମାର , ବିଚିତ୍ର ଓ ମଧ୍ୟମା : ଏଇ ତିନି ଭାଗରେ ବିଭକ୍ତ କରିଥାଏ । ସାଧାରଣ ଗୁଣ ଔଚିତ୍ୟ ଓ ସୌଭାଗ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଦୁଇଟି ଶ୍ଳୋକରେ କୁନ୍ତକ ଔଚିତ୍ୟର ସଂଜ୍ଞା ଦେଇଛନ୍ତି, ଯଥା, ଯଥା- ଔଚିତ୍ୟ ହେଉଛି ଉକ୍ତିର ଚମତ୍କାର ଭଙ୍ଗୀ, ଯାହା ଦ୍ୱାରା ଭାବର ବଳିଷ୍ଠତା ଓ ଗୌରବ ବଢ଼ିଥାଏ , ପୁଣି ଯାହା ଭାବକୁ ଏକ ନୂତନ ରୂପ ଓ ଅନନ୍ୟ

ସୌନ୍ଦର୍ଯ୍ୟ ବିମଣ୍ଡିତ କରିଥାଏ, ତାହାକୁ ଔଚିତ୍ୟ କହନ୍ତି । ପ୍ରକାଶର ଶକ୍ତି ଓ ବିବେଚନୀୟ ଭାବର ବିକାଶ ନିମିତ୍ତ ଉଭୟ ପ୍ରକାର ଔଚିତ୍ୟ ଉଦ୍ଦିଷ୍ଟ । ସମସ୍ତ ବିଭାବକୁ ସ୍ପର୍ଶ କରି ସେ ଗୁଡିକ ବ୍ୟାପକ ଓ ସାଧାରଣ । କୁନ୍ତକ ଔଚିତ୍ୟକୁ ଉଚିତ ଆଖ୍ୟାନ ବୋଲି ମଧ କହିଛନ୍ତି ।

କୁନ୍ତକ ରସ ଓ ଚରିତ୍ର ଅର୍ଥାତ୍ 'ପ୍ରକୃତି' କିମ୍ବା 'ସ୍ୱଭାବ'ର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ଭରତ ଓ ଆନନ୍ଦବର୍ଦ୍ଧନ କଥିତ ଔଚିତ୍ୟ ସେ ଗ୍ରହଣ କରିଛନ୍ତି । ଶବ୍ଦ, ଅର୍ଥ ଇତ୍ୟାଦି ପ୍ରତ୍ୟେକ ଉପାଦାନ ସଂପର୍କରେ ସେ ଔଚିତ୍ୟର ଅନ୍ୟପ୍ରକାର ଭେଦ ପ୍ରଚଳନ କରିଛନ୍ତି ; ସେ ସୂଚିତ କରିଛନ୍ତିଯେ ବସ୍ତୁ ଓ ରସର ବିକାଶ ନିମିତ୍ତ ସମସ୍ତ ପ୍ରକାର ଔଚିତ୍ୟ ଉଦ୍ଦିଷ୍ଟ ।

ଆନନ୍ଦବର୍ଦ୍ଧନଙ୍କୁ ଅନୁସରଣ କରି କୁନ୍ତକ କହନ୍ତିଯେ ବର୍ଣ୍ଣ କିମ୍ବା ଧ୍ୱନି ପ୍ରସଙ୍ଗୋଚିତ ହେବା ଉଚିତ୍ ଏବଂ କେତେକ ପରିସ୍ଥିତିରେ ଅନୁପଯୋଗୀ ତାଲବ୍ୟ ଓ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ, ଅନ୍ୟ ପରିସ୍ଥିତିରେ ଭାବ ଓ ରସର ଉପଯୋଗୀ ହୋଇ ପାରନ୍ତି । ଏହି ବର୍ଣ୍ଣୌଚିତ୍ୟ ସଂପର୍କରେ ବର୍ଣ୍ଣ କିମ୍ବା ଧ୍ୱନି ଗୁଡିକର ଔଚିତ୍ୟ, ବ୍ୟଞ୍ଜନାତ୍ମକତା କିମ୍ବା ସୌନ୍ଦର୍ଯ୍ୟ ସହିତ ପୋପ୍‌ଙ୍କର ନିମ୍ନୋକ୍ତ ଉଦ୍ଧୃତି ତୁଳନୀୟ, ଯଥା -

T's not enough no harshness gives offence,
The sound must seem an echo of the sense.(17)

କୁନ୍ତକ ପୁଣି କହିଛନ୍ତି ଯେ ସବୁ ପରିସ୍ଥିତିରେ ଶ୍ରୁତିକଟୁ ବର୍ଣ୍ଣ ଓ ଧ୍ୱନି ପରିହାର କରାଯିବା ଉଚିତ୍ । ଅତି ଶ୍ରୁତିକଟୁ ଶବ୍ଦ ସମବାୟର ଉଲ୍ଲେଖ ଆଦୌ ରହିବା ଉଚିତ୍ ନୁହେଁ । ଅଭିନବଗୁପ୍ତ ତାଙ୍କର 'ଅଭିନବ ଭାରତୀ'ରେ କହନ୍ତିଯେ କେତେକ ଧ୍ୱନି ବିଶେଷ କର୍ଣ୍ଣକଟୁ ହୋଇଥାନ୍ତି; ଆଉ କେତେଗୁଡିଏ ଧ୍ୱନି ଆମର କର୍ଣ୍ଣରେ ଅମୃତ ବର୍ଷଣ କରିଥା'ନ୍ତି । ପରିପାଟୀ ଓ ବ୍ୟଞ୍ଜନାତ୍ମକ ଭାବରେ ବ୍ୟବହୃତ ହୋଇଥିବା ପ୍ରତ୍ୟୟ, କ୍ରିୟା ବିଶେଷଣ , କାଳ, ବଚନ, ଲିଙ୍ଗ ଇତ୍ୟାଦି ପଦଗୁଡିକର ସୌନ୍ଦର୍ଯ୍ୟ ସମ୍ପର୍କରେ ମଧ କୁନ୍ତକ ଆଲୋଚନା କରିଛନ୍ତି ।

ଏହିପରିଭାବରେ କୁନ୍ତକଙ୍କ ବକ୍ରୋକ୍ତି ଜୀବିତରେ ଔଚିତ୍ୟ ଚିନ୍ତାଧାରା ବିସ୍ତୃତଭାବରେ ଆତ୍ମପ୍ରକାଶ କରିଛି । ବସ୍ତୁତଃ ସବୁକ୍ଷେତ୍ରରେ କୁନ୍ତକଙ୍କ ବକ୍ରତାର ଚମତ୍କାରିତା (ବିଚ୍ଛିତ୍ତି)ବା ସୌନ୍ଦର୍ଯ୍ୟର ପ୍ରମାଣ ହେଉଛି : ବସ୍ତୁ ଓ ରସ ସଂପର୍କୀୟ ବିଭିନ୍ନ ଉପାଦାନର ଔଚିତ୍ୟ । ବସ୍ତୁ ଓ ରସ ପରିବେଷଣ ହେଉଛି କବିଙ୍କର କାମ । ଯେତେବେଳେ ଦେଖୁଁ : କୁନ୍ତକ 'ପଦୌଚିତ୍ୟ'କୁ 'ପଦବକ୍ରତା' ସହତ ସମାନ କରିଛନ୍ତି, ସେତେବେଳେ କୁହାଯାଇପାରେ ଯେ କୁନ୍ତକଙ୍କର ବକ୍ରୋକ୍ତି 'ଔଚିତ୍ୟ'ର ଅନ୍ୟ ଗୋଟିଏ ନାମ ମାତ୍ର । ପୂର୍ବରୁ ଏକାଧିକ ବାର ସୂଚିତ ହୋଇଛିଯେ ଆନନ୍ଦବର୍ଦ୍ଧନଙ୍କର ଧ୍ୱନି ଏବଂ ଅଭିନବ ଭାରତୀରେ କଥିତ ଅଭିନବଗୁପ୍ତଙ୍କର ବୈଚିତ୍ର୍ୟର, ବହୁଦୃଷ୍ଟାନ୍ତ କୁନ୍ତକଙ୍କର ବକ୍ରୋକ୍ତି ଓ କ୍ଷେମେନ୍ଦ୍ରଙ୍କର ଔଚିତ୍ୟ ସହ ସମାନ । ତା'ଛଡା ଔଚିତ୍ୟ, ଧ୍ୱନି ଓ ବକ୍ରତା ମଧ୍ୟରେ ଏ ପ୍ରକାର ନିକଟ ସମ୍ପର୍କ ରହିବା ସ୍ୱାଭାବିକ । କୁନ୍ତକଙ୍କର କାବ୍ୟ ସଂଜ୍ଞାର ସମାଲୋଚନା କରିବାକୁଯାଇ ମହିମ ଭଟ୍ଟ ତାଙ୍କର 'ବ୍ୟକ୍ତିବିବେକ' ରେ (ପ୍ରଥମ ଅଧ୍ୟାୟ) କହିଛନ୍ତି ଯେ, ଶାସ୍ତ୍ର ଓ ଲୋକ ବ୍ୟବହୃତ ଶବ୍ଦରୁ ପୃଥକ୍ କାବ୍ୟିକ ଶବ୍ଦ ଓ ଅର୍ଥର ବକ୍ରତା ରସପକ୍ଷରେ ଅତି ପ୍ରୟୋଜନୀୟ ଔଚିତ୍ୟ କିମ୍ବା ଆନନ୍ଦବର୍ଦ୍ଧନଙ୍କର ଧ୍ୱନି ହୋଇପାରେ । ଯଦି ଏହି ନୂତନ ବକ୍ରୋକ୍ତି କେବଳ ଔଚିତ୍ୟ, ତା'ହେଲେ କିଛି ନୂଆ କଥା କୁହାଯାଇନାହିଁ । ଏହା ଯଦି ଅସ୍ୱୀକାର କରାଯାଏ, ତା'ହେଲେ ଅନ୍ୟ ସମ୍ଭାବନାଟି ହେଉଛି ; ବକ୍ରୋକ୍ତି

ଧ୍ୱନିର ଏକ ନୂତନ ନାମ ବ୍ୟତୀତ ଅନ୍ୟକିଛି ନୁହେଁ । କାରଣ ଆନନ୍ଦବର୍ଦ୍ଧନ ଯେଉଁପ୍ରକାର ଭେଦ ଓ ଦୃଷ୍ଟାନ୍ତ ର ଉଲ୍ଲେଖ କରିଛନ୍ତି, କୁନ୍ତକ ମଧ୍ୟ ତାହାହିଁ କରିଛନ୍ତି ।

ମହିମ ଭଟ୍ଟ, ଅଭିନବଗୁପ୍ତ ଓ କୁନ୍ତକଙ୍କ ଠିକ୍ ପରେ ପରେ ସେହି ଗୋଟିଏ ଯୁଗରେ ତାଙ୍କ ବ୍ୟକ୍ତିବିବେକ ରଚନା କରିଥିଲେ । ମହିମ ଭଟ୍ଟ ରସ ସର୍ବଶ୍ରେଷ୍ଠ ବୋଲି ରସ, ଭାବ ଓ ପ୍ରକୃତି ସଂପର୍କିତ ଔଚିତ୍ୟ ଗ୍ରହଣ କରିଛନ୍ତି । ସେ ସମୟର ସମାଲୋଚକ ମାନେ ସାଧାରଣ ତଥା ଶିକ୍ଷିତଙ୍କର ଉକ୍ତି ଓ କାବ୍ୟିକ ଉକ୍ତିକୁ ପୃଥକ୍ ରୂପେ ସୂଚିତ କରୁଥିବା ଦୁଇଟି ବସ୍ତୁ ଜାଣିଥିଲେ , ତାହା ହେଉଛି : ଔଚିତ୍ୟ ଓ ଧ୍ୱନି । ଏଦୁଇଟି ମଧ୍ୟରୁ ଔଚିତ୍ୟ ସଂପର୍କରେ ବିଶେଷ ଭାବରେ କିଛି କହିବାର ନାହିଁ । କାରଣ ଯେପର୍ଯ୍ୟନ୍ତ କାବ୍ୟକୁ ରସାତ୍ମକ ଉକ୍ତି ବୋଲି ଗ୍ରହଣ କରାଯାଏ ସେ ପର୍ଯ୍ୟନ୍ତ ସେ ଏହାକୁ ସର୍ବଶ୍ରେଷ୍ଠ ପ୍ରୟୋଜନ ବୋଲି ବିଚାର କରନ୍ତି । ଅନ୍ୟ ଭାବରେ କହିବାକୁ ଗଲେ: ମହିମ ଭଟ୍ଟ ମତାନୁଯାୟୀ ଔଚିତ୍ୟ ସଂପର୍କରେ କୌଣସି ଅଭିଯୋଗ ଉଠିନପାରେ ; କେବଳ ଧ୍ୱନି ବିରୁଦ୍ଧରେ ସେ ସଂଗ୍ରାମ କରିଛନ୍ତି ।

ରସ ସଂପର୍କରେ ଏବଂ ରସକୁ କେନ୍ଦ୍ରକରି ଉକ୍ତିର ପ୍ରତ୍ୟେକ ଉପାଦାନ ସଂପର୍କିତ ଔଚିତ୍ୟ ସଂପର୍କରେ ମହିମ ଭଟ୍ଟ ଆନନ୍ଦବର୍ଦ୍ଧନଙ୍କ ସହ ସଂପୂର୍ଣ୍ଣ ଏକ ମତ । ଆନନ୍ଦବର୍ଦ୍ଧନ କହନ୍ତି : ଯଦି ଗୋଟିଏ ଶବ୍ଦ ନୀରସ ଥାଏ ତା'ହେଲେ ଏହା ସର୍ବାପେକ୍ଷା ବଡ ସାହିତ୍ୟିକ ଦୋଷ (ଅପଶବ୍ଦ); ସେହିପରି ଭାବରେ ସବୁ ଦୋଷ ଗୋଟିଏ ସାଧାରଣ ଦୋଷର ଅର୍ନ୍ତଭୁକ୍ତ, ତାହା ହେଉଛି ରସାସ୍ୱାଦରେ ବାଧା । ସବୁ ଦୋଷ ରସର ବାଧକ ; ମହିମ ଭଟ୍ଟ ' ଅନୌଚିତ୍ୟ ' (ଔଚିତ୍ୟର ଅଭାବ) : ଏହି ସାଧାରଣ ନାମରେ ସେମାନଙ୍କୁ ଅଭିହିତ କରିଛନ୍ତି । କେତେକ ପ୍ରତିଭାଶାଳୀ ଲେଖକ କେତେକ ନିର୍ଦ୍ଦିଷ୍ଟ ଚିନ୍ତାଧାରାର ବ୍ୟାଖ୍ୟାକାର । ମହିମ ଭଟ୍ଟ 'ସ୍ୱଭାବୋକ୍ତି ଓ ଦୋଷ' ଏହି ଦୁଇଟି ଚିନ୍ତାଧାରାର ବିଶଦ୍ ବ୍ୟାଖ୍ୟା କରିଛନ୍ତି । ତାଙ୍କ ରଚନାର ଦ୍ୱିତୀୟ ଅଧ୍ୟାୟ ସର୍ବାପେକ୍ଷା ଗୁରୁତ୍ୱ ପୂର୍ଣ୍ଣ । ଏଥିରେ ସେ ଉକ୍ତିର ପାଞ୍ଚଟି ଦୋଷ ସଂପର୍କରେ ଆଲୋଚନା କରିଛନ୍ତି ।

ମମ୍ମଟ ଭଟ୍ଟ 'କାବ୍ୟପ୍ରକାଶ'ର ଦୋଷ ଅଧ୍ୟାୟ ରଚନାପାଇଁ ଏହାଙ୍କ ଠାରେ ବିଶେଷ ଭାବରେ ଋଣୀ । ଏହି ପଞ୍ଚଦୋଷ ଓ ଅନ୍ୟାନ୍ୟ ଦୋଷ ଅନୌଚିତ୍ୟର ବିଭିନ୍ନ ପ୍ରକାର ମାତ୍ର, ଯାହାକି ରସୋପଲବ୍ଧିର ପ୍ରତିବନ୍ଧକ । କାରଣ ରସ ଓ ପ୍ରକୃତି ଔଚିତ୍ୟ ହେଉଛି ସବୁଠାରୁ ବଡ ଗୁଣ - ଏହା କାବ୍ୟପାଇଁ ସର୍ବାପେକ୍ଷା ଉପାଦେୟ । ଏହି ଔଚିତ୍ୟର ଅଭାବ ହେଉଛି ସବୁଠାରୁ ବଡ ଦୋଷ । ଅନ୍ୟାନ୍ୟ ସମସ୍ତ ଦୋଷ ଏହି ଦୋଷର ଅନ୍ତର୍ଭୁକ୍ତ । ଔଚିତ୍ୟ ଓ ଅନୌଚିତ୍ୟ କାବ୍ୟର ଆତ୍ମିକ : ରସ, ଅର୍ଥ କିମ୍ବା ବସ୍ତୁ ଓ ଶବ୍ଦ ସମ୍ପର୍କିତ । ରସ କିମ୍ବା ବସ୍ତୁ ସମ୍ପର୍କୀୟ ଔଚିତ୍ୟାନୌଚିତ୍ୟ ହେଉଛି ଆଭ୍ୟନ୍ତର ବା ଅନ୍ତରଙ୍ଗ ଏବଂ ଶବ୍ଦ ସମ୍ପର୍କୀୟ ଔଚିତ୍ୟାନୌଚତ୍ୟ ହେଉଛି ବହିରଙ୍ଗ। ଏପରିକି ବ୍ୟଞ୍ଜନାଶୂନ୍ୟ ଅନୁପଯୁକ୍ତ ଛନ୍ଦପ୍ରୟୋଗ ହେଉଛି ପରବର୍ତ୍ତୀ ପର୍ଯ୍ୟାୟର ଦୋଷ । ଶବ୍ଦାନୌଚିତ୍ୟର ବିଭିନ୍ନ ପ୍ରକାର ସମ୍ପର୍କରେ ମହିମଭଟ୍ଟ କହନ୍ତି ଯେ ପାଞ୍ଚଟି ବିଶେଷ ଉଲ୍ଲେଖ ଯୋଗ୍ୟ, ସେ ଗୁଡିକ ହେଉଛନ୍ତି ପାଞ୍ଚଟି ଦୋଷ, ଯଥା-ବିଧେୟ ବିମର୍ଶ, ପ୍ରକ୍ରମ ଭେଦ, କ୍ରମ ଭେଦ, ପୌନରୁକ୍ତ୍ୟ ଓ ବାଚ୍ୟାବଚନ । କ୍ଷେମେନ୍ଦ୍ର :

କ୍ଷେମେନ୍ଦ୍ର ଅଭିନବଗୁପ୍ତଙ୍କର ଶିଷ୍ୟଥିଲେ । ତାଙ୍କ ରଚନା ମଧ୍ୟରେ 'ଔଚିତ୍ୟ ବିଚାର ଚର୍ଚ୍ଚା' ସହିତ ଆମର ସଂପର୍କ । ଆକାରରେ ଛୋଟ ହେଲେ ମଧ୍ୟ ଏହା ପ୍ରସ୍ଥାନ ଗ୍ରନ୍ଥ ଶ୍ରେଣୀର । ଏହା ଭାମହ, ଦଣ୍ଡୀ, ବାମନ, ଆନନ୍ଦବର୍ଦ୍ଧନ, କୁନ୍ତକ ଓ ମହିମ ଭଟ୍ଟ ଙ୍କ ରଚନା ପରି ସାହିତ୍ୟ ଶାସ୍ତ୍ର କ୍ଷେତ୍ରରେ ଏକ ନୂତନ

ପଥପ୍ରଦର୍ଶକ । ପରବର୍ତ୍ତୀ ଆଲୋଚନାରୁ ଏହା ସ୍ପଷ୍ଟଯେ କ୍ଷେମେନ୍ଦ୍ର ଔଚିତ୍ୟକୁ ଏକ ସାହିତ୍ୟତତ୍ତ୍ୱ ଭାବରେ ଉପସ୍ଥାପିତ କରିଛନ୍ତି ଏବଂ ଔଚିତ୍ୟ ଚିନ୍ତାଧାରାର ବିସ୍ତୃତ ଆଲୋଚନା କରି କାବ୍ୟର ସମସ୍ତ ଅଂଶ ପ୍ରତି ପ୍ରୟୋଗ କରିଛନ୍ତି । କ୍ଷେମେନ୍ଦ୍ର କେବଳ ଆନନ୍ଦବର୍ଦ୍ଧନ ଓ ଅଭିନବ ଗୁପ୍ତଙ୍କର ଚିନ୍ତାଧାରା ଶୃଙ୍ଖଳିତ କରି ସେମାନଙ୍କ ମତ ଉପରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ରସ ଓ ଧ୍ୱନି ସଂପର୍କରେ ଅନ୍ୱିତ ନକରି ଯେଉଁମାନେ ଅନର୍ଗଳ ଭାବରେ ଔଚିତ୍ୟ ସଂପର୍କରେ କହନ୍ତି, ଅଭିନବ ଗୁପ୍ତ ସେମାନଙ୍କୁ ସମାଲୋଚନା କରିଛନ୍ତି । ରସକୁ ମୁଖ୍ୟଭାବରେ ଗ୍ରହଣ କଲାପରେ (ଧ୍ୱନିକୁ ମଧ ଗ୍ରହଣ କରି ) ଯେପରି ବକ୍ରୋକ୍ତିର (କୁନ୍ତକଙ୍କର) ଗୁରୁତ୍ୱ ଚିନ୍ତାକରା ଯାଇଛି । ସେହିପରି କ୍ଷେମେନ୍ଦ୍ରଙ୍କର ଔଚିତ୍ୟବାଦର ଗୁରୁତ୍ୱ ଉପଲବ୍ଧି କରାଯାଇଛି । ଯେଉଁ ରସର ଉପସ୍ଥିତିରେ କାବ୍ୟ ସମ୍ଭବ ହୋଇଥାଏ, ସେହି ରସକୁ କ୍ଷେମେନ୍ଦ୍ର ପ୍ରଥମତଃ କାବ୍ୟର ଆତ୍ମା ଭାବରେ ସୂଚିତ କରିଛନ୍ତି ଏବଂ ଔଚିତ୍ୟକୁ ତା'ର ଜୀବିତ (ଜୀବନ) ବୋଲି କହିଛନ୍ତି । ଔଚିତ୍ୟ ସହିତ ରସଧ୍ୱନିକୁ ସୂଚିତ କରିବା ପାଇଁ ଅଭିନବ ଗୁପ୍ତ 'ଜୀବିତ' ଶବ୍ଦ ବ୍ୟବହାର କରିଛନ୍ତି । ଏହିପରି ଭାବରେ ଅଭିନବଗୁପ୍ତ ବିକଳ୍ପ ବ୍ୟବହାର ପାଇଁ ଏବଂ ସାଧାରଣ ଭାବରେ ନିର୍ଯ୍ୟାସ ରୂପେ ସୂଚିତ କରିବା ପାଇଁ ଆତ୍ମା ଓ 'ଜୀବିତ' ଶବ୍ଦ ବ୍ୟବହାର କରିଛନ୍ତି । କିନ୍ତୁ କ୍ଷେମେନ୍ଦ୍ର ଆତ୍ମା ଓ ଜୀବିତ ମଧରେ ସୂକ୍ଷ୍ମ ପାର୍ଥକ୍ୟର ବ୍ୟଞ୍ଜନା ଦେଇଛନ୍ତି । ତାଙ୍କ ମତରେ ରସ ହେଉଛି ଆତ୍ମା ଏବଂ ଔଚିତ୍ୟ ହେଉଛି 'ଜୀବିତ' ।

ଏହି ଦୁଇଟି ରୂପକଧର୍ମୀ ନାମ ଏବଂ ଆଧିବିଦ୍ୟକ ବିବେଚନାରେ ସେମାନଙ୍କ ମଧରେ ଥିବା ସଂପର୍କ; ରସ ଓ ଔଚିତ୍ୟ ମଧରେ ଥିବା ନିବିଡ ସଂପର୍କକୁ ଏବଂ ସେମାନେ ଉଭୟେ କିପରି ଏକତ୍ର ଅବସ୍ଥାନ କରନ୍ତି, ତାହା ସୂଚିତ କରିଛନ୍ତି (୧୮) । ଯେଉଁ ରସ ଦ୍ୱାରା କାବ୍ୟର ବିଚାର ହୋଇଯାଇଛି ତାର ବ୍ୟାଖ୍ୟା ପାଇଁ କ୍ଷେମେନ୍ଦ୍ର ଔଚିତ୍ୟତତ୍ତ୍ୱ ଉପସ୍ଥାପନା କରିଛନ୍ତି । ରସର ଜୀବିତ ଔଚିତ୍ୟ ପଦ କିମ୍ବା କାବ୍ୟକୁ ଚମତ୍କାରିତା ଦାନ କରିଥାଏ ।

ପୂର୍ବରୁ ଲକ୍ଷ୍ୟକରାଯାଇଛି ଯେ ରସ ବ୍ୟତୀତ ଔଚିତ୍ୟ ଯେପରି ସୁବୋଧ ନୁହେଁ ଧ୍ୱନି ବ୍ୟତୀତ ମଧ ସେହିପରି ସୁବୋଧ ନୁହେଁ । କ୍ଷେମେନ୍ଦ୍ରଙ୍କ ସମଗ୍ର ଆଲୋଚନା ପରିସର ମଧରେ ଧ୍ୱନିର ସଂକେତ ରହିଛି । ପଦୌଚିତ୍ୟର ଉପଯୋଗିତା (ଆନବର୍ଦ୍ଧନଙ୍କ ପଦ ଧ୍ୱନି ) ପ୍ରଦର୍ଶନ କରିବାକୁ ଯାଇ କ୍ଷେମେନ୍ଦ୍ର କହନ୍ତି ଯେ ପଦର ଔଚିତ୍ୟ ଆମକୁ ଆନନ୍ଦ ଦିଏ , କାରଣ ନିର୍ଦ୍ଦିଷ୍ଟ ପଦଟି ବିଶେଷ ଭାବରେ ବିଚ୍ଛେଦ ଅବସ୍ଥା ଓ ତଜ୍ଜନିତ ଯନ୍ତ୍ରଣା (ବିପ୍ରଲମ୍ଭ ରସ ) ସୂଚିର କରିଥାଏ । ସେହିପରି ଭାବରେ କ୍ଷେମେନ୍ଦ୍ର ସମସ୍ତ ପ୍ରକାର ଔଚିତ୍ୟର ଉଦାହରଣରେ ତାଙ୍କର ଔଚିତ୍ୟର ବୈଜ୍ଞାନିକ ବ୍ୟାଖ୍ୟାପାଇଁ ଧ୍ୱନିତତ୍ତ୍ୱ ଉପରେ ନିର୍ଭର କରିଥିବେ, କାରଣ ଆନନ୍ଦବର୍ଦ୍ଧନଙ୍କ ଠାରୁ ଔଚିତ୍ୟ ଚିନ୍ତାଧାରା ନୂତନ ଜୀବନ ଲାଭ କରିଛି ।

କ୍ଷେମେନ୍ଦ୍ର ଚିନ୍ତାଧାରାର ପ୍ରଶସ୍ତ କ୍ଷେତ୍ରରେ (ଅର୍ଥ ଓ ଅର୍ଥ ସନ୍ଦର୍ଭ) ଦେଶ, କାଳ ଓ ସ୍ୱଭାବ ପ୍ରଭୃତି ଔଚିତ୍ୟର କେତେକ ଅଧିକ ନିୟମ ସୂଚିତ କରିଛନ୍ତି । ଏଗୁଡିକ ଭରତଙ୍କର ପ୍ରକୃତ୍ୟୌଚିତ୍ୟ ଏବଂ ଭାମହ ଓ ଦଣ୍ଡୀଙ୍କର ଲୋକ -ଆଗମ ବିରୋଧ ଦୋଷ ଶୂନ୍ୟତାରେ ବିଚାର କରାଯାଇଛି । କ୍ଷେମେନ୍ଦ୍ରଙ୍କ ଉଲ୍ଲିଖିତ 'ପ୍ରକୃତ୍ୟୌଚିତ୍ୟ' ଗୌଣ କଳ୍ପନା ସହ ସଂପୃକ୍ତ, କାବ୍ୟ କଳ୍ପନା ବା ସମଗ୍ର ଭାବରେ ପ୍ରତିଭା ସହ ଏହା ସଂପୃକ୍ତ ନୁହେଁ । ସେହିପରି ଭାବରେ କାବ୍ୟରୁ ଔଚିତ୍ୟର ବିଭିନ୍ନ ପ୍ରକାରର ଦୃଷ୍ଟାନ୍ତ ଦିଆ ଯାଇପାରେ ; ଦୃଷ୍ଟାନ୍ତ ସ୍ୱରୂପ 'ବୃତ୍ତୌଚିତ୍ୟ' । ଭରତ ତାଙ୍କ ନାଟ୍ୟ ଶାସ୍ତ୍ରର ଷଡବିଂଶ ଓ ଦ୍ୱାତ୍ରିଂଶ ଅଧ୍ୟାୟରେ ବୃତ୍ତ (ଛନ୍ଦ) ଓ ଧ୍ରୁବା (ମଞ୍ଚ ସଂଗୀତ) ସଂପର୍କରେ ଏହା ଉଲ୍ଲେଖ କରିଛନ୍ତି । ଅଭିନବ ଗୁପ୍ତ ତାଙ୍କ ନାଟ୍ୟ ଶାସ୍ତ୍ର ଭାଷ୍ୟରେ

ନିର୍ଦ୍ଦିଷ୍ଟ ବିଷୟ, ମାନସିକ ଅବସ୍ଥା ଓ ପରିସ୍ଥିତି ଉପଯୋଗୀ କେତୋଟି ଛନ୍ଦ ସଂପର୍କରେ କାତ୍ୟାୟନଙ୍କ ଉକ୍ତି ଉଦ୍ଧାର କରିଛନ୍ତି । କ୍ଷେମେନ୍ଦ୍ର ଏହି ବିଷୟ ତାଙ୍କର 'ସୁବୃତ୍ତ ତିଳକ' (୩.୭.୧୬) ନାମକ ଅନ୍ୟ ଏକ ଗ୍ରନ୍ଥରେ ବିଶେଷ ଆଲୋଚନା କରିଛନ୍ତି। କ୍ଷେମେନ୍ଦ୍ର କେଉଁ ବୃତ୍ତରେ କେଉଁ ପରିସ୍ଥିତି ଓ ବିଷୟ ବର୍ଣ୍ଣନା କରାଯିବ ଦୃଷ୍ଟାନ୍ତ ସହ ବୁଝାଇଛନ୍ତି । ତାଙ୍କ ଆଲୋଚନାରେ ବିଶେଷ ମାତ୍ରାରେ ମନ୍ମୟତା (ଆତ୍ମନିଷ୍ଠତା) ଓ ବ୍ୟଞ୍ଜନାତ୍ମକତା ଦେଖାଯାଏ ।

ଔଚିତ୍ୟ ଚିନ୍ତାଧାରା ରସ ଓ ଧ୍ୱନିର ପରିଶିଷ୍ଟ ଭାବରେ ଜନ୍ମ ଲାଭ କଲା ଏବଂ ଆନନ୍ଦ ବର୍ଦ୍ଧନ , ଅଭିନବ ଗୁପ୍ତ ଓ କ୍ଷେମେନ୍ଦ୍ରଙ୍କ ଦ୍ୱାରା ବିକଶିତ ହେଲା । କ୍ଷେମେନ୍ଦ୍ରଙ୍କ ରଚନାର ପ୍ରାରମ୍ଭିକ ଶ୍ଳୋକରୁ ଏହା ସ୍ପଷ୍ଟ ଯେ ରସ ଓ ଧ୍ୱନି ପରି ଔଚିତ୍ୟ କାବ୍ୟର ବହିରଙ୍ଗ ସ୍ୱର୍ଣ୍ଣ ବଣିକର ଦର୍ଶନ ବିରୁଦ୍ଧରେ ତୀବ୍ର ସମାଲୋଚନା ରୂପେ ଆଗେଇ ଆସିଥିଲା , କିନ୍ତୁ କ୍ଷେମେନ୍ଦ୍ରଙ୍କ ସମୟରେ ସମୀକ୍ଷା ମୂଳକ ସାହିତ୍ୟ ପକ୍ଷରେ ଏହା ସତ୍ୟ ନୁହେଁ ; କାରଣ ସେତେବେଳକୁ ସାହିତ୍ୟ ଶାସ୍ତ୍ରରେ ରସ କାବ୍ୟର ଆତ୍ମା ଭାବରେ ଦୃଢ଼ ରୂପେ ପ୍ରତିଷ୍ଠିତ ହୋଇସାରିଥିଲା ; କିନ୍ତୁ ସାହିତ୍ୟ ରଚନା କ୍ଷେତ୍ରରେ ଏହା ସତ୍ୟ । କାବ୍ୟର ବାହ୍ୟ ଉପାଦାନ ଉପରେ ଅତିମାତ୍ର ଗୁରୁତ୍ୱ ପ୍ରଦାନ ବିପକ୍ଷରେ କ୍ଷେମେନ୍ଦ୍ରଙ୍କର ଔଚିତ୍ୟତତ୍ତ୍ୱ ହେଉଛି ଅନ୍ୟ ଏକ ସମାଲୋଚନା, ପୁଣି ଶେଷ ସମାଲୋଚନା (୨୦)।

କାବ୍ୟିକ ଭାଷା (Poetic diction) ସଂପର୍କରେ ରବର୍ଟ ବ୍ରିଜେସ୍ (Robert Bridges) ଯେଉଁ ପ୍ରବନ୍ଧ ରଚନା କରିଛନ୍ତି, ସେଥିରେ ସେ ଏହି ଔଚିତ୍ୟ ସଂପର୍କରେ କହିଛନ୍ତି । ଔଚିତ୍ୟ ଭାବନା ତାଙ୍କର ଲିଖିତ 'Keeping' ଶବ୍ଦରେ ଫୁଟି ଉଠିଛି । ଏହି ଚିନ୍ତାଧାରା ସେ Painting ରୁ ଆଣିଛନ୍ତି ଏବଂ ଏହାକୁ ଏକ ଐକ୍ୟତାନ ମାଧ୍ୟମ (Harmonising Medium) ରୂପେ ଉଲ୍ଲେଖ କରିଛନ୍ତି । ତାଙ୍କର ନିମ୍ନୋକ୍ତ ଉଦ୍ଧୃତିରୁ ତାଙ୍କ ଚିନ୍ତାଧରା ସ୍ପଷ୍ଟ ହେବ, ଯଥା-

But in Aesthetics no property is absurd if it is in keeping .ଔଚିତ୍ୟ (Keeping) ହେତୁ ଦୋଷ (absurdity) କିପରି ଗୁଣରେ (ବୈଶେଷିକ) ପରିଣତ ହୁଏ ବ୍ରିଜେସ୍ ସେହି କଥା କହିଛନ୍ତି ।

ସାହିତ୍ୟ ସମାଲୋଚନା କ୍ଷେତ୍ରରେ ରସ , ଧ୍ୱନି ଓ ଔଚିତ୍ୟ : ଏହି ତିନୋଟି ତତ୍ତ୍ୱ ବିଶ୍ୱ ସାହିତ୍ୟ ପ୍ରତି ମହାନ ତଥା ଉଲ୍ଲେଖ ଯୋଗ୍ୟ ଅବଦାନ । ଔଚିତ୍ୟ ଏକ ମହାନ ତତ୍ତ୍ୱ , ଯା'ର କକ୍ଷରେ ଅନ୍ୟ ଗୁଡିକ ଆସିଥା'ନ୍ତି । ରସ ଓ ରସଧ୍ୱନି ସହ ସମାଲୋଚନାର ଔଚିତ୍ୟ ନିୟମଟି ଅନ୍ୟମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି । ( ଡକ୍ଟର. ଭି. ରାଘବନ୍‌ଙ୍କର ଏକ ପ୍ରବନ୍ଧର ମର୍ମାନୁବାଦ । )

**ପାଦଟୀକା :**

୧. ନାନାଶୀଳାଃ ପ୍ରକୃତୟଃ ଶୀଳେ ନାଟ୍ୟଂ ପ୍ରତିଷ୍ଠିତମ୍ - ନାଟ୍ୟଶାସ୍ତ୍ର ।

୨. ଭୋଜ, ସରସ୍ୱତୀକଣ୍ଠାଭରଣ, ପୃ- ୮୯-୧୫ ।

୩. ଔଚିତ୍ୟଂ ବଚସାଂ ପ୍ରକୃତ୍ୟାନୁଗତଂ, ସର୍ବତ୍ର ପାତ୍ରୋଚିତା ପୁଷ୍ଟିଃ
ସ୍ୱାବସରେ ରସସ୍ୟଚ, କଥାମାର୍ଗେ ନଚାତିକ୍ରମଃ । ସୁଦ୍ଧିଃ ପ୍ରସ୍ତୁତ ସମ୍ବିଧାନକ ବିଧୌ, ପ୍ରୌଢ଼ିଶ୍ଚ ଶବ୍ଦାର୍ଥଯୋଃ
ବିଦ୍ୱଦ୍‌ଭିଃ ପରିଭାବ୍ୟତା ମବହିତୈଃ, ଏତାବଦେ ବାସ୍ତୁ ନଃ - ଶୃଙ୍ଗାରପ୍ରକାଶ ।

୪. ଏତାଃ ପ୍ରଯତ୍ନାଦଧିଗମ୍ୟ ସମ୍ୟଗୌଚିତ୍ୟମାଲୋଚ୍ୟ ତଦାର୍ଥ ସଂସ୍ୟଂ ।
ମିଶ୍ରାଃ କବୀନ୍ଦ୍ରୈର ଘନାଳ୍ପଦୀର୍ଘାଃ କାର୍ଯ୍ୟାମୁହୁର୍ଣ୍ଣୈବ ଗୃହୀତ ମୁକ୍ତାଃ ।।

କାବ୍ୟାଳଂକାର - ୨-୩୨ ।

୫. ଇତି ଯମକମଶେଷଂ ସମ୍ୟଗାଲୋଚୟଦ୍‌ଭି ସ୍ତୁ ।
କବିଭିରଭିଯୁକ୍ତୈଃ ବସ୍ତୁ ଚ ଔଚିତ୍ୟ ବିଦ୍‌ଭିଃ ।। କାବ୍ୟାଳଂକାର, ୩ୟ ଅଧ୍ୟାୟ ।

୬. ରସଭାବାଦି ତାତ୍ପର୍ଯ୍ୟମାଶ୍ରିତ୍ୟ ବିନିବେଶନମ୍ ।
ଅଳଂକୃତୀନାଂ ସର୍ବାସାମଳଂକାରତ୍ୱ ସାଧନମ୍ ।। ଧ୍ୱନ୍ୟାଲୋକ ୩-୬ ।

୭. ବର୍ଣ୍ଣର ଏକ ସ୍ୱକୀୟ ବିଶିଷ୍ଟ ପ୍ରଭାବ ରହିଛି । କେତେକ ବର୍ଣ୍ଣ ସ୍ୱଭାବତଃ ପେଶଳତା ବା କୋମଳତାର ଦ୍ୟୋତକ; ଅନ୍ୟବର୍ଣ୍ଣଗୁଡିକ ସ୍ୱତଃ ପରୁଷତା ପ୍ରକଟିତ କରନ୍ତି । ବର୍ଣ୍ଣର ଏହି ପ୍ରକୃତି ପ୍ରତି ଧ୍ୟାନଦେଇ କାବ୍ୟରେ ଏହାର ପ୍ରୟୋଗ ଶ୍ଳାଘନୀୟ ।

ଶ୍ରୀ ବଳଦେବ ଉପାଧ୍ୟାୟ, ଭାରତୀୟ ସାହିତ୍ୟ ଶାସ୍ତ୍ର, ୨ୟ ଭାଗ, ୨ୟ ସଂସ୍କରଣ, ପୃ-୫୯-୬୦, ପ୍ରସାଦ ପରିଷଦ, କାଶୀ ।

୮. ଅନୌଚିତ୍ୟାହୃତେ ନାନ୍ୟଦ୍ ରସଭଙ୍ଗସ୍ୟ କାରଣମ୍ ।
ପ୍ରସିଦ୍ଧୌଚିତ୍ୟବନ୍ଧସ୍ତୁ ରସସ୍ୟୋପନିଷତ୍ ପରା ।। ଧ୍ୱନ୍ୟାଲୋକ, ୩-୧୫ ।

୯. ଉଚିତାନୁଚିତ ବିବେକୋ ବ୍ୟୁତ୍ପତ୍ତିଃ ଇତି ଯାଯାବରୀୟଃ । କାବ୍ୟମୀମାଂସା ।

୧୦. ଶ୍ରୁତ୍ୱାପିନାମ ବଧିରୋ ଦୃଷ୍ଟ୍ୱାପ୍ୟନ୍ଧୋ ଜଡୋବିଦିତ୍ୱାପି ।
ଯୋ ଦେଶକାଳ କାର୍ଯ୍ୟବ୍ୟପେକ୍ଷୟା ପଣ୍ଡିତଃ ସ ପୁମାଂ ।।

୧୧. ତସ୍ମାତ୍ ରସୋଚିତ ଶବ୍ଦାର୍ଥ ସୂକ୍ତି ନିବନ୍ଧନଃ ପାକଃ । କାବ୍ୟ ମୀମାଂସା ।

୧୨. ନ ଚ ବ୍ୟୁତ୍କ୍ରମଦୋଷୋଽସ୍ତି କବେରର୍ଥ ପଥସ୍ପୃଶଃ ।
ତଥାକଥାକାପି ଭବେଦ୍ ବ୍ୟୁତ୍କ୍ରମୋ ଭୂଷଣଂ ଯଥା ।।
ଅନୁସନ୍ଧାନ ଶୂନ୍ୟସ୍ୟ ଭୂଷଣଂ ଦୂଷଣାୟତେ ।
ସାବଧାନସ୍ୟ ଚ କବେଃ ଦୂଷଣଂ ଭୂଷଣାୟତେ ।। କାବ୍ୟ ମୀମାଂସା ।

୧୩. ଉଚିତ ଶବ୍ଦେନ ରସବିଷୟମୌଚିତ୍ୟଂ ଭବତୀତି ଦର୍ଶୟନ୍ ରସଧ୍ୱନେଃ । ଧ୍ୱନ୍ୟାଲୋକ, ଲୋଚନଟୀକା ।

୧୪. ଔଚିତ୍ୟେନ ପ୍ରବୃତ୍ତୌ ଚିତ୍ତବୃତ୍ତେଃ ଆସ୍ୱାଦ୍ୟତ୍ୱେ ସ୍ଥାୟିନ୍ୟାରସଃ ବ୍ୟଭିଚାରିଣ୍ୟା ଭାବଃ । ଅନୌଚିତ୍ୟେନ ତଦାଭାସଃ ରାବଣସ୍ୟ ସୀତାୟାମିବ ରତେଃ । ରସକଳିକା ।

୧୫. ସରସ୍ୱତୀକଣ୍ଠାଭରଣ, ୧-୨୩ ।

୧୬. Pope, Essays on Criticism.

୧୭. ଔଚିତ୍ୟସ୍ୟ ଚମତ୍କାର କାରିଣ ଶ୍ଚାରୁ ଚର୍ବଣେ ।
ରସ ଜୀବିତ ଭୂତସ୍ୟ ବିଚାରଂ କୁରୁତେଽଧୁନା । ଔଚିତ୍ୟବିଚାରଚର୍ଚ୍ଚା, ଶ୍ଲୋକ - ୩ ।

୧୮. ଔଚିତ୍ୟଂ ରସସିଦ୍ଧସ୍ୟ ସ୍ଥିରଂ କାବ୍ୟସ୍ୟ ଜୀବିତମ୍ , ଔ.ବି.ଚ୍ୟ ଶ୍ଲୋକ -୫ ।

୧୯. କାବ୍ୟସ୍ୟାମଳଙ୍କାରୈଃ କିଂ ମିଥ୍ୟାଗଣିତୈ ର୍ଗୁଣୈଃ ।
ଯସ୍ୟ ଜୀବିତମୌଚିତ୍ୟଂ ବିଚିନ୍ତ୍ୟାପି ନ ଦୃଶ୍ୟତେ ।।
ଅଳଂକାରାସ୍ତ୍ୱଳଙ୍କାରାଃ ଗୁଣାଏବ ଗୁଣାସଦା ।
ଔଚିତ୍ୟଂ ରସସିଦ୍ଧସ୍ୟ ସ୍ଥିରଂ କାବ୍ୟସ୍ୟ ଜୀବିତମ୍ ।। ଔ.ବି.ଚ, ଶ୍ଲୋକ - ୪-୫

କନିକା ଛକ
କଟକ - ୮

# ଊନବିଂଶ ଶତକରେ ଭଞ୍ଜ ସାହିତ୍ୟ ଆଲୋଚନା

ପ୍ରାଧ୍ୟାପକ ଡକ୍ଟର ପୂର୍ଣ୍ଣ ଚନ୍ଦ୍ର ମିଶ୍ର

ସ୍ରଷ୍ଟାର ସୃଷ୍ଟିରେ ପ୍ରତିଫଳିତ ଭାବଚେତନାର ସାର୍ଥକ ମୂଲ୍ୟାୟନ ତଥା ଉପଲବ୍ଧି ନିମନ୍ତେ ସମାଲୋଚନାର ଦାନ ଅବିସ୍ମରଣୀୟ । ପୁନଶ୍ଚ ସାହିତ୍ୟ ସମାଲୋଚନା ମାଧମରେ କାବ୍ୟ କବିତାର ସୌନ୍ଦର୍ଯ୍ୟର ସଠିକ୍ ତଥା ଯଥାର୍ଥ ଅବବୋଧ ସମ୍ଭବପର ହୋଇପାରେ । ତେଣୁ ସାହିତ୍ୟର ସମ୍ୟକ୍ ଆଲୋଚନାକୁ ସମାଲୋଚନା କୁହାଯାଏ । ଏହି ସମ୍ୟକ୍ ଆଲୋଚନା ମଧରେ ସାହିତ୍ୟର ଉତ୍କର୍ଷ ବା ଅପକର୍ଷ ବିଚାର ନିହିତ ଥିଲେ ହେଁ ମୁଖ୍ୟତଃ ସାହିତ୍ୟର ଭାବବସ୍ତୁ,ରୀତି ଓ ଅଳଙ୍କାରାଦି ସାମଗ୍ରିକ ଆଲୋଚନା ହିଁ ସାହିତ୍ୟର ପ୍ରକୃଷ୍ଟ ସମାଲୋଚନା ।

ସାହିତ୍ୟ ସମାଲୋଚନା ଆଧୁନିକ ଯୁଗପରି ସୁଦୂର ପ୍ରସାରୀ ହୋଇନଥିଲେ ମଧ ପ୍ରାଚୀନ କାଳରେ ଯେ ଏହା ନଥିଲା ତାହା ମୁକ୍ତ କଣ୍ଠ ରେଅସ୍ୱୀକାର କରି ହେବ ନାହିଁ । ସାହିତ୍ୟ ମୁଦ୍ରିତ ରୂପ ଗ୍ରହଣ କରିବାର ବହୁ ପୂର୍ବରୁ ଏହି ସମାଲୋଚନା ପ୍ରବୃତ୍ତିର ନିଦର୍ଶନ ତାଳପତ୍ର ପୋଥିରେ ଲିଖିତ ପ୍ରାଚୀନ ସାହିତ୍ୟମଧରେ ପରିଦୃଷ୍ଟ ହୋଇଥିଲା । ସଂସ୍କୃତ ଭାଷାରେ ବହୁ କାବ୍ୟ କବିତା , ନାଟକାଦିର ସୃଷ୍ଟି ପରେ ପରେ କାବ୍ୟ ବିଚାର, କାବ୍ୟ ତତ୍ତ୍ୱ,କାବ୍ୟ ରଚନା ପଦ୍ଧତି ଓ ଟୀକା ଟିପ୍ପଣୀ ଆଦି ମଧରେ ସମାଲୋଚନା ପ୍ରବୃତ୍ତିର ଉନ୍ମେଷ ତଥା ବିକାଶ ଘଟିଥିଲା । ଏପରିକି କେତେକ ସର୍ଜନାତ୍ମକ ସୃଷ୍ଟିରେ ବିଭିନ୍ନ ଅଳଙ୍କାର ଶାସ୍ତ୍ର, କାବ୍ୟ କବିତାଦି ରଚନାର ଆଦର୍ଶ,କାବ୍ୟ ପାଠକ ନିରୂପଣ, ସାଧୁସ୍ତୁତି,ଖଳନିନ୍ଦା ଓ ଟୀକାଗ୍ରନ୍ଥାଦିକୁ ପ୍ରତ୍ୟକ୍ଷ ସମାଲୋଚନାସାହିତ୍ୟ ରୂପେ ସ୍ୱୀକାର କରା ନ ଗଲେ ହେଁ ଏହାରି ଅନ୍ତରାଳରେ ସାହିତ୍ୟ ସମାଲୋଚନା ପ୍ରବୃତ୍ତିଟିର ଅଙ୍କୁରୋଦ୍ଗମ ତଥା ବିକାଶ ହୋଇଥିଲା, ତାହା ଅନସ୍ୱୀକାର୍ଯ୍ୟ । ଏହା ସଂସ୍କୃତ ସାହିତ୍ୟ ପାଇଁ ଯେତିକି ସତ୍ୟ ମଧ ଯୁଗୀୟ ଓଡିଆ ସାହିତ୍ୟ ନିମନ୍ତେ ମଧ ସେତିକି ବାସ୍ତବ । ଉପର୍ଯ୍ୟୁକ୍ତ ପୃଷ୍ଠଭୂମି ଉପରେ ନିର୍ଭର କରି ଊନବିଂଶ ଶତକରେ ମଧ ଯୁଗୀୟ ଓଡିଆ ସାହିତ୍ୟ କୋଣାର୍କର ଅମ୍ଲାନ ଶିଳ୍ପୀ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ସାରସ୍ୱତ ସୃଷ୍ଟି ସମାଲୋଚନାଧାରାର ଉନ୍ମେଷ ତଥା ବିକାଶର ବିଚାର ବିମର୍ଶ କରିବା ହେଉଛି ଏହି ପ୍ରବନ୍ଧର ଲକ୍ଷ୍ୟ ।

କବିସାର୍ବଭୌମ ଉପେନ୍ଦ୍ର ଭଞ୍ଜଙ୍କର ସାରସ୍ୱତ ଜୀବନ କାଳକୁ ସପ୍ତଦଶ ଶତାବ୍ଦୀର ୭ମ ଦଶକରୁ ଅଷ୍ଟାଦଶ ଶତାବ୍ଦୀର ୪ର୍ଥ ଦଶକ ମଧରେ ଆଲୋଚକ ମାନେଉପସ୍ଥାପନ କରନ୍ତି । କବିଙ୍କ ସୃଷ୍ଟିସମ୍ଭାରର ଆଦ୍ୟସମାଲୋଚନା ସମ୍ପର୍କରେ ବିଚାର ବିମର୍ଶ କରିବା ଅବସରରେ ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମାଙ୍କର 'ଯୁଗଳ ରସାମୃତ ଭଉଁରୀ' ଗ୍ରନ୍ଥର ଶେଷ ଛାନ୍ଦରେ ପ୍ରଦତ୍ତ ଭଂଜଙ୍କ ସମ୍ପର୍କିତ ମନ୍ତବ୍ୟ ''ଉପଇନ୍ଦ୍ର ସୁକବି ନିତ୍ୟରସ ଅନୁଭବି / କୃଷ୍ଣ ଉପାସକ ନୋହି କି କାର୍ଯ୍ୟ ଏହି ଯେ'' ସ୍ୱତଃ ଦୃଷ୍ଟି ପଥାରୂଢ଼ ହୁଏ । ଧର୍ମୀୟ ଅବଗୁଣ୍ଠନ ମଧରେ ରହି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଏପରି ମନ୍ତବ୍ୟ ଦେଇଥିଲେ ହେଁ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରୁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧରେ ହୋଇଥିବା ଭଂଜଙ୍କ ରଚନାବଳୀର ଟୀକାଟିପ୍ପଣୀ ଗ୍ରନ୍ଥକୁ ଭଂଜସାହିତ୍ୟ ସମାଲୋଚନାର ମୂଳରୂପ ରୂପେ ଗ୍ରହଣ କରାଯାଇ ପାରେ । ଭଂଜକୃତି ଗୁଡିକର ଟୀକାକାର ମାନଙ୍କ ମଧରେ କୃଷ୍ଣଦାସ, ଲୋକନାଥ ଦାସ ଓ ନୀଳାମ୍ବର ପଟ୍ଟନାୟକ ଆଦିଙ୍କର ନାମ

ସ୍ମରଣଯୋଗ୍ୟ । କୃଷ୍ଣଦାସ କବିସମ୍ରାଟଙ୍କ କୃତ ଲାବଣ୍ୟବତୀର ଗଦ୍ୟଟୀକାକୁ ୩ୟ ଦିବ୍ୟସିଂହ ଦେବଙ୍କ ୨ୟ ଅଙ୍କ ଖ୍ରୀ. ୧୮୫୯ରେ ଶେଷ କରିଥିବା କଥା ଉକ୍ତପୋଥିର ପୁଷ୍ପିକାରେ ଉଲ୍ଲେଖ କରିଛନ୍ତି । (୧) ସେହିଭଳି ଅବନାରସତରଙ୍ଗ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମସୁଧାନିଧି, ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ ସୁଭଦ୍ରା ପରିଣୟ ଆଦିର ଟୀକା ଗ୍ରନ୍ଥ ଓଡିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟ ତଥା ରାଜ୍ୟ ସଂଗ୍ରାହାଳୟର ପୋଥିବିଭାଗ ମାନଙ୍କରେପରିଲକ୍ଷିତ ହୁଏ । (୨) ଏ ସମସ୍ତ ଟୀକାଗ୍ରନ୍ଥକୁ ଅଧ୍ୟୟନ ତଥା ଅନୁଧ୍ୟାନ କଲେ ଜଣାଯାଏ ଯେ ଟୀକାକାର ମାନେ ମୂଳପାଠକୁ ବୋଧଗମ୍ୟ କରିବା ପରିବର୍ତ୍ତେ ଅବୋଧ କରିବା ସଂଗେ ସଂଗେ ସଂସ୍କୃତ ଭାଷା ତଥା ସଂସ୍କୃତ କଥନ ଭଂଗୀର ପ୍ରଭାବରୁ ନିଜକୁ ମୁକ୍ତକରି ପାରିନାହାନ୍ତି । ଏପରିକି ସ୍ଥଳ ବିଶେଷରେ ଶବ୍ଦାର୍ଥ, ବ୍ୟାକରଣ ଯୁକ୍ତି, ସମୁଚିତ ଶବ୍ଦାବଳୀ, ବ୍ୟାଖ୍ୟା ସହିତ ସଂସ୍କୃତ ସାହିତ୍ୟରେ ପ୍ରଯୁକ୍ତ ବିଶ୍ଳେଷଣ ଭଂଗୀକୁ ଆଦରି ନେଇଥିବା କଥା ନିମ୍ନୋକ୍ତ ଉଦ୍ଧୃତିରୁ ଲକ୍ଷ୍ୟ କରାଯାଇ ପାରେ ।

ଟୀକାକାର କୃଷ୍ଣଦାସ ଲାବଣ୍ୟବତୀ (୧୯/୧)ର ଗଦ୍ୟଟୀକା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି, '' ମହୀଦେବ ଯେ ବ୍ରାହ୍ମଣ, ତାହାର ହସ୍ତରେ ପତ୍ରିକା ଯେ ଉଦନ୍ତ ପତ୍ରିକା, ତାହାକୁ ଚାହିଁ ଗାତ୍ରରେ ପୁଲକିତକୁ ବହି, ବେନି ନେତ୍ର ଯେ ସେହି ସେ ବେନି ନେତ୍ର ହେଲାକି ବସ୍ତ ହେଲା, ନିଉଛାଳି କରି । ନେତ୍ରଂମନ୍ଥ ଗୁଣେ ବସ୍ତ୍ରେ ତରୁମୂଳେ ବିଲୋଚନେ । ''ଇତ୍ୟଜୟଃ'', ଚଞ୍ଚଳେକ୍ଷଣି ଲାବଣ୍ୟବତୀ, ସେ ଅଞ୍ଚଳକୁ କରରେ ଭରି, ପତ୍ର ଯେଉଁ ଉଦନ୍ତ ପତ୍ର, ତାହାକୁ ପାହାଡ କରି ସତ୍ୱରେ ଘେନି ମସ୍ତକରେ ଲଗାଇଲା, ଚିଉରେ ଶଶୀ, ଯେ ଚନ୍ଦ୍ର ସେ କରଗତ ହେଲା, ତାହାକୁ ପ୍ରକାଶିଲା କି ବିକାଶିଲା, ସେ ଯେଉଁ ସୁନ୍ଦରୀ, ଯେ ନବଯୌବନ ସମ୍ପନ୍ନା ସେ , କାତରେ କି ବ୍ୟାକୁଳ ହୃଦୟରେ ମୁଦକୁ ଭାଂଗିଲା କି ଫିଟାଇଲା । 'ନବଯୌବନ ସମ୍ପନ୍ନା ସୁନ୍ଦରୀଯତି ଧୀୟତେ । ଇତି ଉଦନ୍ତକୁ ପତ୍ରିକା ବୋଲି, ଯଦୁକ୍ତଂ ଶ୍ରୀମଦ୍ ଭାଗବତେ । ...''(୩)

ସେହିପରି ଚିକିଟିର ଲୋକନାଥ ଦାସ ସୁଭଦ୍ରା ପରିଣୟ (୧୦/୩୩)ର ଟୀକାରେ ଉଲ୍ଲେଖ କରିଛନ୍ତି, '' ସରୋଜ ଯେ ପଦ୍ମ, ଅମ୍ବୁଜ ଯେ ପଦ୍ମ, ଏମନ୍ତ ବୋଲନ୍ତେ ପୁନରୁକ୍ତି ହେଲା । ପୁନରୁକ୍ତି ପରିହାରରେ ଗୁଣ । ସରୋଜ ଯେ ପଦ୍ମ ଅମ୍ବୁଜ ଯେ ଚନ୍ଦ୍ର, ଚନ୍ଦ୍ର ଆଦର୍ଶ ଯେ ସୁବର୍ଣ୍ଣ ଦର୍ପଣ ସେମାନେ ପରା ବଦନ ଯେ ମୁଖ ସେ ଯାହାର, ପୁଣ ସୁଝୀନ ବସନ ଅଟଇ ସୁରମ୍ୟ ବୋଇଲେ ସୁନ୍ଦର ଅଟଇ ଏବଂ ଭୂତ ବିଦ୍ରୁମ ଯେ ପୋଅଳା । ପ୍ରବାଳ ଯେ ପୋଅଳା । ମିହିର ଯେ ସୂର୍ଯ୍ୟ, ଅରୁଣ ଯେ ସୂର୍ଯ୍ୟ । ଏମନ୍ତେ ବୋଲନ୍ତେ ପୁନରୁକ୍ତି ହେଲା । ପୁନରୁକ୍ତି ପରିହାରରେ ଗୁଣ । ସୁରମ୍ୟ ପ୍ରବାଳ ଯେ ମନୋଜ୍ଞ ପ୍ରବାଳ । ପ୍ରବାଳ ଯେ ପଲ୍ଲବ । ମିହିର ଯେ ସୂର୍ଯ୍ୟ । ସେମାନେ ପରା ଅରୁଣ ବୋଇଲେ ଆରକ୍ତ ହୋଇଛି ଦଶନ ବସନ ଯେ ଓଷ୍ଠ ସେ ଯାହାର । ସୁଧାଂଶୁ ଯେ ଚନ୍ଦ୍ର । ଇନ୍ଦୁ ଯେ ଚନ୍ଦ୍ର । ସୁବିଧୁ ଯେ ଶୋଭନ ଚନ୍ଦ୍ର । ଏମନ୍ତ ବୋଲନ୍ତେ ପୁନରୁକ୍ତ ହେଲା । ପୁନରୁକ୍ତି ପରିହାରରେ ଗୁଣ । ସୁଧାଂଶୁ ଯେ ଚନ୍ଦ୍ର । ଇନ୍ଦୁ ଯେ କର୍ପୂର । ସୁବିଧୁ ଯେ ଉତ୍ତମ ଶଙ୍ଖ । ସେମାନେ ପରା ଦାସ ପ୍ରସନ୍ନ ସେ ଯାହାର , ସୁବର୍ଣ୍ଣ ସେ ସ୍ୱର୍ଣ୍ଣ, ହେମ ଯେ ସ୍ୱର୍ଣ୍ଣ, କନକ ଯେ ସ୍ୱର୍ଣ୍ଣ । ଏମନ୍ତ ବୋଲନ୍ତେ ପୁରରୁକ୍ତି ହେଲା । ପୁନରୁକ୍ତି ପରିହାରରେ ଗୁଣ । ସୁ ବୋଇଲେ ଶୋଭନଟି ବର୍ଣ୍ଣ ସେ ଯାହାର ଏବଂ ଭୂତ ହେମ କନକ ଯେ ହେମ ଚମ୍ପକ ସେ ପରା ଗାତ୍ର ସେ ଯାହାର 'କନକଂ ଚମ୍ପକ ସ୍ୱର୍ଣ୍ଣେ ଇତ ବିଶ୍ୱଃ' । ... ପୁନରୁକ୍ତି ବଦାଭାସ ଆଖ୍ୟାତଗତ, ନାମ-ଗତ ଦୁଇ ପ୍ରକାର ହୁଅଇ । ଏପଦ ନାମଗତ ହେଲା । ତଦୁକ୍ତ ସାହିତ୍ୟେ ପୁନରୁକ୍ତି ବଦାଭାତି ଯତ୍ରାର୍ଥୋନ ତୁ ତତଃପରଃ । ପୁନରୁକ୍ତ ବଦାଭାସଃ ସନାମାଖ୍ୟାତ ଖୋଦିଧା, ତତ୍ର ନାମ ତୋ ଯଥା ' କୃଷ୍ଣାଚ୍ୟୁତ ପୁରୁଷୋତ୍ତମ ଚତୁରାନନ ବାଗଧୀଶ ଲୋକେଶ ଇତି । ' (୪)

ଊନବିଂଶ ଶତକର ଚତୁର୍ଥ ଦଶକ ପୂର୍ବରୁ ଶ୍ରୀକରଭଂଜଙ୍କ ଦେବାନ ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକ ଓ ମୁଠାକାର୍ଯ୍ୟୀ ରଘୁନାଥ ମହାପାତ୍ରଙ୍କ ପୁତୁରା ଗଙ୍ଗାପାଣି ମହାପାତ୍ରଙ୍କ ଦ୍ୱାରା ଗୋଟିଏ ଲେଖାଏଁ 'ଭଂଜବଂଶାବଳୀ' ରଚିତ ହୋଇଥିଲା । ଏହା ବ୍ୟତୀତ ସଂସ୍କୃତ ଭାଷାରେ ଗୋପାଳ ରଥ ଶର୍ମାଙ୍କ ଦ୍ୱାରା ଗୋଟିଏ ଭଂଜବଂଶାବଳୀ ମଧ ଲେଖା ଯାଇଥିଲା । ଏ ତିନୋଟି ଭଂଜବଂଶାବଳୀ ରଚିତ ହୋଇଥିଲେ ହେଁ ୧୮୩୮ ମସିହାରେ ସର୍ବ ପ୍ରଥମେ ଟେଲର ସାହେବଙ୍କ ଦ୍ୱାରା ଭଂଜବଂଶାବଳୀଟିଏ ଇଂରାଜୀ ଭାଷାରେ ମୁଦ୍ରିତ ହୋଇ ପ୍ରକାଶନର ସୂର୍ଯ୍ୟାଲୋକ ଦେଖି ପାରିଥିଲା । (୫) ଏହାପରେ ୧୮୫୯ ମସିହାରେ ଜେ.ଲଙ୍ଗସାହେବଙ୍କ ଦ୍ୱାରା ଇଂରାଜୀ ଭାଷାରେ ରଚିତ 'ଓଡିଶା ଭ୍ରମଣ ବୃତ୍ତାନ୍ତ' ମଧ୍ୟରେ ଉପେନ୍ଦ୍ର ଭଂଜଙ୍କ ରାମ ବିଷୟକ ବୈଦେହୀଶ ବିଳାସ, ଲାବଣ୍ୟବତୀ, ରସମଞ୍ଜରୀ, ଓ ରସପଞ୍ଚକ ଆଦି ଗ୍ରନ୍ଥର ସାମାନ୍ୟ ସୂଚନା ପରିଦୃଷ୍ଟ ହୁଏ । (୬) କିନ୍ତୁ ଭଂଜସାହିତ୍ୟ ଆଲୋଚନାର ପ୍ରକୃତ ଶୁଭାରମ୍ଭ ହୁଏ ୧୮୬୪ ମସିହାରେ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ଦ୍ୱାରା ବଂଗଳା ଭାଷାରେ ଲିଖିତ ତଥା ମୁଦ୍ରିତ ପ୍ରବନ୍ଧ 'ଉପେନ୍ଦ୍ର ଭଂଜ' ମାଧ୍ୟମରେ । (୭) ପ୍ରବନ୍ଧଟିରେ ଉପେନ୍ଦ୍ର ଭଂଜଙ୍କର ୫୨ଗୋଟି ବହି ଥିବା କଥା ଆଲୋଚକ ଦର୍ଶାଇବା ସଂଗେ ସଂଗେ ୧୭ଟି ବହିର ନାମୋଲ୍ଲେଖ କରିଛନ୍ତି । ଉପେନ୍ଦ୍ର ଭଂଜଙ୍କୁ ''ସୁବିଖ୍ୟାତ କାବ୍ୟକାର'' ରୂପେ ପରିଚିତ କରାଇ, ବଙ୍ଗଭାଷୀ ପାଠକ ମାନଙ୍କ ଅବଗତି ନିମନ୍ତେ ଉଦ୍ଧୃତଲେଖାରେ ବୈଦେହୀଶବିଳାସ (୨୦ ଛାନ୍ଦ)ର କେତେକ ପଦର ବଙ୍ଗାନୁବାଦ ମଧ କରିଥିଲେ । ଏତଦ୍ ବ୍ୟତୀତ ଆଲୋଚନା ଶେଷରେ ଉପେନ୍ଦ୍ର ଭଂଜଙ୍କ ପତ୍ନୀ, ଅପୁତ୍ରିକତା, ଓ ଭଞ୍ଜ ବଂଶାବଳୀର ସୂଚନା ଦେଇ ପ୍ରବନ୍ଧଟିକୁ ରଙ୍ଗଲାଲ ସମାପ୍ତ କରିଥିଲେ ।

ଏହାପରେ ଊନବିଂଶ ଶତକରେ ଓଡିଶାର ବିଭିନ୍ନ ଅଞ୍ଚଳରୁ ଓଡିଆ ଭାଷାରେ ପ୍ରକାଶିତ ଉତ୍କଳ ଦୀପିକା, ଉତ୍କଳ ପୁତ୍ର, ଉତ୍କଳ ମଧୁପ, ଉତ୍କଳ ପ୍ରଭା, ସମ୍ବଲପୁରହିତୈଷିଣୀ, ନବସମ୍ବାଦ, ଓଡିଆ ଓ ନବସମ୍ବାଦ, ସମ୍ବାଦବାହିକା ଆଦି ପତ୍ର ପତ୍ରିକାରେ ତତ୍କାଳୀନ ଓଡିଶାର ବିଭିନ୍ନ ପ୍ରସଂଗ ସହିତ ସାହିତ୍ୟ ଆଲୋଚନା ମଧ ସ୍ଥାନ ପାଇଥିଲା । ଏହି ଆଲୋଚନା ପ୍ରାରମ୍ଭିକ ଅବସ୍ଥାରେ ଓଡିଶାରେ ପ୍ରାଚୀନ ତଥା ସମକାଳୀନ ସାହିତ୍ୟ ସମ୍ଭାର ଉପରେ ଆଲୋକପାତ କରିଥିଲେ ହେଁ ପରବର୍ତ୍ତୀସମୟରେ ଉପେନ୍ଦ୍ର ସାହିତ୍ୟ ସମୀକ୍ଷା ମୁଖ୍ୟସ୍ଥାନ ଗ୍ରହଣ କରିଥିଲା ।

୧୮୬୬ ମସିହା ଅଗଷ୍ଟ ମାସ ୪ ତାରିଖ ଶନିବାର ଦିନ ଗୌରୀଶଙ୍କର ରାୟଙ୍କ ସଂପାଦନାରେ 'ଉତ୍କଳଦୀପିକା' ପ୍ରଥମେ ଆତ୍ମପ୍ରକାଶ କଲା । ପତ୍ରିକାଟିର ଦ୍ୱାଦଶ ସଂଖ୍ୟାର 'ପ୍ରାପ୍ତ' ଶୀର୍ଷକରେ ବଙ୍ଗଳା ଭାଷାର ବିଦ୍ୟାସୁନ୍ଦର ଓ ଦୀନକୃଷ୍ଣଙ୍କ ଦ୍ୱାରା ରଚିତ ରସକଲ୍ଲୋଳ ସମ୍ବନ୍ଧରେ ତୁଳନାତ୍ମକ ଆଲୋଚନା କରାଯାଇ, ଓଡିଆ ସାହିତ୍ୟ, ଓଡିଶାର ଶିଳ୍ପ ବିଭବ ପ୍ରତି ଏ ଜାତିକୁ ସଚେତନ କରାଯିବା ସଂଗେ ସଂଗେ ପ୍ରାଚୀନ ଓଡିଆ ସାହିତ୍ୟର ବହୁ ମୂଲ୍ୟ ସାରସ୍ୱତ ସୃଷ୍ଟି ଗୁଡିକ ମୁଦ୍ରାଯନ୍ତ୍ର ଅଭାବରୁ କିପରି ନଷ୍ଟ ହୋଇଯାଉଛି , ସେ ସମ୍ପର୍କରେ ମଧ ସୂଚାଇ ଦିଆଯାଇଥିଲା । କେବଳ ସେତିକି ନୁହେଁ ପ୍ରସଙ୍ଗାନୁରୋଧରେ ଉଲ୍ଲିଖିତ ହୋଇଥିଲା, '' ଓଡିଶାର କବିକୁଳ କେଶରୀ ଉପେନ୍ଦ୍ରଭଂଜ ୫୨ ଖଣ୍ଡ ଗ୍ରନ୍ଥ ରଚନା କରନ୍ତି, ମାତ୍ର ଇଦାନିଂ ପ୍ରଶଂସିତ କବି ରଚିତ ୨୦/୨୫ ଖଣ୍ଡରୁ ଅଧିକ ମିଳୁନାହିଁ । କି ଆଦିରସ, କି ବୀରରସ , କି ଭକ୍ତିରସ, କି କରୁଣ ରସ ସକଳ ବିଷୟେ ରଚନାରେ ଉପେନ୍ଦ୍ରଭଂଜ ଅଦ୍ୱିତୀୟ କବିତ୍ୱ ଶକ୍ତି ପ୍ରକାଶ କରିଯାଇଅଛନ୍ତି, ବିଶେଷରେ ଯମକ ଓ ଶ୍ଳେଷ ପଦ ରଚନାରେ ଯେପରି ନିପୁଣତା ଦେଖାଇ ଅଛନ୍ତି । ଆମ୍ଭେ ସାହସ କରି କହିପାରୁଁ ସଂସ୍କୃତ ଭିନ୍ନ ଭାରତ ବର୍ଷୀୟ ଏମନ୍ତ ଭାଷାର କାବ୍ୟକାର ନାହାନ୍ତି ଯେ ଯାହାଙ୍କ ସହିତ ତୁଳନା ଦିଆ ଯାଇପାରେ ।'' (୮)

ଏଭଳି ମନ୍ତବ୍ୟ ପ୍ରକାଶ ପାଇବା ପରେ ପରେ ସେହି ବର୍ଷ ଡିସେମ୍ବର ମାସ ୧୫ ତାରିଖରେ ଉପେନ୍ଦ୍ରଭଂଜକୃତ ପ୍ରେମସୁଧାନିଧି ଗୌରୀଶଙ୍କର ରାୟ ଓ ବନମାଳୀ ସିଂହଙ୍କ ଦ୍ୱାରା ସଂଶୋଧିତ ହୋଇ କଠିନ ଶବ୍ଦାର୍ଥ ସହ ମୁଦ୍ରିତ ହେଲା । ଉକ୍ତ ପୁସ୍ତକଟି ପ୍ରକାଶ ପାଇବାର ୭ଦିନ ପୂର୍ବରୁ ଅର୍ଥାତ ଦୀପିକାର ୧ମ ଭାଗ ୧୮ ସଂଖ୍ୟାରେ ''ବିଖ୍ୟାତ କବି ଉପେନ୍ଦ୍ରଭଂଜକୃତ ପ୍ରେମସୁଧାନିଧି'' ଶୀର୍ଷକ ବିଜ୍ଞାପନଟିଏ (୯) ପ୍ରକାଶ ପାଇବା ସଂଗେ ସଂଗେ ପୁସ୍ତକଟିର ଭୂମିକାରେ ଉଲ୍ଲେଖ ଥିଲା, '' ଆମ୍ଭେ ମାନେ ଅଦ୍ୟ ଉତ୍କଳଦେଶୀୟ ପ୍ରଧାନ କବିଙ୍କ ଏକଗ୍ରନ୍ଥ ଜନମାନସକୁ ଅର୍ପଣ କରିବାକୁ ସାହସ କରିଅଛୁଁ । ଉତ୍କଳ ଦେଶରେ ଯେ କେତେ ପୁରାତନ ଭାଷା ପୁସ୍ତକମାନ ଅଛି ତାହା ଅନେକ ଲୋକ ଜାଣନ୍ତି; ମାତ୍ର ଅଦ୍ୟାପି କେହି ମୁଦ୍ରାଯନ୍ତ୍ରର ଫଳ ଲାଭ ନକରି ପାରି ସେ ସର୍ବସାଧାରଣର ତାଦୃଶ ଆଦରଣୀୟ ହୋଇପାରିନାହିଁ । .. ପାଠକ ମହାଶୟଙ୍କୁ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ପ୍ରାଚୀନ ପୁସ୍ତକ ମାନଙ୍କର ଚର୍ଚ୍ଚା ଇଦାନି ଅତ୍ୟଳ୍ପ ସ୍ଥଳରେ ହେଉଥିବା ହେତୁରୁ ତହିଁର ସ୍ୱାଦୁ କ୍ରମେ ଲୋପ ପାଇଥିବାରୁ ଓ ସେ ପୁସ୍ତକ ମାନ ସାମାନ୍ୟ ଅବଧାନ ଅଥବା ଅଳ୍ପବିଦ୍ୟା ବିଶିଷ୍ଟ ଲୋକଙ୍କ ଦ୍ୱାରା ଲେଖା ହୋଇଥିବାରୁ ପ୍ରକୃତ ଓ ଶୁଦ୍ଧ ପୁସ୍ତକ କୁତ୍ରାପି ପ୍ରାପ୍ତ ହେବାର ଅତି ସୁକଠିଣ । .... ଆମ୍ଭ ମାନଙ୍କର ଏହି ଆଶା ଯେ ଯେରୂପ ଇତର ପଟ ମାତ୍ରର ସାହାଯ୍ୟରେ ସୁଗନ୍ଧ ଓ ସୁରମ୍ୟ କୁସୁମରାଶି ଦେବତାଙ୍କ ମସ୍ତକର ଭୂଷଣହୁଅଇ ସେ ରୂପ ଯେ ଆମ୍ଭମାନଙ୍କର ସାମାନ୍ୟ ଯତ୍ନରେ ଉତ୍କଳଦେଶର ବହୁକାଳରୁ ଅନାଦୃତ ରତ୍ନସ୍ୱରୂପ ଭାଷାଗ୍ରନ୍ଥମାନ ଗୁଣିଗଣଙ୍କର ହୃଦୟ ଭୂଷଣ ହୁଅଇ ତାହା ହେଲେ ଆମ୍ଭର ଯଥାର୍ଥ ପୁରସ୍କାର ହେବ । ''(୧୦)

ଏଥିରୁ ଗୌରୀଶଂକର ପ୍ରାଚୀନ ଓଡିଆ ସାହିତ୍ୟ ପ୍ରତିଥିବା ଆଶା, ଆକାଂକ୍ଷା, ତଥା ଆଗ୍ରହର ସୁସ୍ପଷ୍ଟ ଚିତ୍ରଟିଏ ଦେଖିବାକୁ ମିଳେ । ମନେହୁଏ, ସେତେବେଳକୁ ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟ ଅପେକ୍ଷା ଭଂଜସାହିତ୍ୟର ଚିକାଚିକ୍ୱଣୀ ତଥା ଛନ୍ଦାୟିତ ରାଗରାଗିଣୀ ବିଶେଷ ଭାବେ ଜନ ମାନସକୁ ଆବୋରି ବସିଥିଲା । ତେଣୁ ଗୌରୀଶଙ୍କର ଜନମାନସର ଆଗ୍ରହକୁ ପୃଷ୍ଟପୋଷକତା ପ୍ରଦାନ କରିବା ପାଇଁ ଭଂଜସାହିତ୍ୟର ଅନବଦ୍ୟ ସାରସ୍ୱତ କଳାକୃତି 'ପ୍ରେମ ସୁଧାନିଧି' କୁ ପ୍ରଥମେ ମୁଦ୍ରିତ ରୂପ ଦେଇଥିଲେ ।

୧୮୬୮ ମସିହାରେ ବଂଗଳା କବିତାବଳୀରେ କବିବର ରାଧାନାଥ ଉପେନ୍ଦ୍ରଭଂଜଙ୍କର ଭୂୟସୀ ପ୍ରଶଂସା କରି ଉଲ୍ଲେଖ କରିଥିଲେ ।

ଧନ୍ୟ ରାଜକବି ତୁମି ! ଜନମ ସୁକ୍ଷଣେ
ଗ୍ରହନିଲା ଏ ପ୍ରଦେଶେ ହେ କବୀନ୍ଦ୍ର ମଣି !
ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲା ଉପେନ୍ଦ୍ର ! ମରି ଯେ ଚାରୁ ଭୂଷଣେ
ସାଜାଯେଛ ବୈଦେହୀଶେ ହେ କବି ରତନ
ତୋମା ବିନା ସାଧକାର ସାଜାୟ ଏମନ । '' (୧୧)

୧୮୬୯ ମସିହା ଫେବୃୟାରୀ ମାସ ୧୩ ତାରିଖ ଉତ୍କଳ ଦୀପିକାରେ ବାବୁ ଜଗନ୍ମୋହନ ଲାଲଙ୍କ 'ଭ୍ରମ ଭଂଜନ' ଗ୍ରନ୍ଥର ସମୀକ୍ଷା ଅବସରରେ ସମ୍ପାଦକ ମତ ଦେଇଥିଲେ , '' ଆମ୍ଭ ମାନଙ୍କ ମତରେ ପୂର୍ବରଚିତ କବିତା ସମସ୍ତ ରକ୍ଷା କରିବା ନୂତନ କବିତାଠାରୁ ମହତ ଅଟଇ ଏବଂ ନୂତନ କବିତା ଅପେକ୍ଷା ପୁରାତନ କବିତା ମାନ ଉଦ୍ଧୃତ କରି ବାଳକ ମାନଙ୍କୁ ଶିକ୍ଷା ଦେବା ଉତ୍ତମ ଉପାୟ ଅଟଇ ତଥାଚ

ଆମ୍ଭେମାନେ ଏ ପୁସ୍ତକକୁ ବିଦ୍ୟାଳୟ ପାଠ୍ୟ ପୁସ୍ତକ କରିବାର ଅନୁରୋଧ କରୁଅଛୁଁ, କାରଣ ଏପରି କବିତା ମାନ ପାଠକଲେ ବାଳକ ମାନେ କ୍ରମେ ଉପେନ୍ଦ୍ରଭଞ୍ଜାଦିଙ୍କର କବିତାର ମର୍ମ ଗ୍ରହଣ କରିବାକୁ ସକ୍ଷମ ହେବେ । (୧୨)

ଏହାପରେ ୧୮୭୦ ମସିହା 'ଉତ୍କଳହିତୈଷିଣୀ' ପତ୍ରିକାରେ ପ୍ରକାଶିତ ଉପେନ୍ଦ୍ରଭଞ୍ଜଙ୍କ 'ସୁବର୍ଣ୍ଣରେଖା' ଗ୍ରନ୍ଥର ସମୀକ୍ଷା ସମ୍ପର୍କରେ ଉତ୍କଳଦୀପିକାର ପ୍ରେରିତ ପତ୍ର ଶୀର୍ଷକରେ ଏକ ମନ୍ତବ୍ୟ ପ୍ରକାଶ ପାଇଥିଲା । ସେଥିରେ "...ଗ୍ରନ୍ଥ ପ୍ରକାଶକଙ୍କ ପ୍ରତି ଯେ କେତେଗୋଟି ନୀରସ କଠୋର ଶବ୍ଦ ପ୍ରୟୋଗ କରିଅଛନ୍ତି ତହିଁରେ ଆମ୍ଭ ପରିଚୟ ଯଥେଷ୍ଟ ପ୍ରାପ୍ତ ହୋଇଅଛି । 'ସୁବର୍ଣ୍ଣରେଖା' ଯେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ ଏହି ଶବ୍ଦ ଶ୍ରବଣ ମାତ୍ରେ ଗ୍ରନ୍ଥ ଯେ କେତେଦୂର ଆଦରଣୀୟ ତାହା ସାଧାରଣରେ ଅପ୍ରକାଶ ନାହିଁ, ତହିଁ ପକ୍ଷରେ ଅଧିକ ବାକ୍ୟ ପ୍ରୟୋଗ କରିବା ଆମ୍ଭ ମାନଙ୍କର ଅନାବଶ୍ୟକ । ତେବେ ଏତିକି କହିପାରୁଁ ଯେ , ଶ୍ରୀ ଉପେନ୍ଦ୍ର ଭଞ୍ଜ ଓ ଦୀନକୃଷ୍ଣ ଦାସ ପ୍ରଭୃତି ବିଖ୍ୟାତ କବିମାନେ ଯେଉଁ କାଳରେ କାବ୍ୟ ଗ୍ରନ୍ଥମାନ ପ୍ରକାଶ କରିଥିଲେ , ସେହି ସମୟରେ ମଧ ଏ ପ୍ରକାର ଲୋକ ଥିଲେ କିମ୍ବା ଏପରି ଲୋକ ଜନ୍ମଗ୍ରହଣ କରିବେ କି ସେମାନେ ତାହାଙ୍କ କବିତା ଗ୍ରହଣ କରିପାରିବେନାହିଁ ଏହା ବିବେଚନା କରି ସେମାନେ ଆପଣା ଆପଣା ଗ୍ରନ୍ଥ ମାନଙ୍କରେ ଯାହା ଲେଖି ଯାଇଅଛନ୍ତି " ତନ୍ମଧ୍ୟରୁ କେତେକ ପାଠକ ମାନଙ୍କ ଗୋଚରାର୍ଥେ ପତ୍ରପ୍ରେରକ ଉଦ୍ଧାର କରିଅଛନ୍ତି । (୧୩)

୧୮୭୨ ମସିହାରେ ବୀମସ୍‌ସାହେବ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ଏକ ତାଲିକା ପ୍ରଦାନ କରିବା ସଂଗେ ସାଗେ ଉଲ୍ଲେଖ କରିଥିଲେ , "The above thirty works are by the celebrated Upendra Bhanja of Ghumusur." (୧୪) ଏହି ବର୍ଷ ହଣ୍ଟର ସାହେବ ଏ ଦେଶର ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କରିବା ସଂଗେ ସଂଗେ ଭାରତର ଆଞ୍ଚଳିକ ଭାଷା ପ୍ରତି ମଧ ଦୃଷ୍ଟିପାତ କରିଥିଲେ । ଏ ଦେଶର ସାରସ୍ୱତ ସୃଷ୍ଟି ସଂପଦର ସୂଚନା ଦେବା ଅବସରରେ ଉପେନ୍ଦ୍ର ଭଞ୍ଜଙ୍କର ୪୨ ଗୋଟି ବହିର ଏକ ତାଲିକା ତାଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା । (୧୫)

୧୮୭୩ ମସିହାରେ ପ୍ୟାରୀମୋହନ ଆଚାର୍ଯ୍ୟ 'ଉତ୍କଳ ପୁତ୍ର ' ପତ୍ରିକାର 'ଗଞ୍ଜାମ, ସମ୍ବଲପୁର ଓ ଉତ୍କଳ ପୁସ୍ତକ' ଶୀର୍ଷକ ମଧ୍ୟରେ ବଙ୍ଗଳା ଭାଷା ଉଠିଯିବା ହେତୁ ଆନନ୍ଦ ପ୍ରକାଶ କରିବା ସଂଗେ ସଂଗେ ଉଲ୍ଲେଖ କରିଛନ୍ତି , "ପୁରାତନ ପୁସ୍ତକ ମାନ ଅଛି ତହିଁରେ ଆମ୍ଭ ମାନଙ୍କ ଆସ୍ଥାନାହିଁ । ଉପେନ୍ଦ୍ରଙ୍କ ଯମକ, ଦୀନକୃଷ୍ଣଙ୍କ ଅନୁପ୍ରାସ ଓ ଅଭିମନ୍ୟୁଙ୍କ ରାସକ୍ରୀଡା ଆମ୍ଭ ମାନଙ୍କ ରୁଚିକୁ ଭଲ ଲାଗୁ ନାହିଁ । ବସ୍ତୁତଃ ଏପରି ରସାତ୍ମକ ପୁସ୍ତକମାନ ପାଠ୍ୟପୁସ୍ତକ କରି ସୁକୁମାରମତି ବାଳକ ମାନଙ୍କ ହସ୍ତରେ ଦେବାକୁ ଆମ୍ଭମାନଙ୍କୁ ଲଜ୍ଜା ହେଉଅଛି । "(୧୬) ୧୮୭୪ ମସିହାରେ ଉକ୍ତ ପତ୍ରିକାର 'ଉତ୍କଳ ସାହିତ୍ୟ' ଶିରୋନାମାରେ ଓଡିଶାର ପ୍ରାଚୀନ ସାହିତ୍ୟ ମଧ୍ୟରେ ଥିବା ନଗ୍ନ ପ୍ରେମଚିତ୍ରକୁ ତୀବ୍ରଭାବରେ ସମାଲୋଚନା କରାଯିବା ସହିତ " ଏ ଗ୍ରନ୍ଥର ଅବସ୍ଥା ଏ ରୂପ ନୁହେଁ ଯେ ସୁକୁମାର ମତି ଶିଶୁ କି ଯୌବନୋନ୍ମୁଖୀ ବାଳକ ସମସ୍ତଙ୍କ ହସ୍ତରେ ନିରାପଦରେ ଅର୍ପଣ କରାଯାଇପାରିବ " ବୋଲି ମତବ୍ୟକ୍ତ କରାଯାଇଥିଲା । (୧୭) କେବଳ ସେତିକି ନୁହେଁ, ୧୮୭୮ ମସିହା ଜାନୁୟାରୀ ମାସ ୧୮ ତାରିଖ ଶୁକ୍ରବାର ଦିନ ଉତ୍କଳ ସଭାର ଷାଣ୍ମାସିକ ଅଧିବେଶନରେ ପ୍ୟାରୀମୋହନ ଆଚାର୍ଯ୍ୟ ଯେଉଁ ତୀବ୍ର ବ୍ୟଙ୍ଗୋକ୍ତି ତଥା କଟୂକ୍ତି ପୂର୍ଣ୍ଣ ବାକ୍ୟରେ ଯାହା କହିଥିଲେ ତାହା ହେଉଛି, " ଓଡିଆ ଭାଷାରେ ପ୍ରାଚୀନ କାଳରେ ଏମନ୍ତ କିଛି ସମ୍ପତ୍ତି ନାହିଁ ଯାହାକି ଭାଷାର ଉନ୍ନତି ସକାଶେ କାର୍ଯ୍ୟରେ ଆସିବ । " (୧୮) ଏହି ସଭାରେ ରାଧାନାଥ ରାୟ ଓ ଗୋପାଳ

ଚରଣ ଦାସ ଆଦି ଉପସ୍ଥିତ ରହି ପ୍ୟାରୀ ବାବୁଙ୍କର ପ୍ରାଚୀନ ଓଡିଆ ସାହିତ୍ୟ ବିରୋଧୀ ମନୋଭାବ ପ୍ରତି ମୌନ ସମ୍ମତି ଜଣାଇବାରୁ ଚତୁର୍ଭୁଜ ପଟ୍ଟନାୟକ ପ୍ୟାରୀବାବୁଙ୍କ ମତର ପ୍ରଚଣ୍ଡ ବିରୋଧ କରିଥିଲେ । ଫଳରେ ପ୍ରାଚୀନ ଓ ଆଧୁନିକ ସାହିତ୍ୟ ସଂଘର୍ଷର ସୂତ୍ରପାତ ହେଲା ।

ଏହି ବର୍ଷ ଏପ୍ରେଲ ମାସରେ ଉତ୍କଳ ସଭାର ମୁଖପତ୍ର ରୂପେ ଉତ୍କଳ ମଧୁପ ନାମକ ଏକ ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କରିଥିଲା । ପତ୍ରିକାଟିର ଉଦ୍ଦେଶ୍ୟ ଥିଲା, '' ଉତ୍କଳର ପ୍ରାଚୀନ କବି ଉପେନ୍ଦ୍ରଭଞ୍ଜ ପ୍ରଭୃତିଙ୍କ ରଚିତ କବିତା ମାନଙ୍କର ସମାଲୋଚନା ଓ ତହିଁର ଦୋଷଗୁଣ ଦେଖିବା । ( ୧୯ ) ଏହି ଉଦ୍ଦେଶ୍ୟର ପରିପୂରଣ ନିମନ୍ତେ ଉକ୍ତ ପତ୍ରିକାରେ ପ୍ରଥମେ ଉପେନ୍ଦ୍ର ଭଞ୍ଜଙ୍କ ଶୃଙ୍ଗାରରସାତ୍ମକ କାଳ୍ପନିକ କାବ୍ୟ ଲାବଣ୍ୟବତୀ' ( ୨୦ ) ଓ ପରେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର କେତେକ ଅଂଶ ଧାରାବାହିକ ଭାବେ ଆଲୋଚିତ ହୋଇଥିଲା । ଲାବଣ୍ୟବତୀର ଆଲୋଚନା ଅଧାରଖି ୧୮୭୯ ମସିହା ମଧୁପର ୧ମ, ୨ୟ ସଂଖ୍ୟାରେ ଏହା ''ପ୍ରକୃତ କାବ୍ୟ ନୁହେଁ'' ଓ ୩ୟ, ୪ର୍ଥ ସଂଖ୍ୟାରେ ''ଅଶ୍ଳୀଳ'' ବୋଲି ମତଦେବା ସଂଗେ ସଂଗେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଆଲୋଚନା ଆରମ୍ଭ କରିଥିଲେ । ଉକ୍ତ ପତ୍ରିକାରେ ଉଭୟ କାବ୍ୟର କେତେକ ଅଶ୍ଳୀଳ ତଥା ଶୃଙ୍ଗାର ରସାଶ୍ରିତ ଅଂଶ ସମୀକ୍ଷା ନିମନ୍ତେ ଗୃହୀତ ହୋଇଥିଲା । ଆଲୋଚନା କ୍ରମରେ ପ୍ରଥମେ ଲାବଣ୍ୟବତୀର ଜନ୍ମ, ରୂପବର୍ଣ୍ଣନା, ବୟସବୃଦ୍ଧି, ଯୌବନ ବର୍ଣ୍ଣନା, ମଧୁଶଯ୍ୟା, କେଳିପୁର ବର୍ଣ୍ଣନା ଓ ଚନ୍ଦ୍ରଭାନୁର ବିଦେଶାନୁଚିନ୍ତା ଆଦି ପ୍ରସଙ୍ଗକୁ ଅବତାରଣା କରାଯାଇଥିଲା । ଏ ସମସ୍ତ ଅଂଶର ବର୍ଣ୍ଣନା ମଧ୍ୟରେ କବିର ସ୍ୱାଭାବିକତା ତଥା ବାସ୍ତବତାକୁ ନଦେଖି ଏହାକୁ ପ୍ରକୃତ କାବ୍ୟ ନୁହେଁ ଓ ଅଶ୍ଳୀଳ ପୂର୍ଣ୍ଣ କହିପରିତ୍ୟାଗ କରିବା ସଂଗେ ସଂଗେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ମଧ୍ୟ ସେହି ସେହି ଅଂଶଗୁଡିକ ଆଲୋଚନା ନିମନ୍ତେ ନିଆଯିବା ସହିତ ଉତ୍କଳ ସଭାର ବିବରଣୀରେ ଲିପିବଦ୍ଧ ହୋଇଥିଲା । ଉତ୍କଳ ସଭାର ଏଭଳି ନିଷ୍ପତ୍ତି ଉପରେ ଦୀପିକାର ମନ୍ତବ୍ୟ ଥିଲା, ''ଲାବଣ୍ୟବତୀରେ ଦାମ୍ପତ୍ୟ ପ୍ରଣୟର କୌଣସି ବ୍ୟଭିଚାର ନାହିଁ ଏବଂ ଆଦିରସ ଘଟିତ କାବ୍ୟରୁ ଆଉ ଯାହା ଆଶା କରାଯାଇପାରେ ତାହା ଯେ ଏଥିରୁ ଲାଭ କରିବା ଅସମ୍ଭବ ଏପରି ଆମ୍ଭେ କହିନ ପାରୁଁ । ତେବେ ପଢ଼ାଶୁଣା ଲୋକେ ଯେବେ ଯେଉଁ ଭାବ ସମୁଦ୍ରରୁ ଅମୃତ ଜାତ ହୋଇ ତହିଁରୁ ବିଷ ବାହାର କରି ତଦ୍ୱାରା ଆପଣା ଚରିତ୍ରକୁ ନଷ୍ଟ କରିବେ, ତାହା ନିବାରଣ କରିବାକୁ ଆୟତ୍ତ କାହାର ।'' ( ୨୧ )

୧୮୮୭ ମସିହାରେ ସାଧୁଚରଣ ରାୟଙ୍କ ଦ୍ୱାରା ସମ୍ପାଦିତ 'ନବ ସମ୍ବାଦ' ପତ୍ରିକାରେ 'ଉତ୍କଳ କବିତା ଓ କବି' ଶୀର୍ଷକ ଆଲୋଚନା ମଧ୍ୟରେ ଉପେନ୍ଦ୍ରଭଞ୍ଜଙ୍କ ପ୍ରସଙ୍ଗ ଉତ୍‌ଥାପିତ ହୋଇ ଉଲ୍ଲେଖ ଥିଲା, ''ଉପେନ୍ଦ୍ର ରାଜପଦ ପରିତ୍ୟାଗ କରି ଅମର କବି ପଦ ଲାଭ କରିଥିଲେ । ପ୍ରକୃତ କଥା କବି ନୋହି ରାଜା ହୋଇଥିଲେ ତାଙ୍କ ରାଜପଦ କେଉଁ କାଳରୁ ଅନ୍ଧକାରମୟ ଭବିଷ୍ୟତ ଗର୍ଭରେ ଲୁଚି ଯାଇଥାନ୍ତା । ଆଉ କେହି ତାଙ୍କ ପ୍ରସଙ୍ଗ ଉତ୍‌ଥାପନ କରନ୍ତେ ନାହିଁ । କିନ୍ତୁ ତାଙ୍କ କବିପଦ ଆଜି ଯାଏ ଜୀବିତ ରହିଅଛି ଓ ଉତ୍କଳ ଭାଷାର ଅସ୍ତିତ୍ୱଥିବା ପର୍ଯ୍ୟନ୍ତ ରହିବ । .... ଉପେନ୍ଦ୍ର ସେ ସମୟର ରଚି ଏବଂ କେତେକ ଆଦିରସ ପ୍ରିୟ ସଂସ୍କୃତ କବିଙ୍କର କବିତାକୁ ଅନୁସରଣ କରି କବିତା ଲେଖିବା ଲେଖିଥିଲେ । .... ତାଙ୍କର ଅସାଧାରଣ ଶବ୍ଦାର୍ଥ ଜ୍ଞାନ ଏବଂ ବର୍ଣ୍ଣନା ଶକ୍ତି ଥିଲା । ବର୍ଣ୍ଣନାର ଛଟା ପ୍ରାୟ ସର୍ବତ୍ର ପରିଲକ୍ଷିତ ହୁଏ । କିନ୍ତୁ ଅଧିକାଂଶ ବର୍ଣ୍ଣନା ପ୍ରାକୃତିକ ନୁହେଁ କାଳ୍ପନିକ ।'' ( ୨୨ )

ନବ ସମ୍ବାଦ ପତ୍ରିକାଟି ଏକବର୍ଷ ମଧ୍ୟରେ ବିଲୟ ପ୍ରାପ୍ତ ହେବାରୁ ୧୮୮୮ ମସିହାରେ 'ଓଡିଆ ଓ ନବସମ୍ବାଦ' ନାମକ ଏକ ପତ୍ରିକା ଆତ୍ମପ୍ରକାଶ କଲା । ପତ୍ରିକାଟିର ତା-୨୦.୧.୧୮୮୯

ସଂଖ୍ୟାରେ ପ୍ରକାଶିତ 'ଉତ୍କଳ ସାହିତ୍ୟ' ଶୀର୍ଷକ ପ୍ରବନ୍ଧରେ ପ୍ରଥମେ ଭଞ୍ଜସାହିତ୍ୟର ତୀବ୍ର ସମାଲୋଚନା କରାଯିବ ସଂଗେ ସଂଗେ ତା ୨୦.୨.୧୮୮୯ ସଂଖ୍ୟାରେ କବିବର ରାଧାନାଥ ରାୟଙ୍କର ଭୂୟସୀ ପ୍ରଶଂସା କରାଯାଇଥିଲା । ଏଥିରେ ମୁଖ୍ୟ ଆଲୋଚ୍ୟ ବିଷୟ ରୂପେ ବୈଦେହୀଶବିଳାସ ଗୃହୀତ ହୋଇ ଉଲ୍ଲେଖ ଥିଲା, '' ଉପେନ୍ଦ୍ରଭଞ୍ଜଙ୍କ ବୈଦେହୀଶବିଳାସରେ ଚରିତ୍ର ସରଳ, ସ୍ୱାଭାବିକ ବିକାଶ ନାହିଁ । ଏ ଗ୍ରନ୍ଥ କବିଙ୍କର କବିତ୍ୱ ଅପେକ୍ଷା ବିଦ୍ୟାବତ୍ତାର ଅଧିକ ପରିଚାୟକ । ଅଧିକନ୍ତୁ ଏ ସାହିତ୍ୟରେ ମାନବାକାଙ୍କ୍ଷାର ପ୍ରତିମୂର୍ତ୍ତି, ଚରିତ୍ରର ବିଶ୍ଳେଷଣ, ଜୀବନର ସମାଲୋଚନା ବିରଳ । ରୂପବର୍ଣ୍ଣନା ଚରିତ୍ର ଚିତ୍ର ନୁହେଁ । ବିଳାସ କେଳି ବର୍ଣ୍ଣନା ଜୀବନର ଛବି ନୁହେଁ, ବେଶଭୂଷାରେ ପ୍ରବୃତ୍ତି ମାନବର ଆକାଂକ୍ଷା ନୁହେଁ । ପୂର୍ବକାଳରେ ବିସ୍ତୃତ ସମାଜ, ଜୀବନର ବାସ୍ତବ ଅଭିଜ୍ଞତା ବଦଳରେ ରାଜସଭାର ଆଡମ୍ବର ଥିବାରୁ ପ୍ରକୃତ କବିତାର ସୁନ୍ଦର ବିକାଶ ଅପେକ୍ଷା ଛାନ୍ଦ ଚାତୁର୍ଯ୍ୟ ଓ ବାକ୍ୟାଡମ୍ବରରେ ରଚନା ପର୍ଯ୍ୟବସିତ । ''(୨୩) ମୋଟ ଉପରେ ଏହି ଆଲୋଚନା ମଧ୍ୟରେ ନୂତନ ରୁଚିବୋଧ, କବିତାଟିର ଆତ୍ମିକ ସୌନ୍ଦର୍ଯ୍ୟାନୁଶୀଳନ ଆଦି ମୁଖ୍ୟ ସ୍ଥାନ ଗ୍ରହଣ କରିବା ଫଳରେ ପରବର୍ତ୍ତୀ ସମାଲୋଚକ ମାନଙ୍କୁ ଏହା ନୂତନ ଦିଗ୍‌ଦର୍ଶନ ପ୍ରଦାନ ନିମନ୍ତେ ଯଥେଷ୍ଟ ସହାୟକ ହୋଇଥିଲା । କିନ୍ତୁ ଏହି ଆଲୋଚନା ଦ୍ୱାରା ପ୍ରାଚୀନ ଓ ଆଧୁନିକ ସାହିତ୍ୟ ସମାଲୋଚନା କ୍ରମଶଃ ଉପେନ୍ଦ୍ରଭଞ୍ଜ ଓ ରାଧାନାଥ କୈନ୍ଦ୍ରିକ ଆଲୋଚନା ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲା ।

ଏହାର କିଛି ଦିନ ପରେ ଅର୍ଥାତ ୧୮୯୧ ମସିହା ଏପ୍ରିଲ ମାସରେ ଶ୍ରୀ ଚୈତନ୍ୟ ପ୍ରସାଦ ରାୟଙ୍କ ସମ୍ପାଦନାରେ ତଥା ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ରଭଞ୍ଜଙ୍କ ପୃଷ୍ଠପୋଷକତାରେ 'ଉତ୍କଳପ୍ରଭା' ନାମକ ଏକ ପତ୍ରିକା ପ୍ରକାଶପାଇବା ପରେ ''ଓଡିଶା ସମାଲୋଚନାର ପ୍ରକୃତ ପରଂପରା'' ଗଢ଼ି ଉଠିଲା । (୨୪) । ପତ୍ରିକାଟିର ସଂପାଦକୀୟ ଠାରୁ ଆରମ୍ଭକରି ବିଭିନ୍ନ ଆଲୋଚନା ମଧ୍ୟରେ ଭଂଜବିରୋଧୀ ମନୋଭାବର ନିଦର୍ଶନ ରହିଥିଲା । ପ୍ରଥମବର୍ଷ ପ୍ରଥମ ସଂଖ୍ୟାର ସମ୍ପାଦକୀୟଠାରୁ ଆରମ୍ଭକରି ବିଭିନ୍ନ ଆଲୋଚନା ମଧ୍ୟରେ ଭଞ୍ଜବିରୋଧୀ ମନୋଭାବର ନିଦର୍ଶନ ରହିଥିଲା । ସମ୍ପାଦକୀୟରେ '' ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସ ରୂପ ହଳାହଳ ସମୁଦ୍ର ମନ୍ଥନ  କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜଣାଇବାକୁ ହିଁ ସକ୍ଷମ ''(୨୫) କୁହାଯିବା ବେଳେ ସପ୍ତମ ଅଷ୍ଟମ ସଂଖ୍ୟାରେ ପ୍ରକାଶିତ 'ସାହିତ୍ୟ ଚର୍ଚ୍ଚା' ପ୍ରବନ୍ଧ ମଧ୍ୟରେ ବିଜୟଚନ୍ଦ୍ର ମଜୁମଦାର ମତବ୍ୟକ୍ତ କରିଥିଲେ, ''ସମାଜରେ ଖ୍ୟାତପ୍ରାପ୍ତ ଅନିଷ୍ଟକାରୀ ଗ୍ରନ୍ଥ'' ରଚୟିତାଙ୍କ ଭିତରେ ଉପେନ୍ଦ୍ରଭଞ୍ଜଙ୍କନାମ ଅନ୍ୟତମ । କେବଳ ସେତିକି ନୁହେଁ, ସେ ଆଧୁନିକ ଓ ପ୍ରାଚୀନ କବିତାର ତୁଳନାକରି ଉକ୍ତ ପ୍ରବନ୍ଧରେ ଦର୍ଶାଇଥିଲେ ଯେ '' ଯେଉଁ ସମସ୍ତ ବର୍ଣ୍ଣନାରେ ନୂତନ ଅଛି, ଆପାତତଃ ଦୁର୍ବୋଧ ଲୋକ ଚରିତ୍ରର ପରିସ୍ଫୁଟ ବିକାଶ ଅଛି, ଗଭୀର ହର୍ଷ ବିଷାଦାଦିର ଉଚ୍ଛ୍ୱାସ ଅଛି, ମନସ୍ତତ୍ତ୍ୱର ମନୋହର ବିଶ୍ଳେଷଣ ଅଛି, କେବଳ ଏହିପରି ବର୍ଣ୍ଣନା କବିତା ନାମର ଯୋଗ୍ୟ ଅଟେ । ବୃଥା ଶୁକଚଞ୍ଚୁ ନାସୀ, ଇନ୍ଦୀବର ନୟନା, ମରାଳଗମନା ପ୍ରଭୃତି ଶତବୈତ ବାକ୍ୟଦ୍ୱାରା ରମଣୀର ରମଣୀୟତା ଅଭିବ୍ୟକ୍ତିର ଚେଷ୍ଟା ବିଡମ୍ବନା ମାତ୍ର । ଯେ ସୁକବି, ତାଙ୍କର ସୁକୌଶଳ ପ୍ରସାଦରେ ବର୍ଣ୍ଣିତ ରମଣୀର ଗୋଟିଏ ଯୋଡିଏ ବାକ୍ୟ, ଏତେଦୂର ପର୍ଯ୍ୟନ୍ତ ଚରିତ୍ରର ରମଣୀୟତା ପରିସ୍ଫୁଟ କରିଦେଇପାରେ , ଯେ ଶତ ଶତ ଉପେନ୍ଦ୍ରଭଞ୍ଜର ରାଶି ରାଶି କୃଶୋଦରୀ', 'କଞ୍ଜନେତ୍ରୀ', 'ଖଞ୍ଜନଲୋଚନା', 'ଗଜଗାମିନୀ', 'ଘନକେଶୀ' ପ୍ରଭୃତି ତ୍ରେତ୍ରିଂଶତ ବର୍ଣ୍ଣମାଳା ପରିବ୍ୟାପୀ ବିଶ୍ଳେଷଣ ତାହାର ଲକ୍ଷ୍ୟାଂଶର ଏକାଂଶ ମଧ୍ୟ ପ୍ରକାଶ କରିପାରେ । '' ପ୍ରବନ୍ଧଟିର ଶେଷରେ ବିଜୟଚନ୍ଦ୍ର ପ୍ରାଚୀନ କବି ମାନଙ୍କ ମଧ୍ୟରେ ଦୀନକୃଷ୍ଣ ଓ ଆଧୁନିକ କବିମାନଙ୍କ ମଧ୍ୟରେ ରାଧାନାଥଙ୍କୁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି ।

ସଂପାଦକଙ୍କ କଟୂକ୍ତି ପୂର୍ଣ୍ଣ ଅଭିମତ ସାଙ୍ଗକୁ ବିଜୟ ଚନ୍ଦ୍ରଙ୍କ ମତକୁ ସୁହାଇଲା ଭଳି ଲାଲା ରାମନାରାୟଣ ରାୟଙ୍କ 'କବି ଉପେନ୍ଦ୍ରଭଂଞ୍ଜ' ଶୀର୍ଷକ ଏକ ଧାରାବାହିକ ପ୍ରବନ୍ଧ ଏହି ପତ୍ରିକାରେ ପ୍ରକାଶ ପାଇଥିଲା । (୨୭) ପ୍ରବନ୍ଧଟିର ଆରମ୍ଭରେ ପ୍ରକୃତି କବିତା କାହାକୁ କୁହାଯାଏ, କେଉଁ କେଉଁ ଗୁଣ ଦ୍ୱାରା କାବ୍ୟର ଉତ୍କର୍ଷ ପ୍ରତିପାଦିତ ହୁଏ ଆଦି ବିଷୟ ଆଲୋଚନା କରାଯିବା ସହିତ ଉପେନ୍ଦ୍ର ଭଞ୍ଜଙ୍କ ପ୍ରସଂଗ ଆନୀତ ହୋଇଥିଲା । ଉପେନ୍ଦ୍ର ଭଞ୍ଜ ଓଡିଆ ସାହିତ୍ୟ ଜଗତରେ ଶୀର୍ଷସ୍ଥାନ ଅଧିକାର କରିଥିବା ଦର୍ଶାଇ ଲାଲା ଉଲ୍ଲେଖ କରିଥିଲେ , ଲୋକମାନେ ''କବିଙ୍କୁ ଦେବଗୁରୁ ବୃହସ୍ପତି କିମ୍ବା କବିଗୁରୁ କାଳିଦାସଙ୍କ ସହିତ ଏକାସନରେ ବସାଇ ସ୍ୱୀୟ ସ୍ୱୀୟ ନୟନ ମନକୁ ଚରିତାର୍ଥ କରୁଅଛନ୍ତି । (୨୮) କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ସର୍ବଶ୍ରେଷ୍ଠକୃତି ବୈଦେହୀଶବିଳାସକୁ ଲାଲା ରାମନାରାୟଣ ଆଲୋଚନାର ପରିସରଭୁକ୍ତ କରିଥିଲେ । ସେ ଏହାକୁ ଉତ୍କୃଷ୍ଟ କାବ୍ୟ ଲକ୍ଷଣ ଦୃଷ୍ଟିରୁ ବିଚାର କରି ତନ୍ମଧରେ ଯତିପାତ, ଉପଧାମିଳନ, ଅଳଂକାର, ରସ, ରୁଚି, କାବ୍ୟଶିଳ୍ପ ଓ କଳ୍ପନା ପ୍ରଭୃତି ମାନଦଣ୍ଡରେ ବିବେଚନା ପୂର୍ବକ ଦୁର୍ବୋଧତା, ଶ୍ରୁତିକଟୁତା, ବ୍ୟାକରଣ ଦୁଷ୍ଟତା ଓ ଅଶ୍ଳୀଳତା ଆଦି ଦୋଷ ଦେଖାଇବା ନିମନ୍ତେ ଉଦ୍ୟତ ହୋଇଥିଲା । ଏପରିକି ମୂଳ ରାମାୟଣରେ ବର୍ଣ୍ଣିତ ଶ୍ରୀରାମଙ୍କ ସହିତ ବୈଦେହୀଶ ବିଳାସର ରାମଙ୍କର ତୁଳନା କରି ଉଲ୍ଲେଖ କରିଥିଲେ, ''ମାତ୍ର ଆମ୍ଭମାନଙ୍କର ଆଲୋଚ୍ୟମାନ କାବ୍ୟରେ କବି ତାଙ୍କୁ କିମ୍ଭୂତକିମାକାର କରି ସୃଜନ କରିଅଛନ୍ତି । ତାଙ୍କ ରାମଚନ୍ଦ୍ର ପରି ଅସାର, ନିର୍ଲଜ୍ଜ ଓ କାମୁକ ପୁରୁଷ ବୋଧହୁଏ ପୃଥିବୀର ଅନ୍ୟାନ୍ୟ ଦେଶୀୟ ସାହିତ୍ୟରେ ବିରଳ ଲକ୍ଷିତ ହେବେ ।''(୨୯) ଏହାକୁ ପରିପୁଷ୍ଟ କରିବା ପାଇଁ ବୈଦେହୀଶ ବିଳାସ କାବ୍ୟରେ ରାମଚନ୍ଦ୍ର ସୀତାଙ୍କୁ ବିପରୀତ ରତି ମାଗିବା କଥା ଉପସ୍ଥାପନ କରିଥିଲେ । ପୁନଶ୍ଚ ଲାଲା ମନ୍ତବ୍ୟ ଦେଇଥିଲେ , '' ସେ ଯାହା ହେଉ ଶୃଙ୍ଗାର ରସରେ ରସିକତା କରିବା ବ୍ୟତୀତ ଆମ୍ଭେମାନେ ରାମଚନ୍ଦ୍ରଙ୍କର ଅପର କୌଣସି ସ୍ଥଳରେ ଉଚ୍ଚ ରୁଚିଶାଳିତାର କିଞ୍ଚିନ୍ ମାତ୍ର ପରିଚୟ ପ୍ରାପ୍ତ ହେଲୁନାହିଁ ବରଂ ସ୍ଥଳ ବିଶେଷରେ ସେ ଧୃଷ୍ଟ ନାୟକ ପରି ଗ୍ରାମ୍ୟ ରସିକତା ଓ ଗର୍ବିତ ଭାବକୁ ଆଚରଣ କରିଥିବାର ଅବଲୋକନ କରି ଦୁଃଖିତ ହେଲୁଁ । (୩୦) ଶେଷରେ ହନୁମାନଙ୍କ ଚରିତ୍ରରେ ଉଚ୍ଚ ରୁଚିଶାଳିତାର ପରିଚୟ କବି ଦେଇ ନଥିବା କଥା ଦର୍ଶାଇ ପ୍ରସଙ୍ଗାନୁରୋଧରେ କାବ୍ୟ ଶିଳ୍ପର ବୈଶିଷ୍ଟ୍ୟାଦି ସମ୍ପର୍କରେ ମତ ଦେଇ ବୈଦେହୀଶ ବିଳାସକୁ ସେହି ଦୃଷ୍ଟିରୁ ବିଶ୍ଳେଷଣ କରିବା ନିମନ୍ତେ ଲାଲା ଉଦ୍ୟମ କରିଥିଲେ । (୩୧)

ଲାଲାଙ୍କର ଏହି ଧାରାବାହିକ ଆଲୋଚନା ସାଙ୍ଗକୁ ଉତ୍କଳ ପ୍ରଭାର ସଂପାଦକ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ କବିଜୀବନୀ ସମ୍ପର୍କିତ ମନ୍ତବ୍ୟ (୩୨) ଭଞ୍ଜ ସାହତ୍ୟାନୁରାଗୀଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । କେବଳ ସେତିକି ନୁହେଁ ଭଞ୍ଜ ସପକ୍ଷବାଦୀଙ୍କ ଆଲୋଚନାକୁ 'ଉତ୍କଳଦୀପିକା' ପ୍ରୋତ୍ସାହିତ କରୁଥିବା ବେଳେ ଭଞ୍ଜବିପକ୍ଷବାଦୀଙ୍କୁ 'ସମ୍ବଲପୁର ହିତୈଷିଣୀ' ପୃଷ୍ଟପୋଷକତା ପ୍ରଦାନ କରୁଥିଲା । ପତ୍ରିକା ଦୁଇଟିରେ କେବଳ ଏ ସଂପର୍କିତ ଲେଖା ପ୍ରଚୁର ପରିମାଣରେ ପ୍ରକାଶିତ ହେଉଥିଲା ତା ନୁହେଁ, ଛଦ୍ମନାମରେ ଓ କବିତା ମାଧମରେ ଲେଖିବା ପାଇଁ ମଧ ପ୍ରୋତ୍ସାହନ ମିଳିଥିଲା । ଫଳରେ ଛଦ୍ମନାମରେ ଲେଖା ପ୍ରକାଶ ପାଇବାରୁ ସାହିତ୍ୟ ସମାଲୋଚନା ବାଟବଣା ହୋଇ ବ୍ୟକ୍ତିଗତ କୁତ୍ସାରଟନା ସ୍ତରକୁ କିପରି ଖସି ଆସିଥିଲା ତାହା ନିମ୍ନୋକ୍ତ ଉଦ୍ଧୃତି ଦ୍ୱୟକୁ ବିଚାର କଲେ ଜଣାପଡେ । ୧୮୯୩ ମସିହାରେ ଭଞ୍ଜଙ୍କୁ ଓ ଭଞ୍ଜ ସାହିତ୍ୟ ରସିକଙ୍କୁ ବ୍ୟଙ୍ଗ କରି ହତୈଷିଣୀରେ ପ୍ରକାଶ ପାଇଥିଲା :-

''ପ୍ରୟୋଗ କର ହେ କଡା କଡା ମେଡିସିନ
ରୋଗ ଛଡା କର ଆଦିରସ ପଗଳାଙ୍କୁ ।

'ଦ୍ରବହିଙ୍ଗୁଳ' ସମାନ ବରନ ବିଶିଷ୍ଟ
'ପେୟପାନେ ଯେଉଁମାନେ ବକନ୍ତି ପ୍ରଳାପ,
'ପର୍ଯ୍ୟଙ୍କ ଭଞ୍ଜନ' ରସୁ ଦିଅ ତାଙ୍କୁ ଥୋଡା ।
ବକ୍ଷୋଜକୁ ତୁମ୍ବାଞ୍ଜାନେ ପ୍ରେମ ପାରାବାରେ
ଆଣ୍ଡି ବୁଡୁଛନ୍ତି ଯେଉଁ ଘରପୋଡା ମାନେ
ଧରାଇ ଦିଅ ତାହାଙ୍କୁ ତୁରା କେଳିକିଳା
ନଇଲେ ବୁଡିଲା ଭେଳା ମଝି ସମୁଦ୍ରରେ ।'' (୩୩)

ସମ୍ବଲପୁର ହିତୈଷିଣୀରେ ଏଭଳି ପଦ୍ୟମାଧମରେ ତୀବ୍ର ବ୍ୟଙ୍ଗୋକ୍ତି ପ୍ରକାଶ ପାଇବା ପରେ ଦୀପିକା ଉଲ୍ଲେଖ କରିଥିଲା:-

''ଏ କାଳ ଆଉ ନୋହେ ସମ୍ଭାଳି
ତ୍ରାହିକର ପ୍ରଭୁ ଶ୍ରୀବନମାଳି
ଯୋଗୀ ଚାଉଳିଆ ମହାକବି ହେଲେ
ଉପଇନ୍ଦ୍ର ଭଞ୍ଜ ଖାଇଲେ ଗାଳି
ଶ୍ରୀକରଣ ଠାରୁ ତନ୍ତୀ ତୁଳବିଣା
ପର୍ଯ୍ୟନ୍ତେ ଧଇଲେ କଲମ କାଳି । '' (୩୪)

ଭଞ୍ଜ ସାହିତ୍ୟାଲୋଚନା ମଧରୁ ଏହି ଭଳି ବ୍ୟକ୍ତିଗତ ଆକ୍ଷେପ ମୂଳକ ଆଲୋଚନା ପ୍ରକାଶ ପାଇବା ସହିତ ଭଞ୍ଜସାହିତ୍ୟକୁ ସମର୍ଥନ ଜଣାଇ ୧୮୯୩ ମସିହା ଅଗଷ୍ଟ ମାସ ୧୭ ତାରିଖ ଗୁରୁବାର ଦିନ ଉତ୍କଳ ଦୀପିକାର ଉପପତ୍ର ରୂପେ 'ଇନ୍ଦ୍ରଧନୁ' ଓ ଭଞ୍ଜସାହିତ୍ୟକୁ ବିରୋଧ କରି ସେହିବର୍ଷ ସେପ୍ଟେମ୍ବର ମାସ ୧୬ ତାରିଖ ଶନିବାର ଦିନ ସମ୍ବଲପୁର ହିତୈଷିଣୀର ଉପପତ୍ର ଭାବେ ବିଜୁଳି ଆତ୍ମପ୍ରକାଶ କରିଥିଲା । ଇନ୍ଦ୍ରଧନୁ ଦୁଇପଇସା ମୂଲ୍ୟରେ ବିକ୍ରୟ ହେଉଥିବା ବେଳେ ବିଜୁଳି ପତ୍ରିକାକୁ ଭଞ୍ଜ ସାହିତ୍ୟ ନିନ୍ଦୁକମାନଙ୍କୁ ବିନାମୂଲ୍ୟରେ ବିତରଣ କରାଯାଉଥିଲା । ଏହି ବିଜୁଳିର ଉଦ୍ଦେଶ୍ୟ ଥିଲା ''ଗୋଇକ ଧନ୍ଦାଙ୍କ ଯୁକ୍ତି ଖଣ୍ଡନ ଏବଂ ବୈଦେହୀଶ ବିଳାସର ଦୋଷ ଉଦ୍‌ଘାଟନ କରିବା । .... ଯେ ସ୍ଥଳେ ଦୋଷ ପ୍ରଘଟ କରିବା ଏବଂ ଦୋଷ ଘୋଡାଇ ଗୁଣ ଗ୍ରହଣ କରିବା ଲୋକଙ୍କୁ ନିନ୍ଦା କରିବା ...... ନିନ୍ଦା ପାଠରେ ଯେଉଁ ମାନଙ୍କର ନିତାନ୍ତ ଅନୁରାଗ ସେମାନଙ୍କୁ ପତ୍ରିକା ଲାଭର ସୁବିଧା '' ପ୍ରଦାନ କରିବା । (୩୫)

ଇନ୍ଦ୍ରଧନୁର ପ୍ରଥମବର୍ଷ ପ୍ରଥମସଂଖ୍ୟାରେ 'ଇନ୍ଦ୍ରଧନୁ' ଓ ଉପେନ୍ଦ୍ରଭଞ୍ଜ' ନାମକ ଦୁଇଟି ପ୍ରବନ୍ଧ ସହିତ କେତେକ ବ୍ୟଙ୍ଗ୍ୟବୀଦ୍ରୂପାତ୍ମକ କବିତା ପ୍ରକାଶ ପାଇବା ସଂଗେ ସଂଗେ ଅନ୍ୟ ସଂଖ୍ୟା ଗୁଡିକରେ ବିଜୁଳିର ସମାଲୋଚନା ଉପରେ ତୀବ୍ର ପ୍ରତିକ୍ରିୟାତ୍ମକ ଲେଖାମାନ ସ୍ଥାନିତ ହୋଇଥିଲା । ଏଥିରେ ପ୍ରକାଶିତ ଲେଖାଗୁଡିକ ମଧରେ ବିଜୁଳିବିଧି, ଚଟନି, କବିସମାଚାର, କବି ଉପେନ୍ଦ୍ରଭଞ୍ଜ (ଆଲୋଚନା), ନବ୍ୟକାବ୍ୟ ବିଜୟ (ପ୍ରହସନ), ଭଞ୍ଜୀୟ ଦୋଷ ଖଣ୍ଡନ, ଗୋଇକ ଧନ୍ଦା, କଳିପୁରାଣ, ଲାବଣ୍ୟବତୀ ଆଲୋଚନା, କୌତୁକ କଥୋପକଥନ (ଶେଷଗଚ୍ଛ) ଆଦି ଅନ୍ୟତମ । ଇନ୍ଦ୍ରଧନୁର କଳିପୁରାଣ ଶୀର୍ଷକରେ ଲାଲାରାମନାରାୟଣଙ୍କ ଆଲୋଚନା ବିଧାନ ଉପରେ ତୀବ୍ର ବ୍ୟଙ୍ଗ୍ୟୋକ୍ତି ମାଧମରେ ଉଲ୍ଲେଖ ଥିଲା :-

''ଦୁଇ ଚାରି ପତ୍ର ପଢ଼ି କିଞ୍ଚିନ୍ମାତ୍ର ବଢ଼ଦେହୀଶ ବିକାସ
ସମାଲୋଚନାରେ ପ୍ରବୃତ୍ତ ହେବାରେ ଲଭିଲା ମହାଉଲ୍ଲାସ ।
ହେ ରାମ ! ବଡ ପଣ୍ଡିତ ହୋଇବା କାମ ।
କୂଟ ଦେଖାଇ ଚାତୁରୀ ଢ଼ମ ।
ନିନ୍ଦି ଅଯଥା ଉପେନ୍ଦ୍ର ନାମ ।
ହୋଇ ପୁରସ୍କୃତ ଥିବାରୁ ସୁକୃତ ବଳାଇ ମନ ତୁଛାରେ
ଦିନ ରାତି ଜାଗି ଅର୍ଥ ସିଦ୍ଧି ଲାଗି ଡ଼ାକିଲା ନିନ୍ଦା ପ୍ରଭାରେ
ସେ ଲାଲା କଣ୍ଠେ ଲମ୍ବାଇ ରଜତ ମାଳା
କାଢ଼ି ମୁଣ୍ଡରୁ ଲେଖିଲା ଭଲା ।
ଲାଭ ଅଧିକେ ମାନସ ଦେଲା । ''(୩୬)

ପୁନଶ୍ଚ ଏଥିରେ ଲାଲାଙ୍କ ପ୍ରତି ମନ୍ତବ୍ୟ ଥିଲା :-

''ତୁକି ଜାଣିବୁରେ ଲାଲା ! ଉପେନ୍ଦ୍ର ଗୌରବ
ପୁଂସ ପୁଂସୀ ମଣିଙ୍କର ପୀରତି ସୌରଭ
ଆରେ ଲାଲା, ରାୟଚେଲା ! ହୁଅ ସାବଧାନ
ନୋହିଲେ ହୋଇବ ଲଙ୍କାକାଣ୍ଡର ବିଧାନ

ଇନ୍ଦ୍ରଧନୁରେ ଏଭଳି ମନ୍ତବ୍ୟମାନ ପ୍ରକାଶିତ ହେବା ପରେ ଏହାର ଦୃଢ଼ ପ୍ରତିବାଦକରି ବିଜୁଳିରେ ପ୍ରକାଶପାଇଥିଲା :-

''ରେ ଅନ୍ଧ ଗୋଲକଧନ୍ଦା ! ଦେଖିଛୁ କି ଫେଡି
ଗୌରବ ପୂରିତ ଭଞ୍ଜ ଗୌରବର ପେଡି
ଦେଖିଥିଲି ଥରେ ବସ୍ତ୍ର ନାସିକାରେ ଗୁଞ୍ଜି
ପୁଂସ ପୁଂସୀ ଭିଡା ଭିଡି ଭଞ୍ଜକାବ୍ୟ ପୁଞ୍ଜି
ନାଗର ବିଲୁଆଙ୍କର ହୁକେ ହୁ ଶବଦ
ନାଗରୀ କୁକୁରୀଙ୍କର ଭଷି ଭଷି ପଦ
ଆଞ୍ଚୁଡା ଆଞ୍ଚୁଡି ପୁଣି କାମୁଡା କାମୁଡି
ପରସ୍ପର ଟଟାଟଟି ପୁଣି ଗଡା ଗଡି
ଏ ବିରସ ବ୍ୟାପାରର କ୍ଳେଦମୟ ଗନ୍ଧ
ଅସୁର ନିକଟେ ସିନା ଅଟଇ ସୁଗନ୍ଧ ।''

ଏହି ପତ୍ରିକାଦ୍ୱୟ ଛଦ୍ମନାମରେ ଲେଖାଗୁଡିକ ପ୍ରକାଶ କରି ଊନବିଂଶ ଶତାବ୍ଦୀରେ ଭଞ୍ଜସାହିତ୍ୟ ସମାଲୋଚନାକୁ ଏପରି ଏକ ପର୍ଯ୍ୟାୟକୁ ନେଇଗଲେ, ଯେଉଁଥିରେ ସାହିତ୍ୟ ସମାଲୋଚନା ପଥଭ୍ରଷ୍ଟ ହେବାରେ ଲାଗିଲା । ଫଳରେ ସାହିତ୍ୟ ସମାଲୋଚନା ଧାରାରେ ସୃଷ୍ଟି ହେଉଥିବା କଳୁଷିତ ବାତାବରଣ ଓ ବ୍ୟକ୍ତିଗତ କୁତ୍ସାକୁ ଦୂରେଇ ନିରପେକ୍ଷ ମନ୍ତବ୍ୟ ତଥା ସାଲିସ ପାଇଁ ବିଭିନ୍ନ ପତ୍ରପତ୍ରିକା ଉଦ୍ୟମ ଆରମ୍ଭ କରିବାକୁ ବାଧ ହୋଇଥିଲେ । ଭକ୍ତକବି ମଧୁସୂଦନଙ୍କ ଭଳି ବ୍ୟକ୍ତିମାନେ ଏହି କଳିରେ ବୀତସ୍ପୃହ ହୋଇ ତା-୨୪.୮.୧୮୯୩ ସଂଖ୍ୟା ସମ୍ବାଦବାହିକା'ରେ ସାବାସ୍ ସାହିତ୍ୟ ଚର୍ଚ୍ଚା ! ସାବାସ୍ ! ସାବାସ୍ ! ' ଓ ତା ୧୮.୧୦.୧୮୯୩ର 'ଓଡିଆ ଓ ନବ ସମ୍ବାଦ'ରେ 'ଭଣ୍ଡରସାୟନ କାବ୍ୟ' ନାମରେ ଦୁଇଟି କବିତା ମାଧ୍ୟମରେ ନିଜର ମନୋଭାବ ବ୍ୟକ୍ତ କରିଥିଲେ ।

ଏପରିକି ଇନ୍ଦ୍ରଧନୁ ପତ୍ରିକାଟିଏ ଉପହାର ପାଇବା ପରେ 'ସମ୍ବାଦ ବାହିକା' ପୃଷ୍ଠାରେ ଯାହା ପ୍ରକାଶ ପାଇଥିଲା, ତାହା ହେଉଛି, ''ଉତ୍କଳର ପୁରାତନ କବି ଓ ମୃତ ଉପେନ୍ଦ୍ରଭଞ୍ଜଙ୍କ ନିନ୍ଦା ପ୍ରଚାରକରିବାପାଇଁ ରାମନାରାୟଣବାବୁ ପ୍ରଭୃତି କେତେଜଣ ଆଧୁନିକ କବି ଓ ଲେଖକ ଲେଖନୀ ଧାରଣ କରିଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ଥିଲୁଁ। ଉପେନ୍ଦ୍ର ଭଞ୍ଜଙ୍କ କବିତାମାନ ଯେଦୋଷଶୂନ୍ୟ ତାହା ଆମ୍ଭେମାନେ କହିବାକୁ ସକ୍ଷମ ନୋହୁଁ । କିନ୍ତୁ ତାହା ବୋଲି ତାଙ୍କର ଅଗାଧ ଗୁଣରାଶିକୁ ବିସ୍ମୃତ ହୋଇ କେବଳ ଦୋଷଗୁଡିକ ଦେଖାଇବା ଆମ୍ଭମାନଙ୍କ ବିବେଚନାରେ ନ୍ୟାୟ ସଙ୍ଗତ ହେଉନାହିଁ । ଭଞ୍ଜକବିଙ୍କ ବିପକ୍ଷମାନେ ବାବୁ ରାଧାନାଥ ରାୟଙ୍କର ପ୍ରଶଂସା ସହସ୍ର ମୁଖରେ କରନ୍ତୁ ତହିଁରେ ଆମ୍ଭମାନଙ୍କର ସହାନୁଭୂତି ଅଛି; କାରଣ ବାବୁ ମହୋଦୟଙ୍କଠାରେ ଉତ୍କଳ ସାହିତ୍ୟ ଅନେକପ୍ରକାରେ ଋଣୀ ଅଟେ। କିନ୍ତୁ ଶତ ଶତ ବର୍ଷ ପୂର୍ବେ ମୃତ ଗୋଟିଏ ଚିରସ୍ମରଣୀୟ କବିର ନିନ୍ଦନ ଦ୍ୱାରା ରାଧାନାଥ ବାବୁଙ୍କର ଗୌରବ କେଉଁ ପ୍ରକାରେ ବୃଦ୍ଧିହେବ, ତାହା ଆମ୍ଭ ମାନଙ୍କର କ୍ଷୁଦ୍ର ବୁଦ୍ଧିର ଅଗମ୍ୟ। ''(୩୭)

ପୁନଶ୍ଚ 'ସମ୍ବଲପୁର ହିତୈଷିଣୀ'ରେ ଜନୈକ ଦେଶସେବକ ଛଦ୍ମନାମରେ ଜଣେ ଉଲ୍ଲେଖ କରିଥିଲେ , ''ଭଞ୍ଜକାବ୍ୟ ଭଲ ହେଉ ମନ୍ଦ ହେଉ ତାହା ଉତ୍କଳ ତନୟମାନଙ୍କ ମନକୁ ଏତେଦୂର ବଶକରି ରଖିଅଛି ଯେ ତାହା ନିବାରଣ କରିବାକୁ ଶତଚେଷ୍ଟା ସହସ୍ର ବ୍ୟବସ୍ଥା ନଷ୍ଟ ହୋଇଯିବ। ''(୩୮)

ଏହାପରେ ଗୋଲକନାଥ ରାୟ 'ଉତ୍କଳ କବି କଳି' ଶୀର୍ଷକ ଆଲୋଚନା ମଧ୍ୟରେ ଉଲ୍ଲେଖ କରିଥିଲେ, ''ଫୁଲରୁ ମଧୁ ମକ୍ଷିକା ମଧୁ ଗ୍ରହଣ କରେ - ଊର୍ଣ୍ଣନାଭ ବିଷ ଗ୍ରହଣ କରେ। ମଧୁମକ୍ଷକାର ମଧୁ ପ୍ରୟୋଜନ। ମଧୁ ମକ୍ଷିକା ଓ ଊର୍ଣ୍ଣନାଭ ସମଦର୍ଶୀ ଚକ୍ଷୁରେ ସମାନ। ଭଞ୍ଜୀୟ କାବ୍ୟ ମନ୍ଥନକାରୀମାନେ ହୃଦୟବାନ ହୋଇପାରନ୍ତି, ଜାତୀୟ ସାହିତ୍ୟାନୁରାଗୀ ହୋଇପାରନ୍ତି, ସେମାନଙ୍କର ହୃଦୟ ମହତ୍ ହୋଇପାରେ କିନ୍ତୁ ଯେ ଭାବରେ ଏ ଆନ୍ଦୋଳନ ଚଳୁଅଛି ତାହା କବିଗତ, କାବ୍ୟଗତ ଓ ଭାବଗତ ନହୋଇ ବ୍ୟକ୍ତିଗତ, ଜାତିଗତ ଓ ଦଳଗତ ହୋଇ ମୂଳରୁ ଅଶ୍ଳୀଳ ରଚି, ଅଶ୍ଳୀଳ ଭାବ ଏବଂ ଗ୍ରାମ୍ୟତା ଦୋଷରେ ଆପ୍ଲୁତ। .... ଅଭାଗ୍ୟ ଓଡିଶାର ଶିକ୍ଷିତ ମାନଙ୍କ ହସ୍ତରେ ଉଡିଶ୍ୟାର ଅଭାଗ୍ୟ। ବୀରକୁଳ ଓ କବିକୁଳ ଲୀଳାଭୂମି ସ୍ୱରୂପ ଉତ୍କଳ ସାମାନ୍ୟ ଭଞ୍ଜକଳି ଘେନି ବାତୁଳ। ଭାରତ ବର୍ଷରେ ପ୍ରତି ପ୍ରଦେଶରେ ଜ୍ଞାନର ପ୍ରଦୀପ ଜଳି ଉଠିଅଛି , ଜାତୀୟତାର ଅଗ୍ନି ପ୍ରଜ୍ଜ୍ୱଳିତ ହୋଇଅଛି। ଏକତାର ବୈଦ୍ୟୁତିକ କ୍ରିୟା ଆରମ୍ଭ ହୋଇଅଛି। ଉତ୍କଳ ଇନ୍ଦ୍ରଧନୁ ଓ ବିଜୁଳି ଘେନି ବାଲଲୀଳା କରୁଅଛନ୍ତି। ଏ ହତଭାଗ୍ୟ ଦେଶର କି ଭାବୀ ଉନ୍ନତିର ଆଶାନାହିଁ। '' (୩୯)

ଏଭଳି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ମନ୍ତବ୍ୟରେ ତଥା ପରିସ୍ଥିତି ଓ ପରିବେଶର ଚାପରେ କବିବର ରାଧାନାଥ ରାୟ ୧୮୯୪ ମସିହାରେ 'ଓଡିଆ ଓ ନବସମ୍ବାଦକୁ ଏକ ଏଗାର ଅନୁଚ୍ଛେଦ ବିଶିଷ୍ଟ ପତ୍ରଟିଏ ଲେଖିବା ଫଳରେ ଭଞ୍ଜବିବାଦର ଅବସାନ ଘଟିଥିଲା। (୪୦) ଉକ୍ତ ପତ୍ରଟିରେ ସେ ନିଜକୁ ଜଣେ ଭଞ୍ଜପ୍ରେମୀ ବ୍ୟକ୍ତି, ଭଞ୍ଜସାହିତ୍ୟକୁ ନିଜର ଆଦର୍ଶ ଓ ଭଞ୍ଜଙ୍କୁ ନିଜର ଗୁରୁ ରୂପେ ଗ୍ରହଣ କରି ଆବାଲ୍ୟରୁ ଭକ୍ତି କରି ଆସୁଥିବା କଥା ଉଲ୍ଲେଖ କରିଥିଲେ ହେଁ ଏହା କବିବର ରାଧାନାଥଙ୍କର ଅନ୍ତରରବାଣୀ ନଥିଲା। କାରଣ ତା-୫.୨.୧୮୯୪ ପତ୍ରରେ ସ୍ପଷ୍ଟୀକରଣ ଦେଇ ଲେଖିଥିବା ''କେବଳ କୌଣସି କୌଣସି ଆନ୍ତରିକ ହିତୈଷୀବନ୍ଧୁଙ୍କର ସଦଭିପ୍ରାୟର ସମ୍ମାନ ରକ୍ଷା ସକାଶ ଏହି ପତ୍ର ଲେଖିଲି ''(୪୧) , ଇନ୍ଦ୍ରଧନୁ ନିମନ୍ତେ ପ୍ରବନ୍ଧ ଲେଖିବା ଓ ଇନ୍ଦ୍ରଧନୁ ପଢ଼ିବା ଅପରାଧରେ ଗୋପବନ୍ଧୁ ଦାସଙ୍କର ୭ଦିନର ବୃତ୍ତି କାଟିବା (୪୨), ତା -୧୮-୩-୧୮୯୫ରେ ଗଙ୍ଗାଧରଙ୍କୁ ଲେଖିଥିବା ପତ୍ର (୪୩), ଓ ଦାମୋଦର ମିଶ୍ରଙ୍କ ଦ୍ୱାରା ପ୍ରଣୀତ

'ମାତା' ପୁସ୍ତକଟିରେ ଦେଇଥିବା ଅଭିମତ (୪୪) ଆଦିକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହା ପ୍ରକୃତରେ ରାଧାନାଥ ରାୟଙ୍କର ଅନ୍ତରବାଣୀ ନଥିଲା ।

ଇନ୍ଦ୍ରଧନୁ ଓ ବିଜୁଳି କଳହ ମଳିନ ହେବା ପରେ ୧୮୯୫ ମସିହାରେ ଶ୍ରୀ ଦାମୋଦର ମିଶ୍ର 'ଦୋଷଦର୍ଶନ' ନାମକ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶ କରିଥିଲେ ।(୪୫) ପୁସ୍ତିକାଟିରେ ସେ ବିଜୁଳି ପତ୍ରିକାରେ ପ୍ରକାଶିତ ଭଞ୍ଜସାହିତ୍ୟର ବିଭିନ୍ନ ଦୋଷ ସହିତ ନିଜେ କିଛି ନୂତନ ଦୋଷ ସଂଯୋଗ କରିଥିଲେ । ପୁସ୍ତିକାଟିରେ ସେ ଭଞ୍ଜସାହିତ୍ୟରେ ଥିବା ଅସଂଗତ ବର୍ଣ୍ଣନା, ଅସମର୍ଥକଥନ, ନିକୃଷ୍ଟ ବର୍ଣ୍ଣନା, ନ୍ୟୂନପଦତା, କୁତ୍ସିତ ବର୍ଣ୍ଣନା, ଅଳଂକାର ପ୍ରୟୋଗରେ ଅସଂଗତି, ଅଶ୍ଳୀଳ ବର୍ଣ୍ଣନା ଓ ନିରର୍ଥକ କଥନ ଆଦିକୁ ସଦୃଷ୍ଟାନ୍ତ ପ୍ରଦତ୍ତ ହୋଇଥିଲା । ଏହାରି ମଧରେ ଶ୍ରୀ ମିଶ୍ର ମଳିନ ପଡିଯାଇଥିବା ଭଞ୍ଜସାହିତ୍ୟ ସମ୍ପର୍କିତ ତୀବ୍ର ସମାଲୋଚନାକୁ ଯେପରି ପୁନରୁଜ୍ଜୀବିତ କରିବା ନିମନ୍ତେ ବ୍ୟଗ୍ର ଥିବା ପରି ମନେ ହୁଏ । ସେହି ବର୍ଷ ଉପେନ୍ଦ୍ର ଭଞ୍ଜଙ୍କର ସାଙ୍ଗୀତିକତା ସଂପର୍କରେ ଗୋପାଳ ବଲ୍ଲଭଦାସ ସ୍ୱରଚିତ କବିତା "ଉପେନ୍ଦ୍ରଭଂଜ" ମାଧମରେ ମତବ୍ୟକ୍ତ କରିଥିଲେ । (୪୬)

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଅର୍ଥାତ ୧୮୯୮ ମସିହାରେ ବାବୁ ମନମୋହନ ଚକ୍ରବର୍ତ୍ତୀ ଓଡିଆ ଭାଷା ଓ ସାହିତ୍ୟ ସମ୍ପର୍କିତ ଆଲୋଚନା ମଧରେ ଭଞ୍ଜସାହିତ୍ୟକୁ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରିବା ସଂଗେ ସଂଗେ ପରିଶିଷ୍ଟରେ ଭଞ୍ଜବଂଶାବଳୀଟିଏ ସଂଯୋଗ କରିଥିଲେ । (୪୭) ତାଙ୍କର ଏହି ବିଚାର ବିଶ୍ଳେଷଣ ମଧରେ ଓଡିଆ କାବ୍ୟଯୁଗ ପ୍ରତି ମନ୍ତବ୍ୟ ଅନେକାଂଶରେ ଠିକ୍ ହେଲେ ମଧ ତତ୍‌କାଳୀନ ସମୟରେ ସଂସ୍କୃତ ସାହିତ୍ୟ ଉପରେ ପାଶ୍ଚାତ୍ୟ ପଣ୍ଡିତମାନେ କରୁଥିବା ଆଲୋଚନାର ମାନଦଣ୍ଡରେ ସେ ଓଡିଆ ସାହିତ୍ୟକୁ ମାପିବାକୁ ଉଦ୍ୟମ କରିଥିଲେ । ସଂସ୍କୃତ ସାହିତ୍ୟ ପରି ଓଡିଆ ସାହିତ୍ୟରେ ରହିଥିବା ଅନେକ ଅଭାବକୁ ଦେଖାଇବା ନିମନ୍ତେ ଯାଇ ସେ ମତ ଦେଇଥିଲେ, 'ଚରିତ୍ର ଓ କଥାବସ୍ତୁର ସମ୍ୟକ୍ ବିକାଶ ନାହିଁ, ନାରୀଜାତି ପ୍ରତି କବିମାନଙ୍କର ଉଚ୍ଚ ମନୋଭାବ ନାହିଁ ଇତ୍ୟାଦି '। ଭଞ୍ଜ ସାହିତ୍ୟର ସାମଗ୍ରିକ ଆଲୋଚନା ସମୟରେ ସେ କେତେଗୁଡିଏ ପ୍ରମାଦ ପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଭଞ୍ଜୀୟ ସୃଷ୍ଟିରେ ଅତ୍ୟଧିକ ଶୃଙ୍ଗାରରସର ବର୍ଣ୍ଣନା ସଂପର୍କରେ ତାଙ୍କର ମତ ଥିଲା ' ଘୁମୁସର ରାଜବଂଶର ଦୂଷିତ ତଥା କଳୁଷିତ ବାତାବରଣର ପ୍ରଭାବ । ' ପ୍ରବନ୍ଧଟରେ ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ, ରଚନାବଳୀର ତାଲିକା, ପାଣ୍ଡିତ୍ୟ ତଥା ସାହିତ୍ୟିକ ଦୋଷାଦୋଷର କେତେକ ସୂଚନା ଦେଇ ଥିଲେ ମଧ ଶେଷରେ ସେ ମୁକ୍ତକଣ୍ଠରେ ସ୍ୱୀକାର କରିଥିଲେ, "Upendra Bhanja is in Oriya language, the most voluminious author, the earliest and most prominent fictional poet, the most obscene, the most unintelligible and on the whole the best writer of rhetorical excellences" (୪୮)

ଊନବିଂଶ ଶତାବ୍ଦୀର ଶେଷ ବର୍ଷରେ ଅର୍ଥାତ ୧୯୦୦ ମସିହାରେ ପଣ୍ଡିତ ବୁଦ୍ଧିନାଥ କାବ୍ୟତୀର୍ଥ ଶର୍ମା ଦାମୋଦର ମିଶ୍ରଙ୍କ ଦ୍ୱାରା ପ୍ରଣୀତ 'ଦୋଷଦର୍ଶନ' ପୁସ୍ତକରେ ପ୍ରକାଶିତ ଭଞ୍ଜଙ୍କ ସଂପର୍କିତ ଦୋଷକୁ ଖଣ୍ଡନ କରି ତାହାକୁ ଗୁଣ ଓ ଆଦର୍ଶ ରୂପେ ପ୍ରତିପାଦନ କରି 'ଗୁଣାଦର୍ଶ' ନାମରେ ଗୋଟିଏ ଗ୍ରନ୍ଥ ରଚନା କରିଥିଲେ । ଗ୍ରନ୍ଥଟିର ଭୂମିକାରେ ସେ ଲେଖିଥିଲେ, "ମହାକବି ଉପେନ୍ଦ୍ରଭଞ୍ଜ ବୀରଙ୍କୁ ଉତ୍କଳ ଭାଷା କାବ୍ୟର ରଚନା ସମ୍ବନ୍ଧେ ଆଦିମ କବି ବୋଲି କହିଲେ କୌଣସି ଅତ୍ୟୁକ୍ତି ହୋଇପାରେ ନାହିଁ । ...... କେତେକ

ବ୍ୟକ୍ତିମାନେ ମହାକବି ଉପେନ୍ଦ୍ରଭଞ୍ଜବୀରଙ୍କ ପ୍ରଣୀତ କାବ୍ୟର ସର୍ବାଂଶ ପର୍ଯ୍ୟାଲୋଚନା ନକରି ଓ ତାହାର ଗୁଣାଂଶ ପରିତ୍ୟାଗ ପୂର୍ବକ କେତେଗୁଡ଼ିଏ ସାମାନ୍ୟ ଦୋଷାଭାସକୁ ମହାଦୋଷ ରୂପରେ ନିଶ୍ଚିତ କରି ଉଲ୍ଲେଖ କରିଛନ୍ତି । ''(୪୯) ପଣ୍ଡିତ ଶର୍ମା ସ୍ୱଆଲୋଚନା ମଧ୍ୟରେ ବିଭିନ୍ନ ବ୍ୟାକରଣ ନିୟମ ଓ ସଂସ୍କୃତ କାବ୍ୟର ଉଦାହରଣ ଦେବାକୁ ପଶ୍ଚାତ୍ ପଦ ହୋଇନଥିଲେ ।

ପରିଶେଷରେ ଭଞ୍ଜସାହିତ୍ୟ ଆଲୋଚନାର ଧାରାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ପ୍ରଥମେ ଅଷ୍ଟାଦଶ ଶତାବ୍ଦୀରେ ଭଞ୍ଜସାହିତ୍ୟାଲୋଚନା ଟୀକାଟିପ୍ପଣୀ ମାଧ୍ୟମରେ ହୋଇଥିଲା । ଭଞ୍ଜସାହିତ୍ୟକୁ ସରଳ ତଥା ବୋଧଗମ୍ୟ କରିବା ନିମନ୍ତେ ଉଦ୍ୟମ ହୋଇଥିଲେ ହେଁ ସଂସ୍କୃତ ଟୀକାଟିପ୍ପଣୀ ତଥା କଥନଭଙ୍ଗୀରୁ ଏହା ମୁକ୍ତ ହୋଇପାରିନଥିଲା । ଊନବିଂଶ ଶତାବ୍ଦୀର ୪ର୍ଥ ଦଶକରେ ଇଂରାଜୀ ଭାଷାର ଭଂଜ ବଂଶାବଳୀଟିଏ ମୁଦ୍ରିତ ରୂପନେଇଥିଲେହେଁ ସପ୍ତମ ଦଶକରୁ ରଙ୍ଗଲାଲଙ୍କ ଦ୍ୱାରା ଭଞ୍ଜସାହିତ୍ୟ ଆଲୋଚନା ନିମନ୍ତେ ପ୍ରାରମ୍ଭିକ ଉଦ୍ୟମ ହୋଇଥିଲା । ଏହା ପରେ ଦୀର୍ଘ ୩୦-୩୫ ବର୍ଷ ଧରି ଚାଲିଥିବା ଭଞ୍ଜସାହିତ୍ୟ ଆଲୋଚନା ବିଶେଷ କରି ଭଞ୍ଜସାହିତ୍ୟର ତ୍ରୁଟି ବିଚ୍ୟୁତି, ଅଶ୍ଳୀଳତା, ଦୁର୍ବୋଧତା ଓ ଶ୍ରୁତିକଟୁତା ଆଦି ଉପରେ ଆଲୋକପାତ କରିଥିଲା । ଏଭଳି ଆଲୋଚନାର ପଶ୍ଚାତଭାଗରେ ଓଡ଼ିଆ ଭାଷା ବିଲୋପକାରୀଙ୍କ ଚକ୍ରାନ୍ତ, ଆଧୁନିକପନ୍ଥୀଙ୍କର ନୂତନ ସୃଷ୍ଟି ପାଇଁ ଉଦ୍ୟମ, ବ୍ରହ୍ମଧର୍ମୀଙ୍କ ବିରୋଧ ମନୋଭାବ ତଥା ଭଞ୍ଜରଚନାବଳୀର ଉପଯୁକ୍ତ ସଂସ୍କରଣର ଅଭାବ ଆଦିର ପ୍ରଚ୍ଛନ୍ନ ସଙ୍କେତ ଥିବା ପରି ମନେହୁଏ ।

୧୮୬୯ ମସିହାରେ ଓଡ଼ିଆ ଭାଷାକୁ ନେଇ ଚାଲିଥିବା ଚକ୍ରାନ୍ତ ସମୟରେ ଏ ଦେଶର କେତେକ ଅଣଓଡ଼ିଆ, ଓଡ଼ିଆ ଭାଷାର ଅସ୍ତିତ୍ୱକୁ ଅସ୍ୱୀକାର କରିବା ନିମନ୍ତେ ପ୍ରାଚୀନ ଓଡ଼ିଆ ସାହିତ୍ୟର ସର୍ବଶ୍ରେଷ୍ଠ କବି କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କୁ ତୀବ୍ର ସମାଲୋଚନା କରିବା ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲେ । କେବଳ ସେତିକି ନୁହେଁ ଉପେନ୍ଦ୍ରଭଞ୍ଜଙ୍କର ରଚନାବଳୀ ତତ୍କାଳୀନ ଯୁଗରୁଚି ଦ୍ୱାରା ଅନୁମୋଦନ ଲାଭ କରିପାରୁନଥିବାରୁ ବ୍ରାହ୍ମଧର୍ମାବଲମ୍ବୀ ତଥା ଆଧୁନିକ ପନ୍ଥୀମାନେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଉତ୍କଳ ମଧୁପ ପତ୍ରିକାରେ ୧୮୭୮ ରୁ ୧୮୮୦ ମସିହା ମଧ୍ୟରେ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀକୁ ଅଶ୍ଳୀଳତା ଓ ପ୍ରକୃତ କାବ୍ୟ ନୁହେଁ ଆଦି ଅଗୌରବ କଥା ଘୋଷଣା କରି ଯେଉଁ ଆଲୋଚନା ଆରମ୍ଭ ହୋଇଥିଲା, ସେଥିରେ ଏହି ଆଧୁନିକ ପନ୍ଥୀମାନେ ସକ୍ରୀୟ ଭାଗ ନେଇଥିଲେ । ଫଳରେ ଏମାନେ ନୂତନ ଆଲୋକ ପ୍ରାପ୍ତିର ଅହମିକାରେ ମତାନ୍ଧ ହୋଇ ଭଞ୍ଜସାହିତ୍ୟ ବିପକ୍ଷରେ କଠୋର ମନ୍ତବ୍ୟ ପ୍ରଦାନ ନିମନ୍ତେ କୁଣ୍ଠା ପ୍ରକାଶକରିନଥିଲେ । ଭଞ୍ଜୀୟ ସୃଷ୍ଟି ସମ୍ଭାରକୁ ଏହି ଶତକରେ ଯେପରି ଭାବରେ ଆଲୋଚନା ପର୍ଯ୍ୟାଲୋଚନା କରାଗଲା, ତାର ଅନ୍ତରାଳରେ ବିଭିନ୍ନ ଦିଗରୁ ଭଞ୍ଜସାହିତ୍ୟର ଦୋଷତ୍ରୁଟିକୁ ଦେଖାଇବା ନିମନ୍ତେ ଆଲୋଚକମାନେ ସତତ ସଚେତନ ଥିବାପରି ମନେହୁଏ । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ବିଭିନ୍ନ ତ୍ରୁଟିବିଚ୍ୟୁତିକୁ ସେମାନେ ଦୃଢ଼ଭାବରେ ଉପସ୍ଥାପନା କଲେହେଁ ସମସାମୟିକ ଓଡ଼ିଆସାହିତ୍ୟରୁ ଗୋଟିଏ ଉନ୍ନତମାନର ଉଦାହରଣ ଦେବା ପାଇଁ ସେମାନେ ସକ୍ଷମ ହୋଇ ପାରୁନଥିଲେ । ଫଳରେ ଭଞ୍ଜପ୍ରେମୀ ପ୍ରାଚୀନ ପନ୍ଥୀମାନେ ସେହି ଅସ୍ତ୍ରକୁ ସେମାନଙ୍କ ପ୍ରତି ପ୍ରୟୋଗ କରି ଆଧୁନିକ ପନ୍ଥୀଙ୍କୁ ଦୃଢ଼ ଭାବରେ ମୁକାବିଲା କରିପାରୁଥିଲେ । ଏହି ଆଲୋଚନା ଓ ପ୍ରତି ଆଲୋଚନାକୁ କୌଣସି ଏକ ନିର୍ଦ୍ଧାରିତ ମାନଦଣ୍ଡରେ ବିଶ୍ଳେଷଣ କରିବା କଷ୍ଟକର । କାରଣ ଗୋଟିଏ ପକ୍ଷରେ ଭଞ୍ଜସାହିତ୍ୟକୁ ବିରୋଧ କରି ବା ସେହି ବିରୋଧରୁ ମୁକ୍ତି ପାଇବା ନିମନ୍ତେ ବିଭିନ୍ନ ମାର୍ଗରେ ଉଦ୍ୟମ କରିବା ବା ପ୍ରତିକ୍ରିୟା ସୃଷ୍ଟିକରିବା ଥିଲା ଆଲୋଚକମାନଙ୍କର ମୁଖ୍ୟଲକ୍ଷ୍ୟ । ତେଣୁ ବିଭିନ୍ନ ଆଲୋଚନା ଓ ପ୍ରେରିତ ପତ୍ର ଥିଲା ଏ ସମସ୍ତ ଆଲୋଚନାର ଏକ ମାଧ୍ୟମ । ଏହି ମାଧ୍ୟମଟି ଯେତେବେଳେ

ଛଦ୍ମନାମୀ ଲେଖକଙ୍କ ଦ୍ୱାରା ନିୟନ୍ତ୍ରିତ ହେଲା, ସେତେବେଳେ ଆଲୋଚନା ପଥଭ୍ରଷ୍ଟ ହୋଇ ବ୍ୟକ୍ତିଗତ କୁତ୍ସାରଚନା ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲା, ଯାହାଫଳରେ ସାହିତ୍ୟ ସମାଲୋଚନାର ପବିତ୍ର ମାର୍ଗଟି କଳୁଷିତ ହେବାର ସୁଯୋଗ ପାଇଥିଲା । ତେଣୁ ଏପରି କଳୁଷିତ ମାର୍ଗରୁ ସମାଲୋଚନକୁ ମୁକ୍ତ କରିବା ପାଇଁ ଶେଷରେ ବିଭିନ୍ନ ପତ୍ର ପତ୍ରିକା ଓ ବ୍ୟକ୍ତିବିଶେଷ ଉଦ୍ୟମ କରିଥିଲେ ।

ଏହି ଆଲୋଚନାର ଫଳସ୍ୱରୂପ ଊନବିଂଶ ଶତକର ଶେଷପର୍ଯ୍ୟାୟରେ ଗୌରୀଶଂକର ରାୟ, ବନମାଳୀ ସିଂହ, କପିଳେଶ୍ୱର ବିଦ୍ୟାଭୂଷଣ, ଗଣେଶ୍ୱର ଦାସ, ଗୋପୀବଲ୍ଲଭ ରାୟ ଓ ବଳରାମ ଦାସ ଆଦି ଭଞ୍ଜ ରଚନାବଳୀର ସଟୀକ ଗ୍ରନ୍ଥ ପ୍ରକାଶ ନିମନ୍ତେ ପ୍ରଚେଷ୍ଟା କରିଥିଲେ । ଏ ମାନଙ୍କ ପ୍ରଚେଷ୍ଟାର ଫଳ ସ୍ୱରୂପ ଭଞ୍ଜରଚନାବଳୀକୁ ତାଳ ପତ୍ର ପୋଥିରୁ ସଂଗ୍ରହ କରି ଟୀକା ପ୍ରସ୍ତୁତ କରାଯାଇଥିଲା ଓ ସେଗୁଡିକ ମୁଦ୍ରିତ ରୂପନେଇ ଲୋକ ଲୋଚନକୁ ଆସିପାରିଥିଲା । କେବଳ ସେତିକି ନୁହେଁ ଊନବିଂଶ ଶତକର ଏହି ଆଲୋଚନା ଯୋଗୁଁ ଓଡିଆ ସାହିତ୍ୟ ଜଗତରେ ସମାଲୋଚନାର ଧାରାଟିଏ ପ୍ରବର୍ତ୍ତନ ହେବା ସହିତ ବିଂଶଶତାବ୍ଦୀରେ ଭଞ୍ଜୀୟ ସୃଷ୍ଟି ସଂପଦର ବିଭିନ୍ନ ସଂସ୍କରଣ ପ୍ରକାଶନ ତଥା ଭଞ୍ଜ ସାହିତ୍ୟ ଆଲୋଚନାର ଦ୍ୱାର ଉନ୍ମୁକ୍ତ ହୋଇପାରିଥିଲା ।

**ପଦଟୀକା :-**

୧. ଓଡିଆ ସାହିତ୍ୟର ଇତିହାସ, ୪ର୍ଥଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, କଟକ, ୧୯୭୧, ପୃ-୧୬୬ ।
୨. ଭଞ୍ଜଗବେଷଣା ସହାୟକ ସୂଚୀ, ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର, ରାଉରକେଲା, ୧୯୯୭, ପୃ : ୨୩-୨୯
୩. ଓଡିଶା ସାହିତ୍ୟର ଇତିହାସ, ୪ର୍ଥ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, କଟକ, ୧୯୭୧, ପୃ:୧୭୦ ।
୪. ରାଜ୍ୟ ସଂଗ୍ରହାଳୟ ପୋଥି କ୍ରମାଙ୍କ ଓ.ଏଲ୍.୩୪ ।
୫. Madras Journal of Literature and Science, Vol.VII, No.18, Madras, 1838, PP. 93-104. (Article - Historical Narrative of the Rajahs of Goomsoor by Rev. W.Taylor.)
୬. JASB, Vol.XXVII, No.III, Calcutta, 1859, PP 189 - 190. (Article - Notes and queries suggested by a visit to Orissa in January 1859 by Rev. J.Long.)
୭. ରହସ୍ୟ ସନ୍ଦର୍ଭ, ୨ୟ ପର୍ବ, ୧୬ ଖଣ୍ଡ, କଲିକତା, ୧୮୬୪, ପୃ.୫୭-୬୦; ପୁନର୍ମୁଦ୍ରଣ ବହିତ୍ର - ୮, ଭଞ୍ଜନଗର, ୧୯୯୧, ପୃ.ଗ-ଢ (ଶୀର୍ଷକ - ରଙ୍ଗଲାଲଙ୍କ ଦୃଷ୍ଟିରେ ଉପେନ୍ଦ୍ରଭଞ୍ଜ, ଡଃ.ପୂର୍ଣ୍ଣଚନ୍ଦ୍ର ମିଶ୍ର) ।
୮. ଅଠରଶ ଛଷଠୀ, ଡଃ. ବଂଶୀଦର ମହାନ୍ତି, କଟକ, ୧୯୭୮, ପୃ.୧୧୨; ଉତ୍କଳ ଦୀପିକାରେ ଭଂଜପ୍ରସଂଗ, ଡଃ. ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ : ୧ ।
୯. ଅଠରଶ ଛଷଠୀ, ଡଃ. ବଂଶୀଧର ମହାନ୍ତି, କଟକ, ୧୯୭୮, ପୃ:୧୮୯ ।
୧୦. ପ୍ରେମସୁଧାନିଧି, ଉପେନ୍ଦ୍ରଭଞ୍ଜ, କଟକ ପ୍ରିଣ୍ଟିଂ କମ୍ପାନୀ, କଟକ, ୧୮୬୬, ଭୂମିକା, ପୃ.୧ ।
୧୧. କବିତାବଳୀ, ୧ମ ଭାଗ, ୧୮୬୮ରେ କବିତାଟି ପ୍ରଥମେ ପ୍ରକାଶ ପାଇଥିଲା । ପରେ ଲେଖାବଳୀ ୧୯୦୨ରେ ପୁନର୍ବାର ମୁଦ୍ରିତ ହେଲା ।
୧୨. ସମ୍ବାଦ ପତ୍ରରୁ ଓଡିଶାର କଥା, ସୁଧାକର ପଟ୍ଟନାୟକ, କଟକ, ୧୯୭୨, ପୃ.୫୩୦ ।

୧୩. ଉତ୍କଳ ଦୀପିକା ୫/୩୭, ୧୮୭୦, ପୃ.୧୪୪; ଉତ୍କଳ ଦୀପିକାରେ ଭଞ୍ଜପ୍ରସଙ୍ଗ, ଡଃ.ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ-୩।
୧୪. " The Indigenous Literature of Orissa", Indian Antiquary, March, 1872, P-80.
୧୫. "The Liteature of Orissa", Orissa, Vol-II, London, 1872, PP-208-209.
୧୬. ଉତ୍କଳ ପୁତ୍ର ୧/୭, ୧୮୭୩, ପୃ-୨୭।
୧୭. ତତ୍ରୈବ ୨/୪, ୧୮୭୪, ପୃ.୧୫।
୧୮. ଉତ୍କଳ ଦୀପିକା ୧୩/୪, ୧୮୭୮, ପୃ.୧୪; ଉତ୍କଳ ଦୀପିକାରେ ଭଞ୍ଜପ୍ରସଙ୍ଗ, ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ-୬।
୧୯. ଉତ୍କଳ ଦୀପିକା, ୧୩/୭, ୧୮୭୮, ପୃ-୨୮।
୨୦. ଉତ୍କଳ ମଧୁପ ୧ମ ବର୍ଷ, ପୃ-୬୫, ପୃ.୮୧-୮୫, ପୃ.୧୪୫-୧୫୦, ପୃ. ୧୬୧-୧୬୮।
୨୧. ଉତ୍କଳ ଦୀପିକା ୧୪/୩୭, ୧୮୭୯, ପୃ.୧୪୬; ଉତ୍କଳ ଦୀପିକାରେ ଭଞ୍ଜ ପ୍ରସଂଗ, ଡଃ.ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ.୧୫।
୨୨. ନବସମ୍ବାଦ ୧/୨୫, ୧୮୮୭, ପୃ.୯୮-୯୯।
୨୩. ଓଡ଼ିଆ ଓ ନବ ସମ୍ବାଦ ତା ୨୩.୧.୧୮୮୯, ପୃ-୫୦।
୨୪. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦), ଡଃ.ନଟବର ସାମନ୍ତରାୟ, ଭୁବନେଶ୍ୱର, ୧୯୬୪, ପୃ-୪୮୯।
୨୫. ଉତ୍କଳ ପ୍ରଭା ୧/୧, ୧୮୯୧, ପୃ.୧୭୭-୧୭୮।
୨୬. ତତ୍ରୈବ ୧/୭-୮, ୧୮୯୧, ପୃ-୪।
୨୭. ତତ୍ରୈବ ୧/୯, ପୃ.୨୪୦-୨୪୮; ୨/୧, ପୃ.୧୯-୨୮; ୨/୫, ପୃ.୧୪୦-୧୫୮; ୨/୮, ପୃ.୨୪୪-୨୫୬, ୨/୯, ପୃ.୨୫୭- ୨୭୫ ଇତ୍ୟାଦି।
୨୮. ତତ୍ରୈବ ୧/୯, ପୃ.୨୪୩।
୨୯. ତତ୍ରୈବ ୨/୫, ପୃ.୧୪୦।
୩୦. ତତ୍ରୈବ ୨/୮, ପୃ.୨୫୩।
୩୧. ତତ୍ରୈବ ୨/୯, ପୃ.୨୫୭-୨୬୫।
୩୨. ତତ୍ରୈବ ୩/୫, ପୃ.୧୬୨।
୩୩. ସମ୍ବଲପୁର ହିତୈଷିଣୀ ୫/୯, ୧୮୯୩, ପୃ.୩୫।
୩୪. ଉତ୍କଳ ଦୀପିକା ୨୮/୩୪, ୧୮୯୩, ପୃ.୨୭୦; ଉତ୍କଳ ଦୀପିକାରେ ଭଞ୍ଜପ୍ରସଙ୍ଗ, ଡଃ.ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ.୫୦।
୩୫. ଉତ୍କଳ ଦୀପିକା ୨୮/୩୭, ପୃ.୨୯୦।
୩୬. ଇନ୍ଦ୍ରଧନୁ ୧/୮, ୧୮୯୩; ଇନ୍ଦ୍ରଧନୁ, ଡଃ.ସୁଦର୍ଶନ ଆଚାର୍ଯ୍ୟ, ବ୍ରହ୍ମପୁର, ୧୯୯୧, ପୃ.୨୮।
୩୭. ସମ୍ବାଦ ବାହିକା, ୧୮୯୩, ପୃ.୧୩୮।
୩୮. ସମ୍ବଲପୁର ହିତୈଷିଣୀ ୫/୨୧, ୧୮୯୩, ପୃ.୮୧।
୩୯. ଉତ୍କଳ ଦୀପିକା ୨୯/୩୪, ୧୮୯୪, ପୃ.୨୬୮; ଉତ୍କଳ ଦୀପିକାରେ ଭଞ୍ଜ ପ୍ରସଂଗ, ଡଃ.ପୂର୍ଣ୍ଣଚନ୍ଦ୍ର

ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ.୭୩ ।
୪୦. ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି, ଡଃ. ନଟବର ସାମନ୍ତରାୟ, କଟକ, ୧୯୬୪, ପୃ.୫୮-୬୧ ।
୪୧. ତତ୍ରୈବ ପୃ.୬୧ ।
୪୨. ଉତ୍କଳ ଦୀପିକା ୨୯/୬, ୧୮୯୪, ପୃ.୪୬; ଉତ୍କଳ ଦୀପିକାରେ ଭଞ୍ଜପ୍ରସଂଗ, ଡଃ.ପୂର୍ଣ୍ଣଚନ୍ଦ୍ର ମିଶ୍ର, ବ୍ରହ୍ମପୁର, ୧୯୯୬, ପୃ.୬୪ ।
୪୩. କବିଲିପି, ଦେବୀପ୍ରସନ୍ନ ପଟ୍ଟନାୟକ, ବିଶ୍ୱଭାରତୀ, ୧୯୫୭, ପୃ.୭୦ ।
୪୪. ମାତା, ଦାମୋଦର ମିଶ୍ର, ରାୟପ୍ରେସ କଟକ , ୧୮୯୫ ।
୪୫. ଦୋଷଦର୍ଶନ, ଦାମୋଦର ମିଶ୍ର, ବାମଣ୍ଡା, ୧୮୯୫ ।
୪୬. କବିତାବଳୀ, ଗୋପାଳ ବଲ୍ଲଭ ଦାସ, କଟକ, ୧୮୯୫, ପୃ.୪୪-୪୫ ।
୪୭. JASB, Vol-LXVII, Part-I, NOL, Calcutta, 1898, PP.362-368 (Article - Notes on the language and literature of Orissa, Part III & IV by M.M.Chakravarty.)
୪୮. Ibid - P-367.
୪୯. ଗୁଣାଦର୍ଶ, ପଣ୍ଡିତ ବୁଦ୍ଧିନାଥକାବ୍ୟ ତୀର୍ଥ ଶର୍ମା, ବାରିପଦା, ୧୯୦୦, ଭୂମିକା, ପୃ-୯; ପୁନର୍ମୁଦ୍ରଣ - ଏଷଣା - ୧୯, କଟକ, ଡିସେମ୍ବର ୧୯୮୯, ପୃ-୩୨ ।

*ବିଭାଗୀୟ ମୁଖ୍ୟ*
*ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ମଧ୍ୟଯୁଗୀୟ ଓଡ଼ିଆ କାବ୍ୟକଳାରେ ଚମତ୍କାରଚେତନା

ଡକ୍ଟର ଶ୍ରୀ କାଳୀଚରଣ ରଥ

ଆଧୁନିକ ଭାରତୀୟ ଭାଷା- ସାହିତ୍ୟ ପରଂପରାରେ ଓଡ଼ିଆ ମଧ୍ୟଯୁଗୀୟ କାବ୍ୟ ସମ୍ଭାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବିକରେ । ଏହି ଯୁଗର ସମୟସୀମା ପଞ୍ଚଦଶ ଶତାବ୍ଦୀର ଉଷାଲୋକରେ ଉଦ୍‌ଭାସିତ ହୋଇ ଊନବିଂଶ ଶତାବ୍ଦୀର ମଧ୍ୟାହ୍ନକାଳୀନ ପ୍ରଖରଔଜ୍ଜ୍ୱଲ୍ୟରେ ରସାଣିତ । ଅନୁସୃତ ମଧ୍ୟଯୁଗୀୟ କାବ୍ୟକଳାର ବିପୁଳବାଣୀବିଭବ 'ରାମବିଭା' ଓ 'କଳ୍ପଲତା'ର ସ୍ରଷ୍ଟା ଆଦିକବି ଅର୍ଜୁନ ଦାସଙ୍କ ଠାରୁ ଆରମ୍ଭକରି 'ରାଘବବିଳାସ' ତଥା 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ର ପ୍ରଣେତା ଯଦୁମଣି ମହାପାତ୍ରଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ସମସ୍ତ କାବ୍ୟକର୍ତ୍ତା ଯୁଗାଦର୍ଶର ଅନୁରୋଧରେ ପ୍ରାଚ୍ୟ କାବ୍ୟତତ୍ତ୍ୱ ପରଂପରାକୁ ଉଣାଧିକେ ଦୃଷ୍ଟିରେ ରଖି କାବ୍ୟ ସାଧନା କରିଥିବା ଅନୁମିତ ହୁଏ । ପ୍ରାଚ୍ୟ କାବ୍ୟ ପ୍ରକାଶରେ କବିର ଶିକ୍ଷା, କାବ୍ୟର ସ୍ୱରୂପ, ଅର୍ଥାତ୍ ବିଷୟ ବିନ୍ୟାସ, ଅଙ୍ଗସଜ୍ଜା, ଆତ୍ମିକ ବୈଭବାଦି ସମ୍ବନ୍ଧରେ ଅନେକ ବିଚାର ବିମର୍ଶ ଉଲ୍ଲିଖିତ । ଅଲୋଚ୍ୟ ସମୟ ପ୍ରବାହର କବିକୁଳ ନିଜ ନିଜ ସୃଷ୍ଟି ବିଭାସରେ ସେହିସବୁ ତତ୍ତ୍ୱଗତ ବୈଚିତ୍ର୍ୟକୁ ପ୍ରତିଭାତ କରିବା ନିମିତ୍ତ ଯତ୍‌ପରୋନାସ୍ତି ଉଦ୍ୟମ କରିଛନ୍ତି , କହିବା ବାହୁଲ୍ୟ ମାତ୍ର । ଆଙ୍ଗିକ ବୈଭବ ମଧ୍ୟରେ ଛାନ୍ଦ ସଂଯୋଜନ, ଶବ୍ଦାର୍ଥ ବିନ୍ୟସନ ଓ ଅଳଂକାର ବିମଣ୍ଡନ, ତଥା ଆତ୍ମିକ ବିକାଶ କ୍ଷେତ୍ରରେ ରସସୌନ୍ଦର୍ଯ୍ୟ, ଧ୍ୱନିମାଧୁର୍ଯ୍ୟ, ବକ୍ରୋକ୍ତି ବିଳାସ ଏବଂ ଔଚିତ୍ୟ ବିଚାର ପ୍ରତି କାବ୍ୟସ୍ରଷ୍ଟାଙ୍କ ଦୃଷ୍ଟି ନିବଦ୍ଧ ଥିବା ଅନୁଭୂତ ହୁଏ । କିନ୍ତୁ ଏ ସମସ୍ତ କାବ୍ୟତତ୍ତ୍ୱ ମଧ୍ୟରେ ଚମତ୍କାର ପ୍ରଦର୍ଶନ ହିଁ ପ୍ରାଚ୍ୟ କାବ୍ୟାଦର୍ଶ ଆଲୋଚନା କ୍ରମରେ ପ୍ରମୁଖସ୍ଥାନ ଗ୍ରହଣ କରିଥିବା ପରିଲକ୍ଷିତ । ସେହି ଚମତ୍କାର ଚେତନା ଓଡ଼ିଆ ମଧ୍ୟଯୁଗୀୟ କାବ୍ୟସରଣୀକୁ ସମାଚ୍ଛନ୍ନ କରି ରଖିବା ସଂଗେ ସଂଗେ କିପରି ସ୍ୱକୀୟଦୀପ୍ତିରେ ଆଲୋକିତ କରିତୋଳିଛି ତାହାର ଦିଗଦିଗନ୍ତ ଉନ୍ମୋଚନ ଜନିତ ସମୀକ୍ଷଣହିଁ ଅନୁଶୀଳିତ ପ୍ରବନ୍ଧର ଲକ୍ଷ୍ୟ ।

ଚମତ୍କାର ଶବ୍ଦ ବିସ୍ମୟ, ଆଶ୍ଚର୍ଯ୍ୟ, ପୂର୍ବ ଅନନୁଭୂତ ନୂତନତା, କାବ୍ୟମାଧୁର୍ଯ୍ୟ, ଅଦ୍ଭୁତତା, ଇତ୍ୟାଦି ଅନେକ ଅର୍ଥର ପ୍ରକାଶକ । କିନ୍ତୁ ଏଠାରେ ଚମତ୍କାର ଶବ୍ଦ କାବ୍ୟର ପ୍ରାଣଭୂତ ନିର୍ଯ୍ୟାସ ରୂପେହିଁ ଗୃହୀତ; ଯାହାକି ହୃଦୟକୁ ଆମୋଦିତ କରି ଅତୀନ୍ଦ୍ରିୟ ରାଜ୍ୟରେ ସହୃଦୟକୁ ନିମଜ୍ଜନକରେ । ସେହି ଚମତ୍କାର ଭାବନା କାବ୍ୟର ଶାରୀରିକ ଓ ଆତ୍ମିକ ବୈଭବର ସମସ୍ତ କ୍ଷେତ୍ରରେ ଅବଲୋକନ କରାଯାଇ ପାରେ । ପ୍ରାଚ୍ୟ କାବ୍ୟତତ୍ତ୍ୱର ଆଲୋଚକ ବୃନ୍ଦ ଏହି ଚମତ୍କାରର ସ୍ୱରୂପ ପ୍ରଦର୍ଶନକୁ ଦୃଷ୍ଟିରେ ରଖିହିଁ ଭିନ୍ନ ଭିନ୍ନ ଶବ୍ଦ ମାଧ୍ୟମରେ ବ୍ୟାଖ୍ୟା କରିଯାଇଛନ୍ତି । ଯଥା :-

**ରସତତ୍ତ୍ୱ :-**

ଆଲୋଚକ ଆଚାର୍ଯ୍ୟ ବିଶ୍ୱନାଥ କବିରାଜଙ୍କ ଲକ୍ଷଣ ଅଟେ- 'ବାକ୍ୟଂ ରସାତ୍ମକଂ କାବ୍ୟମ୍' । ସେ ଏହି ରସ ସିଦ୍ଧାନ୍ତ ପ୍ରତିପାଦନ ଅବସରରେ ପୂର୍ବ ଆଲୋଚକଙ୍କ ମତକୁ ଉଦ୍ଧାର କରିଛନ୍ତି । ଯଥା -

"ରସେ ସାରଶ୍ଚମତ୍କାରଃ ସର୍ବତ୍ରାଃପ୍ୟନୁଭୂୟତେ ।
ତଚ୍ଚମତ୍କାରସାରତ୍ୱେ ସର୍ବତ୍ରାଃପ୍ୟଦ୍‌ଭୁତୋ ରସଃ।
ତସ୍ମାଦଦ୍‌ଭୁତ ମେବାହ କୃତୀ ନାରାୟଣୋରସମ୍।।" (ସାହିତ୍ୟ ଦର୍ପଣ ୩ୟ ପରଚ୍ଛେଦ )

ଅର୍ଥାତ ଶୃଙ୍ଗାରାଦି ସମସ୍ତ ରସରେ ସାରସ୍ୱରୂପ ଚିତ୍ତବିସ୍ତାରକାରୀ ବିସ୍ମୟହିଁ ଚମତ୍କାର ନାମରେ ବିଳସିତ । ଏହି ଚମତ୍କାର ଅଦ୍‌ଭୁତର ଅପର ପର୍ଯ୍ୟାୟ - ରସାନୁଭୂତିର ନିର୍ଯ୍ୟାସ ।

**ଅଳଂକାର :-**

ରୀତି କାବ୍ୟାତ୍ମବାଦର ପ୍ରତିଷ୍ଠାପକ ଆଚାର୍ଯ୍ୟ ବାମନ ସମସ୍ତ କାବ୍ୟ ସୁଷମାକୁ ଅଳଂକାର ମନେ କରି କହନ୍ତି - "ସୌନ୍ଦର୍ଯ୍ୟମଳଙ୍କାରଃ' । (କାବ୍ୟାଳଙ୍କାର ସୂତ୍ରବୃତ୍ତି- ୧/୧/୨) ଏବଂ ସେ ଅନ୍ୟ ଏକ ସୂତ୍ରରେ 'କାବ୍ୟ ଗ୍ରାହ୍ୟଂ ଅଳଙ୍କାରାତ୍' ବୋଲି ଉଲ୍ଲେଖ କରିଛନ୍ତି । ଯାହାର ଅର୍ଥ କାବ୍ୟ ଅଳଂକାର ଦ୍ୱାରା ଗ୍ରହଣୀୟ ହୁଏ । ଏଥିରେ ପ୍ରତିପାଦିତ ଅଳଂକାର ପର୍ଯ୍ୟାୟବାଚୀ ସୌନ୍ଦର୍ଯ୍ୟ ଚମତ୍କାରର ପ୍ରତିପଦ ରୂପେ ପରିଲକ୍ଷିତ । ଅନ୍ୟପକ୍ଷରେ 'ବିଚ୍ଛିତ୍ତି ବିଶେଷୋଃଳଂକାରଃ' - ଏହି ଉକ୍ତି ମଧ୍ୟରେ ବିଚ୍ଛିତ୍ତି ଶବ୍ଦ ଚମତ୍କାର ବୋଧକ ଅଟେ । ତେଣୁ କବିକର୍ମରେ ଅଳଂକାରକୁ ଏକ ମହତ୍ତ୍ୱମୟ ସ୍ଥାନ ପ୍ରଦାନ କରାଯାଇଛି । ପ୍ରତ୍ୟେକ ଅଳଂକାରଠାରୁ ଅନ୍ୟଏକ ଅଳଂକାର ମଧ୍ୟରେ ଥିବା ତାରତମ୍ୟକୁ ଏକମାତ୍ର ଚମତ୍କାରଟ୍ଟେକିତ କାରଣଗତ ମହତ୍ତ୍ୱରୂପେ ଅନୁଭବ କରାଯାଇଥାଏ । ଏହି ଚମତ୍କାର ପ୍ରଦର୍ଶନକୁ ଦୃଷ୍ଟିରେ ରଖି ଅଳଂକାରକୁ ଶତାଧିକ ବିଭାସରେ ବିଭକ୍ତ କରାଯାଇଛି ।

**ଧ୍ୱନି :-**

'ଧ୍ୱନିରାତ୍ମା କାବ୍ୟସ୍ୟ' ମତବାଦର ପ୍ରବର୍ତ୍ତକ ଆଳଂକାରିକ ଆନନ୍ଦବର୍ଦ୍ଧନ ଏବଂ ତାଙ୍କର ଅନୁଯାୟୀ ଲୋଚନ ଟୀକାକାର ଅଭିନବ ଗୁପ୍ତ, କାବ୍ୟ ପ୍ରକାଶ ପ୍ରଣେତା ମମ୍ମଟାଦି ଧ୍ୱନି ସ୍ୱରୂପ ପ୍ରତିପାଦନ ପ୍ରସଂଗରେ କହନ୍ତି - 'ତସ୍ୟହି ଧ୍ୱନେଃ ସ୍ୱରୂପଂ ସକଳ ସତ୍‌କବି କାବ୍ୟୋପନିଷଦ୍ ଭୂତମତି ରମଣୀୟମ୍ । (ଧ୍ୱନ୍ୟାଲୋକ - ୧/୧) । ଅର୍ଥାତ୍ ଧ୍ୱନିର 'ଅତିରମଣୀୟତା' ଚମତ୍କାର ସୃଷ୍ଟି ଉଦ୍ଦେଶ୍ୟରେ ଉଲ୍ଲିଖିତ । ସାଧାରଣତଃ ଯେଉଁଠି କାବ୍ୟରେ ପ୍ରଯୁକ୍ତ ବାଚକ ଶବ୍ଦ ଓ ବାଚ୍ୟାର୍ଥ ନିଜକୁ ଗୌଣକରି ଅନ୍ୟଏକ ସୁନ୍ଦର ହୃଦୟ ଗ୍ରାହୀ ମଧୁର ଅର୍ଥ ପ୍ରତୀତ କରାଏ ସେହି ବ୍ୟଞ୍ଜକ ଅର୍ଥ ଧ୍ୱନିନାମରେ ଅଭିହିତ । ଏପରିକି ଗୁଣୀଭୂତ ବ୍ୟଙ୍ଗ୍ୟ ପ୍ରସଂଗରେ କାବ୍ୟପ୍ରକାଶକାର ଆଚାର୍ଯ୍ୟ ମମ୍ମଟଙ୍କ ଉକ୍ତି ପ୍ରାଣିଧାନ ଯୋଗ୍ୟ - 'ତଦପେକ୍ଷୟା ବାଚ୍ୟସୌବ ଚମତ୍କାରି ତ୍ୱାତ୍ '। ଅର୍ଥାତ୍ ପ୍ରତୀୟ ମାନାର୍ଥ ଅପେକ୍ଷା ବାଚ୍ୟାର୍ଥଟି ଚମତ୍କାର ସମ୍ପନ୍ନ ହେଲେ ଗୁଣୀ ଭୂତ ବ୍ୟଙ୍ଗ୍ୟ କାବ୍ୟରୂପ ସୃଷ୍ଟି ହୁଏ । ଏଥିରୁ ସ୍ପଷ୍ଟ ହୁଏ ଯେ ଶବ୍ଦର ଓ ଅର୍ଥର ଚମତ୍କୃତି ପ୍ରତିପାଦନ ହିଁ ଧ୍ୱନି ଭାବେ ପ୍ରତିପନ୍ନ ।

**ବକ୍ରୋକ୍ତି :-**

'ବକ୍ରୋକ୍ତିଃ କାବ୍ୟ ଜୀବିତମ୍' ମତବାଦର ପ୍ରବାଚକ ଆଚାର୍ଯ୍ୟ ରାଜାନକ କୁନ୍ତକ ବକ୍ରୋକ୍ତିର ସଜ୍ଞା ନିର୍ଦ୍ଧାରଣ ପ୍ରସଙ୍ଗରେକହନ୍ତି - 'ବକ୍ରୋକ୍ତିରେବ ବୈଦଗ୍‌ଧ ଭଙ୍ଗୀଭଣିତି ରୁଚ୍ୟତେ' । ଅର୍ଥାତ୍ ବୈଦଗଧ=କବିକର୍ମ କୌଶଳମ୍, ଭଙ୍ଗୀ = ବିଚ୍ଛିତ୍ତିଃ (ଚମତ୍କାର, ଚାରୁତା, ଶୋଭାଦି), ଭଣିତିଃ = ଉକ୍ତି । ପୁଣି ବକ୍ରୋକ୍ତିକୁ କବିକର୍ମ କୌଶଳର ଏକମାତ୍ର ଅଳଂକାର (ସୌନ୍ଦର୍ଯ୍ୟ) ମନେକରି ସେ କହନ୍ତି -

''ଲୋକୋତ୍ତର ଚମତ୍କାରକାରି ବୈଚିତ୍ର୍ୟ ସିଦ୍ଧୟେ ।
କାବ୍ୟ ସ୍ୟାୟମଲଂକାରଃ କୋଽପ୍ୟପୂର୍ବଃ ବିଧୀୟତେ । '' (ବକ୍ରୋକ୍ତି ଜୀବିତମ୍ ୧/୧)

ଏହାର ଅର୍ଥ ବକ୍ରୋକ୍ତି ଏକ ଅପୂର୍ବ ଲୋକୋତ୍ତର ଚମତ୍କାର ଜନକ କାବ୍ୟ-ସୌନ୍ଦର୍ଯ୍ୟ ବିଶେଷ ମାତ୍ର । ଏହି ବକ୍ରୋକ୍ତି କବିକର୍ମର ବର୍ଣ୍ଣଠାରୁ ଆରମ୍ଭ କରି ପ୍ରବନ୍ଧ ପର୍ଯ୍ୟନ୍ତ ସର୍ବତ୍ର ତା'ର ଲୀଳା ବିଳାସମୟ ଚମତ୍କୃତି ପ୍ରଦର୍ଶନ କରେ ।

**ଔଚିତ୍ୟ :-**

ଏହି ସଂପ୍ରଦାୟର ପ୍ରତିଷ୍ଠାପକ ଆଳଂକାରିକ ଆଚାର୍ଯ୍ୟ କ୍ଷେମେନ୍ଦ୍ର କହନ୍ତି - 'ନହି ଚମତ୍କାର ବିରହିତସ୍ୟ କବେଃ କବିତ୍ୱମ୍ , କାବ୍ୟସ୍ୟ ବା କାବ୍ୟତ୍ୱମ୍ । (କବିକଣ୍ଠାଭରଣ) । ଅର୍ଥାତ୍ ଚମତ୍କାରପୂର୍ଣ୍ଣ ସୃଷ୍ଟି ବ୍ୟତୀତ କବି ବା କାବ୍ୟ କେହିହେଲେ ପ୍ରଶଂସିତ ହୁଅନ୍ତି ନାହିଁ । ଏତଦ୍ ବ୍ୟତୀତ ଔଚିତ୍ୟ ବିଚାର ଚର୍ଚ୍ଚା ଗ୍ରନ୍ଥରେ ସେ ପ୍ରକାଶ କରନ୍ତି - '' ଔଚିତ୍ୟସ୍ୟ ଚମତ୍କାର କାରିତା ଚାରୁଚର୍ବଣେ । ରସ ଜୀବିତ ଭୂତସ୍ୟ ବିଚାରଂ କୁରୁତେଽଧୁନା'' । ଏହାର ମର୍ମ ରସଚର୍ବଣାରେ ଚମତ୍କାର ସଂପାଦନା ହିଁ ଔଚିତ୍ୟ ଅଟେ ।

ଏପରିକି ପଣ୍ଡିତ ରାଜ ଜଗନ୍ନାଥ ରସଗଙ୍ଗାଧର ଗ୍ରନ୍ଥରେ ସ୍ୱକୀୟ କାବ୍ୟଲକ୍ଷଣ ପ୍ରସଙ୍ଗରେ ଘୋଷଣା କରନ୍ତି - 'ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍ '। ଅର୍ଥାତ୍ ରମଣୀୟ (ମନୋଜ୍ଞ) ଅର୍ଥ ପ୍ରକାଶକ ଶବ୍ଦଟିଏ ମଧ କାବ୍ୟ ଗୌରବ ଅର୍ଜନ କରିଥାଏ । ଉକ୍ତ ରମଣୀୟତା ଅର୍ଥସହିତ ଶବ୍ଦର ଚମତ୍କାରିତା ପ୍ରତି ନିର୍ଦ୍ଦେଶମାତ୍ର । ପରିଶେଷରେ ପ୍ରାଚ୍ୟକାବ୍ୟତତ୍ତ୍ୱ ଜଗତର ସମସ୍ତ ଦିଗଦିଗନ୍ତକୁ ଆଲୋଡନ କରି ଅଷ୍ଟାଦଶ ଶତାବ୍ଦୀର ପର୍ଯ୍ୟାଲୋଚକ ଆଳଂକାରିକ ହରପ୍ରସାଦ ନିଜବିରଚିତ କାବ୍ୟାଲୋକ ଗ୍ରନ୍ଥରେ କାବ୍ୟାତ୍ମାର ନିର୍ଯ୍ୟାସ ରୂପେ ସଂକ୍ଷିପ୍ତ ତଥା ସ୍ପଷ୍ଟ ଶବ୍ଦରେସୂଚାଇ ଦିଅନ୍ତି ଯେ - 'କାବ୍ୟସ୍ୟାତ୍ମା ଚମତ୍କୃତିଃ' ।

ଅନୁଶୀଳିତ ସମସ୍ତ କାବ୍ୟାଦର୍ଶ ପ୍ରକାଶନ ମଧ୍ୟରେ ଚମତ୍କାର ସୃଷ୍ଟି ପ୍ରତି ଆଲୋଚକ ବୃନ୍ଦ ଇଙ୍ଗିତ ବା ନିର୍ଦ୍ଦେଶ ପ୍ରଦାନ କରିଥିବା ଅନୁଭୂତ । ଏପରିକି ଶବ୍ଦାର୍ଥ ମୟ କାବ୍ୟାଳଂକାର ମଧ୍ୟରେ ଶବ୍ଦ ବୈଚିତ୍ର୍ୟ ଏବଂ ଅର୍ଥଚାତୁର୍ଯ୍ୟ ପ୍ରତିପାଦନ ନିମିତ୍ତ ପ୍ରଦର୍ଶିତ ଚିତ୍ରାଳଙ୍କାର, ଶବ୍ଦାଳଂକାର ତଥା ଅର୍ଥାଳଂକାରର ବହୁବିଧ ରୂପକଳ୍ପନା ଚମତ୍କାର ଚେତନା ପ୍ରଚୋଦିତ ଭାବ ସଂପଦରୁ ଗୃହୀତ ଏବଂ ପ୍ରତିପାଦିତ କହିବା ସତ୍ୟର ଅପଳାପ ହେବ ନାହିଁ । ଓଡିଆ ମଧ୍ୟଯୁଗୀୟ କାବ୍ୟ ସ୍ରଷ୍ଟା ବୃନ୍ଦ ଏ ସମସ୍ତ ଚମତ୍କାର ବିଜୃମ୍ଭିତ କାବ୍ୟତତ୍ତ୍ୱ ସରଣୀରୁ କିଏ କେଉଁଟିକୁ ଗୁରୁତ୍ୱ ତଥା ମହତ୍ତ୍ୱ ପ୍ରଦାନ କରି ଶ୍ରେଷ୍ଠ କବି ଗୌରବର ସମ୍ମାନ ଅର୍ଜନ କରିଛନ୍ତି । ସେମଧ୍ୟରେ ଲଳିତ ପଦବିନ୍ୟାସ ନିଷ୍ଠକବି ଦୀନକୃଷ୍ଣ, ଅର୍ଥଗୌରବ ତଥା ଉପମାବୀର କବି ଉପେନ୍ଦ୍ର ଭଞ୍ଜ, ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ ରଥ, ବକ୍ରବାଣୀ ବିଳାସ ନିପୁଣ ଉତ୍କଳଘଣ୍ଟ ଯଦୁମଣି ପ୍ରଭୃତି କେତେକ ପ୍ରଦୀପ୍ତ ପ୍ରତିଭାବାନ କବି ସମସ୍ତ କାବ୍ୟ ସୌନ୍ଦର୍ଯ୍ୟ ସଂଜାତ ଚମତ୍କାର ସାରତ୍ୱ ଦ୍ୱାରା ସ୍ୱକୀୟ ସୃଷ୍ଟିଚକ୍ରକୁ ଇନ୍ଦ୍ରଧନୁ ନିଭ ବର୍ଣ୍ଣିଳ ବିଭାସରେ ଉଦ୍ଭାସନ କରିଯାଇଛନ୍ତି ।

ସାଧାରଣତଃ ଶବ୍ଦାର୍ଥମୟ କାବ୍ୟକଳାରେ , ପଦ, ବାକ୍ୟ, ଛାନ୍ଦ, ଅଳଂକାର (ଚିତ୍ର, ଶବ୍ଦ ଓ ଅର୍ଥ), କଥାବସ୍ତୁ ରୂପ ଶାରୀରିକ ତତ୍ତ୍ୱ ଏବଂ ରସ, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟାଦି ଆତ୍ମିକ ତତ୍ତ୍ୱ ଭାବେ ସ୍ୱୀକୃତ । ଓଡିଆ ମଧ ଯୁଗୀୟ କବି କର୍ମ କୌଶଳ ମଧ୍ୟରେ ଉକ୍ତ ଉଭୟତତ୍ତ୍ୱ ଗତ ଚମତ୍କାରିତା କିପରି ଅଲୌକିକ ଆହ୍ଲାଦ ବିତରଣ କରି ସାମାଜିକ ସହୃଦୟ ହୃଦୟକନ୍ଦରକୁ ଆମୋଦିତ କରିବାରେ ସମର୍ଥ ହୋଇପାରିଛି, ତାହାର ଏକ ବିହଙ୍ଗ ସଂଚାରୀ ସମୀକ୍ଷଣ ପ୍ରସ୍ତୁତ କରାଯାଉଛି ।

**ଆଙ୍ଗିକ ବୈଶିଷ୍ୟ : ପଦଗତ ଚମତ୍କୃତି :-**

ସାଧାରଣତଃ କାବ୍ୟାଙ୍ଗନାର ଆଙ୍ଗିକ ରୂପରେଖ ବହୁବିଧ ସାର୍ଥକ ଶବ୍ଦର ସମାହାର ଦ୍ୱାରା ସଂଗଠିତ । କାବ୍ୟକାମିନୀର ପ୍ରତ୍ୟେକ ଅବୟବ ଯଦି ଆକର୍ଷକ ସୁଷମାମଣ୍ଡିତ ତଥା ହୃଦୟ ବିଦ୍ରାବକ ହୁଏ, ତାହାହେଲେ ସାମଗ୍ରିକ କାବ୍ୟରମଣୀର ତନୁବୈଭବ ରୁଚିପୂର୍ଣ୍ଣ, ମନୋବିନୋଦକ ଏବଂ ସ୍ପୃହଣୀୟ ହେବା ବିଚିତ୍ର ନୁହେଁ । ଏହି ଭାବନାକୁ ମହତ୍ତ୍ୱଦେଇ ଆଲୋଚ୍ୟ ଯୁଗର ପ୍ରଥମ ପର୍ବର କବିଗୋଷ୍ଠୀ ସହଜ, ସରଳ, କାନ୍ତକୋମଳ ପଦାବଳୀର ପ୍ରୟୋଗକଳାରେ ସ୍ୱକୀୟ କାବ୍ୟ ବନିତାର ଅଯତ୍ନବର୍ଦ୍ଧିତ ସହଜାତ ସୌନ୍ଦର୍ଯ୍ୟକୁ ଉପସ୍ଥାପନ କରିଯାଇଛନ୍ତି । କବି କାର୍ତ୍ତିକ ଦାସଙ୍କ ରୁକ୍ମିଣୀବିଭା, ଶିଶୁ ଶଂକରଙ୍କ ରଚିତ ଉଷାଭିଳାଷ, ଦେବଦୁର୍ଲ୍ଲଭଙ୍କ ରହସ୍ୟ ମଞ୍ଜରୀ ପ୍ରତାପରାୟଙ୍କ ଶଶିସେଣା ପ୍ରଭୃତି କାବ୍ୟରେ ଉପର୍ଯ୍ୟୁକ୍ତ ପଦପ୍ରୟୋଗ ପ୍ରଣାଳୀ ଲକ୍ଷ୍ୟକରାଯାଇପାରେ । ଅନୁଶୀଳିତ କାବ୍ୟଯୁଗର ଅପରପର୍ବରେ ବୈଦଗ୍ଧ ଭଙ୍ଗୀଭଣିତି ବିଳସିତ ପଦ ବିନ୍ୟାସ ବିଚ୍ଛିତ୍ତିର ଆଦର ପରିଲକ୍ଷିତ । ଏହା ଫଳରେ ଏଭାଗର କବି କର୍ମ ଏକାକ୍ଷରୀ, ଦ୍ୱ୍ୟକ୍ଷରୀ, ସରୋଷ୍ଠକ, ନିରୋଷ୍ଠକ, ଅବନାଦି ସହିତ ଅନେକ ଅର୍ଥବୋଧକ ଶ୍ଳିଷ୍ଟ ଶବ୍ଦାଦିର ପ୍ରୟୋଗ କରିପାଟୀରେ ସମୃଦ୍ଧ ।

**ବାକ୍ୟ ତଥା ଛାନ୍ଦଗତ ଚମତ୍କାରିତା :-**

ଆକାଙ୍‌କ୍ଷା, ଯୋଗତା ଓ ଆସତ୍ତିଯୁକ୍ତ ପଦ ସମୂହର ସମାହାରକୁ ବାକ୍ୟ କୁହାଯାଏ । ସେହି ବାକ୍ୟ ସକଳ ଛନ୍ଦୋବଦ୍ଧ ହେଲେ କାବ୍ୟରୂପ ଧାରଣ କରେ । ଏହି ବାକ୍ୟ ଓ ଛାନ୍ଦ ବିନ୍ୟାସର ଚମକ ଚକିତ ସ୍ୱରୂପ ଅନୁସୃତ ଯୁଗର ପ୍ରଥମ ପର୍ଯ୍ୟାୟରେ ସହଜବୋଧ ଅନୁପ୍ରାସ ଓ ଉପମା ଭିତ୍ତିକ କେତେକ ଅର୍ଥାଳଂକାର - ପ୍ରଭାରେ ପ୍ରଦୀପ୍ତ ହେବା ବେଳେ ଉତ୍ତରାର୍ଦ୍ଧର କାବ୍ୟକୌଶଳରେ ଚିତ୍ର-ଶବ୍ଦାର୍ଥମୟ ଦ୍ୱିବିଧ ଅଳଂକାରିକ ଚାତୁର୍ଯ୍ୟରେ ହୃଦୟାବର୍ଜକ ରୂପ ଧାରଣ କରେ। ଦ୍ୱିତୀୟାର୍ଦ୍ଧର ବିଶିଷ୍ଟ ପ୍ରତିଭାବାନ କବି ଉପେନ୍ଦ୍ରଙ୍କ ଛାନ୍ଦ କୋଟି ତାରା ଚନ୍ଦ୍ରମା ପରି । ଯାନାମ କୋଟିବ୍ରହ୍ମାଣ୍ଡସୁନ୍ଦରୀ, କାବ୍ୟସ୍ଥ ନିମ୍ନୋଦ୍ଧୃତ ପଦଟି ଏହି ପ୍ରସଙ୍ଗରେ ପ୍ରଣିଧାନ ଯୋଗ୍ୟ । ଯଥା -

ଆସାର ସଘନ କାଳ ହୋଇ ଉଦୟ ।
ଅସିତ ପରବଳରୁ ଦରଶମୟ । (୨୫/୧)

ଏହି କାବ୍ୟ ପଦରେ ଏକାଧାରରେ ବର୍ଷା, ଶୀତ ଓ ଗ୍ରୀଷ୍ମଋତୁର ବର୍ଣ୍ଣନା ସହିତ ଚ୍ୟୁତାକ୍ଷର ନିୟମରେ ତିନିଗୋଟି ସ୍ୱତନ୍ତ୍ର ଛାନ୍ଦର ସଂଯୋଜନ କୌଶଳ ବାସ୍ତବରେ ଚମତ୍କାର ଉତ୍ପାଦକ ନୁହେଁକି ? ପ୍ରଦତ୍ତପଦଟି ବର୍ଷାଋତୁବୋଧକ ଓ ଚିନ୍ତାଦେଶାକ୍ଷ ଛାନ୍ଦରେ ଲିଖିତ । ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷର ବିଚ୍ୟୁତ ହେଲେ ଶୀତଋତୁସୂଚକ ଏବଂ କାଫି କାମୋଦୀ ରାଗର ପ୍ରକାଶକ । ଯଥା -

"ସାରସଘ୍ନ କାଳ ହୋଇ ଉଦୟ ।
ଶୀତ ପରବଳରୁ ଦର ସମୟ । "

ପୁଣି ପ୍ରତ୍ୟେକ ଚରଣରୁ ଅନ୍ୟ ଏକ ଅକ୍ଷର ବର୍ଜନ କଲେ ମାଳବରାଡି ଛନ୍ଦରେ ପରିଣତ ହୁଏ ଏବଂ ଗ୍ରୀଷ୍ମଋତୁର ବୋଧନ କରାଏ । ଯଥା-

'ରସଘ୍ନ କାଳ ହୋଇ ଉଦୟ । ତପପରବଳରୁ ଦର ସମୟ । '

ଏଭଳି ପ୍ରକାଶଭଙ୍ଗିମା ବାକ୍ୟ ତଥା ଛନ୍ଦପ୍ରୟୋଗଜନିତ ଚମତ୍କାରିତାର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ । ଅନୁରୂପ ରୀତିରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ବର୍ଣ୍ଣିତ ଶୁକ ସାରୀ ସମ୍ବାଦ ନାମରେ ପ୍ରଖ୍ୟାତ ବିଂଶ ଛାନ୍ଦଟିକୁ ପ୍ରଦର୍ଶନ କରାଯାଇପାରେ । ପୁଣି ଏହି ଯୁଗର କବିବ୍ୟାପାରରେ ଚିତ୍ର-ଶବ୍ଦାଳଂକାର ରଞ୍ଜିତ ବିଶିଷ୍ଟଛାନ୍ଦ ରଚନାକୌଶଳ ଯଥା - ଆଦ୍ୟ, ମଧ, ପ୍ରାନ୍ତଦି ଯମକ, ଛେକାନୁପ୍ରାସ, ପୁନରୁକ୍ତିବଦାଭାସ , ଲୋମବିଲୋମ,

ଗୋମୂତ୍ର, ସିଂହାବଲୋକନାଦି ଜନିତ ଚମତ୍କାରିତା ଦୃଷ୍ଟିପଥାରୂଢ଼ ହୋଇଥାଏ । ସେହି ପରିଏକ ଏକ ଅର୍ଥାଳଂକାର ଦ୍ୱାରା ପ୍ରଦୀପ୍ତ ଛନ୍ଦୋବଦ୍ଧ କାବ୍ୟକଳାର ଚମତ୍କାରିତାରେ 'ପ୍ରେମସୁଧାନିଧି' ଓ 'କେଳିକଳାନିଧି' କିପରି ମନୋଜ୍ଞ ତାହା ରସଜ୍ଞପାଠକଗଣଙ୍କୁ ବୁଝାଇ କହିବା ଦରକାର ମନେ ହୁଏ ନାହିଁ ।

**କଥାବସ୍ତୁ ଗତ ଚମତ୍କାରିତା :-**

ପାଠକ ହୃଦୟରେ କଥାବସ୍ତୁ ବା କାବ୍ୟ ବିଷୟଗତ ଚମତ୍କାରିତା ସୃଷ୍ଟି ସକାଶେ ମଧ୍ୟଯୁଗୀୟ କାବ୍ୟକର୍ତ୍ତାଙ୍କ ଉପସ୍ଥାପନ କୌଶଳ ଲକ୍ଷଣୀୟ । ପ୍ରଥମ ଭାଗରେ ଅର୍ଜୁନ ଦାସଙ୍କ ରାମବିଭା ଓ କଳ୍ପଲତା, ଶିଶୁଶଂକରଙ୍କ ଉଷାଭିଳାଷ, ନରସିଂହଙ୍କ ଶଶିସେଣା ଇତ୍ୟାଦି କାବ୍ୟରେ ପୁରାଣ ଓ ଲୋକକଥା ସ୍ଥାନିତ ହେଲେ ମଧ୍ୟ, କଳ୍ପନା ବିଳାସ ଓ ନାଟକୀୟ ଉପସ୍ଥାପନା, ମନୁଷ୍ୟ ଚରିତ୍ର ସହିତ ଦେବ ଗନ୍ଧର୍ବାଦି ଚରିତ୍ରର ସମ୍ମିଶ୍ରଣ ତଥା ଅଲୌକିକ ଘଟଣା ବିନ୍ୟାସର ହୃଦୟ ସଂବେଦ୍ୟ ସଂଯୋଜନ ଏ ସମସ୍ତ କାବ୍ୟର ବିଷୟବସ୍ତୁକୁ ଚମତ୍କାର ସଂପନ୍ନ ଯେ କରି ତୋଳିଛି କହିବା ବାହୁଲ୍ୟ ମାତ୍ର । ମଧ୍ୟଯୁଗର ଦ୍ୱିତୀୟାର୍ଦ୍ଧରେ ଦୀନକୃଷ୍ଣ ଉପେନ୍ଦ୍ର ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି ପ୍ରଭୃତି କବି ବିଷୟ ବିନ୍ୟାସଗତ ଚମକ ଚେତନାକୁ ଗୁରୁତ୍ୱ ନଦେଇ ଆଭିବ୍ୟକ୍ତିକ ଚମତ୍କୃତି ଦ୍ୱାରା ପାଠକ ଚିତ୍ତକୁ ସମ୍ମୋହିତ କରିବା ପାଇଁ ପ୍ରଚେଷ୍ଟା କରିଯାଇଛନ୍ତି । ଧ୍ୱନି ବା ବକ୍ରୋକ୍ତି ସିଦ୍ଧାନ୍ତର ପ୍ରବନ୍ଧ ପରିକଳ୍ପନା କ୍ଷେତ୍ରରେ ପ୍ରତିଭା ବିକାଶ ଜନିତ ସମାନ ବିଷୟ ବସ୍ତୁରେ ନୂତନତାର ପ୍ରକାଶ ଚିନ୍ତା ଦ୍ୱାରା ଏହି ଆଭିବ୍ୟକ୍ତିକ ଚମତ୍କୃତି ପ୍ରଭାବିତ ହୋଇଥିବା ମନେ ହୁଏ ।

**ଅଳଂକାର ବିଶୋଭିତ ଚମତ୍କୃତି :-**

ପୂର୍ବରୁ ସୂଚିତ ହୋଇଛିଯେ ଚିତ୍ର, ଶବ୍ଦ ଓ ଅର୍ଥ ଅଳଂକାର ବିଚ୍ଛିତ୍ତି ବା ଚମତ୍କାର ବିଶେଷର ପ୍ରକୃଷ୍ଟ ନମୁନା ।

ସାଧାରଣତଃ ଚିତ୍ରାଳଂକାର ଏକ ଏକ ଅକ୍ଷରାଦ୍ୟ କାବ୍ୟ ରଚନାରେ , ବିଭିନ୍ନ ବନ୍ଧ ଯଥା- ପଦ୍ମ, ଖଡ୍‌ଗ, ରଥ, ବୃକ୍ଷ, ଶରାଦି ଚିତ୍ର ସୃଷ୍ଟିରେ, ଅନୁଲୋମ ବିଲୋମ, ଗୋମୂତ୍ର, ଶୃଂଖଳା, ଦତ୍ତଚ୍ୟୁତାକ୍ଷର, ଅନ୍ତର୍ଲିପି, ବହିର୍ଲିପି, ସିଂହାବଲୋକନ, ମେଷଯୁଦ୍ଧ, ବ୍ୟାଘ୍ରଗତି ଇତ୍ୟାଦିରେ ସଂରକ୍ଷିତ । ଚିତ୍ରାଳଂକାର ଚିତ୍ରିତ କାବ୍ୟକୃତି ଆଲୋଚ୍ୟ ଯୁଗରେ ଆରମ୍ଭ କାଳରେ ଦେଖାଯାଏ ନାହିଁ । କିନ୍ତୁ ଶେଷ ଭାଗର କବି ଦୀନକୃଷ୍ଣଙ୍କ କାଦ୍ୟ କାବ୍ୟ ରସକଲ୍ଲୋଳ, ଉପେନ୍ଦ୍ରଙ୍କ ସାଦ୍ୟ ସୁଭଦ୍ରା ପରିଣୟ, ବାଦ୍ୟ ବୈଦେହୀଶବିଳାସ, କ-ଆଦ୍ୟ ପ୍ରାନ୍ତ କଳାକଉତୁକ, ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣି, ବକ୍ରନାଥଙ୍କ ଅମ୍ବିକା ବିଳାସ ଆଦିକାବ୍ୟରେ ଏହି ଅଳଂକାରର ବିଭିନ୍ନ ପରିପାଟୀ ପରିଦୃଷ୍ଟ । ଉପେନ୍ଦ୍ରଭଞ୍ଜଙ୍କ 'ଚିତ୍ରକାବ୍ୟ ବନ୍ଧୋଦୟ' ଏହି ଅଳଂକାର ପ୍ରୀତିର ଏକ ବିଶିଷ୍ଟ ଦୃଷ୍ଟାନ୍ତ ।

ମଧ୍ୟଯୁଗୀୟ କବି ଶ୍ରେଣୀ ମଧ୍ୟରୁ ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, ଯଦୁମଣି, କବିସୂର୍ଯ୍ୟ ପ୍ରଭୃତି କେତେକ ପ୍ରକୃଷ୍ଟ କାବ୍ୟକାର ଶବ୍ଦାଳଂକାରକୁ ନିଜ ନିଜ ସୃଷ୍ଟିରେ ମହତ୍ତ୍ୱ ପୂର୍ଣ୍ଣ ସ୍ଥାନ ଦେଇଛନ୍ତି । ଏଥିରେ ବହୁବିଧ ଅନୁପ୍ରାସ ଓ ଯମକ, ଶ୍ଳେଷ, ପୁନରୁକ୍ତି ବଦାଭାସ ପ୍ରଭୃତି ଶବ୍ଦାଳଂକାରର ପ୍ରଦର୍ଶନ ପୂର୍ବକ ଯେଉଁ କାବ୍ୟକୋଣାର୍କ ମାନ ନିର୍ମାଣ କରିଛନ୍ତି ତାର ଚମତ୍କାରିତା ବିଜ୍ଞ ତଥା ଅଳଂକାରପ୍ରେମୀ ପାଠକ ଚିତ୍ତକୁ ବିମୋହିତ କରେ । କିନ୍ତୁ ପ୍ରାଥମିକ ଯୁଗର କବି କର୍ମରେ ସରସ, ସୁନ୍ଦର ଆନୁପ୍ରାସିକ ବୈଚିତ୍ର୍ୟ କେବଳ ପରିଦୃଷ୍ଟ । ଏହି ଶବ୍ଦ ଅଳଂକାର ଗୁଡିକ ଅତିଶୟ ସ୍ପଷ୍ଟ ହେତୁ ତାହାର ଉଦାହରଣ ଦେବା ଆବଶ୍ୟକ ମନେ ହୁଏ ନାହିଁ ।

ଅର୍ଥାଳଂକାର ବାସ୍ତବରେ ଅନୁସନ୍ଧାନ ସାପେକ୍ଷ । କାବ୍ୟ ପଠନ ମାତ୍ରେ ସଂଖ୍ୟାଧିକ ଅର୍ଥାଳଂକାର ଅବବୋଧ ସହଜସାଧ ନୁହେଁ । ତଥାପି ଉପମାଭିତ୍ତିକ ରୂପକ, ଉତ୍ପ୍ରେକ୍ଷା, ବ୍ୟତିରେକ, ଦୃଷ୍ଟାନ୍ତ, ତୁଲ୍ୟଯୋଗିତା, ଅତିଶୟୋକ୍ତି ପ୍ରଭୃତି କେତେକ ଅଳଂକାର ସହଜ ବୋଧ ଅଟେ । ଏଗୁଡିକର ଚମତ୍କାରିତା ପାଠକ ପ୍ରାଣରେ ଏକ ଅନିର୍ବଚନୀୟ ଆନନ୍ଦ ସୃଷ୍ଟି କରେ । ଉଦାହରଣ ସ୍ୱରୂପ ପଦ୍ମ ବା ତା'ର ପ୍ରତିଶବ୍ଦ ଉପମାନଟି ବିଭିନ୍ନ ଅଳଂକାର ମାଧ୍ୟମରେ କିପରି କବି -କୃତିରେ ଚମତ୍କାର ଜନକ ହୋଇଅଛି ତାହା ଅଧୋଲିଖିତ ଦୃଷ୍ଟାନ୍ତ ମାନଙ୍କରୁ ଲକ୍ଷ୍ୟ କରାଯାଇପାରେ । ଯଥା -

୧. 'ଶ୍ରବଣେ ମଣିକୁଣ୍ଡଳ ବଦନ କାଳିନ୍ଦୀ ଜଳ
ନୟନ ବିକଚ ପଦ୍ମ ଜିଣିହେ '। (ରୁକ୍ମିଣୀ ବିଭା - ୧/୩)
ଏଥିରେ ବର୍ଣ୍ଣିତ ନୟନର ଉତ୍କର୍ଷ ଉପମାନ ପଦ୍ମଠାରୁ ପ୍ରତିପାଦିତ ହେତୁ ବ୍ୟତିରେକ ।

୨. 'କମଳ ନେତ୍ରରେ କଟାକ୍ଷ ସୂତ୍ରରେ ଲଗାଇ ପ୍ରେମ ବଡିଶ' । (ରସକଲ୍ଲୋଳ - ୧୦/୩୦)
ଏଠାରେ ନେତ୍ର ସହିତ କମଳର ଅଭେଦ ପରିକଳ୍ପନା ଯୋଗୁଁ ରୂପକ ।

୩. 'କୃମ୍ଭାବଶେ ମୁଖ ଦିଶେ ଚାରୁ । ଆନ ନଦିଶେ ଏ ଉପମାରୁ ।
ଫୁଟି ଆସୁଛିକି ମୁଦ୍ରିତ ନଳିନୀ ନିଶି ରଜନାଶ ହୋଇବାରୁ ।'
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ - ୩୫/୩)
ଅତ୍ର ମୁଖ ସହିତ ନଳିନୀର ତର୍କଣା ସିଦ୍ଧ ତୁଳନା ବଶରୁ ଉତ୍ପ୍ରେକ୍ଷା ।

୪. 'ନାୟନ ଆନନ ହାସ ବାସ ବାହୁ କର ଚରଣ ଉଦରକୁ ।
ଉପମା ଆଭାସେ କବି ଛି ଛି ଭାଷେ ମନ ଘେନିଲା ବିମନକୁ ।
ପଙ୍କଜ, ତପକୁ ସାଧିଲା ବିଷମେ ।
ଜଳ ପ୍ରବଳରେ ବଳେ ବୁଡିମଲେ ମାନରେ ଧନ୍ୟ କଲେ ହିମେ । ' (ବିଦଗ୍ଧ ଚିନ୍ତା ମଣି ୪/୧୬)
ଉଦ୍ଧୃତାଂଶଟିରେ ଉପମାନ ପଙ୍କଜର ଅସାମର୍ଥ୍ୟ ବର୍ଣ୍ଣନାରୁ ପ୍ରତୀପ ଅଳଂକାର ।

୫. 'ଜୀବନଦ ନୀଳ ଜଳଜ ଯୁଗଳ । ବିଧୁବିମ୍ବେ ହୋଇ ବିଳାସ ବିଲୋଳ' । (ଜ-ଚମ୍ପୂ - ୩)
ଦତ୍ତାଂଶଟିରେ ଶ୍ରୀରାଧାଙ୍କ ନୟନ ନିମିତ୍ତ ଜଳଜ ଯୁଗଳ ଉପମାନର କେବଳ ଉଲ୍ଲେଖ ଯୋଗୁଁ ଅତିଶୟୋକ୍ତି ଅଳଂକାର ।

ଉପର୍ଯ୍ୟୁକ୍ତ ଉଦାହରଣ ଗୁଡିକୁ ଲକ୍ଷ୍ୟକଲେ ପ୍ରକାଶ ଭଙ୍ଗୀ ବୈଚିତ୍ର୍ୟ ବିଭିନ୍ନ ଅଳଂକାର ରୂପଧାରଣକରି କିପରି ଚମତ୍କାର ଜନକ ହୋଇପାରିଛି ବୁଝିହେବ ।

**ବର୍ଣ୍ଣନାଗତ ଚମତ୍କାରିତା :-**

କାବ୍ୟ କଥାବସ୍ତୁ, ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଯେ ମଧ୍ୟଯୁଗର ପରାର୍ଦ୍ଧରେ ବିଷୟୀଭୂତ ଚମତ୍କାରିତାକୁ ବିଶେଷ ମହତ୍ତ୍ୱ ପ୍ରଦାନ ନକରି ଅଭିବ୍ୟକ୍ତିକ ଚମକ ସୃଷ୍ଟି ଉପରେ ଯଥାର୍ଥ ଗୁରୁତ୍ୱ ଦିଆଯାଇଛି । ଏହି ଅଭିବ୍ୟକ୍ତିତ୍ୱ କବିର ବର୍ଣ୍ଣନା କୌଶଳରେ ପରିସ୍ଫୁଟ ହୋଇଥାଏ । ବସ୍ତୁ, ବ୍ୟକ୍ତି, ଓ ପ୍ରକୃତି ଚିତ୍ରଣରେ ଏହି ବର୍ଣ୍ଣନା ବିଳାସ ପରିବ୍ୟାପ୍ତ । ଯଥା :-

**ବସ୍ତୁ ବୈଚିତ୍ର୍ୟ :-**

ସାଧାରଣତଃ ନଗର, ଯୁଦ୍ଧ, ଉତ୍ସବ, ଯାତ୍ରା ତଥା ପର୍ବପର୍ବାଣିର ମନୋଜ୍ଞ ଉପସ୍ଥାପନାରେ ଏହି ବସ୍ତୁ ବର୍ଣ୍ଣନ ଚମତ୍କାରିତା ପ୍ରତିଫଳିତ । ଏଥିରେ କଳ୍ପନା ବିଳାସର ସମୁଚ୍ଚ ଶିଖରରେ ଆରୋହଣ କରି ସହୃଦୟ ହୃଦୟକୁ ଲୋକାତୀତ ଭାବରାଜ୍ୟରେ ବିଚରଣ କରାଇବା ପ୍ରୟାସ ଉଲ୍ଲେଖ ଯୋଗ୍ୟ । କେଉଁଠି ନାଗରିକଙ୍କ ରମଣୀ ବୃନ୍ଦ ଉତ୍ତୁଙ୍ଗ ଅଟ୍ଟାଳିକା ଆରୋହଣ ପୂର୍ବକ ଆକାଶର ଚନ୍ଦ୍ରକୁ ପ୍ରସାଧାନର ଉପାଦାନ ଦର୍ପଣ ରୂପେ ବ୍ୟବହାର କରିଥାନ୍ତି ତ, କେଉଁଠି ପ୍ରାସାଦ ନିଚୟ ହୀରାନୀଳା, ମୋତି, ମାଣିକ୍ୟାଦି ରତ୍ନସ୍ତମ୍ଭ ମାନଙ୍କରେ ପ୍ରାଚୁର୍ଯ୍ୟାତିଶୟରେ ସୁଶୋଭିତ । ଯୁଦ୍ଧରେ ବ୍ୟବହୃତ ଅସ୍ତ୍ରରାଜି ରାମାୟଣ, ମହାଭାରତରେ ବ୍ୟବହୃତ ଅସ୍ତ୍ର ଗାରିମାକୁ ନିସ୍ତେଜ କରିଦେଇଛିତ , କେଉଁଠି ଯାତ୍ରା, ଉତ୍ସବାଦିରେ ସ୍ଥଳଭାଗ ବହୁବିଧ ନାଗର ନାଗରୀଙ୍କ ପ୍ରଣୟଲୀଳାରେ ମୁଖରିତ ହୋଇଉଠିଛି । ଏବଂ ବିଧ ସଂକ୍ଷିପ୍ତ ସୂଚନାକୁ ଆଧାର କରି ମଧ୍ୟଯୁଗୀୟ କବିଙ୍କ ବସ୍ତୁବର୍ଣ୍ଣନା ବିଳାସଜନିତ ଚମତ୍କାର ଚେତନା ଅନୁସନ୍ଧାନ ଯୋଗ୍ୟ ।

**ବ୍ୟକ୍ତି ବୈଶିଷ୍ଟ୍ୟ :-**

ସାଧାରଣତଃ ଅନ୍ୟାନ୍ୟ ଜାଗତିକ ଚରିତ୍ର ସହିତ କାବ୍ୟ ନାୟକ ନାୟିକାଙ୍କ ରୂପ, ଗୁଣ, ବିଦ୍ୟା, ବଳ, ବୀର୍ଯ୍ୟାଦିର ବର୍ଣ୍ଣନା ଅବସରରେ କବିଙ୍କ ଲେଖନୀ ଏକ ଏକ ବିଚିତ୍ର କଳ୍ପଲୋକ ସୃଷ୍ଟିକରିଥାଏ । ତାହା ବିରଞ୍ଚି ବିରଚିତ ବିଶ୍ୱସୃଷ୍ଟି ଠାରୁ ପୃଥକ ଏବଂ ରମଣୀୟ । କବିଙ୍କ ପ୍ରତିଭା, ପାଣ୍ଡିତ୍ୟ, ଚାତୁର୍ଯ୍ୟ ଓ ଅନୁଭୂତି ଏ ଦିଗରେ ବୈଚିତ୍ର୍ୟ ସୃଷ୍ଟିପାଇଁ ନିଃଶେଷ ହୋଇଯାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଯୁଗ-କାବ୍ୟର ଯେକୌଣସି ପୃଷ୍ଠା ଉନ୍ମୋଚନ କଲେ ନାୟକ, ନାୟିକାର ମନୋଜ୍ଞ ରୂପସଜ୍ଜା, ଆକର୍ଷଣୀୟ ଯୌବନୋଦ୍‌ଗମ, ବିମୁଗ୍ଧ ଜଳକ୍ରୀଡା ଓ ବନବିହାର , ସ୍ମରଣ ଯୋଗ୍ୟ ମିଳନ ବିଚ୍ଛେଦାଦି ଚିତ୍ରାଙ୍କନରେ ସମୃଦ୍ଧ ହୋଇଥିବା ପରିଦୃଷ୍ଟ ହୁଏ ।

**ପ୍ରକୃତି :-** ପ୍ରକୃତିର ମନୋହର ଚିତ୍ର ଉପସ୍ଥାପନ ଏ ଯୁଗର ପ୍ରତ୍ୟେକ କବିଙ୍କଧ୍ୟେୟଥିବାଅନୁମିତ ହୁଏ । ସ୍ଥଳ ବିଶେଷରେ ପ୍ରଭାତ, ସଂଧ୍ୟା, ରାତ୍ରି, ଉଦ୍ୟାନ, ଜଳାଶୟ, ଋତୁ ଚକ୍ର ଇତ୍ୟାଦି ରସଚର୍ଯ୍ୟାର ଉଦ୍ଦୀପନା ବିଭାବ ରୂପରେ ଉପସ୍ଥାପିତ ହେଲାବେଳେ, ଅନ୍ୟତ୍ର ପ୍ରକୃତିର ସୁନ୍ଦର - ମଧୁର ବସ୍ତୁନିଚୟ ବ୍ୟକ୍ତି ବିଶେଷର ରୂପକଳ୍ପନାରେ ଉପମାନ ଅଥବା ଉପମେୟର ଭୂମିକା ଗ୍ରହଣ କରି ପ୍ରତିଭାତ ହେବା ଲକ୍ଷ୍ୟ କରାଯାଏ । ସମୀକ୍ଷିତ କାବ୍ୟଯୁଗର ଆଦିପର୍ବରେ ପ୍ରକୃତିର ମନୋଜ୍ଞପରିବେଶରେ ପ୍ରତିପାଳିତ ଏବି ଗଳ୍ପକଥନକଳାକୁ ମୁଖ୍ୟସ୍ଥାନପ୍ରଦାନ କରି ସ୍ଥଳବିଶେଷରେ ପ୍ରକୃତିର ସହଜ ସୁନ୍ଦର ପ୍ରତିଛବିକୁ ଚିତ୍ରଣ କଲାବେଳେ, ଦ୍ୱିତୀୟ ପର୍ବର କବି ଉପର୍ଯ୍ୟୁକ୍ତ ବିଚିତ୍ର ରୀତିରେ ପ୍ରକୃତିର ଚିତ୍ତାକର୍ଷକ ଚାରୁଚିତ୍ର ମାନ ଅଙ୍କନ କରିବାରେ ସ୍ୱକୀୟ ଉତପାଦ୍ୟା ପ୍ରତିଭାର ବିନିଯୋଗ କରିଯାଇଛି ।

**ଆତ୍ମିକ ଚମତ୍କୃତି :-**

ଆଲୋଚ୍ୟ ଯୁଗର ପ୍ରଥମ ଭାଗରେ ପ୍ରାଚ୍ୟ କାବ୍ୟାଦର୍ଶର ବିଶେଷ ପ୍ରଭାବ ପଡିଥିବା କବିକର୍ମରେ ପ୍ରତିଫଳିତ ନୁହେଁ । କିନ୍ତୁ ଉତ୍ତର ପର୍ବରେ ଉକ୍ତ କାବ୍ୟାଦର୍ଶ ଦର୍ଶନରେ ପ୍ରତିଷ୍ଠିତ ବିଭିନ୍ନ ଆତ୍ମତତ୍ତ୍ୱ ଯଥା- ରସ, ଧ୍ୱନି, ବକ୍ରୋକ୍ତି ଏବଂ ଔଚିତ୍ୟର ବିଚାର ପରମ୍ପରା କବି ସମାଜକୁ ସବିଶେଷ ପ୍ରଭାବିତ କରିଅଛି । ତଥାପି କୌଣସି ଏକ ବିଶିଷ୍ଟ ଆତ୍ମତତ୍ତ୍ୱକୁ ଆଧାରକରି ଏ ଯୁଗର କବି ଲେଖନୀ ଚାଳନା କରିନାହିଁ, କିନ୍ତୁ ଏ ଯୁଗର ସମସ୍ତ କବିକର୍ମରେ ଉପର୍ଯ୍ୟୁକ୍ତ ଆତ୍ମତତ୍ତ୍ୱ ଆଧାରିତ ଚମତ୍କାର ସାରତ୍ତ୍ୱର ପରିପ୍ରକାଶନ ଉପଲବ୍‌ଧ କରାଯାଇପାରେ ।

**ରସମାଧୁର୍ଯ୍ୟ :-**

ରସ ଏକ ଓ ଅଖଣ୍ଡ ହେଲେ ମଧ ସାମାଜିକ ଚିତ୍ତବୃତ୍ତିରେ ଜନ୍ମ ଜନ୍ମାନ୍ତର ସଂସ୍କାର ଯେଉଁ ସ୍ଥାୟୀଭାବ ସୃଷ୍ଟି କରିଅଛି ତାହାର ବିଭିନ୍ନତା ଭିତ୍ତିରେ ରସ ସଂଖ୍ୟାଧିକ ଭାବେ ପରିଗଣିତ । ସରସ୍ୱତୀ ନବରସରୁଚିରା ରୂପଧାରଣ କଲେ ହୃଦୟାବର୍ଜକ ହୁଏ । ପ୍ରାଚ୍ୟ କାବ୍ୟ ପ୍ରକାଶର ଏହି ସିଦ୍ଧାନ୍ତ ବିବକ୍ଷିତ ଯୁଗର ବାଣୀ ସାଧକଙ୍କୁ ବହୁଭାବରେ ଅନୁପ୍ରାଣିତ କରିଅଛି । ବୀର, କରୁଣ ହାସ୍ୟାଦି ରସକୁ ପରିପୋଷକ ରସ ରୂପେ ସ୍ଥାନିତ କରିଥିଲେ ମଧ ଏ ଯୁଗର ଅଧିକାଂଶ କବି 'ଶୃଙ୍ଗାର ଏବ ମଧୁରଃ' ଏହି ଭାବନାରେ ଉଦ୍‌ବୁଦ୍ଧ ହୋଇ ଆଦିରସାତ୍ମକ କାବ୍ୟରଚନାରେ ସବିଶେଷ ମନୋନିବେଶ କରିଛନ୍ତି । ଏହି ଶୃଙ୍ଗାର ସମ୍ଭୋଗ ଓ ବିପ୍ରଲମ୍ଭ ଭେଦରେ ମୁଖ୍ୟତଃ ଦ୍ୱିବିଧ ହେଲେ ମଧ ଅନେକ ବିଭାଗ ଓ ଉପବିଭାଗରେ ବିଭକ୍ତ । ଏ ସମସ୍ତ ବିଭାଗ ଓ ଉପବିଭାଗର ପରିପାକ ଜନିତ ଶୃଙ୍ଗାର ରସ ନିଷ୍ପତ୍ତିର ଉଦାହରଣ ସଂଗ୍ରହ ପ୍ରୟାସ ସାପେକ୍ଷ ନୁହେଁ । ପୂର୍ବରୁ ସୂଚିତ ହୋଇଛି ଯେ-ରସ ଅଦ୍‌ଭୁତ ଚମତ୍କାରି ବିସ୍ମୟାପର ପର୍ଯ୍ୟାୟ', ବାସ୍ତବରେ ରସାନୁଭବନ ପାଠକ ଅନ୍ତରକୁ ଅତୀନ୍ଦ୍ରିୟ ରାଜ୍ୟରେ ବିଚରଣ କରାଇଥାଏ । ରସହୀନ କାବ୍ୟ ଜୀବନ ଶୂନ୍ୟଶବପରି ଅନାକର୍ଷଣୀୟ । ରସଉପଲବ୍ଧ ହିଁ କବି ସୃଷ୍ଟିର ମହତ୍ ଅବଦାନ । ଏହି କ୍ଷୁଦ୍ର ପ୍ରବନ୍ଧରେ ବିଭାବ, ଅନୁଭାବ, ଓ ସଂଚାରୀ ଭାବ ସଂଯୋଗରେ ବିଭିନ୍ନ ରସ, ରସାଭାସ, ଭାବାଭାସ, ଭାବସନ୍ଧି, ଭାବଶବଳତାଦିର ଦୃଷ୍ଟାନ୍ତ ପ୍ରଦାନ କରିବା ଦୁରୁହ ବ୍ୟପାର । ରସିକ ପାଠକ ପକ୍ଷରେ ଏଯୁଗର କାବ୍ୟ ପାରାବାର ନିମଜ୍ଜନ ପୂର୍ବକ ରସରତ୍ନ ସଂଗ୍ରହ କରିବା ଆୟାସ ସାଧମନେ ହୁଏ ନାହିଁ । ଏହି ଯୁଗର କେତେକ କବି କର୍ମର ନାମକରଣ, ଯଥା-ରସକଲ୍ଲୋଳ, ରସଲେଖା, ରସିକ ହାରାବଳୀ, ରସପଞ୍ଚକ, ରସରତ୍ନାକର - ଚମ୍ପୂ ଇତ୍ୟାଦିରୁ ପ୍ରତିପନ୍ନ ହୁଏ ଯେ କାବ୍ୟ ରଚନାରେ ରସର୍ଚ୍ଚିତ ଚମତ୍କାରପ୍ରଦର୍ଶନ ଅଭିପ୍ରାୟ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

**ଧ୍ୱନି ବୈଚିତ୍ର୍ୟ :-**

ପ୍ରାଚ୍ୟ କାବ୍ୟାଲୋକ କ୍ଷେତ୍ରରେ ଧ୍ୱନି ସିଦ୍ଧାନ୍ତର ପ୍ରତିଷ୍ଠାପରେ ରସ, ରୀତି, ବକ୍ରୋକ୍ତି, ଔଚିତ୍ୟାଦି ସମସ୍ତ ଆତ୍ମତତ୍ତ୍ୱ ବିଚାର ଏହାର ସର୍ବଗ୍ରାସୀ ପ୍ରଭାବରେ ଅନ୍ତର୍ଲୀନ ହୋଇ ଯାଇଛନ୍ତି । ବିଚାର୍ଯ୍ୟ ଯୁଗର କବି କଦମ୍ବ ଧ୍ୱନି ରୂପ ଆତ୍ମ ତତ୍ତ୍ୱର ପ୍ରଭାବରୁ ବିମୁକ୍ତ ନୁହନ୍ତି । ସ୍ଥଳ ବିଶେଷରେ କେତେକ କାବ୍ୟରେ 'ଧ୍ୱନି' ଅଳଂକାର ରୂପେ ଉଦ୍‌ଘୋଷିତ ତଥା ବିବେଚିତ ହୋଇଥିଲେ ମଧ ପ୍ରଧାନତଃ ବସ୍ତୁ, ଅଳଂକାର, ଓ ରସ ରୂପଧ୍ୱନିର ବୈଚିତ୍ର୍ୟ ବିଳସିତ ଚମତ୍କାର ଜନକ ଉପସ୍ଥାପନ ମାଧୁର୍ଯ୍ୟ ପ୍ରତ୍ୟେକ କବିକର୍ମରୁ ଉଦ୍ଧାର କରାଯାଇପାରେ । ଉଦାହରଣ ସ୍ୱରୂପ- ବସ୍ତୁଧ୍ୱନି :-

''ଲକ୍ଷ ଲକ୍ଷ ରାଣ ଅଛିଟି ମୋର, ଲଲାମ ଆଦି ଭୂଷା ସଜକର ।
ଲିଭିଥିବ ମଧ ଭ୍ରୁରୂ ତିଳକ, ଲେଖିଦିଅ ବେଗେ ନ ଦେଖୁ ଲୋକ । (ଲ.ଚମ୍ପୂ - ୨)

ସଂଭୋଗ ଲୀଳାର ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀରାଧାଙ୍କ ଲୀଳାମୟ ଶ୍ରୀକୃଷ୍ଣ ପ୍ରତି ଏହା ବିନୟ ଭାରତୀ । ଏଥିରେ କପାଳ ପ୍ରଭୃତିର ଅସ୍ତବ୍ୟସ୍ତ ଅଳଂକାର ଯଥାସ୍ଥାନରେ ସଜାଇ ଦେବା ଏବଂ ଲିଭିଥିବା ଭ୍ରୁଲତା ମଧସ୍ଥିତ ତିଳକର ପୁନର୍ଲିଖନ କରିବା ଅନୁରୋଧରୁ ବ୍ୟଞ୍ଜିତ ହୁଏଯେ ସଂଭୋଗ ଲୀଳା ବିଭୋର ଅବସ୍ଥାରେ କୁନ୍ତଳ ସଂଚାଳନ, ନିବିଡ ଆଲିଙ୍ଗନ ତଥା ଚୁମ୍ବନାଦି କ୍ରିୟା କଳାପ ରୂପ ବସ୍ତୁବିଶେଷ ଧ୍ୱନିତ ।

ଅଳଂକାର ଧ୍ୱନି :-

'କମଳ ମୁଦ୍ରିତ ନିଶାକାଳେଣ ହୁଏ ।
ରୁକ୍ମିଣୀ ମୁଖ ମଣ୍ଡଳ ସର୍ବଦା ଶୋହେ ।' (ରୁକ୍ମିଣୀବିଭା - ୩/୨୨)

ଏଥିରେ କାବ୍ୟନାୟିକା ରୁକ୍ମିଣୀ ମୁଖ ମାଧୁର୍ଯ୍ୟ ବର୍ଣ୍ଣିତ । କବି ପ୍ରକାରାନ୍ତରେ ରଜନୀରେ ମୁଦି ହୋଇ ଯାଉଥିବା କମଳ ଅପେକ୍ଷା, ରୁକ୍ମଣୀଙ୍କ ଦିବା ରାତ୍ରିରେ ସର୍ବଦା ପ୍ରକାଶିତ ହେବା ଆନନଶୋଭାକୁ ବର୍ଣ୍ଣନାକରିଥିବା ଯୋଗୁଁ ଉପମେୟ ମୁଖର ଉତ୍କର୍ଷ କଥନ ରୂପ ବ୍ୟଙ୍ଗ୍ୟ ଭାବ ପ୍ରତୀତ ହୁଏ । ତେଣୁ ବ୍ୟତିରେକ ଅଳଂକାର ଧ୍ୱନି ।

ରସଧ୍ୱନି

'କେବୋଲଇ ଉଚ୍ଚ ସଂଘଟ୍ଟ କୁଚ ପର୍ବତ ଉପରେ ଲଦିବା,
କରରୁହ ମୁନ କ୍ଷତଘାତ ଦାନ ମାଗିବା ବଡଇ ମୁଦିବା,
କେଉଁ ଗୋପିକା, ବୋଲଇ ଛାଡଏ ବିଚାର ।
କରୀ ଇକ୍ଷୁରସ ପାଇଲେ ଅବଶ୍ୟ ନିତି କରଇ ସେ ସଞ୍ଚାର ।' (ରସକଲ୍ଲୋଳ ୯/୨୩)

ଉଦାହୃତ କାବ୍ୟପଦଟିରେ ସମ୍ଭୋଗ ଶୃଙ୍ଗାର ରସଧ୍ୱନିତ । ଗୋପାଙ୍ଗନା ଏବଂ ଶ୍ରୀକୃଷ୍ଣ ଆଲମ୍ବନ । ନଖ କ୍ଷତାଦି ଉଦ୍ଦୀପନ ଓ ଗର୍ବ ଗଞ୍ଜନାଦି ରୂପ ସଂଚାରୀଭାବ ସଂଯୋଗରେ ରସାଭିବ୍ୟକ୍ତି ସଂଘଟିତ । ମଧ୍ୟଯୁଗୀୟ କାବ୍ୟାକାଶରେ କବିସୂର୍ଯ୍ୟ ରୂପେ ପ୍ରତିଭାତ ବଳଦେବ ରଥଙ୍କ ବାଣୀବିଭବରେ ଏହି ଧ୍ୱନି ସିଦ୍ଧ ସମସ୍ତ ଚମତ୍କାରିତା ମନୋଜ୍ଞ ରୀତିରେ ଆଲୋକିତ ।

**ବକ୍ରୋକ୍ତି ଚାତୁର୍ଯ୍ୟ :-**

ଧ୍ୱନି ସିଦ୍ଧାନ୍ତର ଅପ୍ରତିହତ ପ୍ରତିଷ୍ଠା ପରେ ମଧ୍ୟ ଆଚାର୍ଯ୍ୟ କୁନ୍ତକ ଧ୍ୱନିକୁ କାବ୍ୟ-ପ୍ରାଣତାର ମର୍ଯ୍ୟାଦା ନଦେଇ, ବ୍ୟଙ୍ଗ୍ୟାର୍ଥ ବା ଆଶୟାର୍ଥକୁ ଅସ୍ୱୀକାର କରି, ବିଶିଷ୍ଟ ଅଭିଧାରୂପ ବକ୍ରୋକ୍ତି ବିଳାସକୁ କାବ୍ୟ ଜୀବନ ରୂପେ ପ୍ରତିପାଦନ କରିଛନ୍ତି । ତାଙ୍କରି ସମୀକ୍ଷଣ ଚାତୁର୍ଯ୍ୟ କବିବ୍ୟାପାର ଉପରେ ପର୍ଯ୍ୟବସିତ । ବୈଦଗ୍ଧ ଭଙ୍ଗୀ ଭଣତି ରୂପ ବକ୍ରୋକ୍ତି କାବ୍ୟର ମୂଳତମ ଉପାଦାନ ବର୍ଣ୍ଣଠାରୁ ଆରମ୍ଭ କରି ସାମଗ୍ରିକ ପ୍ରବନ୍ଧ ପର୍ଯ୍ୟନ୍ତ ସୌନ୍ଦର୍ଯ୍ୟ ଦର୍ଶନର ଏକ ନବଦିଗନ୍ତ ଉଦ୍‌ଘାଟନ କରେ । ଚମତ୍କାରପୂର୍ଣ୍ଣ ଉପସ୍ଥାପନ କଳାହିଁ ଏହାର ପ୍ରାଣ । ସୁକୁମାର, ବିଚିତ୍ର ଓ ମଧ୍ୟମ ନାମିତ ମାର୍ଗତ୍ରୟ ପ୍ରତିଭା ଆଧାରିତ କବିକର୍ମକୌଶଳର ସମସ୍ତ ଦିଗଦିଗନ୍ତକୁ ପ୍ରକାଶ କରେ । ଆଲୋଚିତ ଯୁଗର ପ୍ରଥମାର୍ଦ୍ଧର କବିବ୍ୟାପାରରେ କୁନ୍ତକ ପ୍ରତିପାଦିତ ସହଜା ପ୍ରତିଭା ସିକ୍ତ ସରଳ ତଥା ସାବଲୀଳ ପ୍ରସାଦ ଗୁଣରଞ୍ଜିତ ସୁକୁମାର ମାର୍ଗର ମନୋଜ୍ଞ ରୂପାଲେଖ୍ୟ ପ୍ରତିଫଳିତ । ସୁକୁମାର ମାର୍ଗର ଏକ ଦୃଷ୍ଟାନ୍ତ ରୂପେ କବି କାର୍ତ୍ତିକଦାସକୃତ ରୁକ୍ମିଣୀବିଭା କାବ୍ୟର ପ୍ରଦତ୍ତ ଅଂଶ ଦ୍ରଷ୍ଟବ୍ୟ । ଯଥା :-

'ଯଶୋଦାକୁ ଚାହିଁଣ ଦେବକୀ ହସ ହସ, ତୁମ୍ଭର ପୁତ୍ରକୁ କର ଅଳତା ସୁବେଶ ।
ପୁତ୍ରକୁ କୋଡରେ ଧରି ନଜାଣିବି ମୁହିଁ । କେମନ୍ତ କରିଣ ସ୍ତନୁ କ୍ଷୀର ପାନ ଦେଇ ।
ରୁଷିବା ହସିବା ଦୁଇଭାବ ମୁଁ ନ ଜାଣି । କେମନ୍ତେ ବୋଲିବି ମୋର ପୁତ୍ର ଚକ୍ରପାଣି । ''
(୯/୪୨-୪୪)

ଉକ୍ତ ପଦମାନଙ୍କରେ କୃଷ୍ଣଙ୍କ ଜନ୍ମଦାତ୍ରୀମାତା ଦେବକୀଙ୍କ ଦ୍ୱାରା ପାଳିକାମାତା ଯଶୋଦାଙ୍କ ପ୍ରତି ଉକ୍ତି ବିଳାସ ପ୍ରଣିଧାନ ଯୋଗ୍ୟ । ଏଥିରେ ଯଶୋଦା ଏବଂ ଦେବକୀଙ୍କ ସେବା ଓ ତ୍ୟାଗର ମହତ୍ତ୍ୱ ଅନୁପମ ଶୈଳୀରେ ପ୍ରତିଫଳିତ । ପ୍ରସାଦ ଗୁଣ ପରିପୋଷକ ଏହି ବାତ୍ସଲ୍ୟ ପ୍ରେମାଭିବ୍ୟକ୍ତି ସୁକୁମାର ମାର୍ଗର ଶୋଭା ବର୍ଦ୍ଧନ କରେ ନାହିଁକି ?

ଗୃହୀତ ଯୁଗର ଉତ୍ତରାର୍ଦ୍ଧର କବିକର୍ମରେ ଆହାର୍ଯ୍ୟା ପ୍ରତିଭା ପ୍ରଚୋଦିତ ଅଳଂକାର ବହୁଳ, ବର୍ଣ୍ଣ, ବାକ୍ୟ, ପଦ, ପ୍ରକରଣାଦି ବକ୍ରତା ପରିପୁଷ୍ଟ ବିଚିତ୍ର ମାର୍ଗ ଗୌରବ ଅନୁସୃତ ହୋଇଥିବା ପରିଲକ୍ଷିତ ଯଥା :-

'ବିଶେଷେ ଚଞ୍ଚଳ ଈକ୍ଷଣ ବାଣ ସେ ଗତାଗତ ।
ବିଷେ ସେ ଯୁକ୍ତ କି ଅଞ୍ଜନେ ଯେଣୁ ଅତି କ୍ବଳିତ ।
ବାଜିବାରୁ ଭୟେ କୁରଙ୍ଗ ମୀନ ବନେ ପଳାଇ ।
ବାଜିବାର ଗତାଗତସେ ଗତି ଶିଖିବା ପାଇଁ ? (ବୈଦେହୀଶ ବିଳାସ ୩/୫୨)

ଉଦ୍ଧୃତ ପଦଟିରେ ସୀତାଙ୍କ ଲୋଚନ ଶୋଭନ ଚମତ୍କାର ପୂର୍ଣ୍ଣ ବିଚିତ୍ରରୀତିରେ ଉପସ୍ଥାପିତ । ଈକ୍ଷଣ ସହିତ ବାଣର ଅଭେଦ ପରିକଳ୍ପନା ଯୋଗୁଁ ରୂପକାଳଙ୍କାର ପ୍ରତିଭାତ । ବନଶବ୍ଦ (ଅରଣ୍ୟ ଓ ଜଳ)ରେ ଶ୍ଳେଷାଳଙ୍କାର ରଞ୍ଜିତ । ଈକ୍ଷଣରେ ବାଣର ଭ୍ରମଯୋଗୁଁ ଆତ୍ମରକ୍ଷା ନିମିତ୍ତ ମୃଗର ବନଗମନ ଓ ମୀନର ଜଳାଶୟ ପ୍ରବେଶରେ ଭ୍ରାନ୍ତିମାନ ଅଳଂକାର ସୂଚିତ । ବାଜି (ଘୋଡ଼ା ଓ ପକ୍ଷୀ)ର ଶୀଘ୍ରଗତି ସହିତ ସୀତାଙ୍କ ନେତ୍ରଗତି ଚଞ୍ଚଳତାରେ କୌଣସି ସମ୍ବନ୍ଧ ନଥିଲେ ମଧ୍ୟ କବିଉକ୍ତିରେ ସମ୍ବନ୍ଧାୟିତ ହେତୁ ଅତିଶୟୋକ୍ତି ଅଳଂକାର ଶୋଭିତ । ପାଦାଦ୍ୟ ଅନେକ ବର୍ଣ୍ଣ ବକ୍ରତା (ଯମକ) ମଧ୍ୟ ଉଦ୍‌ଭାସିତ । ଉପମାନ ରୂପୀ କୁରଙ୍ଗ, ମୀନ, ଘୋଟକ ଓ ପକ୍ଷୀର ଗତିଠାରୁ ସୀତାଙ୍କ ନୟନ ଗତିର ଆଧିକ୍ୟ ସୂଚିତ ହେବାରୁ, ପ୍ରତୀୟମାନ ବ୍ୟତିରେକ ଅଳଂକାର ବୋଧଗମ୍ୟ । ଏହି ଧରଣର କାବ୍ୟ କୌଶଳକୁ ଆଚାର୍ଯ୍ୟ କୁନ୍ତକ ବିଚିତ୍ର ମାର୍ଗ ଆଖ୍ୟା ଦେଇଛନ୍ତି । ସୁକୁମାର ଓ ବିଚିତ୍ର ମାର୍ଗର ମନୋଜ୍ଞ ସମ୍ମିଶ୍ରଣକୁ ସେ ମଧ୍ୟମ ମାର୍ଗବୋଲି କହିଛନ୍ତି । କୁନ୍ତକଙ୍କ ଦୃଷ୍ଟିରେ ପ୍ରତ୍ୟେକ ମାର୍ଗ କବି ପ୍ରତିଭା ରସାଣିତ ଏବଂ କାବ୍ୟପଦ ମର୍ଯ୍ୟାଦାର ପ୍ରତିଷ୍ଠାପକ । ଏହି ପ୍ରସଂଗରେ ଉତ୍ତମ, ମଧ୍ୟମ, ଓ ଅଧମ ରୂପ କାବ୍ୟର ଶ୍ରେଣୀ ବିଭାଜନକୁ ସେ ନିରର୍ଥକ ମନେକରନ୍ତି ।

**ଔଚିତ୍ୟ ଜନିତ ଚମତ୍କୃତି :-**

ପ୍ରାଚ୍ୟ କାବ୍ୟାଦର୍ଶ ବିଚାରକଙ୍କ ଅନୁଶୀଳିତ ସିଦ୍ଧାନ୍ତ ମଧ୍ୟରେ ଔଚିତ୍ୟ ସମ୍ପାଦନର ମହତ୍ତ୍ୱ ସର୍ବତ୍ର ପ୍ରତିଫଳିତ । କିନ୍ତୁ ଆଚାର୍ଯ୍ୟ କ୍ଷେମେନ୍ଦ୍ର ଔଚିତ୍ୟକୁ କାବ୍ୟଜୀବନରୂପ ମୁଖ୍ୟସ୍ଥାନ ପ୍ରଦାନପୂର୍ବକ ଯେଉଁ ସମୀକ୍ଷଣ ଶୃଙ୍ଖଳା ପ୍ରଦର୍ଶନ କରିଯାଇଛନ୍ତି ତାହା ବାସ୍ତବରେ ଅଭିନବ । ତାଙ୍କ ମତରେ କାବ୍ୟର ନ୍ୟୂନତମ ଉପାଦାନ ବର୍ଣ୍ଣଠାରୁ ଆରମ୍ଭ କରି ପଦ, ବାକ୍ୟ, ପ୍ରକରଣ, ପ୍ରବନ୍ଧାଦି ସମସ୍ତ କ୍ଷେତ୍ରରେ ଔଚିତ୍ୟ ସଂସ୍ଥାପନହିଁ କାବ୍ୟ ଗୌରବ ରକ୍ଷାକରେ । ଏହି ପ୍ରସଙ୍ଗରେ କ୍ଷେମେନ୍ଦ୍ରଙ୍କ ବକ୍ତବ୍ୟ ପ୍ରଣିଧାନ ଯୋଗ୍ୟ । ଯଥା :-

'ଉଚିତଂ ପ୍ରାହୁରାଚାର୍ଯ୍ୟାଃ ସଦୃଶଂ କିଳ ଯସ୍ୟତତ୍ ।
ଉଚିତସ୍ୟଚ୍ ଯୋଭାବ ସ୍ତଦୌଚିତ୍ୟଂ ପ୍ରଚକ୍ଷତେ ।' (ଔଚିତ୍ୟ ବିଚାର ଚର୍ଚ୍ଚା ୭/୧୬)

ତେଣୁ ପ୍ରତିପାଦିତ ଔଚିତ୍ୟ ଚମତ୍କାରର ଅପର ପର୍ଯ୍ୟାୟ ଭାବେ ସଂରକ୍ଷିତ । ଏହାର ଉଦାହରଣ ଦେଇ ବୁଝାଇବା ଆବଶ୍ୟକ ମନେ ହୁଏନା । କାରଣ ଯେଉଁ କବନ କଳା ଔଚିତ୍ୟ ସଂରକ୍ଷଣରେ ଅସମର୍ଥ ତାହା ପାଠକ ପ୍ରାଣକୁ ଅଭିଭୂତ କରିପାରେ ନାହିଁ । ଏହି ଦୃଷ୍ଟିରୁ ବିଚାର କଲେ ମଧ୍ୟ ଯୁଗୀୟ ସମସ୍ତ ଜନପ୍ରିୟ କବିକର୍ମ କୌଶଳ ଔଚିତ୍ୟ ପରିମାର୍ଜିତ ଚମତ୍କାର ଭାବନାରେ ଉଦ୍‌ଭାସିତ, ଏହି ମନ୍ତବ୍ୟ ବିନା ଦ୍ୱିଧାରେ ଦିଆଯାଇପାରେ ।

ସାମଗ୍ରିକ ଭାବେ ଅନୁଧ୍ୟାନ କଲେ ମନେ ହୁଏ ଗବେଷକ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଏକାଧାରରେ ଓଡ଼ିଆ ମଧ୍ୟଯୁଗୀୟ ଶତାଧିକ କବି ବିରଚିତ କାବ୍ୟକଳାର ଗଠନ କୌଶଳ, ନାମକରଣ କୌଶଳ, ଛାନ୍ଦ ବିଭାଜନ କୌଶଳ, ବିଭିନ୍ନ ଆଙ୍ଗିକ ତଥା ଆତ୍ମିକ କୌଶଳ ଇତ୍ୟାଦି ବିଶ୍ଳେଷଣ କରି , ସମସ୍ତ ପ୍ରାଚ୍ୟ କାବ୍ୟତତ୍ତ୍ୱ ଆଧାରରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା ବାସ୍ତବରେ ଏକନିଷ୍ଠ ଦୀର୍ଘ ସମୟବ୍ୟାପୀ ସାଧନା, ଶିକ୍ଷା ଓ ଅନୁଶୀଳନର ଅନ୍ୟତମ ଅବିସ୍ମରଣୀୟ ସାର୍ଥକ ଫଳଶ୍ରୁତି - 'ଓଡ଼ିଆ କାବ୍ୟ କୌଶଳ' ଗ୍ରନ୍ଥ । ପ୍ରାଚ୍ୟ କାବ୍ୟତତ୍ତ୍ୱ ପରମ୍ପରାରେ ପ୍ରତିପାଦିତ ସମସ୍ତ ବିଚାର ଏହି ସମୀକ୍ଷା ବୃତ୍ତିରେ ଅନ୍ତର୍ନିହିତ ଏବଂ ସର୍ବୋପରି କାବ୍ୟାତ୍ମ ନିର୍ଣ୍ଣୟରେ ରସ, ଅଳଂକାର, ରୀତି, ଧ୍ୱନି, ବକ୍ରୋକ୍ତି ଓ ଔଚିତ୍ୟ ମଧ୍ୟରେ ଚମତ୍କାର ଚେତନା ଅନ୍ତଃସଲିଳା ଫଲଗୁପରି ଅବାରିତ ପ୍ରବାହିତ ହେଉଥିବା ସେ ଆବିଷ୍କାର କରିଛନ୍ତି । ସେହି ଆଲୋଚନା ଶୃଙ୍ଖଳାର ପୁଙ୍ଖାନୁପୁଙ୍ଖ ପ୍ରତ୍ୟାଲୋଚନା ଆବିଷ୍କୃତ ସିଦ୍ଧାନ୍ତକୁ ହିଁ ପ୍ରତିଷ୍ଠିତ କରେ। ଏତାଦୃଶ ବିଶ୍ଳେଷଣାତ୍ମକ ସମୀକ୍ଷଣ ପଦ୍ଧତି ଓଡ଼ିଆ ସମାଲୋଚନା ସରଣୀକୁ ଏକ ବଳିଷ୍ଠ, ନିରପେକ୍ଷ, ଯୁକ୍ତିଯୁକ୍ତ, ବୈଜ୍ଞାନିକ ତଥା ପ୍ରମାଣିକ-ସିଦ୍ଧାନ୍ତ ରୂପେ ପ୍ରଦାନ କରିବରେ ସାର୍ଥକ ଦିଗବାରିଣୀ ସ୍ତମ୍ଭ ରୂପେ ପ୍ରତିଭାତ, କହିବା ଅଯଥାର୍ଥ ହେବା ନାହିଁ । 'ଓଡ଼ିଆକାବ୍ୟକୌଶଳ' ଗ୍ରନ୍ଥର ଶୃଙ୍ଖଳିତ ବିଚାର ପଦ୍ଧତିରେ ବହିର୍ଦୃଷ୍ଟି ଓ ଅନ୍ତନିରୀକ୍ଷଣର ସୁସନ୍ଧ ସମନ୍ୱୟ ସାଧନ ପ୍ରକୃତରେ ବିସ୍ମୟାବହ । ଏହି ଗ୍ରନ୍ଥ ଡକ୍ଟର ଆଚାର୍ଯ୍ୟ ମହାଶୟଙ୍କୁ ଯଥାର୍ଥ ଆ ଚାର୍ଯ୍ୟ ଓ ଯୁଗାନ୍ତକାରୀ ସମୀକ୍ଷକ ରୂପେ ସମ୍ମାନ ପ୍ରଦର୍ଶନର ସମସ୍ତ ଭୂମିକା ଗ୍ରହଣ କରିଅଛି , ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । ଏହି ସନ୍ଦର୍ଭ ପରବର୍ତ୍ତୀ ଗବେଷକ ବର୍ଗଙ୍କ ମାର୍ଗ ଦର୍ଶନର ପଥୀକୃତ ନିଦର୍ଶନ ରୂପେ ସମସ୍ତ କାଳରେ ପ୍ରତିଭାତ ହେବ ।

*ପ୍ରାଧ୍ୟାପକ ଓ ବିଭାଗ ମୁଖ୍ୟ, ଓଡ଼ିଆ ବିଭାଗ,*
*ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟ, ବ୍ରହ୍ମପୁର (ଗଂଜାମ)*

# ଓଡିଶାରେ ଲୋକସାହିତ୍ୟ ଅଧ୍ୟୟନର ଧାରା

## କଇଳାଶ ପଟ୍ଟନାୟକ

ଓଡିଶାରେ ଲୋକସଂସ୍କୃତି ପ୍ରତି ସଚେତନତା ଓ ଲୋକସାହିତ୍ୟ ଅଧ୍ୟୟନରେ ଆଗ୍ରହ ପ୍ରାଥମିକଭାବେ ଇଂରେଜମାନଙ୍କ ମାଧ୍ୟମରେ ସୃଷ୍ଟି ହୋଇଥିଲା । ସେମାନେ ସଂପୂର୍ଣ୍ଣ ନୂତନ ଏଇ ଜ୍ଞାନ-କ୍ଷେତ୍ର ସମ୍ପର୍କରେ କେବଳ ଧାରଣା ଦେଇନଥିଲେ, ଏହାର ସଂଗ୍ରାହୀନ୍ତ ଅନୁଶୀଳନ ପାଇଁ ମଧ୍ୟ ବ୍ୟକ୍ତିବିଶେଷଙ୍କୁ ଉତ୍ସାହିତ କରିଥିଲେ । ଜନ୍ ବୀମ୍‌ସ ନିଜର 'Orissan Folk-Culture' ପ୍ରବନ୍ଧ ମାଧ୍ୟମରେ ସର୍ବ ପ୍ରଥମେ ଓଡିଶୀ ଲୋକସଂସ୍କୃତି ସମ୍ପର୍କରେ ଅଣଓଡିଶୀ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ପ୍ରବନ୍ଧଟିର ନାମକରଣ ଓଡିଶାର ଲୋକସଂସ୍କୃତି ହୋଇଥିଲେହେଁ ଏହା ମୂଳତଃ ଡାଆଣୀ, ଗୁଣି ଗାରେଡି ପ୍ରସଙ୍ଗକୁ ଭିତ୍ତି କରିଥିଲା । ବୀମ୍‌ସ ଏଥିରେ ସର୍ପାଘାତରୁ ବଞ୍ଚାଇବାପାଇଁ ପ୍ରୟୋଗ କରିଯାଉଥିବା କେତେକ ମନ୍ତ୍ରର ମଧ୍ୟ ଉଲ୍ଲେଖ କରିଛନ୍ତି । ପ୍ରବନ୍ଧଟି ସର୍ବପ୍ରଥମେ 'Indian antiquary' ପତ୍ରିକାର ପ୍ରଥମ ସଂଖ୍ୟାରେ ୧୮୭୨ ମସିହାରେ ପ୍ରକାଶିତ ହୋଇ ଓଡିଶୀ ଲୋକ ସଂସ୍କୃତି ଚର୍ଚ୍ଚାର ଦ୍ୱାର ଉନ୍ମୋଚନ କରିଥିଲା । ବୀମ୍‌ସଙ୍କ ଲୋକସଂସ୍କୃତି ଚର୍ଚ୍ଚାରେ ଫକୀର ମୋହନ ଙ୍କ ସାହାଯ୍ୟ ଗ୍ରହଣ ମଧ୍ୟ ଏକ ବିଦିତ ସତ୍ୟ । ତତ୍‌କାଳୀନ ଓଡିଶାର କମିଶନର T.E.Ravenshaw ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଙ୍କୁ ଲୋକଗୀତ ଓ ପ୍ରବାଦ ଆଦି ସଂଗ୍ରହ ପାଇଁ ଯଥେଷ୍ଟ ଉତ୍ସାହିତ କରିଥିଲେ । କପିଳେଶ୍ୱରଙ୍କ ଢ଼ଗ ସଂଗ୍ରହ ପ୍ରଥମେ ପ୍ରକାଶିତ ହୁଏ ୧୮୭୬ ମସିହାରେ । ଗୋବିନ୍ଦ ରଥଙ୍କ ସଂଗ୍ରହ 'ଢ଼ଗଢ଼ମାଳି' ୧୮୯୩ ମସିହାରେ ପ୍ରକାଶ ପାଏ । ଉନବିଂଶ ଶତାବ୍ଦୀର ଓଡିଶାର ଶିକ୍ଷିତ ସମାଜ ଏହି ସଂଗ୍ରହମାନଙ୍କ ଦ୍ୱାରା ମୌଖିକ ସାହିତ୍ୟର ସୌନ୍ଦର୍ଯ୍ୟ ଅବଲୋକନ ଓ ଅନୁଭବ କରିପାରିଥିଲେ । ଏହି କ୍ଷୀଣାବୟବ ସଂଗ୍ରହମାନଙ୍କ ବ୍ୟତୀତ ଉନବିଂଶ ଶତକର ଏଇ ଶେଷ ତିନି ଦଶକରେ ଓଡିଶି ଲୋକସାହିତ୍ୟ ଚର୍ଚ୍ଚାର ବିଶେଷ କ୍ଷେତ୍ର ତଥାପି ହୋଇନଥିଲା ପ୍ରସ୍ତୁତ, ମନନ ଓ ଅଧ୍ୟୟନ ପାଇଁ ଅପେକ୍ଷା କରିବାକୁ ହେଲା ବିଂଶ ଶତାବ୍ଦୀର ଆଗମନୀକୁ । ଉନବିଂଶ ଶତକର ଏଇ ଶେଷ ତିନିଦଶକ ଓଡିଶୀ ଲୋକସାହିତ୍ୟ ଚର୍ଚ୍ଚାର ପ୍ରାଥମିକ ସ୍ତର ବା ଆଦିଭାଗ ଭାବେ ଗ୍ରହଣ କରାଯାଇପାରେ ।

ବିଂଶ ଶତାବ୍ଦୀର ଅଦ୍ୟଭାଗରେ ଓଡିଶାରେ ଲୋକସାହିତ୍ୟ ଚର୍ଚ୍ଚାର ନାୟକ ଥିଲେ ଗୋପାଳ ଚନ୍ଦ୍ର ପ୍ରହରାଜ । ନିଜର ପରିକଳ୍ପିତ ଭାଷାକୋଷ ପାଇଁ ପ୍ରକୃତ ଓଡିଆ ଶବ୍ଦର ଅନ୍ୱେଷଣ ଭିତ୍ତିରେ ସେ ଲୋକମୁହଁର ଭାଷା ନମୁନାଭବେ ଓ ସତ୍ୟବାଦୀ ଭଳି ପତ୍ରିକା ଏହି ଗଦ୍ୟରୂପର ସମ୍ଭାବନାମୟ ଐଶ୍ୱର୍ଯ୍ୟକୁ ବିଂଶ ଶତାବ୍ଦୀର ଆଦିପର୍ବରେ ରନ୍ଧିମନ୍ତ କରିଥିଲେ ।

ସେ ଢ଼ଗଢ଼ମାଳି, ପ୍ରବାଦ ପ୍ରବଚନ, ଲୋକକାହାଣୀ ପ୍ରଭୃତି ସଂଗ୍ରହ କରିଥିଲେ । ଏଥିରେ ତାଙ୍କର ସହାୟିକା ହୋଇଥିଲେ ପୀତାମ୍ବରୀ ଦେବୀ । ଗୋପାଳ ଚନ୍ଦ୍ରଙ୍କ ଲୋକସାହିତ୍ୟ ସଂଗ୍ରହଗତ ନିଷ୍ଠା, ଅଧ୍ୟୟନଗତ ଆନ୍ତରିକତା, ତଥା ପ୍ରକାଶନଗତ ତତ୍ପରତା ପ୍ରଶଂସନୀୟ । ତାଙ୍କ ସଂଗୃହୀତ ଲୋକକାହାଣୀ ଗୁଡିକର ସଂଗ୍ରହ ଉତ୍କଳ କାହାଣୀର ପ୍ରଥମ ଭାଗ ପ୍ରକାଶିତ ହୁଏ ୧୯୦୧ ମସିହାରେ । ଲୋକ ମୁହଁର ଭାଷା, ସେମାନଙ୍କ ନିଜସ୍ୱ ପ୍ରକାଶଭଙ୍ଗୀ ଆଦି ସଂପର୍କରେ ଶ୍ରୀ ପ୍ରହରାଜ ଥିଲେ ସଚେତନ । ପୁସ୍ତକର ପ୍ରକାଶନ ସହ ଏହି କାରଣରୁ ବିତର୍କ ସୃଷ୍ଟି ହୋଇଥିଲା ଯେ ସାହିତ୍ୟିକ ଭାଷାଠାରୁ ଦୂରରେଏ ନୂଆ ଭାଷାର କାହାଣୀକୁ

ଅନେକ ସହଜ ଭାବେ ଗ୍ରହଣ କରି ପାରିନଥିଲେ । ସେ ସମୟର ସୁଖ୍ୟାତ ସମ୍ବାଦପତ୍ର 'ଉତ୍କଳ ଦୀପିକା' ବହିଟିର ନିଜ ୨୧.୧୨.୧୯୦୧ ସଂଖ୍ୟାରେ ସମାଲୋଚନା କରି ଏହାର ଭାଷାକୁ 'ଛୋଟ ଲୋକଙ୍କ ଭାଷା' ବୋଲି ଉଲ୍ଲେଖ କରି ତୀବ୍ର ଆକ୍ଷେପ କରିଥିଲେ । ଗୋପାଳ ଚନ୍ଦ୍ର କେବଳ ଜଣେ ଲୋକସାହିତ୍ୟର ସଂଗ୍ରାହକ ବା ଆଭିଧାନିକ ନଥିଲେ, ଥିଲେ ଜଣେ ଚିନ୍ତାବିଦ । ନିଜର ଉତ୍କଳ ସାହିତ୍ୟର ଅଷ୍ଟମବର୍ଷ ପଞ୍ଚମ ସଂଖ୍ୟା ଭଦ୍ର ୧୩୧୧ ସାଲ (୧୯୦୪ ମସହା) ସଂଖ୍ୟାରେ ପ୍ରକାଶିତ 'ବିଶୁଦ୍ଧ ଭାଷା' ପ୍ରବନ୍ଧରେ (ଯାହା ଉତ୍କଳ ସାହିତ୍ୟ ସମାଜର ଦ୍ୱିତୀୟ ବର୍ଷର ପ୍ରଥମ ଅଧିବେଶନରେ ପଠିତ ହୋଇଥିଲା ) ଉତ୍କଳ ଦୀପିକାର ଅଭିଯୋଗ 'ଲେଖକ ଭାଷାକୁ ସମସ୍ତ ବାଳକଙ୍କର ସହଜବୋଧ କରିବାକୁ ଯାଇ ପୁସ୍ତକର ଭାଷାର ଆକାର ଛାଡି ଛୋଟ ଲୋକାଙ୍କ ପ୍ରଚଳିତ କଥାବାର୍ତ୍ତାର ଭାଷା ପ୍ରଚାର କରିଅଛନ୍ତି । * * * ଲେଖକ ହଉ , ଘିନି, ଇମିତି, ଶୁଧ, ଡେଲଉଣି, ରଜା ଇତ୍ୟାଦି ପୁସ୍ତକର ଆଦ୍ୟପ୍ରାନ୍ତ ବ୍ୟବହାର କରି ତାହାର ଅବୟବକୁ ଦୂଷିତ କରିଅଛନ୍ତି ଆଦିର ଉତ୍ତର ବିସ୍ତାରିତଭାବେ ଦେଇଛନ୍ତି । ତାଙ୍କର ସେ ଉତ୍ତର ଲୋକସାହିତ୍ୟ ଅଧ୍ୟୟନକାରୀଙ୍କ ଅବଶ୍ୟ ପଠନୀୟ । ଭାଷାର ସ୍ୱାଭାବିକ ସ୍ଫୁରଣ, ଔଚ୍ଚାରଣିକ ସ୍ୱାତନ୍ତ୍ର୍ୟ, ପ୍ରକାଶଭଙ୍ଗୀର ଭିନ୍ନତାର ଯଥାଯଥ ଅବବୋଧରେ ସେ ଗୁରୁତ୍ୱ ଦେଇଛନ୍ତି । 'ଭାଷାର ଶୁଦ୍ଧତା, ଅଶୁଦ୍ଧତା ପ୍ରଚଳନ ଉପରେ ନିର୍ଭର କରେ, ଏହା ସାହିତ୍ୟ ଚିଜ୍ଞାନବେତ୍ତାମାନଙ୍କର ମତ । ଉତ୍କଳ ସମାଜର ଉଚ୍ଚସ୍ଥାନୀୟ ଗୃହସ୍ଥଙ୍କ ଘରେ ହଉ, ଏଠେଇଁ ଇତ୍ୟାଦି ଶବ୍ଦ ଅବାଧରେ ବ୍ୟବହୃତ ହୁଏ । ଏଗୁଡ଼ିକ ଇତର-ପ୍ରଚଳିତ ଭାଷା ହେଲେ। କିପରି ? ଏଗୁଡିକ ସାହିତ୍ୟ-ଗତ ଭାଷା ନହେବ କାହିଁକି ? * * * ବୁଢ଼ୀମାର ଓ ସ୍ତ୍ରୀମାନେ କାହାଣୀ କହିଥାନ୍ତି ଏବଂ ଆମ୍ଭେମାନେ କାହାଣୀ ଗୁଡିକ ଶିଶୁମାନଙ୍କ ନିମନ୍ତେ ଲେଖିଥାଉଁ, ସୁତରାଂ ତହିଁରେ କଥୟିତ୍ରୀ ମାନଙ୍କ ଭାଷା ବ୍ୟବହାର ନକଲେ କାହାଣୀ ଗୁଡିକର କାହାଣୀତ୍ୱ ନଷ୍ଟ ହୋଇଯିବ ଏଥିରେ ସନ୍ଦେହ ନାହିଁ । * * * ଉତ୍କଳଭାଷୀ ଅଞ୍ଚଳମାନଙ୍କରେ ନାନାଦି ପ୍ରଭାବର ଭାଷା ଓ ଶବ୍ଦରାଜ୍ୟରେ ଅନେକ ସ୍ଥାନୀୟ ବିଶେଷତ୍ୱ ପ୍ରବେଶ କରିଅଛି । ମୋ କ୍ଷୁଦ୍ରମତରେ ସେଗୁଡିକ ଯଥାଶକ୍ତି ସଂଗ୍ରହ ଓ ଲିପିବଦ୍ଧ କରି ରଖିବା ସାହିତ୍ୟ ସେବକ ମାନଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ ।'

ଉତ୍କଳ କାହାଣୀର ଅନୁଗାମୀ ହେଲା ଜନୈକ କରଣ ମହିଳାଙ୍କ ସଂଗୃହୀତ ଲୋକକାହାଣୀର ଦ୍ୱିତୀୟ ସଂଗ୍ରହ 'କଥାଲହରୀ' । ଏହା ମଧ୍ୟ ପ୍ରକାଶ ପାଇଥିଲା ୧୯୦୧ ମସିହାରେ । ଏହାର ଭୂମିକାରେ ଭକ୍ତକବି ମଧୁସୂଦନ ରାଓ କାହାଣୀ ଗୁଡିକର ଅକୃତ୍ରିମ ଭାଷାର କରିଥିଲେ ବିଶେଷ ପ୍ରଶଂସା । 'ବର୍ତ୍ତମାନ ଓଡିଆରେ ଯେଉଁ ଗଦ୍ୟ ରଚନା ପ୍ରଣାଳୀ ଦେଖାଯାଏ ତାହା ନିତାନ୍ତ ଆଧୁନିକ ଏବଂ ବୈଦେଶିକ ସାହିତ୍ୟର ପ୍ରଭାବ ଯୋଗୁଁ ବହୁ ପରିମାଣରେ କୃତ୍ରିମଭାବାପନ୍ନ, କିନ୍ତୁ ଏହି କାହାଣୀ ମାନଙ୍କରେ ଯେଉଁ ଭଷାଭଙ୍ଗୀ ବା ବାକ୍ୟ ରଚନା ପ୍ରଣାଳୀ ଲକ୍ଷିତ ହେବ ତାହା ଚିରରକ୍ଷଣଶୀଳ ନାରୀ ମାନଙ୍କର ମୁଖନିଃସୃତ ଉତ୍କଳ ଭାଷାର ସ୍ୱାଭାବିକ ରୀତି । ତାହାର ଅଯତ୍ନ ସୁଲଭ ଅକୃତ୍ରିମ ମୁକ୍ତ ମାଧୁରୀର ମୋହିନୀ ଶକ୍ତି କେତେକ ପଣ୍ଡିତ ମାନଙ୍କ ଉତ୍କଟ ରୁଚିଗ୍ରସ୍ତ ଲୋକଙ୍କ ଛଡା ଆଉ କିଏ ଅସ୍ୱୀକାର କରିବ ?'

ଗୋପାଳ ଚନ୍ଦ୍ର ଥିଲେ ଓଡିଆ ଲୋକକାହାଣୀ ସଂଗ୍ରହର ପୁରୋଧା । ତାଙ୍କ ପ୍ରଦର୍ଶିତ ପଥ ଅନୁସରଣ କଲେ ତାରିଣୀ ଚରଣ ରଥ, ଅପର୍ଣ୍ଣାଦେବୀ, ରାମକୃଷ୍ଣ ମିଶ୍ର, ବାଞ୍ଛାନିଧି ପଣ୍ଡା ଓ ଅନ୍ୟମାନେ । ଏ ପ୍ରତ୍ୟେକଙ୍କ ସଂଗୃହୀତ କାହାଣୀ ସେତେବେଳର ପତ୍ରିକାମାନଙ୍କରେ ବିଶେଷତଃ ଉତ୍କଳ ସାହିତ୍ୟରେ ସ୍ଥାନିତ ହୋଇଥିଲା । ଲୋକକାହାଣୀ ସମ୍ପର୍କୀୟ ଆଲୋଚନାର ଉପୋଦ୍‌ଘାତ ମଧ୍ୟ କରିଥିଲେ ଗୋପାଳଚନ୍ଦ୍ର । ଉତ୍କଳ ସାହିତ୍ୟର ତୃତୀୟ ବର୍ଷ ଦଶମ ସଂଖ୍ୟା କାର୍ତ୍ତିକ ୧୩୦୭ ସଂଖ୍ୟାରେ (୧୯୦୦ ମସିହା) ପ୍ରକାଶିତ ତାଙ୍କର 'ଉତ୍କଳ ଦେଶର କାହାଣୀ' ଲୋକକାହାଣୀର ମାଧୁରୀକୁ ଭିତ୍ତିକରିଚି । ଏହାର ଦେଶରୁଚି ଅନୁଗାମୀରୂପକୁ

ପ୍ରକାଶିତ କରଚି ଓ ମୁଦ୍ରଣ କାଳରେ ଏହାର ଅକ୍ଷୁର୍ଣ୍ଣରୂପ ପ୍ରତି ଗୁରୁତ୍ୱ ଦେଇଛି । ପରବର୍ତ୍ତୀ ସମୟରେ ଉତ୍କଳ କାହାଣୀର 'ଭୂମିକା' ଭାବେ ଏହି ଆଲୋଚନାର ସଂଯୋଜନ ତାତ୍ପର୍ଯ୍ୟପୂର୍ଣ୍ଣ । 'ଭୂମିକା' ଭାବେ ଏହାର ସଂଯୋଜନ ବେଳେ ପରିଶେଷରେ ଅନ୍ୟ ଏକ ଅନୁଚ୍ଛେଦଯୁକ୍ତ କରାଯାଇଛି ଯେଉଁଠି ଲୋକକାହାଣୀକୁ ବାଳୋପଯୋଗୀ ଓ ବୃଦ୍ଧୋପଯୋଗୀ ଭାବେ ଦୁଇଭାଗରେ ବିଭକ୍ତ କରାଯାଇଛି । ଲୋକକାହାଣୀ ଅନୁଶୀଳନକୁ ମୋହିନୀ ମୋହନଙ୍କ ଉତ୍କଳ ସାହିତ୍ୟର ଷଷ୍ଠବର୍ଷ ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥ ସଂଖ୍ୟାରେ ୧୩୦୯ ସାଲ (୧୯୧୨ ମସିହା) ପ୍ରକାଶିତ ଓଡିଆ କାହାଣୀ ଶୀର୍ଷକର ଦୀର୍ଘ ଆଲୋଚନାଟି ଲୋକକାହାଣୀ ସୃଷ୍ଟିରେ ଆଣ୍ଡ୍ରଲାଙ୍ଗଙ୍କ Polygenesis theory ସଂପର୍କରେ ଆସ୍ଥା ସ୍ଥାପନ କରି ଓଡିଆ ଆଲୋଚନାରେ ଏକ ନୂଆଦିଗର ଉନ୍ମୋଚନ କରିଥିଲେ । ଏତଦ୍‌ଭିନ୍ନ କାହାଣୀଦୃଷ୍ଟ ଦେବଲୋକ, ପିତୃଲୋକ, ନାଗଲୋକ ଓ ନରଲୋକ ପ୍ରସଙ୍ଗ ଆଣି କାହାଣୀଗତ ପଞ୍ଚବିଧ ଚରିତ୍ର- ମାନବ-ପୁରୁଷ, ମାନବ-ସ୍ତ୍ରୀ, ଅମାନବ, ଜୀବଜନ୍ତୁ, ଅଚେତନମାନଙ୍କର ଆଲୋଚନା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣଭାବେ କରିଛନ୍ତି । ବିବିଧ କାହାଣୀରେ ବର୍ଣ୍ଣିତ ଏଭ ଚରିତ୍ରମାନଙ୍କର ଗୁଣଗତ ସାଦୃଶ୍ୟ ମଧ୍ୟ ଉଲ୍ଲେଖ କରିଛନ୍ତି । ଓଡିଆ ଲୋକକାହାଣୀ ଆଲୋଚନାରେ ଏ ପ୍ରବନ୍ଧଟି ଭୂମିକାକୁ, ଏଯାବତ୍ କେହିବି ସ୍ୱୀକାର କରିନଥିବା ଅତ୍ୟନ୍ତ ଦୁଃଖଦାୟକ ।

ଗୋପାଳଚନ୍ଦ୍ର କେବଳ ଲୋକକାହାଣୀ ନୁହେଁ ପ୍ରବାଦପ୍ରବଚନ, ଢ଼ଗଢ଼ମାଳି, ଛଟା, ଶ୍ଳୋକାଂଶ ଆଦି ସଂଗ୍ରହରେ ମଧ୍ୟ ଆପଣାର ସ୍ୱାତନ୍ତ୍ୟ ପ୍ରଦର୍ଶନ କରିପାରିଛନ୍ତି । 'ଓଡିଆ ଲୌକିକ ପଦ ବା ଢ଼ଗ ଢ଼ମାଳି ବଚନ' (ଦୁଇଖଣ୍ଡ, ୧୯୨୬, ୧୯୨୭) ତାଙ୍କ ଲୋକବାଣୀ ସଂଗ୍ରହର ନମୁନା । ଏହାର ଦୀର୍ଘ ଭୂମିକାରେ ପ୍ରହରାଜ ପ୍ରଥମଥରପାଇଁ ପ୍ରବାଦପ୍ରବଚନ, ପ୍ରହେଳିକା, ଢ଼ଗଢ଼ମାଳି, ଉଲୁଗୁଣା ଆଦିର ଭିନ୍ନତାକୁ ଦର୍ଶାଇଥିଲେ । ଭିନ୍ନ ଭାଷାଭାଷୀ ପ୍ରବଚନମାନଙ୍କର ସମରୂପତାର ଉଦାହରଣ ଦେଇଥିଲେ । ଲୋକବାଣୀର କଥ୍ୟରୂପ ଅକ୍ଷୁର୍ଣ୍ଣଭାବେ ସଙ୍କଳିତ କରିବା ପାଇଁ ପରାମର୍ଶ ଦେଇଥିଲେ । ଲୋକବାଣୀର ତାତ୍ତ୍ୱିକ ଦିଗପ୍ରତି ଏହି ଭୂମିକା ଯେଉଁ ନିର୍ଦ୍ଦେଶ କରିଛି ତାହା ଅନନ୍ୟ । ତଦନୁରୂପ ଆଲୋଚନା ସମକାଳରେ ସୁଦ୍ଧା ବିରଳ ।

ଓଡିଆରେ ଲୋକସାହିତ୍ୟ ସଂଗ୍ରହ ଓ ସମୀକ୍ଷାର ଏକ ପରିମଣ୍ଡଳ ଧୀରେ ଧୀରେ ସୃଷ୍ଟି ହେଉଚାଲିଥିଲା । ନୀଳମଣି ବିଦ୍ୟାରତ୍ନଙ୍କ ପ୍ରବାଦ ପୁଷ୍ପାଞ୍ଜଳି (୧୯୦୩), ରାଘବାନନ୍ଦ ଦାସଙ୍କ କୃଷି ପ୍ରବଚନମାଳା (୧୯୧୪), ଅପନ୍ନା ପଣ୍ଡାଙ୍କ ଢ଼ଗ ସଞ୍ଚୟନ (୧୯୦୫, ୧୯୨୮), ନିତ୍ୟାନନ୍ଦ ସାହୁଙ୍କ ଢ଼ଗଢ଼ମାଳି (୧୯୨୪) ଆଦିର ନାମୋଲ୍ଲେଖହିଁ ଏହି ପରିମଣ୍ଡଳ ସୃଷ୍ଟିକୁ କିଞ୍ଚିତ ପରିମାଣରେ ଇଙ୍ଗିତ କରିପାରେ ।

ଲୋକସାହିତ୍ୟ ଅଧ୍ୟୟନର ଏହି ଧାରାକୁ ୧୯୦୧ରୁ ୧୯୪୬ ପର୍ଯ୍ୟନ୍ତ ଚିହ୍ନିତ କରି ଲୋକସାହିତ୍ୟ ଚର୍ଚ୍ଚାର ଏହା ଦ୍ୱିତୀୟ ଭାଗ ବୋଲି କୁହାଯାଇପାରେ । ଏହି ଦ୍ୱିତୀୟ ଭାଗର ସ୍ୱାତନ୍ତ୍ୟ ହେଉଛି :

କ) ଲୋକ ସାହିତ୍ୟର ବିବିଧ ତାତ୍ତ୍ୱିକ ଦିଗପ୍ରତି ସଚେତନତା ଆନୟନ, ଗୋପାଳଚନ୍ଦ ପ୍ରହରାଜ ଯାହାର ଥିଲେ ପ୍ରମୁଖ ପୁରୋଧା ।

ଖ) ଲୋକବାଣୀ ଅର୍ଥାତ୍ ପ୍ରବାଦ, ପ୍ରବଚନ, ଢ଼ଗଢ଼ମାଳି ଆଦିର ସଂଗ୍ରହ ବିଶେଷଭାବେ ପରିଦୃଷ୍ଟ ହୁଏ । ଅନେକ ସଂଗ୍ରାହକ ଢ଼ଗଢ଼ମାଳିର ଅର୍ଥ ବ୍ୟାଖ୍ୟାକରି ମୁଦ୍ରିତରୂପ ଦେଇଛନ୍ତି ।

ଗ) ଲୋକଗୀତର ସଂଗ୍ରହ ପ୍ରଚେଷ୍ଟା ହୋଇଚି ମାତ୍ର ତାର ମୁଦ୍ରିତ ରୂପ ଚକ୍ରଧର ମହାପାତ୍ରଙ୍କ 'ଉତ୍କଳ ଗାଉଁଲି ଗୀତ ଚୁମ୍ବକ (୧୯୪୦)ରେ ସୀମିତ । ଚକ୍ରଧରଙ୍କ ମୂଳ ପ୍ରଚେଷ୍ଟାର ଯାହାଥିଲା ଏକ ନମୁନା-ସଂକଳନ ମୂଳ ଓଡିଆ ଲୋକଗୀତସହ ଏହାର ଥିଲା ଦେବନାଗରୀ ଅନୁଲିପି-ରୂପ ଓ ଇଂରାଜୀ ଭାଷାନ୍ତର ।

ଘ) ଲୋକସାହିତ୍ୟ ସଂଗ୍ରାହକର ଜ୍ଞାନ ଓ ସଚେତନତା ସଂପର୍କରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କଦ୍ୱାରା ବିବିଧ ଲେଖାରେ ପ୍ରସଙ୍ଗକ୍ରମେ ନିର୍ଦ୍ଦେଶନ ।।

ଲୋକଗୀତ ସଂଗ୍ରହ ଓ ଅଧ୍ୟୟନର ଯେଉଁ କରୁଣ ସ୍ଥିତି ପ୍ରାକ୍ ସ୍ୱାଧୀନତାର ସମୟରେ ସୃଷ୍ଟି ହୋଇଥିଲା, ଚକ୍ରଧର ମହାପାତ୍ର ଓ କୁଞ୍ଜବିହାରୀ ଦାଶଙ୍କ ଆନ୍ତରିକ ଚେଷ୍ଟା ଫଳରେ ସେ ସ୍ଥିତିର ଘଟିଲା କିଛିଟା ପରିବର୍ତ୍ତନ । ଚକ୍ରଧରଙ୍କ ଲୋକସାହିତ୍ୟ ଅଧ୍ୟୟନପ୍ରତି ଆଗ୍ରହ ମୂଳତଃ ପ୍ରଖ୍ୟାତ ଲୋକସାହିତ୍ୟ ସଂଗ୍ରାହକ, 'Meet my people' (୧୯୪୬) ସଂକଳନର ସଂକଳୟିତା ଶ୍ରୀ ଦେବେନ୍ଦ୍ର ସତ୍ୟାର୍ଥୀଙ୍କ ସାନ୍ନିଧ ହେତୁ ଆସିଥିଲା । ଚକ୍ରଧର ଓ କୁଞ୍ଜବିହାରୀଙ୍କ ସଂଗ୍ରହ ଯୋଗୁଁ ଓଡିଆ ଲୋକଗୀତର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଶିକ୍ଷିତ ସମାଜରେ ପହଞ୍ଚି ପାରିଥିଲା । ଲୋକଗୀତକୁ ଭିତ୍ତିକରି ଚର୍ଚ୍ଚାର ଏକ ସୁଯୋଗ ସୃଷ୍ଟି ହୋଇଥିଲା । ଚକ୍ରଧରଙ୍କ 'ଉତ୍କଳ ଗାଉଁଲି ଗୀତ' (୧୯୫୯), କୁଞ୍ଜବିହାରୀଙ୍କ 'ପଲ୍ଲୀଗୀତି ସଞ୍ଚୟନ' (ତିନିଖଣ୍ଡ, ୧୯୫୪, ୫୯, ୬୪)ର ଭୂମିକା ଓଡିଆ ଲୋକସାହିତ୍ୟଅଧ୍ୟୟନ କ୍ଷେତ୍ରରେ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ସଂକଳନ ଗୁଡିକ କେବଳ ବିପୁଳ ପରିମାଣର ଲୋକଗୀତ କୁକ୍ଷିଗତ କରି ମୁଦ୍ରିତ ହୋଇନଥିଲେ, ନାନା ଧରଣର ଗୀତର ଏଗୁଡିକ ଥିଲେ ସଂଗ୍ରହଶାଳା । ଓଡିଆ ଲୋକଗୀତର ବିବିଧତା ସହ ନାନ୍ଦନିକତାର ଅବବୋଧ ସହଜରେଏଇ ସଂକଳନଗୁଡିକ ମାଧ୍ୟମରେ ଘଟି ସାରିଥିଲା । ଉଭୟ ସଂଗ୍ରାହକଙ୍କ ମୁଖବଂଧ ଗୁଡିକ ଲୋକଗୀତର ଅଧ୍ୟୟନରେ ବିଶେଷ ସହାୟକ ହୁଅନ୍ତି । ସଂଗ୍ରହର କୌଶଳ, ଲିପିକରଣ, ଅଧ୍ୟୟନର ବିବିଧ ଦିଗ ଆଦିର ସୂଚନା ଏଗୁଡିକରେ ରହିଚି । କୁଞ୍ଜବିହାରୀଙ୍କ ଭୂମିକା ଥିଲା ଅନେକ ପରିମାଣରେ ତୁଳନାତ୍ମକ ଭାବସମ୍ବଳିତ । ପ୍ରତିବେଶୀ ରାଜ୍ୟର ବିବିଧ ସମଧର୍ମୀ ଲୋକଗୀତର ଆଲୋଚନା ଏହି ଭୂମିକାଗୁଡିକର ଦିଗନ୍ତକୁ ପ୍ରସାରିତ କରିଥାଏ । ଏତଦ୍‌ବ୍ୟତୀତ ଚକ୍ରଧରଙ୍କ ଓଡିଆ ଢ଼ଗଢ଼ମାଳିକା ଓ କୁଞ୍ଜବିହାରୀଙ୍କ ଲୋକଗଳ୍ପ ସଞ୍ଚୟନ (୧୯୬୪), ଓଡିଶାର ଲୋକକଥା (୧୯୮୧), ଲୋକବାଣୀ ସଞ୍ଚୟନ (ଛଅଖଣ୍ଡ ୧୯୭୩, ୭୬, ୭୮, ୮୦, ୮୧, ୮୨) ଉଭୟଙ୍କ ଲୋକସାହିତ୍ୟ ସଂଗ୍ରହ-ପ୍ରବଣତାର କେବଳ ନିଦର୍ଶନ ନୁହନ୍ତି, ଓଡିଆ ମୌଖିକ ସାହିତ୍ୟର ବିପୁଳ ପରିମାଣର ଅବସ୍ଥିତିର ମଧ ସୂଚକ ।

କୁଞ୍ଜବିହାରୀଙ୍କ 'ଓଡିଆ ଲୋକଗୀତ ଓ କାହାଣୀ'(୧୯୫୮) ଥିଲା ଓଡିଆରେ ଲୋକସାହିତ୍ୟ ବିଷୟକ ପ୍ରଥମ ଗବେଷଣା ନିବନ୍ଧ । ଲୋକସାହିତ୍ୟର ଉଚ୍ଚତର ଅଧ୍ୟୟନରେ ଏହି ଗ୍ରନ୍ଥଟି ଏକ ଗୁରୁତ୍ୱପୂର୍ଣ୍ଣ ସଂଯୋଜନ । ଏହା ଶିକ୍ଷିତ ବୁଦ୍ଧିଜୀବୀ ସମାଜରେ ମୌଖିକ ସାହିତ୍ୟକୁ ଲିଖିତ ସାହିତ୍ୟ ଅନୁରୂପ ମର୍ଯ୍ୟାଦା ଦେବାର ପ୍ରୟାସ କରିଥିଲେ । କୁଞ୍ଜବିହାରୀ ବେନଫେଙ୍କ Borrowing theory ଓ ଷ୍ଟିଥ୍ ଥମସନ୍‌ଙ୍କ Motif studyର ପ୍ରୟୋଗ ନିଜ ଅଧ୍ୟୟନରେ ଘଟାଇ ଏହାର ଗୁରୁତ୍ୱକୁ ଅଧିକତର ବଢ଼ାଇଥିଲେ । ତାଙ୍କର 'A study of Orissan Folklore' (1953)' ଏବଂ 'Folklore of Orissa (with Co-author 1979) ଓଡିଶି ଲୋକସଂସ୍କୃତିର ଜାତୀୟସ୍ତରରେ ପ୍ରତିଷ୍ଠା ଦେବାର ପଥ ସୁଗମ କରିପାରିଛି ।

ଓଡିଶାରେ ଦୀର୍ଘକାଳ ପର୍ଯ୍ୟନ୍ତ ଲୋକସାହିତ୍ୟର ପରିଚୟ ଥିଲା 'ସ୍ତ୍ରୀ ଲୋକଙ୍କ କଥା' ବା 'ସ୍ତ୍ରୀ ଲୋକଙ୍କ ପାଠ' । ଏହାକୁ ଓଡିଆ ସାହିତ୍ୟର ଅଧ୍ୟୟନ କ୍ଷେତ୍ରରେ ଯଥୋଚିତ ସ୍ଥାନ ଦେବାକୁ ଓ ଏହାର ଆନ୍ତଃବିଦ୍ୟା ମୂଲ୍ୟାୟନଭିତ୍ତିକ ଗୁରୁତ୍ୱ ନରୂପଣ ପୂର୍ବକ ଏହାର ସ୍ତ୍ରୀ ଲୋକଙ୍କ ପାଠ' ଅପବାଦର ନିରାକରଣ ଦିଗରେ କୁଞ୍ଜବିହାରୀଙ୍କ ପ୍ରଚେଷ୍ଟା ସ୍ମରଣୀୟ । ତାଙ୍କରି ଉଦ୍‌ଯୋଗ ଫଳରେ ବିଶ୍ୱଭାରତୀ ଓଡିଆ

ବିଭାଗରେ ଲୋକସାହିତ୍ୟର ଅଧ୍ୟୟନ ଓ ଅଧ୍ୟାପନା ବିଂଶ ଶତାବ୍ଦୀର ଷଷ୍ଠ ଦଶକରୁ ଚାଲିଆସିଛି । ଓଡିଶାର ଅଧ୍ୟୟନ ଓ ଅଧ୍ୟାପନାରେ ଲୋକସାହିତ୍ୟର ପରିଚୟ କରାଯାଇ ପାରିଥିଲେ ଏହାର ସଂଗ୍ରହ ଓ ସମୀକ୍ଷାର ଗତି ହୋଇ ପାରିଥାନ୍ତା ଅଧିକ ତୀବ୍ର, ଲୋକସାହିତ୍ୟର ଗୁରୁତ୍ୱ ହୋଇ ପାରିଥାନ୍ତା ବହୁ ପୂର୍ବରୁ ସ୍ୱୀକୃତ । ନୃତତ୍ତ୍ୱ, ସମାଜତତ୍ତ୍ୱ, ମନସ୍ତତ୍ତ୍ୱପରି ବିଦ୍ୟାମାନଙ୍କ ସହ ଲୋକସାହିତ୍ୟର ନିବିଡତମ ସଂପୃକ୍ତିକୁ ଅବଜ୍ଞା କରି ଓଡିଆ ଶିକ୍ଷାଜୀବୀମାନେ ଏହାର ଯଥାଯଥ ମୂଲ୍ୟାୟନ ନ କରି ଏକ ଜାତୀୟଲଜ୍ଜାର କାରଣ ହୋଇଛନ୍ତି ।

ଲୋକସାହିତ୍ୟ ଚର୍ଚ୍ଚାର ଏଇ ତୃତୀୟସ୍ତରର ଅପରମେ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଆଦିବାସୀ ଲୋକସାହିତ୍ୟର ଅଣଆଦିବାସୀମାନଙ୍କ ପାଖରେ ଉପସ୍ଥାପନ । ଅବହେଳିତ ବିଭିନ୍ନ ଜନଜାତିର ଲୋକସାହିତ୍ୟର ସଂଗ୍ରହ ଓ ତାର ମୁଦ୍ରଣରେ କଲିକତାସ୍ଥ Indian Folklore Society ର ପ୍ରଥମ ସଭାପତି ଲକ୍ଷ୍ମୀନାରାୟଣ ସାହୁଙ୍କ ଭୂମିକା ଅଗ୍ରଗଣ୍ୟ । ତାଙ୍କର 'ଗାନ୍ଧର୍ବିକା ଶତଦଳ' (୧୯୪୭) କୋରାପୁଟସ୍ଥ କନ୍ଧମାନଙ୍କ ଗୀତର ଏକ ମନୋଜ୍ଞ ସଂକଳନ । ପରେ ପରେ ତାଙ୍କର 'Springs of the Soul' (1951)' ଓ 'Springs of the Hills' (1954)' ସଂକଳନ ଦୁଇଟି ଓଡିଶାର ଆଦିବାସୀଙ୍କ ସ୍ୱରକୁ ଜାତୀୟସ୍ତରରେ ପରିଚିତ କରାଇବାରେ ସାହଯ୍ୟ କରିଛି । ଗୋପୀନାଥ ମହାନ୍ତିଙ୍କ 'କନ୍ଧପରଜାର ସ୍ତୋତ୍ର ଓ ସଂଗୀତ'(୧୯୫୬) ଏହି ପଥର ଅନୁସାରୀ ହୋଇଛି । ପରବର୍ତ୍ତୀ ସମୟରେ ସୀତାକାନ୍ତ ମହାପାତ୍ରଙ୍କ 'ସାରହୁଲଇଜନ୍ମ', 'Staying in no where' , 'The unsing melodies ' Pattern of Dust', ଆଦି ଓଡିଶି ଆଦିବାସୀ ଗୀତର ସଂକଳିତ ରୂପ ।

ଲକ୍ଷ୍ମୀନାରାୟଣଙ୍କ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ମଧ୍ୟ ଲୋକସାହିତ୍ୟର ଅଧ୍ୟୟନ କ୍ଷେତ୍ରରେ ୧୯୪୭କୁ ବିଶେଷ ଗୁରୁତ୍ୱପୂର୍ଣ୍ଣ କରିଦେଇଛି । ଏହା ହେଉଛି ତାଙ୍କର ପୁସ୍ତକ 'ଦଣ୍ଡନାଟ' (୧୯୪୭) - ଓଡିଶାର ଏକ ଜନପ୍ରିୟ ଲୋକନାଟକ । ପୂର୍ବରୁ ନାଟ ସଂଗ୍ରହ ବା ମୁଦ୍ରଣର ପ୍ରଚେଷ୍ଟା ହୋଇନଥିଲା । ଯଦିଓ ପତ୍ରପତ୍ରିକାରେ ଓଡିଶାର ଲୋକନାଟକ ସଂପର୍କରେ କିଛି କିଛି ଆଲୋଚନା ସେତେବେଳକୁ ପ୍ରକାଶିତ ହୋଇ ସାରିଥିଲା । ଲକ୍ଷ୍ମୀନାରାୟଣଙ୍କ ଏହି ପ୍ରଚେଷ୍ଟାର ଅନ୍ୟ ଏକ ଉଜ୍ଜଳ ଫଳ ହେଲା ଡକ୍ଟର କୃଷ୍ଣଚରଣ ବେହେରା ସଂପାଦିତ 'ମୋଗଲତାମସା' (୧୯୬୬) । ଓଡିଶାର ଭଦ୍ରକ ଅଞ୍ଚଳରେ ଅଭିନୀତ ହେଉଥିବା ଓ କ୍ରମଶଃ ବିଲୟପ୍ରାପ୍ତ ହେଉଥିବା ଏ ନାଟର ସଂଗ୍ରହ ଓ ଏକ ଗୁରୁତ୍ୱପୂର୍ଣ୍ଣ ମୁଖବନ୍ଧ ସହ ତାର ପ୍ରକାଶ ଏକ ଅଭିନବ ଦିଗ । ମୋଗଲତାମସାର କେବଳ ଏକ ବୃହତ୍ତର ପାଠକଗୋଷ୍ଠୀ ଜାଣି ପାରଲେ ନାହିଁ, ଏହାର ଯଥା ଯଥ ଆଲୋଚନାର ମଧ୍ୟ ପ୍ରକୃତ ସୁଯୋଗ ସୃଷ୍ଟି କରାଗଲା ।

ଏହି ସମୟରେ ଡଃ. ଗୋପାଳଚନ୍ଦ୍ର ମିଶ୍ର, ଡଃ.ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡଃ.ଭାବଗ୍ରାହୀ ମିଶ୍ର ପ୍ରମୁଖ ଓଡିଆ ଲୋକସାହିତ୍ୟର ବିବିଧ ଦିଗ ସମ୍ପର୍କରେ ବହୁ ପ୍ରବନ୍ଧ ଲେଖିଛନ୍ତି । ଉଭୟ ଇଂରାଜୀ ଓ ଓଡିଆରେ ସେଗୁଡିକ ପ୍ରକାଶିତ । ଗୋପାଳ ଚନ୍ଦ୍ରଙ୍କ Women in Oriya Folk-lore, The Vratakathas of Orissa, ଜାନକୀ ବଲ୍ଲଭଙ୍କ Folk songs and popular sayings of western Orissa, ପ୍ରହେଳିକା, ଓଡିଶର କ୍ରୀଡା ସଙ୍ଗୀତ, ଓଡିଶାରେ ସର୍ପପୂଜା ଓ ନାଗଲ ଚଉଠି ବ୍ରତ,ନରେନ୍ଦ୍ରନାଥଙ୍କ Oriya Ballads & Oral Tradition, Folk elements in Jagamohan Ramayan, ଗାଥା ଓ ଲୋକପରଂପରା, ଓଡିଆ ଲୋକ ଅଧ୍ୟୟନର ଭୂମିକା, ଭାବଗ୍ରାହୀଙ୍କ A note on the elements in mysticism in Oriya

Folk songs, ଆଦି କେତେକ ଉଲ୍ଲେଖନୀୟ ରଚନା । ଜାନକୀ ବଲ୍ଲଭଙ୍କ ସଂପାଦିତ ସୋମନାଥବ୍ରତ କଥା (୧୯୬୮) ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟୟନ । ଲୋକସାହିତ୍ୟ ସଂପର୍କୀୟ ସ୍ୱତନ୍ତ୍ର ପୁସ୍ତକ ଏମାନେ ରଚନା କରିଥିଲେହେଁ ଏହାର ଅନୁଶୀଳନରେ ଏମାନଙ୍କ ଭୂମିକାକୁ ଅସ୍ୱୀକାର କରାଯାଇ ନପରେ । ଏହା ସହିତ ସର୍ବେଶ୍ୱର ଦାସଙ୍କ ପ୍ରବଚନ ଓ ପ୍ରବାଦ ସଂଗ୍ରହ (୧୯୬୧) ଲୋକବାଣୀ ସଂଗ୍ରହ ଓ ବର୍ଗୀକରଣ ଦିଗରେ ବୈଜ୍ଞାନିକ ଦୃଷ୍ଟିର ସଂକେତ ବହନ କରି ପ୍ରକାଶିତ ହୋଇଥିଲା ।

ଲୋକସାହିତ୍ୟ ଚର୍ଚ୍ଚାର ତୃତୀୟ ପର୍ଯ୍ୟାୟ ଏଇ ୧୯୪୭-୮୦ ସମୟକାଳ ମଧ୍ୟରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଦିଗ ଉନ୍ମୋଚିତ, ସେଗୁଡିକ ହେଲା :

କ) ଓଡିଆ ଲୋକଗୀତର ଉଲ୍ଲେଖନୀୟ ସଂଗ୍ରହ ମାନ ପ୍ରକାଶିତ ।

ଖ) ବିବିଧ ଆଦିବାସୀ ଜନଜାତିର ଲୋକସାହିତ୍ୟର ସଂଗ୍ରହ ଓ ଅଧ୍ୟୟନ ।

ଗ) ବିଭିନ୍ନ ଲୋକନାଟକର ପାଣ୍ଡୁଲିପି ସଂଗ୍ରହ ଓ ସେଗୁଡିକ ସଂପର୍କରେ ଅଲୋଚନା ।

ଘ) ଜାତୀୟସ୍ତରରେ ଓଡିଶୀ ଲୋକସାହିତ୍ୟ ଓ ସଂସ୍କୃତିର ପରିଚୟ ଦେବା ନିମନ୍ତେ ଇଂରାଜୀରେ ଗ୍ରନ୍ଥ ଓ ପ୍ରବନ୍ଧ ଆଦିର ରଚନା ।

ଓଡିଶାର ଲୋକସାହିତ୍ୟ ଅଧ୍ୟୟନର ଧାରା ପ୍ରବାହର ଚତୁର୍ଥ ପର୍ଯ୍ୟାୟକୁ ୧୯୮୦ ମସିହାରୁ ଗ୍ରହଣ କରାଯାଇପରେ । ଏହି ସମୟରୁ ଓଡିଶାରେ ଲୋକସାହିତ୍ୟ ଚର୍ଚ୍ଚାର ଏକ ଦୃଷ୍ଟି ଆକର୍ଷଣକାରୀ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ଏଯାବତ୍ ଯେଉଁ ସଂଗ୍ରହ ଓ ସମୀକ୍ଷାର ଧାରା ଚାଲିଆସିଥିଲା ତାହା ମୁଖ୍ୟତଃ ଥିଲା ବ୍ୟକ୍ତି ଭିତ୍ତିକ । ବ୍ୟକ୍ତିବିଶେଷଙ୍କ ଆଗ୍ରହ ଓ ଆନ୍ତରିକତାକୁ ଘେନି ଲୋକସାହିତ୍ୟର ସଂଗ୍ରହ ଓ ସମୀକ୍ଷା ହୋଇ ଆସୁଥିଲା । ୧୯୮୦ ମସିହା ପରଠାରୁ ଓଡିଶାରେ ଲୋକସାହିତ୍ୟ ଅଧ୍ୟୟନରେ ଆନୁଷ୍ଠାନିକ ଉଦ୍‌ଯୋଗକୁ (Institutional efforts) ଅନୁଭବ କରାଗଲା । ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ଓଡିଆ ବିଭାଗ ଥିଲା ଏକମାତ୍ର ବିଭାଗ ଯିଏ ଗତ କେଇ ଦଶକ ଧରି ଲୋକସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନାର ଏକ ପରମ୍ପରା ସୃଷ୍ଟି କରିସାରିଥିଲା । ସେଇ ବିଭାଗର ଉଦ୍‌ଯୋଗ ଫଳରେ ପ୍ରକାଶିତ ହୋଇଥିଲା ଡଃ.ଶ୍ୟାମସୁନ୍ଦର ମହାପାତ୍ରଙ୍କ ସମ୍ପାଦିତ ଲୋକସାହିତ୍ୟ (୧୯୮୨ ପରିବର୍ଦ୍ଧିତ ସଂସ୍କରଣ-୧୯୯୫)'। ଏହାଥିଲା ଲୋକସାହିତ୍ୟ ସମ୍ପର୍କୀୟ ବିଭିନ୍ନ ଆଲୋଚନାର ସମ୍ପାଦିତ ରୂପ । ଏଥିସହିତ ଏହି ବିଭାଗର ବାର୍ଷିକ ଗବେଷଣାମୂକ ପତ୍ରିକା ବିଶ୍ୱଭାରତୀ ଦୀପିକାର ୧୯୮୨ ଓ ୧୯୮୯ ବର୍ଷର ସଂଖ୍ୟା ଲୋକସାହିତ୍ୟ ବିଶେଷାଙ୍କ ଭାବେ ପ୍ରକାଶିତ ହୋଇଥିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗକର୍ତ୍ତୃକ ସ୍ୱୀକୃତ D.S.A. ଯୋଜନା ମାଧ୍ୟମରେ ପଶ୍ଚିମ ଓଡିଶାର ଲୋକସାହିତ୍ୟ ସଂଗ୍ରହ ଓ ଅଧ୍ୟୟନ କରୁଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଗଠିତ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର୍ତ୍ତୃକ ଆର୍ଥିକ ସହଯୋଗୀପ୍ରାପ୍ତ, 'Centre for Regional Studies' (୧୯୮୯) ଦକ୍ଷିଣ ଓଡିଶାର ସାହିତ୍ୟ, ସଂସ୍କୃତି, କଳାର ସଂରକ୍ଷଣ ଓ ଅଧ୍ୟୟନ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶକତ୍ୱରେ କରୁଛନ୍ତି । ଲୋକସାହିତ୍ୟର ସଂଗ୍ରହ ବ୍ୟତୀତ ଲୋକାଚାର 'ଉଷାକୋଠି'ର ସଂଗ୍ରହ , ନାନା ଲୋକକ୍ରୀଡା ସାମଗ୍ରୀର ସଂଗ୍ରହ, ଦଣ୍ଡନାଟର ରେକର୍ଡିଂ ଆଦି ଏ ଅନୁଷ୍ଠାନ କରିଛି । ଭୁବନେଶ୍ୱରସ୍ଥ 'Akademi of Tribal Dialects and Culture' ଓଡିଶାସ୍ଥ ବିଭିନ୍ନ ଆଦିବାସୀ ଜନଗୋଷ୍ଠୀର ଭାଷା, ମୌଖିକ ସାହିତ୍ୟ ଆଦି ସଂଗ୍ରହରେ ନିଷ୍ଠାପରଭାବେ କାର୍ଯ୍ୟରତ । ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ଦିଗ୍‌ଦର୍ଶନରେ ଏହି ସଂଗୃହୀତ ତଥ୍ୟ ଅନ୍ୟୁନ ପଚିଶଟି ଗ୍ରନ୍ଥରେ ପ୍ରକାଶିତ ହୋଇପାରିଛି ।

ନିକଟ ଅତୀତରେ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଲୋକ ସାହିତ୍ୟ ଏକ ବିଶେଷ ପତ୍ରଭାବେ ଓଡିଆ ପାଠ୍ୟକ୍ରମରେ ମାନ୍ୟତା ପ୍ରଦାନ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡିଆ ଅନର୍ସରେ ଲୋକସାହିତ୍ୟକୁ ଏକ ପୂର୍ଣ୍ଣାଙ୍ଗ ପେପର ଭାବେ ସ୍ୱୀକୃତି ଦେଇଛନ୍ତି । ଏପରି ଆନୁଷ୍ଠାନିକ ଉଦ୍‌ଯୋଗ ଫଳରେ ଲୋକସାହିତ୍ୟ ଅନୁଶୀଳନୀ ଏକ ଉତ୍ତମ ବାତାବରଣ ସୃଷ୍ଟି ହୋଇପାରିଛି ।

ଆନୁଷ୍ଠାନିକ ଉଦ୍‌ଯୋଗ ବ୍ୟତୀତ ବ୍ୟକ୍ତିଗତ ଉଦ୍‌ଯୋଗ ମଧ୍ୟ ସମାନ୍ତରାଳଭାବେ ଗତି କରୁଛି ଲୋକସାହିତ୍ୟର ଅନୁଶୀଳନର କ୍ଷେତ୍ରରେ । ୧୯୮୦ ପରବର୍ତ୍ତୀ ସମୟରେ ଯେଉଁମାନେ ଏ ଦିଗରେ ଯତ୍ନଶୀଳ ସେମାନେ ଐତିହାସିକ ଆଲୋଚନା ଅପେକ୍ଷା ତାତ୍ତ୍ୱିକ ଆଲୋଚନାକୁ ଗୁରୁତ୍ୱ ଦେଇଛନ୍ତି । ଲୋକସାହିତ୍ୟର ଆନ୍ତଃ ବିଦ୍ୟା ସଂପୃକ୍ତିକୁ ନେଇ ଚର୍ଚ୍ଚା କରୁଛନ୍ତି । ଅନାଲୋଚିତ ଦିଗଗୁଡିକ ସଂପର୍କରେ ଆଲୋଚନା ଚଳାଇ ରଖିଛନ୍ତି । ଡଃ. ପ୍ରସନ୍ନ କୁମାର ମିଶ୍ରଙ୍କ, 'ପୂର୍ବ ଭାରତର ହିନ୍ଦୁ ଲୋକମିଥ୍ : ଓଡିଶା' (୧୯୮୧) ଲୋକସାଧାରଣଙ୍କ ନାନ୍ଦନିକ ଦୃଷ୍ଟି ଓ ସେମାନଙ୍କର କଳ୍ପନା ଶକ୍ତିର ଅନ୍ତରାଳରେ କ୍ରିୟାରତ ନୃତାତ୍ତ୍ୱିକ ସତ୍ୟଚାର ଉନ୍ମୋଚନ ଅଭିମୁଖୀ ହୋଇଥିବାବେଳେ 'ଓଡିଶାର କିମ୍ବଦନ୍ତୀ' (୧୯୮୧) ବିଲୁପ୍ତ ବହୁ ଧରଣର କିମ୍ବଦନ୍ତୀ ସଂଗୃହୀତ ରୂପ ।

ଲୋକନାଟକର ବିଶେଷ ଚର୍ଚ୍ଚା ଏହି ସମୟରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଲକ୍ଷଣ । ଧୀରେନଦାସଙ୍କ ଦଣ୍ଡନାଟ (୧୯୮୨), ଭାରତଲୀଳା ବା ଦ୍ୱାରୀନାଟ (୧୯୮୨) , ଡଃ. ହେମନ୍ତ କୁମାର ଦାସଙ୍କ 'ଓଡିଆ ଲୋକନାଟକ' (୧୯୮୩), ଡଃ କୃଷ୍ଣ ଚରଣ ବେହେରାଙ୍କ 'ଓଡିଶାର ଯାତ୍ରା ଓ ପାରମ୍ପରିକ ଲୋକପ୍ରିୟ ନାଟ୍ୟଧାରା' (୧୯୯୭) ଆଦି ତା'ର ନମୁନା । ଧୀରେନ ଦାସ ଏକକ ନାଟ ସମ୍ପର୍କରେ ଗ୍ରନ୍ଥ ରଚନା କରିଥିବା ବେଳେ ହେମନ୍ତ ଦାସ ଓ କୃଷ୍ଣ ଚରଣ ବେହେରା ଓଡିଶାରେ ପ୍ରଚଳିତ ଲୋକନାଟକ ଗୁଡିକର ଆଲୋଚନା କରିଛନ୍ତି ଡଃ ବେହେରା 'ଲୋକପ୍ରିୟ ନାଟ୍ୟଧାରା' ଭାବେ ଭାଲୁକା, ଦଣ୍ଡନାଟ, ରାମଲୀଳା, କୃଷ୍ଣ ଲୀଳା, ଭାରତ ଲୀଳା, ଘୋଡାନାଚ, ପାଲା, ଦାସକାଠିଆ, ଗୋଟିପୁଅ ନାଚ, ଚଇତି ଘୋଡା, କଣ୍ଢେଇ ନାଟ, ଡାଲଖାଇନାଚ, ଛଉନାଚ, ଦେଶିଆନାଟ, ସୁଆଙ୍ଗ-ଗୀତାଭିନୟ-ଗୀତିନାଟ୍ୟ ଆଦିର ଆଲୋଚନା କରିଛନ୍ତି । 'ଲୋକପ୍ରିୟ ନାଟ୍ୟଧାରା' କହିବାର ତାତ୍ପର୍ଯ୍ୟ ସେ ଏପରି ଦିଅନ୍ତି : 'ଲୋକପ୍ରିୟ ନାଟକ ଲୋକନାଟକର ଶୈଳୀ' ଘେନି ରଚିତ ହୋଇପାରେ । ଏହା ଲିଖିତ ସାହିତ୍ୟ ଏବଂ ଏହାର ରଚୟିତା ଅଜ୍ଞାତ ନୁହନ୍ତି । ଏପ୍ରକାର ନାଟକର ରଚନା ଓ ଅଭିନୟ ମୂଳରେ ପାଠକ ତଥା ଦର୍ଶକ ସମାଜର ଚିତ୍ତବିନୋଦନର ସଚେତନ ପ୍ରୟାସ ମଧ୍ୟ ନିହିତ ଥାଏ । ପୁଣି ଲୋକପ୍ରିୟ ନାଟକ ବିଧିବଦ୍ଧ ଭାବରେ ଏକ ପୋଷାକୀରୂପ ବା ଶାସ୍ତ୍ରୀୟତା ଲାଭ କରିନଥାଏ । ଏହି ଦୃଷ୍ଟିରୁ ବିଚାରକଲେ, ଆମର ବିଭିନ୍ନ ପ୍ରାଚୀନ ପାରମ୍ପରିକ ନାଟ୍ୟଧାରା ଯାହା ସବୁ ଏବେବି ରାଜ୍ୟ ମଧ୍ୟରେ ଊଣା ଅଧିକେ ପ୍ରଚଳିତ ଅଛି - ଲୋକପ୍ରିୟ ନାଟକ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ।'(ପୃ-୭)

ବ୍ୟକ୍ତିଗତ ପ୍ରଚେଷ୍ଟାରେ ଓଡିଆ ଲୋକସାହିତ୍ୟ ର ଅନୁଶୀଳନରେ ଲିପ୍ତଥିବା ଅନେକ ଆଗ୍ରହୀଙ୍କ ମଧ୍ୟରେ ଶ୍ୟାମସୁନ୍ଦର ମହାପାତ୍ର ଅନ୍ୟତମ । A study of Oriya Folk-Ballads (୧୯୮୮), ଲୋକସାହିତ୍ୟ ତତ୍ତ୍ୱ (୧୯୯୫) ତାଙ୍କର ଦୁଇଟି ପରିଚିତ ଗ୍ରନ୍ଥ । ପ୍ରଥମଟି ଲୋକଗାଥାର ପ୍ରକାରଭେଦ, ଲକ୍ଷଣ, ସଂଗଠନାତ୍ମକ ବୈଶିଷ୍ଟ୍ୟ ଆଦିର ଆଲୋଚନା ହୋଇଥିବା ବେଳେ ଅପରଟି ଲୋକଗୀତି, ଲୋକକାହାଣୀ, ଲୋକନାଟକ ଆଦିର ସାମାଜିକ ଓ ତାତ୍ତ୍ୱିକ ଆଲୋଚନାକୁ ଧାରଣ କରିଛି ।

ଡଃ. ମହେନ୍ଦ୍ର କୁମାର ମିଶ୍ରଙ୍କ ପଶ୍ଚିମ ଓଡିଶାର ଲୋକସଂସ୍କୃତି (୧୯୯୦), ଲୋକସଂସ୍କୃତି ବିତ୍ ନୀଳକଣ୍ଠ (୧୯୯୦), ପଶ୍ଚିମ ଓଡିଶାର ଆଦିବାସୀ ଲୋକସାହିତ୍ୟ(୧୯୯୨), କଳାହାଣ୍ଡିର ଲୋକସଂସ୍କୃତି (୧୯୯୬), ଲୋକସଂସ୍କୃତି ପରିକ୍ରମା(୧୯୯୭) ପ୍ରମୁଖ ତାଙ୍କର ଲୋକସଂସ୍କୃତି ପ୍ରତି ଗଭୀର ନିଷ୍ଠା ଓ ଉଦ୍ୟମର ଫଳ । ଲୋକସାହିତ୍ୟ ଅପେକ୍ଷା ଲୋକସଂସ୍କୃତିର ଆନ୍ତଃବିଦ୍ୟା ସମନ୍ୱିତ ଚର୍ଚ୍ଚାରେ ସେ ବିଶେଷ ଆଗ୍ରହୀ । ଡଃ କଇଳାଶ ପଟ୍ଟନାୟକଙ୍କ 'ଲୋକସାହିତ୍ୟ ଚର୍ଚ୍ଚା' (୧୯୮୯), ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ-୧୯୯୬) ଲୋକଗୀତ, ଲୋକକାହାଣୀ, ଲୋକନାଟକ, ଲୋକବାଣୀର ତାତ୍ତ୍ୱିକ ଦିଗ ଭିତ୍ତିକ ଆଲୋଚନା ଗ୍ରନ୍ଥ । ଓଡିଶୀ ଲୋକସଂସ୍କୃତି ଚର୍ଚ୍ଚା ଶତାଧିକ ପୃଷ୍ଠାର ଏକ Bibliography ଏହି ଗ୍ରନ୍ଥର ପରିଶିଷ୍ଟଭାବେ ସଂଯୁକ୍ତ । ଡଃ. ନିମାଇଁ ଚରଣ ପଣ୍ଡାଙ୍କ 'ପଶ୍ଚିମ ଓଡିଶାର ଲୋକସାହିତ୍ୟ' (୧୯୯୬) ପଶ୍ଚିମ ଓଡିଶାର ଲୌକିକ ସାହିତ୍ୟର ଏକ ସାମାଜିକ ଆଲୋଚନା ।

ଏତଦ୍‌ଭିନ୍ନ ଯେଉଁ ଲୋକସାହିତ୍ୟ ଆଗ୍ରହୀ ବ୍ୟକ୍ତିବିଶେଷଙ୍କ ଅଧ୍ୟୟନ ଏଯାବତ୍ ପୁସ୍ତକରୂପରେ ପ୍ରକାଶିତ ହୋଇନାହିଁ ମାତ୍ର ପତ୍ରପତ୍ରିକାରେ ପ୍ରକାଶିତ, ସେମାନେ ହେଲେ ଡଃ. କୁମୁଦ ରଞ୍ଜନ ପାଣିଗ୍ରାହୀ, ଡଃ. ମଣୀନ୍ଦ୍ର ମହାନ୍ତି, ଶ୍ରୀ ଚିତ୍ରସେନ ପଶାୟତ ଇତ୍ୟାଦି । ସମକାଳର ଲୋକସଂସ୍କୃତି ଓ ଲୋକସାହିତ୍ୟର ନାନା ଦିଗକୁ ସ୍ପର୍ଶକରି ଆଲୋଚନା ଲେଖିବାରେ ଏମାନେ ଅନୁବ୍ରତୀ । ଓଡିଶାର ଲୋକସାହିତ୍ୟ ଚର୍ଚ୍ଚାଦିଗରେ ଏ ସକଳ ବ୍ୟକ୍ତିବିଶେଷଙ୍କ ଏକକ ପ୍ରୟାସ ଏକ ପୁଷ୍କଳ ବାତାବରଣ ସୃଷ୍ଟି କରିପାରିଛି ।

ଓଡିଶାରେ ଦିନେ 'ସ୍ତ୍ରୀ ଲୋକଙ୍କ ପାଠ' ଭବେ ଅପଖ୍ୟାତ ଲୋକସାହିତ୍ୟ ପ୍ରତି ଶିକ୍ଷିତ ବୁଦ୍ଧିଜୀବୀଙ୍କ ସ୍ୱୀକୃତିର ନମୁନାରୂପେ ଓଡିଶାରେ ଓ ଓଡିଶା ବାହାରେ ଓଡିଶି ଲୋକସାହିତ୍ୟ ସମ୍ପର୍କୀୟ ବିଭିନ୍ନ ପାଠଚକ୍ରର ଆୟୋଜନକୁ ସ୍ମରଣ କରାଯାଇପାରେ । କଟକସ୍ଥିତ Institute of Oriental & Orissan Studies ୧୯୭୮ ମସିହାରେ ଲୋକସଂସ୍କୃତି ଭିତ୍ତିକ ଏକ ଆନ୍ତଃରାଷ୍ଟ୍ରୀୟ ପାଠଚକ୍ରର ଆୟୋଜନ କରିଥିଲେ । ସମଗ୍ର ବିଶ୍ୱରୁ ଅନ୍ୟୂନ ୪୦୦ ଲୋକସଂସ୍କୃତିବିତ୍ ଏଥିରେ ଯୋଗଦାନ କରିଥିଲେ । ଏଥିରେ ପଠିତ ପ୍ରବନ୍ଧଗୁଡିକ Folk - Culture ଶୀର୍ଷକରେ ପାଞ୍ଚଖଣ୍ଡରେ ପ୍ରକାଶ ପାଇଛି । ବିଶ୍ୱଭାରତୀ ଓଡିଆ ବିଭାଗ ଆନୁକୂଲ୍ୟରେ ଲୋକସଂସ୍କୃତି ଓ ସାହିତ୍ୟକୁ ଭିତ୍ତିକରି ଦୁଇଥର ୧୯୮୨ ଓ ୧୯୮୯ ମସିହାରେ ଜାତୀୟ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ୧୯୮୯ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ କର୍ତ୍ତୃକ ଲୋକସଂସ୍କୃତି ଭିତ୍ତିକ ଜାତୀୟ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ୧୯୮୭ ମସିହାରେ ଭୁବନେଶ୍ୱରରେ Folklore Akademi ର ଗଠନ ହୋଇଥିଲା ଓ ୧୯୯୨ ମସିହାରେ ଏହି ଅନୁଷ୍ଠାନ ଲୋକସଂସ୍କୃତି କୈନ୍ଦ୍ରିକ ଏକ ଜାତୀୟ ଆଲୋଚନାଚକ୍ରର ଆୟୋଜନ କରିବା ସହ ୧୯୯୪ ମସିହାରେ ରାଜ୍ୟସ୍ତରୀୟ କର୍ମଶାଳାର ଆୟୋଜନ କରିଥିଲେ । ଭୁବନେଶ୍ୱରସ୍ଥ କେଦାରନାଥ ଗବେଷଣା ପ୍ରତିଷ୍ଠାନ ୧୯୯୬ ମସିହାରେ ଏକ ରାଜ୍ୟସ୍ତରୀୟ ପାଠଚକ୍ରର ଆୟାଜନ କରିଥିଲେ । ଓଡିଶା ସାହିତ୍ୟ ଏକାଡେମି ମଧ୍ୟ ମହୀଶୂରସ୍ଥ C.I.I.L ସଂସ୍ଥାର ସହଯୋଗିତାକ୍ରମେ ଏକ ଜାତୀୟ କର୍ମଶାଳାର ଆୟୋଜନ ଭୁବନେଶ୍ୱରରେ ନଭେମ୍ବର ୧୯୯୬ରେ କରିଥିଲେ । ଏଗୁଡିକ ଦ୍ୱାରା ଲୋକସଂସ୍କୃତି ଅଧ୍ୟୟନର ଏକ ବୌଦ୍ଧିକ ପରିମଣ୍ଡଳ ସୃଷ୍ଟି ହୋଇପାରିଛି ।

୧୯୮୦ ପରବର୍ତ୍ତୀ ସମୟରେ ଲୋକସାହିତ୍ୟ ଓ ଲୋକସଂସ୍କୃତି ଭିତ୍ତିକ ବହୁ ଗବେଷଣା କାର୍ଯ୍ୟ ପରିଚାଳିତ ହେଉଛି ତଥା ଅନେକ ଗବେଷଣା-ନିବନ୍ଧ ପ୍ରକାଶିତ ହୋଇପାରିଛି । ଅନେକ ଗବେଷକ ଲୋକସାହିତ୍ୟକୁ ପୂର୍ଣ୍ଣାଙ୍ଗରୂପେ ଆଶ୍ରୟ କରି ଗବେଷଣା କରିଥିବା ବେଳେ ଅନେକେ ଏହାକୁ ଲିଖିତ ସାହିତ୍ୟ

ଅନୁଶୀଳନରେ କିମ୍ବା ସ୍ଥାନ ନାମ (Toponomy) ଅନୁଶୀଳନରେ ଉପାଦାନ ଭାବେ ପ୍ରୟୋଗ କରି ଗବେଷଣା କରିଛନ୍ତି । ଓଡିଶା ଓ ଓଡିଶା ବାହାରର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଲୋକସାହିତ୍ୟ ଭିତ୍ତିକ ଗବେଷଣା ପ୍ରକଳ୍ପଗୁଡିକ ପରିଚାଳିତ ହେବା ଏହାପ୍ରତି ଜନଦୃଷ୍ଟିଭଙ୍ଗୀ ପରିବର୍ତ୍ତନର ଅପରତମ ନିଦର୍ଶନ ।

ଓଡିଶୀ ଲୋକସାହିତ୍ୟର ଏଇ ତୃତୀୟ ପର୍ଯ୍ୟାୟର ଗତିଧାରାରେ ଯେଉଁ ବୈଶିଷ୍ଟ୍ୟ ଲକ୍ଷଣୀୟ, ତାହା :

କ) ଲୋକସାହିତ୍ୟ ଓ ଲୋକସଂସ୍କୃତିର ଅନୁଶୀଳନରେ ଆନୁଷ୍ଠାନିକ ଉଦ୍‌ଯୋଗ ଓ ସ୍ୱୀକୃତି ।

ଖ) ତାତ୍ତ୍ୱିକ ଆଲୋଚନାରେ ଗୁରୁତ୍ୱ ।

ଗ) ଲୋକସାଂସ୍କୃତିକ ଗବେଷଣାର ଦ୍ରୁତ ପ୍ରସାର ଓ ଏହି ବିଷୟକ ଗ୍ରନ୍ଥର ଅଧିକ ମୁଦ୍ରଣ ।

ସମକାଳର ଲୋକସାହିତ୍ୟ ଅଧ୍ୟୟନ ଏଇମିତି ପର୍ଯ୍ୟାୟରେ ରହିଚି, ଯେଉଁଠି ନୂଆକିଛି କରିବାର ରହିଚି ପ୍ରକୃଷ୍ଟ ବାତାବରଣ , ମୌଳିକ ଚିନ୍ତାଧାରା ପ୍ରତି ଅଛି ସମ୍ମାନ । ଲୋକସାହିତ୍ୟ ଅଧ୍ୟୟନ ଅଧିକତର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ନିଷ୍ଠାପର ଏକାଗ୍ରତା ତଥା ସଂଗ୍ରହଗତ ଆନ୍ତରିକତା ବଳରେ ଯେଉଁ ଭୂମି ପ୍ରସ୍ତୁତ କରିପାରିଛି ତାହା ଆଗାମୀ ଉଜ୍ଜ୍ୱଳ ସମ୍ଭାବନାମୟ ଦିନଗୁଡିକର ପ୍ରସ୍ତୁତି ମାତ୍ର ।

*ଓଡିଆ ବିଭାଗ*
*ଶାନ୍ତି ନିକେତନ - ୭୩୧୨୩୫*

# ଓଡିଆ ଅଭିଧାନ : ପ୍ରସ୍ତୁତି ଓ ପରିଚିତି

ରାଜେନ୍ଦ୍ର ଷଡ଼ଙ୍ଗୀ

୦.୧.୧. ଓଡିଆ ଅଭିଧାନର ସୃଷ୍ଟି ବେଶୀଦିନର ନୁହେଁ । ଦୁଇଶହ ବର୍ଷତଳର । ପୁଣି ଆଧୁନିକ ଓଡିଆ ଅଭିଧାନ ଊନବିଂଶ ଶତକର ପ୍ରଥମାର୍ଦ୍ଧରେ । କିନ୍ତୁ ଖାଣ୍ଟି ଓଡିଆ ଅଭିଧାନର ସୃଷ୍ଟି ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ।

୦.୧.୨. ଆମ ପ୍ରାଚୀନ ଓଡିଆ ସାହିତ୍ୟରେ ଅଭିଧାନର ପ୍ରଚଳନ ନଥିଲା କହିଲେ ଚଳେ । କବିଏ ଯଦିଓ ସଂସ୍କୃତ ଭାଷାଭିଜ୍ଞ ଥିଲେ ତଥାପି ଆପଣା ପରିସରରୁ ଶବ୍ଦ ସଂଗ୍ରହ କରି ସେମାନଙ୍କ ରଚନା ସବୁ ଲେଖିଛନ୍ତି । ଲୋକମୁଖର ଭାଷାହିଁ ସେମାନଙ୍କ ରଚନାର ମୁଖ୍ୟ ଆଧାର । ତା'ର ଆଲୋଚନାବି ନଥିଲା । ଯାହାକିଛି ପୁରାଣ, କାବ୍ୟାଦି ରଚିତ ହେଉଥିଲା, ଅନ୍ୟ ମୁଖରୁ ଗୀତ ହେଉଥିବା ସମୟରେ ତା'ର ରସ ଓ ଭାବକୁ ଗ୍ରହଣ କରିନେଉଥିଲେ ଜନତା । ଶବ୍ଦ ଓ ଭାଷା ସଂପର୍କରେ ଆଲୋଚନାର ଅବସର ବା କାହିଁ ?

୦.୧.୩. ପରବର୍ତ୍ତୀ କାଳରେ ମଧ୍ୟଯୁଗୀୟ କାବ୍ୟ କବିତା ରଚନାରେ ଶବ୍ଦମାନଙ୍କର ଆବଶ୍ୟକତା ବେଶୀ ପଡିଲା । କବିଏ ନିଜ ପରିସରର ଶବ୍ଦ ମଧ୍ୟରେ କାବ୍ୟ ଗଢ଼ିବା କଷ୍ଟକର, ଏହା ଅନୁଭବ କରିଛନ୍ତି ନିଶ୍ଚୟ । ପୁଣି ସଂସ୍କୃତ କାବ୍ୟାଦର୍ଶକୁ ନେଇ ରଚିତ ରଚନା ସମ୍ଭାର, ସଂସ୍କୃତ ଶବ୍ଦ ବିଭବକୁ ମଧ୍ୟ ଆପଣେଇ ନେଇଥିଲା । ସଂସ୍କୃତ ଅଭିଧାନ ମୁଖସ୍ତ କରିବା ଏକ ରକମ ବାଧ୍ୟତା ହୋଇପଡ଼ିଥିଲା ।

୦.୧.୪. ସଂସ୍କୃତ କୋଷ ବା ଅଭିଧାନ ଗ୍ରନ୍ଥଥିଲା - ୨ପ୍ରକାରର । ଗୋଟିଏ ଏକାର୍ଥ ବୋଧକ ଓ ଅନ୍ୟଟି ନାନାର୍ଥ ବୋଧକ । ଉଭୟ ଅଭିଧାନର ପ୍ରଚଳନ ରହିଥିଲା ଆମ ପଣ୍ଡିତସମାଜରେ । ସଭିଏଁ ସିଧାସଳଖ ସଂସ୍କୃତ ଅଭିଧାନ ମାନଙ୍କୁ ଘୋଷି ମନେ ରଖୁଥିଲେ । ଏବଂ ଆବଶ୍ୟକ ଅନୁସାରେ ନିଜର କାବ୍ୟକବିତାଦିରେ ବ୍ୟବହାର କରୁଥିଲେ । କେହି ଓଡିଆରେ ଅଭିଧାନଟିଏ ପ୍ରସ୍ତୁତ କରିବାର ଆବଶ୍ୟକତା ଅନୁଭବ କରିନଥିଲେ । ଏ କ୍ଷେତ୍ରରେ ପ୍ରଥମକରି ଦେଖାଇଦେଲେ ଉପେନ୍ଦ୍ରଭଂଜ ଓଡିଆରେ ଅଭିଧାନଟିଏ ପ୍ରସ୍ତୁତ କରି ।

୦.୧.୫. ଇଂରେଜ ମାନଙ୍କର ଓଡିଶା ଅଧିକାର ପରେ ଓଡିଆ ଅଭିଧାନର ପ୍ରସ୍ତୁତି ପାଇଁ ଉପକ୍ରମ ହେଲା । ତାହାର ଦାୟିତ୍ୱ ପୁଣି ନେଲେ ଅଣଓଡିଆ ମାନେ । ପରେ ପରେ ଶିକ୍ଷାର ବିକାଶ ଫଳରେ ବହୁ ଓଡିଆ ଏ ଦିଗରେ ହାତ ଦେଇଛନ୍ତି । ଯା'ର ଆଲୋଚନା ଏଇ ପ୍ରବନ୍ଧରେ ହୋଇଛି ।

୦.୧.୬. ଓଡିଆ ଭାଷାରେ ରଚିତ ଅଭିଧାନକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ ।

କ) ସାଧାରଣ ଅଭିଧାନ - (Dictionary of Classified Vocabulary)
ଖ) ସ୍ୱତନ୍ତ୍ର ଅଭିଧାନ - (Special Dictionary)

୦.୧.୬. ଓଡିଆ ଭାଷାରେ ସ୍ୱତନ୍ତ୍ର ଅଭିଧାନ ରଚିତ ହୋଇଛି । ତାହା କିନ୍ତୁ ପ୍ରଚୁର ନୁହେଁ । ତା'ର ଆଲୋଚନା ସ୍ୱତନ୍ତ୍ର ଭାବରେ କରାଯାଇପାରେ । ପ୍ରସ୍ତୁତ ଆଲୋଚନାଟି ସାଧାରଣ ଅଭିଧାନ ଆଧାରିତ । ଆମ ଭାଷାରେ ଛୋଟ ବଡ ଗୁଡିଏ ଅଭିଧାନ ଲେଖାଯାଇଛି । ସମୟର ଆବଶ୍ୟକତାକୁ ନେଇ ଅନେକେ ରଚିତ । ହୁଏତ ବର୍ତ୍ତମାନ ପରିସ୍ଥିତିରେ କେତେକଙ୍କର ମୂଲ୍ୟ ନାହିଁ । କିନ୍ତୁ ଓଡିଆ ଅଭିଧାନର ବିକାଶ - କ୍ରମରେ ସେମାନଙ୍କର ଅବଦାନ ରହିଛି ନିଶ୍ଚୟ ।

୦.୨.୧. ଓଡିଆ ଭାଷାର ପ୍ରଥମ ଅଭିଧାନ, ଗୀତାଭିଧାନ । କବି ଉପେନ୍ଦ୍ରଭଂଜ ବିରଚିତ । ଓଡିଆ କାବ୍ୟଜଗତରେ ଆବଶ୍ୟକ ଶବ୍ଦସମ୍ଭାରର ପରିପୂର୍ତ୍ତି ପାଇଁ ଏବଂ କାବ୍ୟପାଠକସମାଜର ଶବ୍ଦକଷ୍ଟ ଦୂରୀକରଣ ନିମିତ୍ତ ଉପେନ୍ଦ୍ରଙ୍କର ଏ ପ୍ରୟାସ । ପ୍ରାଚୀନ କୋଷଗ୍ରନ୍ଥ ସମୂହର ଅନୁକରଣରେ ଏହାର ପ୍ରସ୍ତୁତି । ଗୀତରେ ଅଭିଧାନ ପରିକଳ୍ପିତ । ବଙ୍ଗଳାଶ୍ରୀ ରାଗରେ ରଚିତ ।

ଗୀତ ଅଭିଧାନ ହୋଇ ସାବଧାନ
ଶୁଣ ସୁଜନେ ସନ୍ତୋଷେ,
ଅମର ତ୍ରିକାଣ୍ଡ ଯାଦବ ଶାଶ୍ୱତ
ମେଦିନୀ ବିଶ୍ୱପ୍ରକାଶେ । (୧ମ ପଦ, ଗୀତାଭିଧାନ)

୦.୨.୨. ଗୀତାଭିଧାନର ପରିକଳ୍ପନା ପରଂପରା ଭିତ୍ତିକ । ଅମର କୋଷର ନାନାର୍ଥ ବର୍ଗଧାରାରେ ଏହା ପ୍ରସ୍ତୁତ । ଅକ୍ଷରକୁ ଶବ୍ଦର ପ୍ରାନ୍ତରେ ରଖି ବର୍ଗ ରୂପରେ ପ୍ରକାଶିତ ।

କ ଠାରୁ କ୍ଷ ଯାଏ ପ୍ରାନ୍ତାକ୍ଷର ଘେନି
ବର୍ଗ ବର୍ଗଏ ହୋଇବ,
ଏକାଶବଦକୁ ନାନାର୍ଥେ ବୁଝାଇ
କବିଙ୍କୁ ପ୍ରମୋଦ ଦେବ । (୩ୟ ପଦ, ଗୀତାଭିଧାନ)

ଉଦ୍ଦେଶ୍ୟ ସ୍ପଷ୍ଟ । ଏକାଶବଦର ନାନାର୍ଥ ପ୍ରକାଶକ । ପୁଣି ଅପ୍ରଚୁର ଶବ୍ଦ ମାନଙ୍କୁ ଛାଡି ପ୍ରଚୁର ଶବ୍ଦ ମାନଙ୍କ ବିବରଣ ଏଥିରେ ପ୍ରଦତ୍ତ ।

୦.୨.୩. ଯଦିଓ ଅମରକୋଷର ଧାରାରେ ଲିଖିତ, ତଥାପି ଅମରକୋଷର ପ୍ରାନ୍ତାକ୍ଷର ଓ ଗୀତାଭିଧାନର ପ୍ରାନ୍ତାକ୍ଷର ଶବ୍ଦ ସମୂହ ବର୍ଗାନୁସାରେ ସମାନ ନୁହେଁ । ଉଦାହରଣ ସ୍ୱରୂପ ଅମରକୋଷର 'ଖାନ୍ତଃ'ବର୍ଗ ଓ ଗୀତାଭିଧାନର 'ଖାନ୍ତ' ବର୍ଗର ତୁଳନା ନିଆଯାଉ । ଅମରକୋଷରେ ୬ଟି ଶବ୍ଦର ଅର୍ଥଦିଆଯାଇଛି, କିନ୍ତୁ ଗୀତାଭିଧାନରେ ଏହି ୬ଟିଶବ୍ଦ ସହିତ ଉପେନ୍ଦ୍ର ଆଉ ୧୨ଟି ଶବ୍ଦର ଅର୍ଥ ସହ ମୋଟ ୧୮ଟି ଶବ୍ଦ ଅର୍ଥ ପ୍ରକାଶ କରିଛନ୍ତି । ଯେପରି

| ଅମରକୋଷ | ଗୀତାଭିଧାନ |
|---|---|
| ମୟୂଖ | ଏହି ଶବ୍ଦ ମାନଙ୍କ ସହିତ |
| | ଶିଖୀ |
| ଶିଳୀମୁଖ | ନଖ,ନଖୀ |
| ଶଙ୍ଖ | ମୁଖ, ବିମୁଖ |

| | |
|---|---|
| ଖ | ଲେଖ |
| ଶିଖା | ଶାଖା, ବିଶାଖା |
| | ଅଗ୍ନିମୁଖ |
| | ଇନ୍ଦୁଲେଖା |
| | ବ୍ୟାଘ୍ରନଖ |
| | ସର୍ବୋତମୁଖ |

୦.୨.୪. ଉପେନ୍ଦ୍ର କେଉଁ କେଉଁ ବର୍ଗରେ ଅମରକୋଷ ପ୍ରଦତ୍ତ ଶବ୍ଦମାନଙ୍କୁ ମଧ ପରିତ୍ୟାଗ କରିଛନ୍ତି । ଯେପରି ଛ'ବର୍ଗରେ ।

| ଅମର କୋଷ - | ଗୀତାଭିଧାନ |
|---|---|
| ଅଚ୍ଛ | ସଚ୍ଛ |
| ଗୁଚ୍ଛ | ଗୁଚ୍ଛ |
| କଚ୍ଛ | ମ୍ଲେଚ୍ଛ |

ଏଠାରେ 'କଚ୍ଛ' ବଦଳରେ 'ମ୍ଲେଚ୍ଛ' ଶବ୍ଦକୁ ନେଇଛନ୍ତି, ପୁଣି ଉପେନ୍ଦ୍ର ସଂସ୍କୃତ ଶବ୍ଦମାନଙ୍କ ବଦଳରେ ପ୍ରଚଳିତ ଓଡିଆ ଶବ୍ଦ ବ୍ୟବହାର କରିଛନ୍ତି । ଯେପରି ସଂ.ଅଚ୍ଛ-ସ୍ୱଚ୍ଛ (ଗୀ:ଭି) ।

୦.୨.୫. ଉପେନ୍ଦ୍ର ନିଜ ସମୟର ପ୍ରଚଳିତ ବହୁ ଗ୍ରାମ୍ୟ ଶବ୍ଦ ଏଥିରେ ସ୍ଥାନିତ କରିଛନ୍ତି । ବହୁ ପୌରାଣିକ ଚରିତ୍ର, ସ୍ଥାନ ଓ ବସ୍ତୁ ମାନଙ୍କର ଅର୍ଥ ପ୍ରଦାନ କରିଛନ୍ତି ।

୦.୨.୬. ସର୍ବମୋଟ ୯୭୭ଟି ପଦରେ ୩୨୪୨ଟି ନାନାର୍ଥବୋଧକ ଶବ୍ଦ ଗୀତାଭିଧାନରେ ରହିଛି । (ଦ୍ରଷ୍ଟବ୍ୟ- ମିଶ୍ର, ଡଃ. ସଚ୍ଚିଦାନନ୍ଦ, ୧୯୯୫) 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ 'ଙ'କୁ ଛାଡି ୩୩ଗୋଟି ବ୍ୟଞ୍ଜନ ବର୍ଣ୍ଣର ବର୍ଗ ରହିଛି ।

୦.୨.୭. ଏଥିରେ ସ୍ୱରବର୍ଣ୍ଣକୁ ଅନ୍ତ୍ୟ ରୂପେ ରଖି ଶବ୍ଦର ବିବରଣ ନାହିଁ । ଆଧୁନିକ ଅଭିଧାନପରି ଅକ୍ଷରାଦ୍ୟଧାରା ଏଥିରେ ନାହିଁ । ଅମର କୋଷରେ ଶବ୍ଦ ଗୁଡିକର ଲିଙ୍ଗ ନିରୂପିତ, କିନ୍ତୁ କବି ଉପେନ୍ଦ୍ର ଓଡିଆଭାଷାରେ ତାହା ଦେବାର ଆବଶ୍ୟକତା ମଣିନାହାନ୍ତି ।

୦.୩.୧. ଏ ମଧ୍ୟରେ ଦୀର୍ଘ ସମୟ ଧରି ଅଭିଧାନ ପ୍ରଣୟନ ସଂପର୍କରେ ଆମଭାଷା ଓ ସାହିତ୍ୟ ଜଗତରେ ସେମିତି କିଛି କୃତିର ପ୍ରମାଣ ଅନୁପଲବ୍ଧ ଏବଂ ଯଦି ବା ଥାଏ, ତାହା ଅପ୍ରକାଶିତ । ଇଂରେଜମାନେ ଓଡିଶା ଅଧିକାର କରିବାପରେ ଆମେ ଓଡିଆ ଅଭିଧାନ ପ୍ରକାଶର ସୂଚନା ପାଉ । ଓଡିଆ ଭାଷାନଭିଜ୍ଞ ଇଂରେଜ ଜାତି, ଓଡିଆ ଭାଷା ଜାଣିବା ପାଇଁ, ପ୍ରଶାସନିକ କାର୍ଯ୍ୟ ପରିଚାଳନା ପାଇଁ, ନିଜର କର୍ମଚାରୀ ମାନଙ୍କୁ ଓଡିଆ ଶବ୍ଦ ମାନଙ୍କ ପରିଚିତ ବିଶେଷକରି ଲୋକ ପ୍ରଚଳିତ ଭାଷା ଜାଣିବା ନିମିତ୍ତ ଏବଂ ସର୍ବୋପରି ଖ୍ରୀଷ୍ଟଧର୍ମର ପ୍ରଚାର ଉଦ୍ଦେଶ୍ୟରେ ଓଡିଆ ଅଭିଧାନ ପ୍ରସ୍ତୁତିରେ ହାତ ଦେଇଥିଲା । ପୁଣି ସେ ସମୟରେ ଓଡିଶାରେ ବିଦ୍ୟାଳୟମାନଙ୍କର ସ୍ଥାପନା, ପାଠ୍ୟ ପୁସ୍ତକ ପ୍ରଚଳନ (ଓଡିଆଭାଷାରେ) ଏବଂ ଶିକ୍ଷାର୍ଥୀ ମାନଙ୍କର

ବୋଧଗମ୍ୟତା ପାଇଁ ଅଭିଧାନର ଆବଶ୍ୟକତା ରହିଥିଲା । ଏହି ସମୟରେ କେତେଜଣ ଇଂରେଜ ବିଶେଷକରି ପାଦ୍ରୀଗଣ ଅଭିଧାନ ପ୍ରଣୟନ କ୍ଷେତ୍ରରେ ପ୍ରବେଶ କରିଥିଲେ । ଏହି ସଂକଳନ ପାଇଁ ସେମାନେ ସ୍ଥାନୀୟ ଭାରତୀୟ ମାନଙ୍କର ସହାୟତା ନେଇଥିଲେ । ଏହି ପାଦ୍ରୀ ମାନଙ୍କ ମଧ୍ୟରେ ଆଧୁନିକ ଓଡିଆ ଅଭିଧାନ ପ୍ରଣେତାର ପ୍ରଥମ ଗୌରବ ଆମ୍‌ସ ସଟନ୍‌ଙ୍କର ପ୍ରାପ୍ୟ ।

୦.୩.୨. ଆମ୍‌ସ ସଟନ୍ ଓ ଭୁବନାନନ୍ଦ ନ୍ୟାୟାଳଂକାରଙ୍କ ଦ୍ୱାରା 'ଉତ୍କଳ ଭାଷାର୍ଥାଭିଧାନ' ନାମରେ ଏକ ଗ୍ରନ୍ଥ ୧୮୪୩ ମସିହାରେ ପ୍ରକାଶିତ । ଏଥିରେ ମୋଟ ପୃଷ୍ଠା-୨୯୫ ଏବଂ ମୋଟ ୧୭,୧୨୯ ଟି ଶବ୍ଦ ପ୍ରକାଶିତ । ପରିଶିଷ୍ଟରେ ଅଙ୍କ ସଂପର୍କିତ ଶବ୍ଦ (numerals) ''ନବତନ ଶବ୍ଦର ଛାଡପତ୍ର'' ବା ସଂଯୋଜନ (addenda) ରେ ଦିଆଯାଇଛି । ଏଥିରେ 'ଓଡିଆ ଭାଷାରେ ବ୍ୟବହୃତ ବହୁ ତତ୍ସମ, ତଦ୍ଭବ, ଦେଶଜ, ପାର୍ସୀ, ଆରବୀ, ତୁର୍କୀ ପର୍ତ୍ତୁଗୀଜ ଓ ଇଂରେଜୀ ଶବ୍ଦ ମାନଙ୍କର ଅର୍ଥ ପ୍ରଦତ୍ତ । ଶବ୍ଦ ଗୁଡିକର ଅର୍ଥ ଦେବାପାଇଁ ବିଭିନ୍ନ ପ୍ରକାର ଉପାୟ ଅବଲମ୍ବନ କରାଯାଇଛି -

କ) ଏକ ବା ଏକାଧିକ ପ୍ରତିଶବ୍ଦ ମାଧ୍ୟମରେ
ଖ) ତତସମ ଶବ୍ଦର ତଦ୍ଭବ ପ୍ରତିଶବ୍ଦ ଦ୍ୱାରା
ଗ) ବିପରୀତାତ୍ମକ ଶବ୍ଦ ମାଧ୍ୟମରେ
ଘ) ବର୍ଣ୍ଣନା ଦ୍ୱାରା
ଙ) ନିର୍ଦ୍ଦିଷ୍ଟ ଜାତି ବା ବସ୍ତୁର ସୂଚନା ଦେଇ

ଏହି ଅଭିଧାନରେ ରହିଥିବା ବିବିଧ ଦୁର୍ବଳତା ମଧ୍ୟରେ -

କ) କେତେକ ଶବ୍ଦର ଭୁଲ ବନାନ ବା ବର୍ଣ୍ଣାଶୁଦ୍ଧି ।
ଖ) ଶବ୍ଦଗୁଡିକର ଉଚ୍ଚାରଣ ସଂପର୍କରେ ସୂଚନାର ଅଭାବ
ଗ) ଶବ୍ଦର ଇତିହାସ (Etymology) ର ସୂଚନା ନାହିଁ
ଘ) ବ୍ୟାକରଣଗତ ବିବରଣ ଦିଆଯାଇନାହିଁ
ଙ) ଶବ୍ଦର ବ୍ୟବହାର କିମ୍ବା ବ୍ୟବହାର ଭିତର ଦେଇ ଅର୍ଥର ସୂଚନା ନାହିଁ ।

(ଦ୍ରଷ୍ଟବ୍ୟ - ଦାଶ, ଡଃ. ଗଗନେନ୍ଦ୍ରନାଥ, ୧୯୮୩)

୦.୩.୩. ପରବର୍ତ୍ତୀ ଓଡିଆ ଅଭିଧାନ 'ସାଧୁଭାଷାର୍ଥାଭିଧାନ' - ଅର୍ଥାତ୍ ଉତ୍କଳ ଭାଷା ସଂକ୍ରାନ୍ତ ଯେ ସମସ୍ତ ସଂସ୍କୃତ ଶବ୍ଦ ଚଳନ୍ତି ଭାଷାରେ ତାହାର ବୋଧକ ଅଭିଧାନ '୧୮୪୪ ମସିହାରେ ପ୍ରକାଶିତ । ତତ୍‌ସମ ତଦ୍ଭବ ଶବ୍ଦର ଓଡିଆ ରୂପାନ୍ତର । ଓଡିଶାର ସରକାରୀ ବିଦ୍ୟାଳୟ ମାନଙ୍କରେ ବ୍ୟବହାର ନିମନ୍ତେ ସଂକଳିତ ହୋଇଥିଲା । ସଂକଳକଙ୍କର ନାମ ନାହିଁ । ଡକ୍ଟର ନଟବର ସାମନ୍ତରା, ଏହା ଆମ୍‌ସ ସଟନ୍ ଙ୍କ ଦ୍ୱାରା ପ୍ରସ୍ତୁତ ବୋଲି ଗ୍ରହଣ କରିଛନ୍ତି ।

୦.୩.୪. ରେଭରେଣ୍ଡ ଡବ୍ଲ୍ୟୁମିଲାର ଓ ରଘୁନାଥ ମିଶ୍ର 'ଉତ୍କଳ ଭାଷାର୍ଥାଭିଧାନ' ନାମରେ ୧୮୬୮ ମସିହାରେ ଅଭିଧାନଟିଏ ପ୍ରଣୟନ କରନ୍ତି, କଲିକତା ସ୍କୁଲ ବୁକ୍ ସୋସାଇଟି ନିମନ୍ତେ । ପାଠ୍ୟପୁସ୍ତକ ରୂପେ ଏହା ସ୍କୁଲ ମାନଙ୍କରେ ପ୍ରଚଳିତ ଥିଲା । 'ଶବ୍ଦଜ୍ଞାନର ନିମନ୍ତେ' ଅକାରାଦି କ୍ଷକାରାନ୍ତ ଧାରାନୁସାରେ ତଦ୍ଦେଶୀୟ କଥା ସମୂହ । ଅ ଠାରୁ କ୍ଷ କ୍ରମରେ ଓଡିଆ ଶବ୍ଦ ମାନଙ୍କର ଅର୍ଥସାରଣୀ ପ୍ରସ୍ତୁତ ।

୦.୩.୫. ଓଡିଆ ଭାଷାରେ ଅଭିଧାନର ଆବଶ୍ୟକତାକୁ ଆଖି ଆଗରେ ରଖି ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଶ୍ରୀଯୁକ୍ତ ରାମକମଲ ବିଦ୍ୟାଳଙ୍କାର କୃତବଙ୍ଗଳା 'ଧାତୁ ବିବେକ'ର ଉତ୍କଳ ଭାଷାରେ ଅନୁବାଦ କରିଥିଲେ । ସ୍କୁଲ ବୁକ୍ ସୋସାଇଟି କଲିକତା ପାଇଁ । ପ୍ରକାଶକାଳ ୧୮୭୨ ମସିହା ।

ପ୍ରକାଶଥାଉକି ଏହି ସ୍କୁଲ ବୁକ୍ ସୋସାଇଟି ଏକ ବେସରକାରୀ ସଂସ୍ଥା ଜୁଲାଇ, ୪-୧୮୧୭ ମସିହାରେ ପ୍ରତିଷ୍ଠିତ । ଏହା ବଂଗଳାର ନବ ପ୍ରତିଷ୍ଠିତ ସ୍କୁଲ ମାନଙ୍କୁ ପାଠ୍ୟପୁସ୍ତକ ଯୋଗାଇଥିଲା । (ଦ୍ରଷ୍ଟବ୍ୟ - ସାମନ୍ତରା, ଡକ୍ଟର ନଟବର - ୧୯୬୪)

୦.୩.୬.ଦାସ - ପଟ୍ଟନାୟକ ମାଳାର ୧ମ ଓ ୨ୟ ଖଣ୍ଡ ଗ୍ରନ୍ଥ ରୂପେ 'ଶବ୍ଦନିଧି' ନାମକ ଏକ ଅଭିଧାନ ପ୍ରକାଶ ପାଏ ୧୮୮୩ ମସିହାରେ । "ଶ୍ରୀ ଚତୁର୍ଭୁଜ ପଟ୍ଟନାୟକ ଓ ଶିବନାରାୟଣ ନାୟକଙ୍କ ଦ୍ୱାରା ସଂଗୃହୀତ । ଭଗବାନ ଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରକାଶିତ । " ସର୍ବମୋଟ ୧୭,୧୨୭ ଶବ୍ଦ ମାନଙ୍କର ବିବିଧ ଅର୍ଥ ଓ ସେମାନଙ୍କର ପଦନିର୍ଣ୍ଣୟ ପ୍ରଦତ୍ତ ହୋଇଅଛି । (ଦ୍ରଷ୍ଟବ୍ୟ : ସାମନ୍ତରା - ଡଃ. ନଟବର - ୧୯୭୯)

୦.୩.୭. ୧୮୯୧ ମସିହାରେ ଶ୍ରୀ ଜଗନ୍ନାଥ ରାଓଙ୍କ କର୍ତ୍ତୃକ ଏକ ଅଭିଧାନ ସଂକଳିତ ହୋଇଥିଲା । ଏହାର ନାମ ଉତ୍କଳ ଅଭିଧାନ । ଏହାର ଉଦ୍ଦେଶ୍ୟ ଓ ବିଶେଷତ୍ୱ ବ୍ୟାଖ୍ୟାକରି ଭୂମିକାରେ କୁହାଯାଇଛି "ଆଜିଯାଏ କୌଣସି ଅଭିଧାନ ମଧ୍ୟରେ ଧାତୁ ପ୍ରତ୍ୟୟ ନିବେଶିତ ହୋଇନାହିଁ । ଶବ୍ଦବ୍ୟୁତ୍ପତ୍ତି ଓ ପଦ ପ୍ରୟୋଗ ପ୍ରଦର୍ଶକ ଖଣ୍ଡିଏ ସୁବୃହତ୍ ଉତ୍କଳୀୟ ଶବ୍ଦକୋଷର ଅଭାବ ବହୁକାଳରୁ ଅନୁଭୂତ ହୋଇଆସୁଅଛି । " ୨୨,୦୦୦ ଶବ୍ଦ ବିଶିଷ୍ଟ ଏହି ଅଭିଧାନ "ସଂସ୍କୃତ ମୂଳକ ଶବ୍ଦ ମାନଙ୍କର ପ୍ରକୃତି ପ୍ରତ୍ୟୟ ଏବଂ ଅର୍ଥାଦି ନିର୍ବାଚନ କରିବାରେ ଉଇଲସନ ସାହେବଙ୍କ ସଂସ୍କୃତ-ଇଂରାଜୀ ଅଭିଧାନ, ବଙ୍ଗଳା ପ୍ରକୃତିବାଦ, ଅମରାର୍ଥଦୀଧିତି, ଶବ୍ଦାର୍ଥ ପ୍ରକାଶିକା, ଶବ୍ଦାର୍ଥ ମୁକ୍ତାବଳୀ ଏବଂ ଓଡିୟା ଗୀତାଭିଧାନ" ପ୍ରଭୃତି ଗ୍ରନ୍ଥମାନଙ୍କୁ ଅବଲମ୍ବନ କରିଛି । ଏହି ଅଭିଧାନ ସଂକଳନ ପାଇଁ ଶ୍ରୀଯୁକ୍ତ ରାଓ ସରକାରଙ୍କ ଠାରୁ ଆଂଶିକ ଅର୍ଥ ସାହାଯ୍ୟ ପାଇଥିଲେ । ୧୮୯୫ ମସିହାରେ ଶ୍ରୀଯୁକ୍ତ ରାଓ ସଂକ୍ଷିପ୍ତ ଉତ୍କଳ ଅଭିଧାନ ନାମରେ ଆଉ ଏକ ଅଭିଧାନ ସଂକଳନ କରିଥିଲେ । ବହୁବର୍ଷଧରି ଏହି ଦୁଇ ଅଭିଧାନ ଉତ୍କଳରେ ପ୍ରଚଳିତ ଥିଲା । ଏବଂ ୧୯୧୫ ମସିହାରେ ଉତ୍କଳ ଅଭିଧାନର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଥିଲା । (ଦ୍ରଷ୍ଟବ୍ୟ - ସାମନ୍ତରା, ଡଃ. ନଟବର - ୧୯୭୯)

୦.୩.୮. ଏଠାରେ ଲକ୍ଷ୍ୟକରିବାର କଥା ଯେ

କ) ଓଡିଆ ସ୍କୁଲ ମାନଙ୍କୁ ଆଖିଆଗରେ ରଖି ଏହି ଅଭିଧାନ ଗୁଡିକ ପ୍ରସ୍ତୁତ ।

ଖ) ସରକାରୀ ପୃଷ୍ଠପୋଷକତା କିମ୍ବା ଆର୍ଥିକ ସହାୟତା ପ୍ରାପ୍ତ ।

ଗ) ଓଡିଶା ମିଶନ ପ୍ରେସ୍, କଟକ ଓ ବାପ୍‌ଟିଷ୍ଟ ମିଶନ ପ୍ରେସ୍ କଲିକତାରେ ମୁଦ୍ରିତ ।

ଘ) ସ୍କୁଲବୁକ୍ ସୋସାଇଟି ଭଳି ଅନୁଷ୍ଠାନ ଦ୍ୱାରା ପୁସ୍ତକର ପ୍ରସାର - ହୋଇଥିଲା ।

୦.୪.୧. ଇଂରେଜୀ ଶିକ୍ଷାର ପ୍ରସାର ଫଳରେ ଓଡିଶାରେ ବିଦ୍ୟାଳୟ ସଂଖ୍ୟା ବଢ଼ିବାରେ ଲାଗିଲା । ବିଭିନ୍ନ ଅଞ୍ଚଳରେ ବିଦ୍ୟାଳୟ ମାନ ପ୍ରତିଷ୍ଠା କରାଗଲା ଓ ଶିକ୍ଷକ ନିଯୁକ୍ତ ହେଲେ । ଓଡିଆ ଭାଷା ଓ ସାହିତ୍ୟର ଅଧ୍ୟୟନ ବ୍ୟାପକ ହେଲା । ବିଦ୍ୟାଳୟରେ ପାଠପଢ଼ା ସମୟରେ ଓଡିଆପଣ୍ଡିତ ମାନେ ଶବ୍ଦଅର୍ଥ ପ୍ରକାଶନ ସମୟରେ ଅଭିଧାନର ଆବଶ୍ୟକତା ଅନୁଭବ କଲେ । କେତେକ, ବ୍ୟକ୍ତିଗତ ଭାବେ ନିଜ ସନ୍ତାନ ମାନଙ୍କ ଶିକ୍ଷାପ୍ରଦାନ ସମୟରେ ଓଡିଆଶବ୍ଦମାନଙ୍କର ପରିଚୟ ଦେବାରେ ଅସମର୍ଥ ହେଉଥିଲେ । ଗମନା ଗମନର

ଅସୁବିଧା, ବିପଣନ କେନ୍ଦ୍ର (ପୁସ୍ତକ) ର ଅଭାବ ହେତୁ ଉପଯୁକ୍ତ ପ୍ରକାଶିତ ଅଭିଧାନର ପ୍ରାପ୍ତିରେ ବିଳମ୍ବ ହେଉଥିଲା କିମ୍ବା ପାଇବା ସୁଲଭ ନଥିଲା ମଧ୍ୟ । ତେଣୁ ବ୍ୟକ୍ତିଗତ ଭାବରେ କେତେଜଣ ଶିକ୍ଷକ ତଥା ବିଜ୍ଞ ବ୍ୟକ୍ତିବିଶେଷ ଅଭିଧାନ ପ୍ରଣୟନରେ ଉଦ୍ୟତ ହୋଇଥିଲେ । ଏବଂ କେହି କେହି ନିଜେ ପଢୁଥିବା ସମୟରେ ଶବ୍ଦପରିଚୟର ଅସୁବିଧାକୁ ସ୍ମରଣ କରି ଅଭିଧାନ ସଂକଳନରେ ବ୍ରତୀହୋଇଥିଲେ ।

୦.୪.୨. ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ ଥିଲେ, କଟକ ମିଡିଲି ଇଂଲିଶ୍ ସ୍କୁଲର ହେଡ ପଣ୍ଡିତ । ସେ ପିଲାଙ୍କୁ ଓଡିଆ ପଢ଼ାଉଥିଲେ । ଶବ୍ଦର ବନାନ ପାର୍ଥକ୍ୟ ସଂଗେ ସଂଗେ ଅର୍ଥର ମଧ୍ୟ ପାର୍ଥକ୍ୟ ବୁଝାଇ ପିଲା ମାନଙ୍କୁ ଡାକୁଥିଲେ ।' (ଦ୍ରଷ୍ଟବ୍ୟ - ନାୟକ, ଶ୍ରୀ ଯଜ୍ଞେଶ୍ୱର-୧୯୧୫) ଏ ମହାଶୟ ଅପଭ୍ରଂଶବୋଧିନୀ' ନାମରେ ଏକ ଅଭିଧାନ ପ୍ରସ୍ତୁତ କରିଥିଲେ । ଏହା ୧୮୯୧ ମସିହାରେ ପ୍ରକାଶିତ । କେବଳ ଦେଶଜଶବ୍ଦର ଅର୍ଥ ଓ ବ୍ୟାଖ୍ୟା ଏହି ଅଭିଧାନରେ ପ୍ରଦତ୍ତ ।

୦.୪.୩. ଭକ୍ତକବି ମଧୁସୁଦନ ରାଓ ଓଡିଆ ଅଭିଧାନ ରଚନାରେ ମଧ୍ୟ ହାତ ଦେଇଥିଲେ । ଅଭିଧାନର ନାମ 'ସୁଖବୋଧ ଅଭିଧାନ' । ତାହା ଦେଖିବାର ସଂଯୋଗ ନାହିଁ କିମ୍ବା ଏହା ସମ୍ବନ୍ଧରେ ବିଶେଷ ଆଲୋଚନା ନାହିଁ । କେବଳ ନାମୋଲ୍ଲେଖ ସହିତ ସୂଚନା ରହିଛି ମାତ୍ର । ସେ ଗୁଡିକ ନିମ୍ନରେ -

କ) କେତେବର୍ଷ ପୂର୍ବେ ଉତ୍କଳୀୟ ଛାତ୍ରମାନଙ୍କର ଅଭାବ (ଅଭିଧାନର) ଦୂର କରିବା ଲାଗି ସ୍ୱର୍ଗୀୟରାୟ ମଧୁସୁଦନ ରାଓ ବାହାଦୂର 'ସୁଖବୋଧ' ନାମରେ ଖଣ୍ଡିଏ ଅଭିଧାନ ପ୍ରକାଶ କରିଥିଲେ । ତାହା କେତେକ ପରିମାଣରେ ଛାତ୍ରସମାଜର ଅଭାବ ଦୂର କରିଅଛି ସତ୍ୟ, ମାତ୍ର ଆକାରରେ ଟିକିଏ ବଡ ଓ ମୂଲ୍ୟ ଅଧିକ ହୋଇଥିବାରୁ ଛାତ୍ର ସମାଜର ଅଭାବ ପୂର୍ଣ୍ଣଭାବରେ ଦୂର କରିପାରିନାହିଁ । (ଦ୍ରଷ୍ଟବ୍ୟ : ମିଶ୍ର, ଶ୍ରୀ ଆକୁଳ - ୧୯୨୫)

ଖ) ସ୍ୱର୍ଗତ ମଧୁସୂଦନ ରାଓ' ସୁଖବୋଧ ଅଭିଧାନ' ନାମରେ ଖଣ୍ଡିଏ କ୍ଷୁଦ୍ରାବୟବ ଅଭିଧାନ ପ୍ରଣୟନ କରିଥିଲେ । ସେଥିରେ ମଧ୍ୟ ପ୍ରକୃତ ଓଡିଆ ଶବ୍ଦର ଆଲୋଚନା ଅତ୍ୟଳ୍ପ ମାତ୍ରାରେ କରାଯାଇଥିଲା ।

(ଦ୍ରଷ୍ଟବ୍ୟ - ପ୍ରହରାଜ, ଶ୍ରୀ ଗୋପାଳଚନ୍ଦ୍ର - ୧୯୩୧)

ଓଡିଆ ପାଠ୍ୟପୁସ୍ତକ ରଚନାରେ, ବିଦ୍ୟାଳୟ ଶିକ୍ଷାରେ ଓ ଓଡିଆ ଭାଷା ସାହିତ୍ୟର ଆଲୋଚନାରେ ସୁଖବୋଧ ଅଭିଧାନର ଭୂମିକା ରହିଥିଲା ନିଶ୍ଚୟ । କିନ୍ତୁ ଭକ୍ତକବି ମଧୁସୁଦନଙ୍କ ଆଲୋଚନା ପ୍ରସଙ୍ଗରେ ଓଡିଆ ସାହିତ୍ୟର ଆଧୁନିକଯୁଗ ଆଲୋଚନା ସମୟରେ ଏବଂ ଗ୍ରନ୍ଥାବଳୀ ପ୍ରକାଶନ ଅବସରରେ ଏ ପୁସ୍ତକକୁ ବିସ୍ମୃତ ହେବା ଅତ୍ୟନ୍ତ କ୍ଷୋଭ ଓ ପରିତାପର ବିଷୟ ।

୦.୪.୪. ସୁରଙ୍ଗୀ ରାଜସଭାର ପଣ୍ଡିତ ଦାମୋଦର କବିରତ୍ନ 'ବାଳ କଣ୍ଠମାଳା' ନାମରେ ଏକ ଅଭିଧାନ ରଚନାକରିଥିଲେ । ୩୪ ପୃଷ୍ଠାର ଏହି ଗ୍ରନ୍ଥ କଟକ ପ୍ରିଣ୍ଟିଂ କମ୍ପାନୀ କର୍ତ୍ତୃକ ୧୯୧୩ ମସିହାରେ, ବାଂକି ବୈଦେଶ୍ୱର ଗ୍ରାମନିବାସୀ ଜମିଦାର ଶ୍ରୀବ୍ରଜବନ୍ଧୁ ମହାପାତ୍ରଙ୍କ ଆନୁକୂଲ୍ୟରେ ଶ୍ରୀମତୀ ରତ୍ନହାରା ଦେବୀଙ୍କ ଦ୍ୱାରା ପ୍ରକାଶ ପାଇଥିଲା । କବିରତ୍ନ ଏ ଗ୍ରନ୍ଥ ପ୍ରକାଶର ଉଦ୍ଦେଶ୍ୟ ବ୍ୟକ୍ତକରି ଲେଖିଛନ୍ତି - " କନ୍ୟା ଶ୍ରୀମତୀ ରତ୍ନହାରା ଦେବୀଙ୍କୁ ଶିକ୍ଷାଦେବା ଅଭିପ୍ରାୟରେ ଆବଶ୍ୟକ ହେବାରୁ **** ପଦ୍ୟାନୁବାଦ କରି " ପ୍ରକାଶ କରିଥିଲେ । ଏହା ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଲେଖାହୋଇ ମୁଦ୍ରିତ ନହୋଇ ରହିଥିଲା । ଅମରକୋଷର କେତେକ ଶ୍ଳୋକର ପଦ୍ୟାନୁବାଦ ଏଥିରେ କରାଯାଇଛି -

କଳଙ୍କ - କଳଙ୍କ, ଚିହ୍ନ, ଲକ୍ଷ୍ମୀ, ଲାଞ୍ଛନ, ଲକ୍ଷଣ

ହିମ - ନିହାର, ତୁଷାର, ହିମ, ପ୍ରଳେୟ, ତୁହିନ । (୪୨/୪୩ - ପୃ : ୭)

୦.୪.୫. ୧୯୧୫ ମସିହାରେ 'ଶବ୍ଦବୋଧିକା ବା ରଚନା ସୁହୃଦ ପ୍ରଥମଭାଗ ' ନାମରେ ଏକ ଅଭିଧାନ ପ୍ରକାଶିତ। ଲେଖକ ପଣ୍ଡିତ ଶ୍ରୀଯୁକ୍ତ ଯଜ୍ଞେଶ୍ୱର ନାୟକ। ଶ୍ରୀଯୁକ୍ତ ନାୟକ ତେଲେଙ୍ଗାପେଣ୍ଠ ମଡେଲ ଲୋଅର ପ୍ରାଇମେରୀ ସ୍କୁଲର ହେଡପଣ୍ଡିତ ଥିଲେ । ଅଭିଧାନ ପ୍ରଣୟନ ସଂପର୍କରେ ସେ ବ୍ୟକ୍ତ କରିଛନ୍ତି - ''କଟକ ମିଡିଲ ଇଂଲିଶ ସ୍କୁଲରେ ଅଧ୍ୟୟନ କରିବା ସମୟରେ ସେହି ବିଦ୍ୟାଳୟର ପୂଜନୀୟ ହେଡ ପଣ୍ଡିତ ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ଶତପଥୀ ମହୋଦୟ ଏହି ପୁସ୍ତିକାସ୍ଥ * ଚିହ୍ନିତ କେତେକ ଶବ୍ଦର ବନାନ ପାର୍ଥକ୍ୟ ସଂଗେ ସଂଗେ ଅର୍ଥର ମଧ୍ୟ ପାର୍ଥକ୍ୟ ବୁଝାଇ ଡାକି ଦେଇଥିଲେ। ସେହିଦିନଠାରୁ ଅବସର କ୍ରମେ ତାହାର ଶବ୍ଦ ଓ ବିଭିନ୍ନାର୍ଥ ଶବ୍ଦାଦି ଅନ୍ୱେଷଣ ପୂର୍ବକ ସଂଗ୍ରହ କରିବାରେ ଯତ୍ନବାନ ହେଲି । ତା ୧୯୧୩ ମସିହାରେ ପୁସ୍ତକାକାରରେ ପରିଣତ ହୋଇ ପଣ୍ଡିତ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ କାବ୍ୟତୀର୍ଥ ମହୋଦୟଙ୍କ ଦ୍ୱାରା ଆମୂଳଚୂଳ ପରିଦର୍ଶିତ ଓ ସଂଶୋଧିତ ହୋଇଅଛି । '' (ଦ୍ରଷ୍ଟବ୍ୟ - ନାୟକ, ଶ୍ରୀଯୁକ୍ତ ଯଜ୍ଞେଶ୍ୱର - ୧୯୧୫)

ଲଭର ସହ ୪୪ ପୃଷ୍ଠାର ଏହି ଗ୍ରନ୍ଥମଧ୍ୟରେ ୨୮ ପୃଷ୍ଠାର ଶବ୍ଦ ଅର୍ଥ, ୩ ¹/₂ ପୃଷ୍ଠାର ବିଭିନ୍ନାର୍ଥ ଏବଂ ୪ ¹/₂ ପୃଷ୍ଠାର ପ୍ରତିଶବ୍ଦ ଦିଆଯାଇଛି। ଏଥିରେ ୮୧୯ଟି ଶବ୍ଦର ଅର୍ଥ, ୮୭ଟି ବିଭିନ୍ନାର୍ଥ ଓ ୬୮ଟି ପ୍ରତିଶବ୍ଦ ରହିଛି। 'ଓ' ଅକ୍ଷରରେ ଉଟଜ ଶବ୍ଦ, 'ଜ' ଅକ୍ଷରରେ ଯବନ, 'ଭ' ଅକ୍ଷରରେ ବର୍ଗ ଶବ୍ଦ, 'ଯ' ରେ ବର୍ଗ୍ୟ 'ଜ'ର ୬ଟି ଶବ୍ଦ ଏବଂ ଶ, ସ,ଷର ଅକ୍ଷରାନୁସାରେ ଶବ୍ଦ ଗୁଡ଼ିକର ଅର୍ଥ ଦିଆଗଲା ପରେ 'ଶ, ଷ ଓ ସ' ନାମରେ ସ୍ୱତନ୍ତ୍ର ଭାଗଟିଏ କରି ୨୯ଟି ଶବ୍ଦର ଅର୍ଥ ପ୍ରଦତ୍ତ। ବିଭିନ୍ନାର୍ଥ ଓ ପ୍ରତିଶବ୍ଦ ପର୍ଯ୍ୟାୟରେ ଅକ୍ଷର କ୍ରମ ନାହିଁ।

ଉଦାହରଣ - ବିଭିନ୍ନାର୍ଥ - ବୁଧ, ଲୋକ, ରକ୍ତ। ବୁଧ ଶବ୍ଦ ପରେ ଲୋକ ଶବ୍ଦ ଏବଂ ପରେ ରକ୍ତ ଶବ୍ଦ ରହିଛି ।

ପ୍ରତିଶବ୍ଦ - ସୂର୍ଯ୍ୟ ପରେ ଚନ୍ଦ୍ର ଏବଂ ଚନ୍ଦ୍ରପରେ ପବନ ର ପ୍ରତିଶବ୍ଦ ପ୍ରଦତ୍ତ।

୦.୫.୧. ଅଭିଧାନ ସଂକଳନ ଓ ପ୍ରକାଶନ କ୍ଷେତ୍ରରେ ଏହିପରି ବହୁ ଉଦ୍ୟମ ଦୀର୍ଘଦିନ ଧରି ହୋଇ ଆସୁଥିଲା। କିନ୍ତୁ ଏହି ଅଭିଧାନ ମାନଙ୍କ ମଧ୍ୟରେ ବହୁ ପ୍ରକାର ତ୍ରୁଟି ଓ ଦୁର୍ବଳତା ପରିଲକ୍ଷିତ। ସେଗୁଡ଼ିକ ମଧ୍ୟରୁ -

୧. ବିଦ୍ୟାଳୟଶିକ୍ଷାକୁ ଆଖି ଆଗରେ ରଖି ଏଗୁଡ଼ିକ ପ୍ରସ୍ତୁତ।

୨. ଭାଷା, ସାହିତ୍ୟ ଆଲୋଚନା କ୍ଷେତ୍ରରେ ଯୋଗଦାନ ସୀମିତ।

୩. କେବଳ ଶବ୍ଦର ଅର୍ଥପ୍ରକାଶ ରେ ସନ୍ତୁଷ୍ଟ।

୪. ଅଧିକାଂଶ ସଂକଳକଙ୍କର ଶବ୍ଦଜ୍ଞାନ ଓ ଶବ୍ଦ ସଂଗ୍ରହରେ ଅଭିଜ୍ଞତାର ଅଭାବ ଆହରଣର ପରିସର ସୀମିତ।

୫. କେତେକ କେବଳ ତତସମ୍ ଓ ତଦ୍ଭବ ଶବ୍ଦର ଅର୍ଥ ପ୍ରଦାନ କରିଛନ୍ତି , ଦେଶଜ ଓ ଗ୍ରାମ୍ୟ ଶବ୍ଦର ଆଲୋଚନା କ୍ୱଚିତ।

୬. ବନାନ ଶୁଦ୍ଧତାର ଅଭାବ ।

୭. ଶବ୍ଦର ଇତିହାସ ପ୍ରଦାନରେ ଅକ୍ଷମତା ।

୮. ପ୍ରୟୋଗବିଧି ପ୍ରଦର୍ଶନର ଅଭାବ ।

ଗୋଟିଏ ବିଶୁଦ୍ଧ ଓଡ଼ିଆ ଅଭିଧାନର ଅଭାବ ତଥାପି ରହିଥିଲା । ଓଡ଼ିଆ ଭାଷା ଓ ସାହିତ୍ୟକୁ ପ୍ରତିନିଧିତ୍ୱ କଲାଭଳି କିୟା ଆଲୋଚନା ବେଳେ ଦିଗଦର୍ଶନ ଦେଲାଭଳି ଅଭିଧାନଟିଏର ଆବଶ୍ୟକତା ଅନୁଭୂତ ହେବା ସମୟରେ ପ୍ରକାଶ ପାଇଲା ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ପ୍ରଣୀତ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

**୦.୫.୨.** ୧୧୧୫ ପୃଷ୍ଠାର ଏହି ଅଭିଧାନ ୧୯୧୬ ମସିହାରେ ପୁସ୍ତକାକାରରେ ପ୍ରକାଶିତ । ୧୯୦୩ ରେ ଲେଖା ଆରମ୍ଭ , ୧୯୧୬ ରେ ଛାପା ଶେଷ । ୧୩ ବର୍ଷ ପର୍ଯ୍ୟନ୍ତ ପ୍ରକାଶନ ଅପେକ୍ଷାରେ ରହିବାକୁ ପଡ଼ିଥିଲା, ନାନା କାରଣରୁ । ଆର୍ଥିକ ପ୍ରତିବନ୍ଧ ତନ୍ମଧ୍ୟରୁ ଏକତମ । ଧରାକୋଟ ରାଜାସାହେବ ଶ୍ରୀମାନ ମଦନମୋହନ ସିଂହ ଓ ସ୍ୱଦେଶଭକ୍ତ ଗଂଜାମ-ମଧୁ ହରିହର ପଣ୍ଡାଙ୍କ ସହାୟତାରେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଓ ବିହାର ଓ ଓଡ଼ିଶା ଗବର୍ଣ୍ଣମେଣ୍ଟ ଦୁଇସହସ୍ର ଟଙ୍କା, ରାଜା ମଦନ ମୋହନ ସିଂହ ଦୁଇଶତ ଟଙ୍କା ଓ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜା ତିନି ସହସ୍ର ଟଙ୍କା ସହିତ 'ଗ୍ରନ୍ଥର ବିଶୁଦ୍ଧ ଲିପି ଲେଖନାର୍ଥ ଛଅମାସ ପର୍ଯ୍ୟନ୍ତ କାର୍ଯ୍ୟାନ୍ତର ନିଯୋଗ କ୍ରମରେ ଅବସର' ଆଦି ସାହାଯ୍ୟରେ ଏ ଗ୍ରନ୍ଥ ପ୍ରକାଶନ ସମ୍ଭବ ହୋଇଥିଲା ।

**୦.୫.୩.** ଅ ଠାରୁ କ୍ଷ ଅକ୍ଷରକ୍ରମରେ ୩୦୭୧୬ଟି ଶବ୍ଦର ଅର୍ଥ ଓ ଅ ଠାରୁ କ୍ଷ କ୍ରମରେ ୩୦୨୦ଟି ବୈଦ୍ୟକ ଶବ୍ଦ ମୋଟ ୩୩୭୩୬ ଟି ଶବ୍ଦ ଆଲୋଚିତ ।

**୦.୫.୪.** ପଣ୍ଡିତ ନନ୍ଦ ସଂସ୍କୃତ, ଓଡ଼ିଆ, ତେଲୁଗୁ ଓ ବଂଗଳା ଭାଷାର ପ୍ରବୀଣ । ସଂସ୍କୃତ ସାହିତ୍ୟ ସହିତ ଓଡ଼ିଆ କାବ୍ୟ ପୁରାଣାଦି ଅନୁଶୀଳନରେ ତାହାଙ୍କ ସାରାଜୀବନ ବ୍ୟୟିତ । ସାରଳା, କୃଷ୍ଣସିଂହଙ୍କ ମହାଭାରତ, ଭାଗବତ, ନୃସିଂହ ପୁରାଣ ଠାରୁ ଆରମ୍ଭ କରି ଭଂଜ, ଅଭିମନ୍ୟୁ, କବିସୂର୍ଯ୍ୟ ଓ ଗୋପାଳ କୃଷ୍ଣାଦି ଦେଇ ରାଧାନାଥ, ଗଙ୍ଗାଧର ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଅଧ୍ୟୟନର ପରିସର ତାଙ୍କରି । ଶବ୍ଦର ଭାଷାତାତ୍ତ୍ୱିକ ଓ ଆଭିଧାନିକ ଉଭୟ ପରିଚୟ ଦେବାରେ ସେ ଧୂରୀଣ । ଏପରି ଏକ ପ୍ରଚଣ୍ଡ ପ୍ରତିଭାର ଏକକସାଧନାର ଫଳ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

**୦.୫.୫.** ପୂର୍ବୋକ୍ତ ଅଭିଧାନ ସମୂହ ପାଠକର ସାହିତ୍ୟିକ, ସାଂସ୍କୃତିକ ଓ ଶିକ୍ଷାଗତ ଆବଶ୍ୟକତା ପୂରଣରେ ଥିଲେ ଅସମର୍ଥ, 'ଓଡ଼ିଆର ଯାବତୀୟ ଶବ୍ଦାର୍ଥ - ଜିଜ୍ଞାସା' ସମାହିତ ହୋଇ ପାରୁନଥିଲା । କେବଳ ଶବ୍ଦଟିର ଅର୍ଥପ୍ରଦାନରେ ସେମାନେ ସନ୍ତୁଷ୍ଟ ଥିଲେ । ଏଗୁଡ଼ିକ କେତେଗୁଡ଼ିଏ ଶବ୍ଦର କେବଳ ଅର୍ଥଜାଣିବାର ଉପାୟମାତ୍ର ଏବଂ ଲଘୁ ପ୍ରସର ଅଟେ । (ଦ୍ରଷ୍ଟବ୍ୟ - ସିଂହଦେବ, ଶ୍ରୀ ମଦନମୋହନ - ୧୯୧୫)

**୦.୫.୬.** କ) ବହୁ ଦେଶଜ ଓ ଗ୍ରାମ୍ୟ ଶବ୍ଦ ମାନଙ୍କର ସଂଗ୍ରହ ସହିତ ଅର୍ଥ ପ୍ରଦାନ ।

ଖ) ଓଡ଼ିଆ ଶବ୍ଦର ବ୍ୟୁତ୍ପତ୍ତି କ୍ରମ । ସଂସ୍କୃତ ଶବ୍ଦ କିପରି ରୂପାନ୍ତରିତ ଓ ପରିବର୍ତ୍ତିତ ହୋଇ ବ୍ୟବହୃତ ତାହା ପ୍ରଦର୍ଶିତ ।

ଗ) ଶବ୍ଦଟିର ଅର୍ଥ ପ୍ରଦାନ ସହ ତାର ପ୍ରୟୋଗ ବିଧି ସୋଦାହରଣ ଦର୍ଶାଇବା ପଣ୍ଡିତ ନନ୍ଦଙ୍କର ଅଭିଧାନର ସର୍ବଶ୍ରେଷ୍ଠ ବିଶେଷତ୍ୱ । ପୂର୍ବ ଅଭିଧାନ ମାନଙ୍କରେ ଏହାର ସାମାନ୍ୟତମ ପ୍ରଚେଷ୍ଟା ସୁଦ୍ଧା ହୋଇନଥିଲା । ପ୍ରଥମକରି ଏହିଁ ପ୍ରୟୋଗବିଧି ଦେଖାଇ ପରବର୍ତ୍ତୀ ଅଭିଧାନ ପ୍ରସ୍ତୁତିରେ ମାର୍ଗଦର୍ଶକ ହୋଇଛନ୍ତି ପଣ୍ଡିତ ନନ୍ଦ ।

ଘ) ଶବ୍ଦ ମାନଙ୍କର ଯଥାର୍ଥ ପରିଚୟ ପ୍ରଦାନ କରିଛନ୍ତି ସେ । ପଦଭେଦ, ପ୍ରତ୍ୟୟ, ଗ୍ରାମ୍ୟ, ଦେଶଜ କିମ୍ବା ସଂସ୍କୃତ ଶବ୍ଦ ଆଦିର ସୂଚନା ରହିଛି ।

ଙ) ବୈଦ୍ୟକ ଶବ୍ଦମାଳାର ଓଡିଆ ଅର୍ଥ ପ୍ରଦାନ ଏହାର ଆଉଏକ ବୈଶିଷ୍ଟ୍ୟ । ଅନେକ ବୈଦ୍ୟକ ଶବ୍ଦ, ଔଷଧିବୃକ୍ଷର ଓଡିଆ ନାମ ଜାଣିଥିଲେ ସୁଦ୍ଧା ପାଠକ ତାର ସଂସ୍କୃତ ନାମ ଜାଣିବାରେ ଥିଲା ଅସମର୍ଥ । ଏହି ଅଭିଧାନରେ ତାର ପରିଚୟ ପ୍ରଦାନ କରି ଲୋକସମାଜର ମହୋପକାର ସାଧିତ ହୋଇଛି ।

ଚ) ପଣ୍ଡିତ ନନ୍ଦ ସାରଳା ମହାଭାରତ, ନୃସିଂହ ପୁରାଣ ଓ ଅନ୍ୟାନ୍ୟ ଓଡିଆ ପୁରାଣ ମାନଙ୍କରୁ ଓଡିଆ ଶବ୍ଦ ସଂଗ୍ରହ କରି ଅଭିଧାନରେ ସଂକଳିତ କରିଛନ୍ତି । ସେହିପରି ଉପେନ୍ଦ୍ର, ଅଭିମନ୍ୟୁ, ବଳଦେବ ଓ ଗୋପାଳକୃଷ୍ଣାଦି କବିଙ୍କର ରଚନାରୁ ଶବ୍ଦ ସଂଗ୍ରହକରି ତା'ର ଅର୍ଥ ପ୍ରଦାନ କରିଛନ୍ତି ।

ଛ) ଅନେକଶବ୍ଦର ପ୍ରାମାଣିକତା ପାଇଁ ସଂସ୍କୃତ ଶ୍ଳୋକମାନଙ୍କର ଉଦାହରଣ ଦେଇଛନ୍ତି - ଏହିପରି ଅନେକ ବିଶେଷତ୍ୱ ରହିଛି ଏହି ଅଭିଧାନ ଟିର ।

୦.୪.୭. ନିମ୍ନ ଅଭାବ ସବୁ ପରିଲକ୍ଷିତ ହୁଏ ଶବ୍ଦତତ୍ତ୍ୱବୋଧଅଭିଧାନରେ -

କ) ସାହାଯ୍ୟ ନିଆଯାଇଥିବା ଅଭିଧାନ ଓ କୋଷଗ୍ରନ୍ଥମାନଙ୍କର ସୂଚନା ନାହିଁ ।

ଖ) ସ୍ଥାନେ ସ୍ଥାନେ ସଂସ୍କୃତ ଶ୍ଳୋକର ମୂଳ ଗ୍ରନ୍ଥର ନାମ ନାହିଁ - ଯେପରି -
ଅଘମର୍ଷଣ - ବିଂ ( ଅଘ - ମର୍ଷଣ ) ଯେ ପାପ ନାଶକରେ , ପାପନାଶନ, ବେଦର ମନ୍ତ୍ର ବିଶେଷ ତନ୍ମନ୍ତ୍ର ପ୍ରଣେତା ଋଷି । (ସବୈନ ସାମପଧ୍ୱଂସି ଜପ୍ୟଂ ତ୍ରିଷ୍ୱଘମର୍ଷଣଂ) ଗ୍ରନ୍ଥର ନାମୋଲ୍ଲେଖନାହିଁ ।

ଗ) ଉଦାହରଣ ସ୍ଥଳରେ ଯେଉଁ ଗ୍ରନ୍ଥଗୁଡିକର ସାହାଯ୍ୟ ନେଇଛନ୍ତି ତା'ର ସଂକ୍ଷିପ୍ତ ନାମ ପ୍ରଦତ୍ତ । ଯେପରି - ସା,ଭା,ସ - ସାରଳା ଭାରତ ସଭାପର୍ବ, ନୃପୁ - ନୃସିଂହ ପୁରାଣ । କିନ୍ତୁ ଅନେକ ସଂକ୍ଷିପ୍ତ ସୂଚନା ପାଠକଙ୍କୁ ସନ୍ଦେହରେ ପକାଏ - ଯେପରି - ଦା.ର,ଜ.ବ,ଦା.ଭି ପ୍ରଭୃତି ।

ଘ) ଓଡିଆ ବାକ୍ୟାଂଶଗତ ଆଲୋଚନା ନାହିଁ ।

ଙ) ସେ ସମୟରେ ପ୍ରଚଳିତ ବହୁ ଶବ୍ଦ ଏଥିରେ ସ୍ଥାନ ପାଇନାହିଁ । ଯେପରି ଇଂରେଜୀ, ପାର୍ସୀ ଓ କୋର୍ଟକଚେରୀ ଭାଷାର ଶବ୍ଦମାନ ଏଥିରେ ଅନାଲୋଚିତ ।

୦.୪.୮. ଏ ସବୁ ଅଭାବ ସତ୍ତ୍ୱେ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ଓଡିଆ ଭାଷାର ଏକ ପ୍ରତିନିଧି ସ୍ଥାନୀୟ ଅଭିଧାନ । ଏଥିରେ ଓଡିଆ ଭାଷା ଯଥାର୍ଥ ରୂପ ଘେନିଛି ଏବଂ ଏହା ଖାଣ୍ଟି ଓଡିଆ ଅଭିଧାନର ମାନ୍ୟତା ହାସଲ କରିଛି । ଆଜି ମଧ୍ୟ ଭାଷାର ଆଲୋଚନା ପ୍ରସଙ୍ଗରେ ଶବ୍ଦଟିର ଯଥାର୍ଥ ଅର୍ଥ ଖୋଜିଲାବେଳେ ପାଠକ ଏହି ଅଭିଧାନର ଆବଶ୍ୟକତା ଅନୁଭବ କରେ ।

୦.୫.୯. ଓଡିଆଭାଷାର ସଂକଟକାଳରେ କ୍ଷୋଭ ପ୍ରକାଶକରି ଜନବିମସ୍ ମନ୍ତବ୍ୟ ଦେଇଥିଲେ : ଓଡିଆ ଭାଷା ଉପରେଏକ ସ୍ୱତନ୍ତ୍ର ପୁସ୍ତକ ରଚିତ ହେବା ଉଚିତ । ''ଏପରି ପୁସ୍ତକ କେବଳ ଏ ଦେଶର ଜଣେ ଅଧିବାସୀ ଲେଖିପାରିବ, କାରଣ ଏ ସଂପର୍କରେ ଏ ଦେଶରେ କୌଣସି ସୁନ୍ଦର ବ୍ୟାକରଣ ପୁସ୍ତକ କିମ୍ବା ଅଭିଧାନ ଏ ପର୍ଯ୍ୟନ୍ତ ଲେଖାଯାଇନାହିଁ । କାନ୍ତିବାବୁ କେତେଦୂର ସତ୍ୟ ଲେଖିଛନ୍ତି ତାହାର ଯଥାର୍ଥ ଅନୁସନ୍ଧାନ କରି ଖଣ୍ଡିଏ ପୁସ୍ତକ ଲେଖିବା ପାଇଁ ଏ ଦେଶରେ କୌଣସି ଉପଯୁକ୍ତ ଲୋକନାହାନ୍ତି; ଏପରି ଉପଯୁକ୍ତ ଲୋକଥିଲେ ଆମେ କ୍ରାନ୍ତିଚନ୍ଦ୍ର ବାବୁଙ୍କ ପୁସ୍ତକର ଏକ ଯଥାର୍ଥ ଉତ୍ତର ଦେଖିପାରିଥାନ୍ତୁ । * * * * * ଏଭ ଉପଯୁକ୍ତ ଲୋକଂକୁ ଆମେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଠାରେ ଦେଖିବାକୁ ପାଇଛୁଁ ।

(ଦ୍ରଷ୍ଟବ୍ୟ - ସାମନ୍ତରା, ଡଃ. ନଟବର - ୧୯୬୪)

୦.୬.୧. ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ ମଧ ଅଭିଧାନ ରଚନାରେ ପ୍ରୟାସୀଥିଲେ । ତାହାଙ୍କ ଅଭିଧାନ ରଚନା ଦୁଇପ୍ରକାର - ୧) ଶବ୍ଦାର୍ଥବୋଧକ ୨) ମୂଳଶବ୍ଦ ବୋଧକ । ପ୍ରଥମଟିରେ ପ୍ରଚଳିତ ଶବ୍ଦମାନଙ୍କର ଅର୍ଥ ପ୍ରଦାନ । ଦ୍ୱିତୀୟ ଟିରେ ଓଡିଆ ଶବ୍ଦମାନଙ୍କର ମୂଳ ଶବ୍ଦ ନିର୍ଣ୍ଣୟପ୍ରଦାନ ।

୦.୬.୨. 'ମୂଳ ଶବ୍ଦବୋଧିକା' ନାମରେ ୪୮ ପୃଷ୍ଠାର ଏକ ଗ୍ରନ୍ଥ ରଚନା କରି ସେଥରେ ଓଡିଆ ଶବ୍ଦ ମାନଙ୍କର ମୂଳ ଉତ୍ସ ସନ୍ଧାନ କରିଛନ୍ତି ପଣ୍ଡିତ ରଥ । ଗ୍ରନ୍ଥଟିର ପ୍ରକାଶସାଲ ଦୁଷ୍ପ୍ରାପ୍ୟ । ଉଦାହରଣ ରୂପେ କେତୋଟି ଶବ୍ଦର ମୂଳ ଉତ୍ସ ଦେଖାଯାଇପାରେ । -

| | | |
|---|---|---|
| ଆପୁ | - | ଆପୂକ |
| ଇଟା | | ଇଷ୍ଟକା |
| ଚାଖଣା | - | ଚକ୍ଷଣା |
| ଦିଆସିଲାଇ | - | ଦୀପଶଳାକା ଇତ୍ୟାଦି । |

୦.୬.୩. ୧୯୨୫ ସାଲରେ କଟକ ଟ୍ରେଡିଂ କମ୍ପାନୀ ଏକ ଅଭିଧାନ ପ୍ରସ୍ତୁତିର ଭାର ପଣ୍ଡିତ ରଥକୁ ପ୍ରଦାନ କରିଥିଲେ । ଏହାର ନାମ ପକେଟ ଅଭିଧାନ । ଏ ଅଭିଧାନର ପ୍ରକାଶନ ବିଷୟରେ ପ୍ରକାଶକ କହିଛନ୍ତି, ''ଛାତ୍ରସମାଜ * * * ସୁଲଭମୂଲ୍ୟରେ ଅଉଖଣ୍ଡିଏ ଅଭିଧାନ ଲୋଡାଥିବାର ଅନୁମାନ କରି ଆମ୍ଭେମାନେ ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥଙ୍କ ଉପରେ ଏହିଭାର ଦେଇଥିଲୁଁ । ସେ ବହୁବର୍ଷ ହାଇସ୍କୁଲରେ ଓଡିଆ ଭାଷା ଶିକ୍ଷାଦାନ କର୍ମରେ ନିଯୁକ୍ତ ଥିଲେ ଓ ତାଙ୍କର ଛାତ୍ର ସମାଜ କି ଶ୍ରେଣୀର ଅଭିଧାନ ଅଭାବ ଅନୁଭବ କରୁଅଛନ୍ତି, ତାହା ଜାଣିବାର ସୁବିଧା ଥିଲା । ସେ ମହାଶୟ ଏହିକାର୍ଯ୍ୟରେ ବ୍ରତୀ ହୋଇ 'ପ' ଅକ୍ଷର ପର୍ଯ୍ୟନ୍ତ ସଂକଳନ କରିଅଛନ୍ତି । ଏହାପରେ ପଣ୍ଡିତ ରଥଙ୍କ ମୃତ୍ୟୁରେ ତାଙ୍କର ପ୍ରିୟଶିଷ୍ୟ ପଣ୍ଡିତଶ୍ରୀ ବାଞ୍ଛାନିଧି ମିଶ୍ର ପରବର୍ତ୍ତୀ ପର୍ଯ୍ୟାୟ ଶବ୍ଦମାନଙ୍କର ସଂକଳନ କରିଥିଲେ । ଏହି ଅଭିଧାନଟି ୭୦୦ ପୃଷ୍ଠାର । ପ୍ରତିପୃଷ୍ଠାରେ ୨ ଧାଡି ଏବଂ ହାରାହାରି ୨୫ ଗୋଟି ଶବ୍ଦ ପ୍ରତି ପୃଷ୍ଠାରେ ରହିଛି । ଅଭିଧାନଟି ଛାତ୍ର ସମାଜକୁ ଆଖି ଆଗରେ ରଖି ପ୍ରସ୍ତୁତ ''ବଡ ବଡ ଅଭିଧାନ ସବୁଭାଷାରେ ଅଛି ଓ ଆମ୍ଭ ମାନଙ୍କ ମାତୃଭାଷା ଓଡିଆରେ ମଧ ଅଛି । କିନ୍ତୁ ଛାତ୍ର ମାନଙ୍କର ଏପରି ପ୍ରକାଣ୍ଡ ଅଭିଧାନ ପ୍ରାୟ ବିଶେଷ ଭାବରେ ପ୍ରୟୋଜନରେ ଆସେନାହିଁ । ସେମାନେ ଅଳ୍ପମୂଲ୍ୟରେ କ୍ଷୁଦ୍ରଆକାର ବିଶିଷ୍ଟ ଖଣ୍ଡିଏ ଅଭିଧାନ ଲୋଡି ଥାଆନ୍ତି । ସେମାନଙ୍କର ପାଠ୍ୟପୁସ୍ତକରେ ଥିବା ଶବ୍ଦ ମାନଙ୍କର ସହଜ ସରଳ ଅର୍ଥଥିଲେ ଯଥେଷ୍ଟ ହେଲା ''।

(ଦ୍ରଷ୍ଟବ୍ୟ - ଭୂମିକା - ପକେଟ ଅଭିଧାନ - ୧୯୨୫)

୦.୬.୪. ଏଥିରେ କେବଳ ଶବ୍ଦର ଅର୍ଥ ପ୍ରଦାନ କରାଯାଇଛି । ଏବଂ ଏହା କି ପ୍ରକାର ପଦ ତାହା ସୂଚିତ । ଉଦାହରଣ -

ଅପଚୟ - ବି. କ୍ଷୟ, ହ୍ରାସ ।

ଉପନ୍ୟାସ- ବି. ଉପକଥା, କଳ୍ପିତ ଗଳ୍ପ

କ୍ଷୁଦ୍ର - ବିଂ . ଅଳ୍ପ, ସାନ, ନୀଚ ।

୦.୭.୧. ଅଭିଧାନ ପ୍ରଣୟନ କ୍ଷେତ୍ରରେ ଏହିପରି ବହୁ ଉଦ୍ୟମ ହୋଇ ଆସିଥିଲେ ମଧ୍ୟ ଏଗୁଡିକ ମଧ୍ୟରେ ତଥାପି କିଛି ଅଭାବ ରହିଥିଲା ସେମାନଙ୍କ ମଧ୍ୟରୁ -

୧ ) ପଣ୍ଡିତ ନନ୍ଦଙ୍କ ଅଭିଧାନ ବାହାରେ ବହୁ ପ୍ରଚଳିତ ଶବ୍ଦ ରହିଥିଲା ଯାହାର ଆଲୋଚନା ଜରୁରୀ ଥିଲା ।

୨ ) ଅନ୍ୟଭାଷା ମାନଙ୍କର ପ୍ରବେଶ ।

୩) କୋର୍ଟକଚେରୀରେ ବ୍ୟବହୃତ ଶବ୍ଦାବଳୀ ।

୪ ) ଜ୍ଞାନ ବିଜ୍ଞାନର ପ୍ରସାର ଓ ପ୍ରଚାର ଓ ସେ ସମ୍ବନ୍ଧୀୟ ଶବ୍ଦାବଳୀ ଓ ତଥ୍ୟ ।

୫ ) ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚା ଓ ତତ୍‌ସଂପର୍କୀୟ ଶବ୍ଦ ଓ ତଥ୍ୟ ସମୂହ ପ୍ରଭୃତି ।

ଏପରି ସମୟରେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷା କୋଷ'ର ସଂକଳନ, ଏ ସମସ୍ତ ଆବଶ୍ୟକତା ପୂରଣର ସମସ୍ତ ପ୍ରତିଶ୍ରୁତି ନେଇ ଆବିର୍ଭୂତ ।

୦.୭.୨. ପ୍ରହରାଜ 'ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ' ପ୍ରକାଶନ ସଂପର୍କରେ କହନ୍ତି - ଓଡିଆରେ ପୂର୍ଣ୍ଣାଙ୍ଗ ଅଭିଧାନ ନଥିବାରୁ ଅନେକ ସମୟରେ ଏକ ପ୍ରଦେଶବାସୀ ଓଡିଆ ଅନ୍ୟ ପ୍ରଦେଶବାସୀ ଓଡିଆଙ୍କ ମଧ୍ୟରେ ପ୍ରଚଳିତ ଶବ୍ଦମାନ ବୁଝିପାରନ୍ତି ନାହିଁ । ଏବଂ ପ୍ରାଚୀନ ଓଡିଆ ଗ୍ରନ୍ଥମାନଙ୍କରେ ଯେଉଁ ସବୁ ଶବ୍ଦ ପ୍ରଦତ୍ତ ହୋଇଅଛି ଏବଂ ବର୍ତ୍ତମାନ ସମୟରେ ଯେଉଁ ଶବ୍ଦମାନଙ୍କର ପ୍ରଚଳନ ନାହିଁ ସେଗୁଡିକର ପ୍ରକୃତ ଅର୍ଥ ଓଡିଆ ଭାଷାର ପଣ୍ଡିତ ମାନେ ସୁଦ୍ଧା ବୁଝିପାରିବା ଭଳି ସୁଗମ ଅଭିଜ୍ଞାନ ଗ୍ରନ୍ଥ ନାହିଁ । ବିଶେଷତଃ କୌଣସି ବିଦେଶୀୟ ଲୋକ ଓଡିଆ ଭାଷାର ଆଲୋଚନା କରିବାକୁ ଇଚ୍ଛାକଲେ ଓଡିଶୀ ରୀତି (idtom) ଓ ଓଡିଆ ଶବ୍ଦ ସମ୍ବଳିତ ଭାଷାକୋଷର ଅଭାବରୁ ବାଧହୋଇ ତାହାକରିପାରନ୍ତି ନାହିଁ । ଅନେକ ଦିନରୁ ମୁଁ ଏହି ଅସୁବିଧା ଅନୁଭବ କରୁଥିଲି । ଆମ୍ଭେମାନେ ଘରେ ପ୍ରତ୍ୟହ ଯେଉଁସବୁ ଶବ୍ଦ ବ୍ୟବହାରକରୁ । ଏ ପର୍ଯ୍ୟନ୍ତ ସେସବୁ ଶବ୍ଦ ମଧ୍ୟ କୌଣସି ଭାଷାକୋଷରେ ସ୍ଥାନ ପାଇନଥିବାରୁ ବିଦେଶୀୟଙ୍କ ନିକଟରେ ନିଜ ଭାଷାର ଗୌରବ ପ୍ରଖ୍ୟାପନ କରିବା ଲଜ୍ଜାଜନକ ହୁଏ । ''

(ଦ୍ରଷ୍ଟବ୍ୟ : ପ୍ରହରାଜ, ଗୋପାଳ ଚନ୍ଦ୍ର - ୧୯୩୧ )

୦.୭.୩. ଭାଷାକୋଷର ପରିକଳ୍ପନା, ପ୍ରସ୍ତାବନା ଓ ସଂପାଦନାରେ ଦୀର୍ଘ ସମୟ ବ୍ୟୟିତ । ବହୁ ଅଧ୍ୟୟନ, ମନନ, ଅନୁଶୀଳନ ଓ ଗବେଷଣାର ଫଳଶ୍ରୁତି ଏ । ୧୯୧୩ ମସିହାରେ ଏହାର ଶବ୍ଦ ସଂଗ୍ରହ । ୬ ବର୍ଷ ପରେ ଅର୍ଥାତ ୧୯୧୯ରେ ଲିଖନ ଆରମ୍ଭ । ୧୯୨୭ ରେ ଲିଖନ ଶେଷ । ୪ ବର୍ଷ ପରେ, ୧୯୩୧ ମସିହାରେ ପ୍ରଥମ ଖଣ୍ଡ ଓ ୧୯୪୦ ମସିହାରେ ଶେଷଖଣ୍ଡ ପ୍ରକାଶିତ । ଏଥିରେ ସ୍ଥାନିତ ମୋଟ ଶବ୍ଦ ଓ ବାକ୍ୟାଂଶର ସଂଖ୍ୟା ୧ ଲକ୍ଷ ୮୫ ହଜାର । ଏହା ୯୦୦୦ ପୃଷ୍ଠା ବିଶିଷ୍ଟ ୭ ଖଣ୍ଡରେ ପ୍ରକାଶିତ ।

୦.୭.୪.ଗ୍ରନ୍ଥ ପ୍ରସ୍ତୁତିରେ ପ୍ରହରାଜ ବିଭିନ୍ନ ଭାଷାର ଓ ବହୁ ବିଶିଷ୍ଟ ଗ୍ରନ୍ଥ ମାନଙ୍କର ସାହାଯ୍ୟ ନେଇଛନ୍ତି । ଏବଂ ସେଗୁଡିକୁ ପ୍ରଥମ ଖଣ୍ଡରେ ସ୍ୱୀକାର କରିଛନ୍ତି ମଧ । ସେତେବେଳେ ତାଙ୍କୁ ସାହାଯ୍ୟ କଲାଭଳି ଗ୍ରନ୍ଥ ଓଡିଆ ଭାଷାରେ ବା କାହିଁ ? ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଅଭିଧାନଟି ଏକମାତ୍ର ଆଖିଦ୍ଦୃଶିଆ ଗ୍ରନ୍ଥ । ଏତଦବ୍ୟତୀତ :

| | | |
|---|---|---|
| ମନିଅର ଉଇଲିଅମସ୍ | | ସଂସ୍କୃତ ଇଂରାଜୀ ଡିକ୍‌ସିନାରୀ |
| ଡକ୍ଟର କାର୍ତ୍ତିକାର | - | Indian Plants (ଭାରତୀୟ ଉଦ୍ଭିଦ) |
| Prof. Apte | - | Practical Sanskrit - English Dictionary |
| John Beams | - | Comparative Grammar of four Indo Aryan Languages |
| ହାଏନ ସାହେବ | - | Botany of Bihar and Orissa. |
| ପାଦ୍ରୀ ହାଓ୍ୱେଲ | - | ଅପ୍ରକାଶିତ ଓଡିଆ ଇଂରାଜୀ ଅଭିଧାନର ପାଣ୍ଡୁଲିପି । |
| ଡକଟର ଫାଲନଙ୍କର | | ହିନ୍ଦୁସ୍ଥାନୀ - ଇଂରାଜୀ ଡିକ୍‌ସିନାରୀ |
| George Greierson | - | Linguistic Survey of India. |
| ପାଦ୍ରୀ ଗ୍ରଣ୍ଡି | - | ଓଡିଆ ଇଂରାଜୀ ଡିକ୍ସିନାରୀ |
| ଜ୍ଞାନେନ୍ଦ୍ର ମୋହନ ଦାସ | | ବଙ୍ଗଳା ଭାଷା ଅଭିଧାନ |
| ନଗେନ୍ଦ୍ରନାଥ ବସୁ | | ବିଶ୍ୱକୋଷ |
| ରାୟବାହାଦୂର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି | - | ବଙ୍ଗଳା ଶବ୍ଦକୋଷ |
| ରାମକମଳ ବିଦ୍ୟାଳଙ୍କାର | - | ସଚିତ୍ର ବଙ୍ଗଳା - ପ୍ରକୃତି ବାଦ ଅଭିଧାନ |
| କାଶୀନାଗରୀ ପ୍ରଚାରିଣୀ ସଭା | - | ହିନ୍ଦୀ ଶବ୍ଦସାଗର |
| ସୁବଳ ଚନ୍ଦ୍ର ମିତ୍ର | | ସରଳ ବଙ୍ଗଳା ଅଭିଧାନ |
| ବି. ଗାଙ୍ଗୁଲି | - | The student's Bengali and English Dictionary. |
| ଶ୍ରୀ ନଗେନ୍ଦ୍ରନାଥ ସେନଗୁପ୍ତ | - | ଦ୍ରବ୍ୟଗୁଣ ଶିକ୍ଷା (ବଙ୍ଗଳା) |
| ରାଜା ରାଧାକାନ୍ତଦେବ | - | ସମର୍ଥ କୋଷ. |
| ସଂସ୍କୃତ ଅଭିଧାନ | - | ଶବ୍ଦକଳ୍ପଦ୍ରୁମ - ପ୍ରଭୃତି ଗ୍ରନ୍ଥ ମାନଙ୍କର ସାହାଯ୍ୟ ନିଆଯାଇଛି । |

**୦.୭.୫.** ଏହି ଭାଷାକୋଷର ସଂକଳନରେ ଓଡିଆ ଭାଷା ସାହିତ୍ୟର ବହୁ ବିଶିଷ୍ଟ ବିଦ୍ୱାନ ମାନଙ୍କର ସହାୟତା ଉପଲବ୍ଧ । ଶ୍ରୀମତୀ ପୀତାମ୍ବରୀ ଦେବୀ, ପଣ୍ଡିତ ଶ୍ରୀ କୁଳମଣି ଦାଶ, ପଣ୍ଡିତ ଶ୍ରୀ ରାମଚନ୍ଦ୍ର ରଥ, ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର, ସାମନ୍ତ ଶ୍ରୀ ନରସିଂହ ମହାପାତ୍ର, ପଣ୍ଡିତ ଜଗନ୍ନାଥ ରଥ, ଶ୍ରୀ ଗୋଲୋକ ଚନ୍ଦ୍ର ପ୍ରଧାନ, ଶ୍ରୀ ଭଗବାନ ପତି, ଶ୍ରୀ କୃଷ୍ଣଚନ୍ଦ୍ର କର ପ୍ରଭୃତି । ପରବର୍ତ୍ତୀ କାଳରେ ଏମାନଙ୍କ ମଧ୍ୟରୁ ଅନେକେ ସ୍ୱତନ୍ତ୍ର ଓଡିଆ ଅଭିଧାନ ପ୍ରଣୟନରେ ପ୍ରୟାସୀ ହୋଇଥିଲେ ।

**୦.୭.୬.** ବହୁ କାବ୍ୟ, ନାଟକ, ପୁରାଣ ଓ ଜ୍ଞାନବିଜ୍ଞାନ ପୁସ୍ତକର ସହାୟତାରେ ଶବ୍ଦ ଗୁଡିକର ବିବରଣ ପ୍ରଦତ୍ତ । ଲୋକଭାଷା, ଆଞ୍ଚଳିକ ଭାଷା ଓ ଷାଣ୍ଡାଡଂ ଓଡିଆ ଭାଷାର ବହୁଶବ୍ଦର ବିବରଣ ଏବଂ ଓଡିଆ ଢ଼ଗଢ଼ମାଳି, ଲୋକଗୀତ ଓ ଲୋକକାହାଣୀ ମାନଙ୍କରୁ ବହୁ ଲୋକଶବ୍ଦର ଆହରଣରେ ପୁଷ୍ଟ ।

୦.୭.୭. ଶବ୍ଦଗୁଡିକର ଅର୍ଥ ବହୁଭାବରେ ଦିଆଯାଇଛି । ବାଚ୍ୟାର୍ଥ, ବ୍ୟଙ୍ଗାର୍ଥ ଓ ସାମାଜିକ ଚଳଣିରେ ତା'ର ଅର୍ଥର ସୂଚନା ରହିଛି । ଫଳତଃ କାବ୍ୟକବିତାରେ ଓ ଲୋକବ୍ୟବହାରରେ ଶବ୍ଦର ପ୍ରୟୋଗ ଓ ଉପଯୋଗ ବାରି ହୋଇଥାଏ । ବାକ୍ୟାଂଶଗତ (Phrase) ପ୍ରୟୋଗ ମଧ୍ଯ ଆଲୋଚିତ ।

୦.୭.୮. ଶବ୍ଦର ଓଡିଆ ଅର୍ଥ ପ୍ରଦାନ ସହ ୪/୫ ଗୋଟି ଭାଷାରେ ତା'ର ଅର୍ଥ ପ୍ରଦତ୍ତ । ସଂସ୍କୃତ,ବଂଗଳା, ହିନ୍ଦୀ, ଆରବିକ ଓ ତେଲୁଗୁ ଭାଷାରେ ପ୍ରକାଶିତ ଶବ୍ଦାର୍ଥ ଏହାକୁ ଏକ ବହୁଭାଷୀ - ଅଭିଧାନ (Multilingual Dictionary) ରେ ପରିଣତ କରିଛି । ଫଳତଃ ଜଣେ ଅଣ-ଓଡିଆ ଭାରତୀୟ ଏଥିରୁ ସହଜରେ ଶବ୍ଦ ଅର୍ଥ ଜାଣିପାରିବ ।

୦.୭.୯. ପ୍ରତ୍ୟେକ ଶବ୍ଦକୁ ଇଂରେଜୀ ଭାଷାରେ 'Transliteration' କରାଯାଇଛି , ଯାହାଦ୍ୱାରା ବିଦେଶୀ ମାନେ ସହଜରେ ଏହାର ଉଚ୍ଚାରଣ ଓ ଅର୍ଥଜାଣିବା ସୁଗମ ହୋଇଛି ।

୦.୮.୦. ଶବ୍ଦ ଗୁଡିକର ସୂଚନା ଦିଆଯାଇଛି । ଇଟାଲୀୟ, ଗ୍ରୀକ୍, ଜର୍ମାନୀ ହେବୁ କିମ୍ବା ପାଲି, ଗ୍ରାମ୍ୟ, ଦେଶଜ କିମ୍ବା ଦ୍ରାବିଡ, ସାନ୍ତାଳ, କନ୍ଧ କେଉଁ ଭାଷାର ଶବ୍ଦଟି ତାହା ଚିହ୍ନିତ ହୋଇଛି ।

୦.୮.୧. ଭାଷାତତ୍ତ୍ୱ ସମ୍ବନ୍ଧୀୟ ତୁଳନାତ୍ମକ ଆଲୋଚନା ମଧ୍ୟ ରହିଛି । 'ପ୍ରଚଳିତ ଓଡିଆ ବ୍ୟାକରଣକୁ ଅନୁସରଣ କରି ଶବ୍ଦ ମାନଙ୍କର ବ୍ୟୁତ୍ପତ୍ତି, ଉତ୍ପତ୍ତି ଓ ଅନ୍ୟଭାଷା ସଙ୍ଗେ ସମ୍ବନ୍ଧ ନିର୍ଣ୍ଣିତ ହୋଇଛି । (ଦ୍ରଷ୍ଟବ୍ୟ - ପ୍ରହରାଜ, ଗୋପାଳଚନ୍ଦ୍ର -୧୯୩୧ ) ସମାସ,ଲିଙ୍ଗ, ପ୍ରଭୃତିର ସୂଚନା ମଧ୍ୟ ରହିଛି ।

୦.୮.୨. ବିଷୟ ଭିତ୍ତିକ ଶବ୍ଦ ଯଥା - ଗଣିତ, ଇତିହାସ, ଦର୍ଶନ, ସାହିତ୍ୟ ଆଦିର ସୂଚନା ପ୍ରଦତ୍ତ ।

୦.୮.୩. 'ଓଡିଆରେ ବିଶ୍ୱକୋଷ ଶ୍ରେଣୀର ଅଭିଜ୍ଞାନ ନାହିଁ - ଏ ଅଭିଧାନରେ ବିଷୟ ବସ୍ତୁର ବ୍ୟାପକ ଆଲୋଚନା ରହିଛି । ଐତିହାସିକ, ପୌରାଣିକ ଚରିତ୍ର କିମ୍ବା ଘଟନା କିମ୍ବା ପ୍ରସିଦ୍ଧ ସ୍ଥାନ, ସହର, ଉଦ୍ଭାବନ, ଆଦିର ଦୀର୍ଘଆଲୋଚନା କରାଯାଇଛି । ତେଣୁ ଏହା ଜ୍ଞାନକୋଷଭିତ୍ତିକ ଭାଷାକୋଷ (Encyclipedic- Dictionary)ର ମାନ୍ୟତା ଲାଭକରିଛି ।

୦.୮.୪. ୭ଖଣ୍ଡରେ ପ୍ରକାଶିତ ବୃହତ୍‌କାୟ ଏହି ଗ୍ରନ୍ଥ ସାଧାରଣ ପାଠକର ପହଞ୍ଚର ବାହାରେ । ମୂଲ୍ୟଦୃଷ୍ଟିରୁ ମଧ୍ୟ ଅଧିକ । ବିପୁଳ ଆୟତନ ହେତୁ ନେବା ଆଣିବା କିମ୍ବା ପଠନ କରିବାରେ ଅସୁବିଧା । ଅଧୁନା ଏହାର ପୁନଃମୁଦ୍ରଣ ନାହିଁ । ଦୁଷ୍ପ୍ରାପ୍ୟ ହେତୁ ପଠନ ଓ ଆଲୋଚନାରୁ ନିର୍ବାସିତ ଓ ପରିତ୍ୟକ୍ତ ମଧ୍ୟ ।

୦.୯.୧. 'ପ୍ରମୋଦ ଅଭିଧାନ' ଓଡିଆ ଅଭିଧାନ କ୍ଷେତ୍ରରେ ଆଉଏକ ଉଲ୍ଲେଖ ଯୋଗ୍ୟ ସୃଷ୍ଟି । ତାଳଚେରର ବିଶିଷ୍ଟ ବିଦ୍ୱାନ ପଟ୍ଟାୟତ ଶ୍ରୀ ପ୍ରମୋଦ ଚନ୍ଦ୍ର ଦେବ, ପଣ୍ଡିତ ଦାମୋଦର ମିଶ୍ରଙ୍କ ସହାୟତାରେ ୨ ଖଣ୍ଡି ସୁଦୃଶ୍ୟ ବିଶାଳ ଗ୍ରନ୍ଥ ସଂକଳନ କରିଛନ୍ତି । ଏହି ପୁସ୍ତକ ସଂପର୍କରେକୁହାଯାଇଛି - ''ପଠଦ୍ଦଶାରେ ଓଡିଆ ସାହିତ୍ୟର ଆଲୋଚନା କଲାବେଳେ ମୁଁ ଅନେକ ସମୟରେ ଖଣ୍ଡିଏ ଉପଯୁକ୍ତ ଓଡିଆ ଅଭିଧାନର ଅଭାବ ଅନୁଭବ କରିଥିଲି । ସେହି ଅଭାବ ମୋର କାହିଁକି ପାଠକ ସାଧାରଣଙ୍କର ମଧ୍ୟ ଥିଲା ନିଜ ମାତୃଭାଷାର ଉନ୍ନତି କଳ୍ପେ ଓ ପୂର୍ବ ସଙ୍ଗୀତ - ସାହିତ୍ୟ - ସେବା ଆକାଂକ୍ଷା ଦ୍ୱାରା ପ୍ରଣୋଦିତ ହୋଇ ମୁଁ ୧୯୩୬ ମସିହାରେ ଅଗ୍ରସର ହେଲି । '' (ଦ୍ରଷ୍ଟବ୍ୟ - ପଟ୍ଟାୟତ, ଶ୍ରୀ ପ୍ରମୋଦ ଚନ୍ଦ୍ର ଦେବ, ୧୯୪୨ )

୦.୯.୨.   ୧୯୩୬ ରୁ ୧୯୪୨ ଦୀର୍ଘ ୬ ବର୍ଷର ସାଧନା ଏଇ 'ପ୍ରମୋଦ ଅଭିଧାନ' ୨ ଖଣ୍ଡ ଯାକ ୧୯୪୨ରେ ପ୍ରକାଶିତ । ୨୮୯୧ ପୃଷ୍ଠାରେ ୧୫୦,୦୦୦ ଶବ୍ଦର ଆଲୋଚନା ପ୍ରଦତ୍ତ । ଗୋଟିଏ ପୃଷ୍ଠାରେ ତିନିଭାଗରେ ପ୍ରାୟ ୪୦/୫୦ ଶବ୍ଦର ଅର୍ଥ ରହିଛି ।

୦.୯.୩.   ଶବ୍ଦର ଧାତୁ, ଜାତି, ପ୍ରତ୍ୟୟ ଏବଂ କେଉଁ ଅଞ୍ଚଳରୁ ସଂଗୃହୀତ ସେସବୁ ସୂଚନା ରହିଛି । ବିଭକ୍ତି, ଲିଙ୍ଗ, ଅନ୍ୱୟ ଆଦିର ଆଲୋଚନା ରହିଛି ।

୦.୯.୪.   "ଉତ୍କଳର ବିଭିନ୍ନ ସ୍ଥାନରେ ପ୍ରଚଳିତ ଦେଶଜ, ପ୍ରାଚୀନ ସାହିତ୍ୟରେ ବ୍ୟବହୃତ ହେଉଥିବା ଓ ଆଧୁନିକ ପ୍ରଚଳିତ ଶବ୍ଦମାନ ଯଥାର୍ଥ ଭାବରେ ସନ୍ନିବେଶିତ ହୋଇଛି। " (ଦ୍ରଷ୍ଟବ୍ୟ - ପଞ୍ଚାୟତ , ଶ୍ରୀ ପ୍ରମୋଦଚନ୍ଦ୍ର ଦେବ - ୧୯୪୨)

୦.୯.୫.   ପାଠକଟିଏ ଇପ୍‌ସିତ ଶବ୍ଦଟିର ଅର୍ଥ ଖୋଜିପାଇବାରେ ଏଥିରେ ନୟାନ୍ତ ହେବାକୁ ପଡେ ନାହିଁ । ଯାହାକି ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଅନୁଭୂତ ।

୦.୯.୬.ଓଡିଆ - ଓଡିଆ ଅଭିଧାନ କ୍ଷେତ୍ରରେ ଏ ଏକ ସାନ୍ଦ୍ର ବୃହତ - ଓଡିଆ ଅଭିଧାନ (Compact Monolingual Dictionary) । ଓଡିଆ ଭାଷାଭାଷୀଙ୍କ ପାଇଁ ଏକ ସାର୍ଥକ ଅଭିଧାନ ।

୦.୯.୭.ଏଥିରେ ରହିଥିବାଅଭାବ ମଧ୍ୟରେ ଶବ୍ଦଟିର ପ୍ରୟୋଗାତ୍ମକ ବିଧି ଉଦାହରଣ ସହ ଦିଆଯାଇନାହିଁ । ଯେପରି ଶବ୍ଦତତ୍ତ୍ୱ ବୋଧ ଅଭିଧାନ ଓ ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷରେ ରହିଛି । ବୋଧହୁଏ କଳେବର ବୃଦ୍ଧି ଭୟ ଏହାର କାରଣ ହୋଇପାରେ । ଓଡିଆର ବାକ୍ୟାଂଶଗତ ଆଲୋଚନା (Phrase) ଏଥିରେ ଅନୁପଲବ୍‌ଧ ।

୧.୧.୦.   ଏହି ଅଭିଧାନ ମାନଙ୍କ ବ୍ୟତୀତ ପରବର୍ତ୍ତୀ କାଳରେ ଓଡିଆ ଭାଷାରେ ବହୁଅଭିଧାନ ସଂକଳିତ ହୋଇଛି । କେତେକ କ୍ଷୁଦ୍ର ଓ କେତେକ ବୃହତ୍ । ସୁଦୃଶ୍ୟ ବୃହତ୍ ଅଭିଧାନମାନଙ୍କ ମଧ୍ୟରେ ସରଳ ଓଡିଆ ଅଭିଧାନ - ପଣ୍ଡିତ କୁଳମଣି ଦାଶ ଶର୍ମା, ଆନନ୍ଦ Oriya - Oriya - English Dictionary - ବିନାୟକ ପାଢ଼ୀ , ନବ ଅଭିଧାନ ଅଧ୍ୟାପକ ଶ୍ରୀଧର ଦାଶ, ବୃହତ ଓଡିଆ ଅଭିଧାନ - ବାବା ବୈଦ୍ୟନାଥ ପାଢ଼ୀ, ତରୁଣ ଶବ୍ଦ କୋଷ - ପଣ୍ଡିତ କୃଷ୍ଣଚନ୍ଦ୍ରକର , ଅଜନ୍ତା ଓଡିଆ ଅଭିଧାନ- ଶ୍ରୀ ଯମେଶ୍ୱର ରଥ, ଓଡିଆ ଶବ୍ଦତାତ୍ତ୍ୱିକ ଅଭିଧାନ - ସଂସ୍କୃତି ବିଭାଗ, ଓଡିଶା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

୧.୧.୧.   ଏମାନଙ୍କ ମଧ୍ୟରୁ କେତେକ ଓଡିଆ-ଇଂରେଜୀ-ଓଡିଆ- ଯଥା - ବୃହତ୍ ଓଡିଆ ଅଭିଧାନ, କେତେକ ଓଡିଆ-ଓଡିଆ ଇଂରାଜୀ ଯଥା- ଆନନ୍ଦ Engilsh Dictionary ଓ ନବ ଅଭିଧାନ ଏବଂ ଓଡିଆ ଭାଷାର ଆଲୋଚନା ଦୃଷ୍ଟିରୁ ଯଥା ପ୍ରତ୍ୟୟ, ବ୍ୟାକରଣ ଶୁଦ୍ଧତା, ଶସଷ ଭେଦାଦିକୁ ନେଇ ତରୁଣ ଶବ୍ଦକୋଷ ରଚିତ ।

୧.୧.୨.   ଏ ସମସ୍ତ ମଧ୍ୟରେ ଦୃଷ୍ଟି ଆକର୍ଷଣୀୟ ସଂକଳନ ହେଉଛି 'ଅଜନ୍ତା ଓଡିଆ ଅଭିଧାନ' ଏବଂ 'ଓଡିଆ ଶବ୍ଦ ତାତ୍ତ୍ୱିକ ଅଭିଧାନ' । ଅଜନ୍ତା ଓଡିଆ ଅଭିଧାନ ୨୩୯୨ ପୃଷ୍ଠାର ଏକ ଶୋଭନ ଗ୍ରନ୍ଥ ଏବଂ ଲକ୍ଷାଧିକ ଶବ୍ଦ ସଂଗ୍ରହର ଏକକ ଉଦ୍ୟମ । ବହୁ ଆୟାସପୂର୍ଣ୍ଣ ସାଧନା । ପ୍ରତି ପୃଷ୍ଠାରେ ହାରାହାରି ୫୦

ଶବ୍ଦ ୨ ଧାଡ଼ିରେ ଲେଖାଯାଇଛି । ଶବ୍ଦର ତତ୍‌ସମ, ତଦ୍‌ଭବ, ଗ୍ରାମ୍ୟାଦି ପରିଚୟ ସହ ପଦଭେଦର ସୂଚନା ଦିଆଯାଇଛି । ପ୍ରଚଳିତ କେତେକ ଇଂରାଜୀ ଶବ୍ଦକୁ ଓଡ଼ିଆ ଲିପିରେ ଲେଖାଯାଇ ଅର୍ଥ ପ୍ରଦତ୍ତ । ଗୁଡ଼ିଏ ବସ୍ତୁ, ବ୍ୟକ୍ତି, ଐତିହାସିକ ଓ ଦର୍ଶନୀୟ ସ୍ଥାନମାନଙ୍କର ବିବରଣୀ ରହିଛି ।

ସଂସ୍କୃତି ନିର୍ଦ୍ଦେଶାଳୟ, ଓଡ଼ିଶା ସରକାରଙ୍କ ଦ୍ୱାରା ଏକ ବିରାଟ ଅଭିଧାନ ପରିକଳ୍ପନାର ପ୍ରଥମଖଣ୍ଡ ଅ-ଙ ପ୍ରକାଶ ପାଇଛି । ସରକାରୀ ଉଦ୍ୟମଟି ଅତ୍ୟନ୍ତ ସୁଚାରୁ ଓ ନିଷ୍ଠାଯୁକ୍ତ ହେବାକଥା । ଏବଂ ଅନ୍ୟାନ୍ୟ ସମସ୍ତ ପ୍ରକାଶନ ଠାରୁ ଅନନ୍ୟ, ସୁଦୃଶ୍ୟ ରୁଚିପୂର୍ଣ୍ଣ ଓ ପ୍ରତିନିଧି ସ୍ଥାନୀୟ ହେବାକଥା । ଅଭିଜ୍ଞ, ପଣ୍ଡିତ ଓ କୁଶଳୀ ଭାଷା ବିଜ୍ଞାନୀ ମାନଙ୍କ ରଚିତ ଓ ସଂକଳିତ ହେବାକଥା । କିନ୍ତୁ ଓଡ଼ିଶାର ଅଧିକାଂଶ ଯୋଜନା ପରି ଏହି ଅଭିଧାନ ସଂକଳନ ମଧ ବିଫଳତାରେ ପରିଣତ ହୋଇଛି । ବହୁ ଶବ୍ଦ, ବର୍ଣ୍ଣ ଓ ଲିଖନଗତ ଅଶୁଦ୍ଧିରେ ଭରପୂର ଏହି ଖଣ୍ଡଟି ବର୍ତ୍ତମାନ ଅବାଞ୍ଛିତ ଓ ପରିତ୍ୟକ୍ତ ହୋଇ ପଡ଼ିଛି । ଏପରିକି ପୁସ୍ତକଟି କ୍ରୟପାଇଁ ମଧ ବଜାରରେ ମିଳୁନାହିଁ, ତେଣୁ ଏହା ବିଷୟରେ ବହୁ ବ୍ୟକ୍ତି ବିଶେଷ ଜାଣିବାର ଅବକାଶ ନାହିଁ ଓ ଯଦିଓ ପରିକଳ୍ପନାଟି ମନୋଜ୍ଞ, ସଂକଳକଙ୍କର ଅନଭିଜ୍ଞତା ଓ ହେୟଭାବ ଏହି ଅଭିଧାନଟିକୁ ବିକଳାଙ୍ଗ କରିଦେଇଛି । (ଦ୍ରଷ୍ଟବ୍ୟ - ପାଣିଗ୍ରାହୀ, ନୀଳମାଧବ - ସମୟ - ୨୮.୧୦.୧୯୯୭)

୧.୧.୩. ଅନ୍ୟ ଯେଉଁ ସବୁ ଅଭିଧାନ ସଂପର୍କରେ ଉପରେ ସୂଚନା ଦିଆଯାଇଛି ତାହା ଅତୀତ ଅଭିଧାନ ମାନଙ୍କର ଚର୍ବିତ ଚର୍ବଣଛଡ଼ା ଆଉକିଛି ନୁହେଁ । କେତେକ ବିଦେଶୀ, ବ୍ୟାବହାରିକ, ପ୍ରଶାସନିକ ଓ ଟେକନିକାଲ ଶବ୍ଦ ମାନଙ୍କୁ ଅନ୍ତର୍ଭୁକ୍ତ କରି ନୂତନତା ରୂପେ ଉପସ୍ଥାପିତ କରିଛନ୍ତି । ବରଂ ଉପର୍ଯୁକ୍ତ ଅଭିଧାନମାନଙ୍କରେ ସଂକଳକଙ୍କର ନିଷ୍ଠା ଅପେକ୍ଷା ବ୍ୟବସାୟିକ ମନୋବୃତ୍ତି ଅଧିକତର ସ୍ପଷ୍ଟ । ମୁଖବନ୍ଧରେ ନୂତନତ୍ୱର ଯେତେ ଦାବୀ କଲେହେଁ, ଶବ୍ଦତତ୍ତ୍ୱବୋଧ ଅଭିଧାନ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଓ ପ୍ରମୋଦ ଅଭିଧାନର କୋଟୀକୁ କେହିହେଲେ ସ୍ପର୍ଶ କରିପାରିନାହାନ୍ତି ।

୨.୧.୧. ଅଭିଧାନ ପ୍ରସ୍ତୁତିରେ ଏତେ ପ୍ରଗତି ସତ୍ତ୍ୱେ, ବର୍ତ୍ତମାନର ଆବଶ୍ୟକତାକୁ ଚାହିଁ, ଓଡ଼ିଆରେ ଅଭିଧାନର ଅଭାବ ରହିଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିକାଶ, ବିଭିନ୍ନ ବିଦ୍ୟାମାନଙ୍କର ପରସ୍ପର ମଧ୍ୟରେ ଆଦାନ ପ୍ରଦାନ, ପ୍ରଶାସନିକ ଶବ୍ଦାବଳୀ, ଔଷଧୀୟ ଶବ୍ଦାବଳୀ, ବିଦେଶୀ ଦ୍ରବ୍ୟ, ଯନ୍ତ୍ର ମାନଙ୍କର ନାମ, ବିଭିନ୍ନ ପ୍ରକାର ସାଂସ୍କୃତିକ ଶବ୍ଦାବଳୀ ଆଦିର ଅନୁପ୍ରବେଶ ଓଡ଼ିଆ ଭାଷାରେ ହୋଇସାରିଲାଣି । ଯାହାର ଉପଯୁକ୍ତ ଶବ୍ଦ କିମ୍ବା ବୁଝାଇଲା ଭଳି ଅର୍ଥ ଆମ ପାଖରେ ନାହିଁ । ସେଗୁଡ଼ିକ ଅଭିଧାନ ମାନଙ୍କରେ ସ୍ଥାନିତ କରି ଲୋକଙ୍କ ପାଖରେ ପହଞ୍ଚାଇବା ଜରୁରୀ ।

୨.୧.୨. ଆମ ଅଭିଧାନ ଗୁଡ଼ିକ ବୈଜ୍ଞାନିକ ପ୍ରଣାଳୀରେ ତିଆରି ହୋଇନାହାନ୍ତି । ବିଦେଶୀ ଅଭିଧାନ ସହିତ ତୁଳନାକଲେ ଯେକେହି ସହଜରେ ଏହା ଜାଣିପାରିବ । ଏଗୁଡ଼ିକ ଧ୍ୱନିତାତ୍ତ୍ୱିକ ଉଚ୍ଚାରଣ ପଦ୍ଧତିକୁ ଆଦରି ନାହାନ୍ତି । ଶବ୍ଦଟିର ନିର୍ଭୁଲ ଓ ଶୁଦ୍ଧ ଉଚ୍ଚାରଣ ଉଲ୍ଲେଖ ବାଞ୍ଛନୀୟ, ଏହି ଅଭିଧାନଗୁଡ଼ିକରେ ତାହାର ଅଭାବ ରହିଛି । ତେଣୁ ଅଣଓଡ଼ିଆ ଭାରତୀୟ କିମ୍ବା ବିଦେଶୀମାନେ ଠିକ୍‌ଭାବେ ଓଡ଼ିଆ ଶବ୍ଦ ଉଚ୍ଚାରଣ କରିବା ସଂଭବ ନୁହେଁ । ଆମ ଭାଷା ସାହିତ୍ୟ ବିକାଶର ଏହା ଏକ ପ୍ରଧାନ ଅନ୍ତରାୟ ହୋଇ ରହିଛି । ଅଭିଧାନ ପ୍ରସ୍ତୁତି ସମୟରେ ଏହି ସବୁ ଅଭାବ ଗୁଡ଼ିକ ପ୍ରତି ଦୃଷ୍ଟିଦେବାକୁ ହେବ ।

୨.୧.୩. ଅଭିଧାନର ରୂପରେଖ ସଂପର୍କରେ ଓଡିଶାର ଦୁଇଜଣ ବିଶିଷ୍ଟ ବିଦ୍ୱାନଙ୍କର ମନ୍ତବ୍ୟ ଉଦ୍ଧାରକରି ଏ ପ୍ରବଂଧର ଉପସଂହାର କରାଯାଇପାରେ ।

I. " When I started writing articles for my 75 volume (71, 00, 000 words) Encyclopaedia (JNANMANDAL) I intensly felt that a Voluminous Comprehessive dictonary in Oriya is an absolute and immediate necessity. Without the help of such a dictionary, it is not easy to understand fully the new Oriya words or terms used in the Oriya Encyclopaedia. The old dictionaries donot serve the purpose." (ଦ୍ରଷ୍ଟବ୍ୟ :KANUNGO, BINODE - 1980)

II. "ଓଡିଆରେ ନିଜସ୍ୱ ବ୍ୟାକରଣ କିମ୍ବା ଅଭିଧାନ ନାହିଁ । ଗତ ପାଞ୍ଚ ବର୍ଷ ଧରି ଓଡିଆ ପ୍ରୟୋଗକୁ ଧରି ବ୍ୟାକରଣ ଏବଂ ଅଭିଧାନ ତିଆରିପାଇଁ ମୁଁ ବାରଦୁଆର ଶୁଖିପିଣ୍ଡା ହୋଇଛି । .........୧୯୮୧ ରୁ ୧୯୯୦ ଯାଏ ଓଡିଆରେ ବ୍ୟବହୃତ ତିରିଶ ଲକ୍ଷ ଶବ୍ଦ ଏକାଠିକରି ଏଗୁଡିକର ଅଧାବ୍ୟାକରଣିକ ଆଲୋଚନା ଶେଷ କରିଥିଲେ ସୁଦ୍ଧା ଏହାକୁ ସାରିବାକୁ ଅଣ୍ଟ ପଇସା ମିଳିଲାନାହିଁ ।

(ଦ୍ରଷ୍ଟବ୍ୟ : ପଟ୍ଟନାୟକ, ଡକ୍ଟର ଦେବୀ ପ୍ରସନ୍ନ - ସମ୍ବାଦ ୨୬/୧୧/୯୮)

ଓଡିଆ ଭାଷାର ସର୍ବାଧୁନିକ ଅଭିଧାନଟିଏ ପ୍ରକାଶପାଇବ କେବେ ? ଏବଂ ଏ ଦାୟିତ୍ୱ କାହାର ? ପ୍ରତ୍ୟେକ ସଚେତନ ଓଡିଆ ମନରେ ଏ ପ୍ରଶ୍ନ ଉଙ୍କିମାରିବା ସ୍ୱାଭାବିକ !

*ଅଭିଧାନମାନଙ୍କର ପ୍ରକାଶନ କାଳାନୁକ୍ରମଣୀ*

| କ୍ରମିକ ସଂଖ୍ୟା | ଅଭିଧାନର ନାମ | ଲେଖକ / ସଂକଳକ | ପ୍ରକାଶନ ସମୟ |
|---|---|---|---|
| ୧ | ଗୀତାଭିଧାନ | ଉପେନ୍ଦ୍ର ଭଂଜ | ଅଷ୍ଟାଦଶ ଶତାବ୍ଦୀ |
| ୨ | ଉତ୍କଳ ଭାଷାର୍ଥାଭିଧାନ | ଆମ୍‌ସ ସଟନ<br>ଭୁବନା ନନ୍ଦ ନ୍ୟାୟାଳଂକାର | ୧୮୪୩ |
| ୩ | ସାଧୁ ଭାଷାର୍ଥାଭିଧାନ | ------- | ୧୮୪୪ |
| ୪ | ଉତ୍କଳ ଭାଷାର୍ଥାଭିଧାନ | ରେଭରେଣ୍ଡ ଡବ୍ଲ୍ୟୁ ମିଲର<br>ରଘୁନାଥ ମିଶ୍ର | ୧୮୬୮ |
| ୫ | ଧାତୁବିବେକ | ମୂଳ ବଙ୍ଗଳା ରଚନା-<br>ଶ୍ରୀଯୁତ୍ ରାମକମଳ ବିଦ୍ୟାଳଂକାର<br>ଓଡିଆ ଅନୁବାଦ<br>ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ | ୧୮୭୨ |
| ୬ | ଶବ୍ଦନିଧି | ଚତୁର୍ଭୁଜ ପଟ୍ଟନାୟକ<br>ଶିବ ନାରାୟଣ ନାୟକ | ୧୮୮୩ |

| | | | |
|---|---|---|---|
| ୭ | ଉତ୍କଳ ଅଭିଧାନ | ଶ୍ରୀଯୁକ୍ତ ଜଗନ୍ନାଥ ରାଓ | ୧୮୯୧ |
| ୮ | ଅପଭ୍ରଂଶ ବୋଧିନୀ | ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ | ୧୮୯୧ |
| ୯ | ସଂକ୍ଷିପ୍ତ ଉତ୍କଳ ଅଭିଧାନ | ଶ୍ରୀଯୁକ୍ତ ଜଗନ୍ନାଥ ରାଓ | ୧୮୯୫ |
| ୧୦ | ସୁଖବୋଧ | ଭକ୍ତକବି ମଧୁସୂଦନ ରାଓ | ------ |
| ୧୧ | ବାଳକଣ୍ଠମାଳା | ପଣ୍ଡିତ ଦାମୋଦର କବିରତ୍ନ | ୧୯୧୩ |
| ୧୨ | ଶବ୍ଦବୋଧିକା | ପଣ୍ଡିତ ଯଜ୍ଞେଶ୍ୱର ନାୟକ | ୧୯୧୫ |
| ୧୩ | ଶବ୍ଦତତ୍ତ୍ୱବୋଧ ଅଭିଧାନ | ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା | ୧୯୧୬ |
| ୧୪ | ମୂଳଶବ୍ଦବୋଧିକା | ପଣ୍ଡିତ ମୃତ୍ୟୁଞ୍ଜୟ ରଥ | ----- |
| ୧୫ | ପକେଟ ଅଭିଧାନ | ପଣ୍ଡିତ ମୃତ୍ୟୁଞ୍ଜୟ ରଥ<br>ପଣ୍ଡିତ ବାଞ୍ଛାନିଧି ମିଶ୍ର | ୧୯୨୫ |
| ୧୬ | ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ | ଗୋପାଳ ଚନ୍ଦ୍ର ପ୍ରହରାଜ | |
| | (ଅ.ଔ)୧ମ ଖଣ୍ଡ | | ୧୯୩୧ |
| | (କ-ଙ)୨ୟ ଖଣ୍ଡ | ,, | ୧୯୩୨ |
| | (ଚ-ଥ)୩ୟ ଖଣ୍ଡ | | ୧୯୩୩ |
| | (ଦ-ପ)୪ର୍ଥ ଖଣ୍ଡ | | ୧୯୩୪ |
| | (ପ-ମ)୫ମ ଖଣ୍ଡ | ,, | ୧୯୩୫ |
| | (ଯ-ଷ)୬ଷ୍ଠ ଖଣ୍ଡ | ,, | ୧୯୩୭ |
| | (ସ-ହ)୭ମ ଖଣ୍ଡ | ,, | ୧୯୪୦ |
| ୧୭ | ପ୍ରମୋଦ ଅଭିଧାନ | ପଟ୍ଟାୟତ ଶ୍ରୀ ପ୍ରମୋଦ ଚନ୍ଦ୍ର ଦେବ | |
| | (ଅ - ପ) ୧ମ ଖଣ୍ଡ | | ୧୯୪୨ |
| | (ପ - ହ)୨ୟ ଖଣ୍ଡ | ,, | ,, |
| ୧୮ | The pocket dictionary Oriya - English - Oriya | K.C.Mishra | ୧୯୫୧ |
| ୧୯ | ସରଳ ଓଡିଆ ଅଭିଧାନ | ପଣ୍ଡିତ କୁଳମଣି ଦାଶ | ୧୯୫୬ |
| ୨୦ | ଆଧୁନିକ ଓଡିଆ ଅଭିଧାନ | ପଣ୍ଡିତ ନୀଳକଣ୍ଠ ରଥ | ୧୯୫୭ |
| ୨୧ | ଆନନ୍ଦ Oriya - Oriya - English Dictionary | Binayak Padhi | ୧୯୬୧ |
| ୨୨ | ନବ ଅଭିଧାନ | ଅଧାପକ ଶ୍ରୀଧର ଦାଶ | ୧୯୬୨ |
| ୨୩ | ବୃହତ୍ ଓଡିଆ ଅଭିଧାନ | ବାବା ବୈଦ୍ୟନାଥ ପାଢ଼ୀ | ୧୯୬୪ |
| ୨୪ | ତରୁଣ ଶବ୍ଦକୋଷ | ପଣ୍ଡିତ କୃଷ୍ଣଚନ୍ଦ୍ର କର | ୧୯୬୬ |
| ୨୫ | ଛାତ୍ର ଅଭିଧାନ | ଶ୍ରୀ ଲକ୍ଷ୍ମଣ ପଣ୍ଡା | ୧୯୬୬ |
| ୨୬ | ବ୍ୟାବହାରିକ ବିଦ୍ୟାର୍ଥୀ ଅଭିଧାନ | ଶ୍ରୀ ବୈକୁଣ୍ଠନାଥ ଆଚାର୍ଯ୍ୟ | ୧୯୮୪ |
| ୨୭ | ଅଜନ୍ତା ଓଡିଆ ଅଭିଧାନ | ଶ୍ରୀ ଯମେଶ୍ୱର ରଥ | ୧୯୯୩ |
| ୨୮ | ଓଡିଆ ଶବ୍ଦତାତ୍ତ୍ୱିକ ଅଭିଧାନ | ସଂସ୍କୃତି ନିର୍ଦ୍ଦେଶାଳୟ | ୧୯୯୭ |

(ଅ - ୯)

**ସହାୟକ ଗ୍ରନ୍ଥପଂଜୀ**


୧ ) ସାମନ୍ତରା, ଡକ୍‌ଟର ନଟବର- ଓଡିଆ ସାହିତ୍ୟର ଇତିହାସ ( ୧୮୦୩ - ୧୯୨୦ ) - ୧୯୬୪

ଆଧୁନିକ ଓଡିଆ ସାହିତ୍ୟ ବିକାଶର ପୃଷ୍ଠଭୂମି - ୧୯୭୯

୨ ) ଦାଶ, ଡକ୍‌ଟର ଗଗନେନ୍ଦ୍ର ନାଥ - ଓଡିଆ ଭାଷା ଚର୍ଚ୍ଚାର ପରମ୍ପରା - ୧୯୮୩

୩) CIIL, MYSORE - LEXICOGRAPHY IN INDIA - ୧୯୮୦

୪ ) ପାଣିଗ୍ରାହୀ, ନୀଳମାଧବ - ଓଡିଆ ଶବ୍ଦତାତ୍ତ୍ୱିକ ଅଭିଧାନ ! - ୧୯୯୭

୫ ) ପଟ୍ଟନାୟକ, ଡକ୍ଟର ଦେବୀପ୍ରସନ୍ନ - ଓଡିଆ ବନାନ ଓ ଉଚ୍ଚାରଣ - ୧୯୯୮

୬)କାନୁନଗୋ, ବିନୋଦ - ଶିଶୁଜ୍ଞାନ ମଣ୍ଡଳ - ୧୯୮୮

୭) ମିଶ୍ର, ଡ:ସଚ୍ଚିଦାନନ୍ଦ- ଅବନାରସତରଙ୍ଗ ଓ ଅନ୍ୟାନ୍ୟକାବ୍ୟ- ସୃଷ୍ଟି ସୌନ୍ଦର୍ଯ୍ୟ- ୧୯୯୫

୮ ) ବାଳ କଣ୍ଠମାଳା ଠାରୁ ଅଦ୍ୟନ୍ତା ଓଡିଆ ଅଭିଧାନ ପର୍ଯ୍ୟନ୍ତ ସମସ୍ତ ଅଭିଧାନ ।



ନୂଆସାହି,

ଭଞ୍ଜନଗର, ଗଞ୍ଜାମ , ୭୬୧ ୧୨୬

# ଭଞ୍ଜ ସାହିତ୍ୟରେ ସଂଯୋଜକ ଚରିତ୍ର

ଡଃ.ଅଶୋକ କୁମାରତ୍ରିପାଠୀ

ବିଶ୍ୱବିଶ୍ରୁତ ସାହିତ୍ୟ ସ୍ରଷ୍ଟା ମାନଙ୍କର ସୃଷ୍ଟିସାଫଲ୍ୟ ସଂପର୍କରେ ଅନୁଧ୍ୟାନକଲେ ଏକଥା ସ୍ପଷ୍ଟ ଉଦ୍ଭାସିତ ହୋଇଉଠେଯେ, ସେମାନଙ୍କ ସୃଷ୍ଟି ଅନ୍ତର୍ଗତ ମହନୀୟ ଚରିତ୍ରାବଳୀହିଁ ସେମାନଙ୍କୁ ତଥା ସେମାନଙ୍କ ସୃଷ୍ଟିକୁ ଚିର ଅମର କରିରଖିଛି, ତତ୍‌ସଂଗେ ସଂଗେ ପାଠକ, ଦର୍ଶକ ଓ ଶ୍ରୋତାଗଣଙ୍କୁ କେବଳ ବିମୋହିତ ନୁହଁ ପ୍ରଭାବିତ ତଥା ନିୟନ୍ତ୍ରିତ ମଧ କରିଆସୁଛି । ଶ୍ରୀରାମ, ଯୁଧିଷ୍ଠିର, ଭୀଷ୍ମ, କର୍ଣ୍ଣ, ଶକୁନ୍ତଳା, ହେଲେନ୍, ହେମ୍‌ଲେଟ୍, ଡନ୍‌କୁଇକ୍‌ଜିଟ୍ ପ୍ରମୁଖ ଚରିତ୍ର ଆଜିମଧ ମାନବୀୟ ଜୀବନ ଧାରାର ପ୍ରତ୍ୟେକ କ୍ଷେତ୍ରରେ ଉଦାହରଣ ରୂପେ ଜୀବିତ । ଅତଏବ କଥାଭିତ୍ତିକ ସାହିତ୍ୟ ସୃଷ୍ଟିରେ ଚରିତ୍ରର ମହତ୍ତ୍ୱକୁ ଆଦୌ ଗୌଣବୋଲି ବିଚାର କରାଯାଇନପାରେ । ମି.ରିଚାର୍ଡ ଟର୍‌ପିନ୍ ତାଙ୍କ ‘The Renaissance of English Drama’ ପୁସ୍ତକରେ ଲେଖିଛନ୍ତି, ନାଟକର କଥାଭାଗ, ଘଟଣା ଓ ପରିବେଶ ଯଦି ଚରିତ୍ର ସାପେକ୍ଷ ନହୁଏ, ତେବେ ତାହା ଉଚ୍ଚକୋଟୀର ନାଟକର ପରିଣତ ହେବା ସଂଭବ ନୁହେଁ । ଏସବୁ ବର୍ଣ୍ଣନା ସର୍ବଦା ଚରିତ୍ର ମାନଙ୍କର ବିକାଶ କ୍ରମର ଏକ ବିଶ୍ୱସ୍ତ ମାଧମରୂପେ ପରିକଳ୍ପିତ ହେବା ଉଚିତ । ସାଧାରଣ ଗଳ୍ପଭାଗ ବା ଘଟଣା ବହୁଳ ବିବୃତି ଯଦି କୌଣସି ଚରିତ୍ରର ସ୍ୱରୂପ ପ୍ରତିପାଦନରେ ସହାୟତା କରି ନପରେ, ତେବେ ତାହା ନାଟକ ନହୋଇ ଏକ ଆଈବୁଢ଼ୀ ଗଳ୍ପ ବା ବୀରତ୍ୱ ବ୍ୟଂଜକ ଅଭିଯାନର ବିବରଣୀ ଅଥବା ନାଟକ ନାମରେ ପ୍ରଚଳିତ ଅତିନାଟକ ହୋଇପାରେ । ‘‘ଚରିତ୍ର ସୃଷ୍ଟିରେ ଅପୂର୍ବ ଦକ୍ଷତା ଯୋଗୁଁ ସେକ୍ସପିୟର୍ , ଟଲଷ୍ଟୟ, ଡିକେନ୍ସ, ବ୍ୟାସ, ବାଲ୍ମୀକି, କାଳିଦାସ, ସାରଳା ଦାସ, ଫକୀର ମୋହନ ପ୍ରଭୃତି ଆଜି ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠିତ କଳାକାର ।

ସାହିତ୍ୟ ଅନ୍ତର୍ଗତ ଚରିତ୍ରମାନଙ୍କୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ଯଥା ମୁଖ୍ୟ ଓ ଗୌଣ । ମୁଖ୍ୟଚରିତ୍ର ମାନଙ୍କ ସହିତ ଅନ୍ୟାନ୍ୟ ଯେଉଁ ଚରିତ୍ର ଯଥାର୍ଥ ଭାବେ ସାହିତ୍ୟିକ ରୂପପରିଗ୍ରହ କରିଆସୁଛନ୍ତି ସେମାନଙ୍କୁ ଗୌଣଚରିତ୍ର କୁହାଯାଇଥାଏ । କିଂତୁ ସ୍ଥଳବିଶେଷରେ ଏହି ଗୌଣ ଚରିତ୍ର ମାନଙ୍କର ଭୂମିକା ଏତେବେଶି ପ୍ରସାରିତ ଓ ପ୍ରଧାନ୍ୟପୂର୍ଣ୍ଣ ହୋଇଥାଏ ଯେ , ସମାଲୋଚକ ମାନଙ୍କ ଦୃଷ୍ଟିରେ ଏଗୁଡିକ ମୁଖ୍ୟ ଚରିତ୍ରର ଗୌରବ ପ୍ରାପ୍ତ ହୋଇଥାନ୍ତି । ‘ଅଭିଜ୍ଞାନ ଶାକୁନ୍ତଳମ୍’ର ଅନସୂୟା ଓ ପ୍ରିୟମ୍ବଦା ସଖୀ ଦ୍ୱୟ, ‘କିଶୋରଚନ୍ଦ୍ରା ନନ୍ଦ ଚଂପୂର ସଖୀ ଲଳିତା, ‘ଛମାଣ ଆଠଗୁଣ୍ଠ’ର ଚଂପା ଏବଂ ‘ମାମୁଁ’ର ଚିତ୍ରକଳା ପ୍ରଭୃତି ଚରିତ୍ରମାନଙ୍କୁ ସମାଲୋଚକ ମାନେ ନିର୍ବିବାଦରେ, ନିଃସଂକୋଚ ଭାବରେ ମୁଖ୍ୟଚରିତ୍ର ରୂପେ ନିର୍ଣ୍ଣୟ କରିଛନ୍ତି । ସୁତରାଂ ଏପରି ଚରିତ୍ର ଗୁଡିକୁ ସର୍ବାଦୌ ଗୌଣ ଚରିତ୍ର ରୂପେ ବିଚାର କରି ଏମାନଙ୍କ ଅଧ୍ୟନରେ ଅବହେଳା ବା ଅନାସକ୍ତି ପ୍ରଦର୍ଶନ କରିବା ସାହିତ୍ୟ ପ୍ରତି ଅବିଚାର ହେବ ।

ଓଡିଆକାବ୍ୟସାହିତ୍ୟର କଥାବସ୍ତୁ ମଧ୍ୟରେ ଏହି ପ୍ରକାର ଚରିତ୍ର ଗୁଡିକ ଯେଉଁ ସବୁ କାର୍ଯ୍ୟ ସାଧନା କରିଥାନ୍ତି, ତାର ବିଚାର ଭିତ୍ତିରେ ଏମାନଙ୍କୁ ସଂଯୋଜକ ଚରିତ୍ର କହିବା ଅଧିକ ଯୁକ୍ତିଯୁକ୍ତ । କାରଣ ଏମାନେ ଗୋଟିଏ ଘଟଣା ସହିତ ଅନ୍ୟଏକ ଘଟଣାର ସଂପର୍କ ସ୍ଥାପନ କରିଥାନ୍ତି , ଗୋଟିଏ ଚରିତ୍ର ସହିତ ଅନ୍ୟଏକ ବା ଏକାଧିକ ଚରିତ୍ରର ସଂଯୋଗ ବିଧାନ କରିଥାନ୍ତି ଏବଂ ବିଷୟ ସଂଯୋଜନା କ୍ଷେତ୍ରରେ ସଯୋଗ

ସେତୁ ରୂପେ କାର୍ଯ୍ୟକରିଥାନ୍ତି । ଅଧିକନ୍ତୁ ସ୍ରଷ୍ଟାଭିପ୍ରେତ କାର୍ଯ୍ୟ ସାଧନା ପୂର୍ବକ ପ୍ରତିନିଧି ସ୍ୱରୂପ ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଅବିଚ୍ଛେଦ୍ୟ ସଂପର୍କ ପ୍ରତିଷ୍ଠା କରିଥାନ୍ତି । ଫଳରେ ସ୍ରଷ୍ଟାଙ୍କ ବକ୍ତବ୍ୟ, ବ୍ୟକ୍ତିତ୍ୱ ଏବଂ ସମସାମୟିକ ସମାଜ ବ୍ୟବସ୍ଥାର ସକଳ ଭାବ ସତ୍ତା ବହନକରି ପାଠକ ଓ ଦର୍ଶକ ମାନଙ୍କ ପାଇଁ ଏସକଳ ଅଧ୍ୟୟନର ମାଧ୍ୟମ ରୂପେ ପ୍ରତିଭାତ ହୁଅନ୍ତୁ । ତେବେ ଏ ପ୍ରକାର କାର୍ଯ୍ୟ ପ୍ରାୟଶଃ ସଖାସଖୀ କିମ୍ବା ଦୂତଦୂତୀ ମାନଙ୍କ ଦେଇ ନିର୍ବାହିତ ହେଉଥିବା ବେଳେ ଏମାନଙ୍କୁ ସଂଯୋଜକ ଚରିତ୍ର ରୂପେ ଅଭିହିତ କରିବା ନେଇ ଜିଜ୍ଞାସା ସୃଷ୍ଟି ହେବା ସ୍ୱାଭାବିକ । ଓଡିଆ କାବ୍ୟ ସାହିତ୍ୟ ଅନ୍ତର୍ଗତ ଚରିତ୍ର ସକଳଙ୍କୁ ଅନୁଧ୍ୟାନ କଲେ ଜଣାଯିବ, ଏପରି ଚରିତ୍ର ମାନଙ୍କ ମଧ୍ୟରୁ କେତେକ ସଖାସଖୀ, ଦୂତଦୂତୀ ବର୍ଗର ଅନ୍ତର୍ଭୁକ୍ତ ନୁହନ୍ତି । ଅର୍ଥାତ୍ ଏମାନେ ନାୟକ ନାୟିକାଙ୍କ ସମବୟସ୍କ ସହଚର ସହଚରୀ ନୁହନ୍ତି । ଏମାନଙ୍କୁ ନାୟକ ନାୟିକା ମାନେ କୌଣସି କାର୍ଯ୍ୟ ସାଧନ ନିମିତ୍ତ କେବେ କେଉଁ ଠାକୁ ପ୍ରେରଣ ମଧ୍ୟ କରିନଥାନ୍ତି । ଏମାନେ ସ୍ୱତଃ ପ୍ରବୃତ୍ତ ଭାବେ ଏକ ଭିନ୍ନ ସ୍ତରରେ ନାୟକ ନାୟିକାଙ୍କ ମିଳନ କାର୍ଯ୍ୟର ସଂଯୋଜନା କରିଥାନ୍ତି । ଅତଏବ ବ୍ୟାପକଦୃଷ୍ଟିରୁ ଏମାନଙ୍କୁ ସଂଯୋଜକ ଚରିତ୍ର ରୂପେ ବିଚାର କରି ଏମାନଙ୍କ ବିଭିନ୍ନ ଶ୍ରେଣୀକୁ ନିମ୍ନ ସାରଣୀରେ ଦର୍ଶାଇ ଦେବାର ପ୍ରଚେଷ୍ଟା କରାଯାଇଛି ।




ମଧ୍ୟଯୁଗୀୟ ଓଡିଆ କାବ୍ୟକଳାର ଶ୍ରେଷ୍ଠ ବିଦ୍ଧାଣୀ ଉପେନ୍ଦ୍ର ଭଂଜଙ୍କ ସୃଷ୍ଟିକର୍ମରେ ଏହି ସଂଯୋଜକ ଚରିତ୍ର ମାନଙ୍କର ଭୂମିକା ଅଧ୍ୟୟନ ପ୍ରସ୍ତୁତ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ । ତେବେ ପ୍ରବନ୍ଧର ସୀମା ସରହଦର ସୀମିତତାକୁ ଦୃଷ୍ଟିରେ ରଖି ସ୍ଥାନେ ସ୍ଥାନେ ଦୀର୍ଘ କାବ୍ୟୋଦ୍ଧୃତିକୁ ଉହ୍ୟରଖାଯାଇଛି ।

ଭଂଜୀୟ କାବ୍ୟସଂଭାର ମୁଖ୍ୟତଃ ପ୍ରଣୟଭାବ ମୂଳକ । ନାୟକ ନାୟିକାଙ୍କ ପୂର୍ବଜନ୍ମଠାରୁ ଆରମ୍ଭକରି ଏ ଜନ୍ମରେ ସେମାନଙ୍କର ବାଲ୍ୟ ପୌଗଣ୍ଡ, କୈଶୋର, ଯୌବନ, ପୂର୍ବରାଗ, ମିଳନ ପ୍ରୟାସ, ମିଳନ, ବିଛେଦ ଓ ପୁନର୍ମିଳନର ବର୍ଣ୍ଣନାରେ ତାଙ୍କ କାବ୍ୟ କଳେବର ଭାରାକ୍ରାନ୍ତ । ଏ ସମସ୍ତ ବିଭାଗ ମଧ୍ୟରୁ ନାୟକ ନାୟିକାଙ୍କ ମିଳନ ସଂଘଟନର ବର୍ଣ୍ଣନା ଅଧିକ ଦୀର୍ଘ ଓ ରସାଳ । ଏହି ପର୍ଯ୍ୟାୟରେ ନାୟକ ନାୟିକାଙ୍କ ମନରେ ପୂର୍ବରାଗ ସଂଚାର କରିବା ଠାରୁ ଆରଂଭ କରି କାମଲେଖର ଆଦାନ ପ୍ରଦାନ ମଧ୍ୟ ଦେଇ ପରିଶେଷରେ ସେମାନଙ୍କ ମିଳନ ତଥା ବିଛେଦରେ ସେମାନଙ୍କ ପ୍ରତି ବିରହ ଉପଚାର ବିଧାନ କରିବା ପର୍ଯ୍ୟନ୍ତ ସକଳ କାର୍ଯ୍ୟଭାର ଗ୍ରହଣ କରିଥାନ୍ତି ସଖା ସଖୀ, ଦୂତ ଦୂତୀ, ସନ୍ନ୍ୟାସୀ ସନ୍ନ୍ୟାସିନୀ, ବ୍ରାହ୍ମଣ ବ୍ରାହ୍ମଣୀ, ସାଧୁତ, ମନ୍ତ୍ରୀ, ପୁରୋହିତ, ମାଲ୍ୟାଣୀ, ଚେଟ, ବିଟ, ବିଦୂଷକ, ଶୁକ, ହଂସ, ନାରଦ, ଚଣ୍ଡିକା, ଶିବ, ଅମ୍ବିକା ପ୍ରଭୃତି ବହୁ ବିଚିତ୍ର ସଂଯୋଜକ ଚରିତ୍ର । କାବ୍ୟ ବିଷୟ ବସ୍ତୁର ସ୍ଥାନ କାଳ ଓ ପାତ୍ରକୁ ନେଇ ଉପେନ୍ଦ୍ରଭଂଜ ବେଳେ ବେଳେ ଭୌତିକ ନାରୀ କିମ୍ବା ପୁରୁଷ ସଂଯୋଜକ ଚରିତ୍ରର ଆଶ୍ରୟ ନେଉଥିବା ବେଳେ, ଆଉ କେତେବେଳେ ମାନବେତର କିମ୍ବା ଆଧିଭୌତିକ ସଂଯୋଜକ ଚରିତ୍ର ଅବଲମ୍ବନ କରିଛନ୍ତି । ଉପେନ୍ଦ୍ରଙ୍କ କାବ୍ୟ ସଂଭାରର ବିଷୟବସ୍ତୁ ଓ ତା'ର ଉପସ୍ଥାପନା କୌଶଳକୁ ଅନୁଧ୍ୟାନ କଲେ, ତାଙ୍କ ସୃଷ୍ଟିକ୍ରିୟା ନିମିତ୍ତ ସଂଯୋଜକ ଚରିତ୍ର ଗୁଡିକ କେତେ ଅପରିହାର୍ଯ୍ୟ, ତାହା ସହଜରେ ଉପଲବ୍ଧି କରିହୁଏ । ଏମାନଙ୍କ ବ୍ୟତିରେକେ କାବ୍ୟର ବିଷୟବସ୍ତୁ ସାମାନ୍ୟ ଅଗ୍ରସର ହେବା ମଧ୍ୟ ସଂଭବ ନୁହେଁ । ଉଦାହରଣ ସ୍ୱରୂପ 'ଲାବଣ୍ୟବତୀ','କୋଟିବ୍ରହ୍ମାଣ୍ଡସୁନ୍ଦରୀ' 'ସୁଭଦ୍ରାପରିଣୟ' ପ୍ରଭୃତି ଶ୍ରେଷ୍ଠ କୃତି ଗୁଡିକୁ ବିଚାର କରାଯାଇପାରେ । ଏଇ କାବ୍ୟଗୁଡିକରେ ନାୟକ ନାୟିକାଙ୍କ ଅପେକ୍ଷା ସଂଯୋଜକ ଚରିତ୍ର ମାନେ ହିଁ ଅଧିକ ଚଳଚଂଚଳ, ଅଧିକ କର୍ମମୁଖର । ସମଗ୍ର ସୃଷ୍ଟି କର୍ମକୁ ଏମାନେହିଁ ନିୟନ୍ତ୍ରଣ କରି ରଖିଥାନ୍ତି ; ନାୟକ ନାୟିକା ନିମିତ୍ତ ମାତ୍ର ମନେ ହୁଅନ୍ତି ।

**ଭୌତିକ - ପୁରୁଷ :-**

ଭଂଜସାହିତ୍ୟ ଅନ୍ତର୍ଗତ ଭୌତିକ ପୁରୁଷ ସଂଯୋଜକ ଚରିତ୍ର ମାନଙ୍କ ମଧ୍ୟରେ 'ଲାବଣ୍ୟବତୀ' କାବ୍ୟର ନାୟକ ଚନ୍ଦ୍ରଭାନୁଙ୍କ ଚାରିମିତ୍ର - ମନ୍ତ୍ରୀପୁତ୍ର ଗୁଣନିଧି, ଜ୍ୟୋତିଷପୁତ୍ର ବସନ୍ତକ, ପୁରୋହିତ ପୁତ୍ର ରତ୍ନଧ୍ୱଜ ଓ ସାଧୁତ କୁମାର ପୁରନ୍ଦର, ସିଂହଳଦ୍ୱୀପର ସାଧୁତ ରତ୍ନାକର, କର୍ଣ୍ଣାଟ ଦେଶର ବ୍ରହ୍ମଚାରୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ପୋଟା, ରାଜକୁମାରଙ୍କ ଦୁଇସଖା - ପୁରୋହିତ ପୁତ୍ର ବିଦ୍ୟାନିଧି ଓ ମନ୍ତ୍ରୀପୁତ୍ର ଯଶୋବନ୍ତ ଏବଂ ସ୍ୱୟଂ ମନ୍ତ୍ରୀ, କଳାକୌତୁକ କାବ୍ୟର ମଧୁମଂଗଳ, 'ସୁଭଦ୍ରା ପରିଣୟ'ର ଶ୍ରୀ କୃଷ୍ଣ, 'ଭାବବତୀ'ର ଉଭୟ ପକ୍ଷରେ ଦୂତଦ୍ୱୟ ଓ ମନ୍ତ୍ରୀ ସୁତ ପ୍ରଭୃତି ଚରିତ୍ର ପ୍ରଧାନ । ଏସବୁ ଚରିତ୍ର ମାନଙ୍କର ସ୍ୱରୂପ ଓ କ୍ରିୟାକଳାପ ଲକ୍ଷ୍ୟକଲେ, ମଧ୍ୟଯୁଗୀୟ ରାଜଦରବାରର ଏକ ସ୍ପଷ୍ଟ ଚିତ୍ର ଉଦ୍ଭାସିତ ହୋଇଉଠେ । ଉପେନ୍ଦ୍ରଭଂଜ ସ୍ୱୟଂ ରାଜପୁତ୍ର ଥିଲେ । ଅତଃ ରାଜଦରବାରର ସମସ୍ତ ନିଯୋଗ ତଥା ସେମାନଙ୍କର କାର୍ଯ୍ୟକଳାପ ସଂପର୍କରେ ସେ ଥିଲେ ନିଃସନ୍ଦୀହାନ । ଅଧିକାନ୍ତୁ ତାଙ୍କ କାବ୍ୟ ବିଷୟବସ୍ତୁ ରାଜକନ୍ୟା ଓ ରାଜକୁମାରଙ୍କ ପ୍ରଣୟ କାହାଣୀ ଉପରେ ପର୍ଯ୍ୟବେସିତ । ସୁତରାଂ କାବ୍ୟକଳାର ଭାବ ଓ ରସାତ୍ମକ ସଂଗତି ରକ୍ଷା ଦୃଷ୍ଟିରୁ ସେ ଏହି, ଦରବାର ସଂଶ୍ଲିଷ୍ଟ ଚରିତ୍ର ମାନଙ୍କୁ ସଂଯୋଜକ ଚରିତ୍ର ରୂପେ ନିର୍ବାଚନ କରିଛନ୍ତି । ରାଜପୁର ମଧ୍ୟକୁ ସାଧାରଣ ଲୋକଙ୍କ ଗତାଗତ ପ୍ରାୟଶଃ ନିଷିଦ୍ଧ ; ବିଶେଷକରି ରାଜପୁତ୍ର ଓ ରାଜକନ୍ୟାଙ୍କ ପ୍ରଣୟ ବ୍ୟାପାରକୁ ନେଇ କୁମାର ଓ କୁମାରୀଙ୍କ ନିକଟକୁ ଯିବାର ଅଧିକାର ଇତର ଲୋକଙ୍କ ନଥିଲା । ଆବଶ୍ୟକସ୍ଥଳେ କୁମାର କୁମାରୀଙ୍କ ସଖାସଖୀମାନେ କିମ୍ବା ମନ୍ତ୍ରୀ, ପୁରୋହିତ, ମାଲ୍ୟାଣୀ ପ୍ରଭୃତି କର୍ମଚାରୀ ମାନେ ଇତର ଲୋକଙ୍କୁ ଛଦ୍ମବେଶରେ ଅଣାଇ କିମ୍ବା ରାଜପ୍ରାସାଦ ମଧ୍ୟକୁ ଡକାଇ ଆଣି କାର୍ଯ୍ୟସାଧନ

କରୁଥିଲେ । ରାଜକୁମାର ଓ ରାଜକୁମାରୀଙ୍କ ପକ୍ଷରୁ ଏହି ଦରବାରୀ ଚରିତ୍ର ଗୁଡିକୁ ଦୂତରୂପରେ ମଧ ନିଯୋଜିତ କରାଯାଉଥିଲା ।

ସ୍ୱରୂପ ଓ କାର୍ଯ୍ୟକଳାପ ଦୃଷ୍ଟିର ଗୌଣିକ ପୁରୁଷ ସଂଯୋଜକ ଚରିତ୍ର ମାନଙ୍କୁ ସଖା ଓ ଦୂତ ଭେଦରେ ବିଭକ୍ତ କରାଯାଇପାରିବ । ଭଂଜଙ୍କର ଅଧିକାଂଶ କାବ୍ୟରେ ନାୟକ ରାଜକୁମାରଙ୍କ ଚାରିଜଣ କିମ୍ୱା ଦୁଇଜଣ ମିତ୍ରଥିବାର ଦେଖାଯାଏ । ଏମାନେ ନିଶ୍ଚିତ ଭାବେ ମନ୍ତ୍ରୀ ସୁତ, ପୁରୋହିତ ପୁତ୍ର, ସାଧୁତ କୁମାର ଅଥବା ଜ୍ୟୋତିଷପୁତ୍ର ଅଟନ୍ତି । ଏମାନେ ରାଜକୁମାରଙ୍କ ସମବୟସ୍କ ଏବଂ ଶାସ୍ତ୍ର ଦୃଷ୍ଟିରୁ ପୀଠମର୍ଦ୍ଦ ଚରିତ୍ର । ନାୟକଙ୍କ ସହିତ ବିଭିନ୍ନ ଅଳାପ ଆଲୋଚନା, ମନ୍ତ୍ରଣା, ଉପବନବିହାର , ମୃଗୟା, ଯାତ୍ରା ପ୍ରଭୃତିରେ ଅଂଶ ଗ୍ରହଣ କରିବାର ଯୋଗ୍ୟତା କେବଳ ଏମାନଙ୍କର ରହିଛି । ବେଳେବେଳେ ବିଦୂଷକପାଖରେ ମଧ ଏହି ଯୋଗ୍ୟତା ଦେଖିବାକୁମିଳେ । ଏମାନେ ସଖା ପର୍ଯ୍ୟାୟଭୁକ୍ତ; କିନ୍ତୁ ଆବଶ୍ୟକ ସ୍ଥଳେ ଦୂତରୂପେ ମଧ ଏମାନଙ୍କୁ ନିୟୋଜିତ କରାଯାଇଛି ।

କାର୍ଯ୍ୟସାଧନ ନିମିତ୍ତ ପ୍ରେରିତ ବ୍ୟକ୍ତିକୁ ଦୂତ କୁହାଯାଇଥାଏ । ଭଂଜଙ୍କ କାବ୍ୟସଂଭାର ମଧ୍ୟରେ ବ୍ରାହ୍ମଣ, ସନ୍ନ୍ୟାସୀ, ବ୍ରହ୍ମଚାରୀ ପ୍ରଭୃତି ଗୌଣିକ ପୁରୁଷ ଚରିତ୍ରଙ୍କୁ ଦୂତ ରୂପେ ନିର୍ବାଚନ କରାଯାଇଛି । ଏମାନେ ସମସ୍ତେ ବିଶ୍ୱସ୍ତ, ବିଜ୍ଞ ଏବଂ ଜିତେନ୍ଦ୍ରିୟ ଅଟନ୍ତି । ଏତଦ୍ ବ୍ୟତୀତ ଚେଟ, ବିଟ, ବିଦୂଷକ, ନଟ ପ୍ରଭୃତିଙ୍କୁ ମଧ ଦୌତ୍ୟକାର୍ଯ୍ୟରେ ବିନିଯୋଗ କରାଯାଇଛି ।

ଉପେନ୍ଦ୍ରଭଂଜ ଦରବାରୀ ଚରିତ୍ର ବ୍ୟତୀତ ସମାଜର ଇତର ସ୍ତରର ଚରିତ୍ର ମାନଙ୍କୁ ଯେ ସଂଯୋଜକ ଚରିତ୍ର ରୂପେ ଗ୍ରହଣ କରିନାହାନ୍ତି, ତାହା କୁହାଯାଇ ନପାରେ । 'ଲାବଣ୍ୟବତୀ'ରେ କର୍ଣ୍ଣାଟ ଦେଶର ଐନ୍ଦ୍ରଜାଲିକ ବିନୋଦ ସ୍ୱଶିଷ୍ୟ ଗଣ ଏବଂ ପ୍ରେମରୂପା ନାମ୍ନୀ ନଟୀକୁ ନେଇ ଧନ ଅର୍ଜନ ନିମିତ୍ତ ବହୁଦେଶ ଭ୍ରମଣ ପୂର୍ବକ ଭାଗ୍ୟ ବଶତଃ ସିଂହଳଦେଶରେ ପ୍ରବେଶ କରିଛି । ମାୟାବଳରେ ରାମାୟଣ ପରିବେଷଣ କରି ନାୟକ ନାୟିକା ପରସ୍ପର ପ୍ରତି ଆଶାୟୀ ଥିବା ଜାଣିପାରିଛି । ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପରେ ନାୟକ ନିକଟକୁ ଯାଇ ନାୟିକାର ମନୋଭାବ - ବିଷୟ ବ୍ୟକ୍ତ କରିଛି । 'ସୁବର୍ଣ୍ଣରେଖା' କାବ୍ୟର ନଟ ଓ ରୂପଜୀବୀ ଚରିତ୍ର, 'ଲାବଣ୍ୟବତୀ କାବ୍ୟର ଗଣିକା ମଦନିକା, 'ରସିକହାରାବଳୀର ବିପ୍ରମାନେ ଏବଂ ବିପ୍ରକାମିନୀ ଜଣକ, 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଚିତ୍ରକାର ଏବଂ ତାର ସ୍ତ୍ରୀ ଚରିତ୍ର ପ୍ରଭୃତି ଛୋଟବଡ ବହୁ ସଂଯୋଜକ ଚରିତ୍ରଙ୍କ କାବ୍ୟ ସଂସ୍ଥିତିକୁ ବିଚାରକଲେ, ଚରିତ୍ରଚୟନ କ୍ଷେତ୍ରରେ ସମାଜର ବିଭିନ୍ନ ସ୍ତରକୁ ଯେ ଭଂଜଙ୍କ ଦୃଷ୍ଟି ସଂକ୍ରମିତ ହୋଇଛି, ତାହା ସହଜରେ ନିର୍ଣ୍ଣୟ କରିହେବ ।

ଶାସ୍ତ୍ର ଦୃଷ୍ଟିରୁ ଦୂତମାନଙ୍କୁ ତିନିଭାଗରେ ବିଭକ୍ତ କରାଯାଇଛି । କବିରାଜ ବିଶ୍ୱନାଥଙ୍କ ମତରେ ଦୂତମାନେ ''ନିସୃଷ୍ଟାର୍ଥୋ ମିତାର୍ଥଶ୍ଚ ତଥା ସନ୍ଦେଶ ହାରକଃ । '' (ତୃତୀୟ ପରିଚ୍ଛେଦ) ନିସୃଷ୍ଟାର୍ଥ ଦୂତମାନେ ପ୍ରେରକ ଓ ଯାହାନିକଟକୁ ପ୍ରେରିତ- ସେ ଉଭୟଙ୍କ ମନଜାଣି କାର୍ଯ୍ୟ କରିଥାନ୍ତି । ଏଣୁ ଏମାନେ ଦୂତମାନଙ୍କ ମଧ୍ୟରେ ଶ୍ରେଷ୍ଠ ବିବେଚିତ । ମିତାର୍ଥ ଭାଷୀମାନେ ଅଳ୍ପକଥା କହି କାର୍ଯ୍ୟସାଧନ କରିଥାନ୍ତି ଏବଂ ସନ୍ଦେଶ ହାରକ ମାନେ ସ୍ୱାମୀ କିମ୍ୱା ସ୍ୱାମିନୀଙ୍କ ସନ୍ଦେଶ ମାତ୍ର ପ୍ରଦାନ କରି ଦୌତ୍ୟକାର୍ଯ୍ୟ ସମାପନ କରିଥାନ୍ତି । ଭଂଜସାହିତ୍ୟରେ ଏହି ତ୍ରିବିଧ ଦୂତ ମାନଙ୍କର ଉଦାହରଣ ବିରଳ ନୁହେଁ ।

ବୟସଦୃଷ୍ଟିରୁ ଲୌକିକ ପୁରୁଷ ସଂଯୋଜକ ଚରିତ୍ର ମାନଙ୍କୁ ତିନିଭାଗରେ ବିଭକ୍ତ କରାଯାଇଥାଏ । ଯଥା - ସମବୟସ୍କ, ବୟସାଧିକ ଓ ଅଳ୍ପବୟସ୍କ । ସମବୟସ୍କ ସଖା ମାନଙ୍କ ସଂପର୍କରେ ସାଧାରଣ ସୂଚନା ପୂର୍ବରୁ ପ୍ରଦାନ କରାଯାଇଛି, ଅଳ୍ପ ବୟସ୍କ ଚରିତ୍ର ମାନଙ୍କୁ ପତ୍ର ପ୍ରଦାନ ତଥା ସନ୍ଦେଶ ପ୍ରେରଣର ମାଧମ ରୂପେ ବ୍ୟବହାର କରାଯାଇଥାଏ; କିନ୍ତୁ ବୟସାଧିକ ସଂଯୋଜକ ଚରିତ୍ର ମାନଙ୍କର କାର୍ଯ୍ୟକଳାପ ଭଂଜସାହିତ୍ୟରେ ବଡ ବିଚିତ୍ର ଓ ରୋଚକ । 'ଲାବଣ୍ୟବତୀ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ସୁଭଦ୍ରାପରିଣୟ' ପ୍ରଭୃତି କାବ୍ୟରେ ଏମାନଙ୍କର ବହୁ ରମଣୀୟ କାର୍ଯ୍ୟବିଧି ଉତ୍କୀର୍ଣ୍ଣ, ଏମାନେ ପ୍ରତ୍ୟକ୍ଷ ଭାବେ ନାୟକ ନାୟିକାଙ୍କ ମଧ୍ୟରେ ସଂଯୋଗ ସ୍ଥାପନ ନକରି ପରୋକ୍ଷ ଭାବେ ସେହି କାର୍ଯ୍ୟ ସଂପାଦନ କରିଥାନ୍ତି । 'ସୁଭଦ୍ରାପରିଣୟ'ରେ ଶ୍ରୀକୃଷ୍ଣ ସକଳ ବ୍ୟପାରର ନେପଥ୍ୟରେ ରହି ପତ୍ନୀ ସତ୍ୟଭାମାଙ୍କ ମାଧମରେ ଅର୍ଜୁନ ଓ ସୁଭଦ୍ରାଙ୍କ ମିଳନ ସଂଭବ କରାଇ ପାରିଛନ୍ତି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ମନ୍ତ୍ରୀ ରାଜକୁମାରୀଙ୍କ ମନୋଗତ ରାଜକୁମାରଙ୍କୁ ଜାଣିବାପାଇଁ ପ୍ରଥମେ ଚିତ୍ରକାର ହସ୍ତରେ ବିଶ୍ୱର ଶ୍ରେଷ୍ଠ ରାଜକୁମାରମାନଙ୍କ ଚିତ୍ରପଟ ନିର୍ମାଣ କରାଇଛନ୍ତି ଏବଂ ଚିତ୍ରକାର ସ୍ତ୍ରୀ ମାଧମରେ ସେସବୁ ରାଜକୁମାରୀଙ୍କୁ ଦେଖାଇଛନ୍ତି । ରାଜକୁମାରୀ ରାଜପୁତ୍ର ପୁଷ୍ପକେତୁ ପ୍ରତି ଆକୃଷ୍ଟାଥିବାର ତଥ୍ୟକୁ ଚିତ୍ରକାର ସ୍ତ୍ରୀ ଓ ଚିତ୍ରକାର ମାଧମରେ ମନ୍ତ୍ରୀ ଅବଗତ ହୋଇ ହୋଇ ବିହୀତ ବ୍ୟବସ୍ଥା କରିଛନ୍ତି । ଅଥଚ ଏସକଳ ବ୍ୟପାର ରାଜକନ୍ୟାଙ୍କ ଅଗୋଚରରେ ହିଁ ସାଧିତ ହୋଇଛି ।

**ସ୍ୱୟଂଦୂତ :-**

ଦୌତ୍ୟକର୍ମର ଦ୍ୱିତୀୟ ପ୍ରକାର ଭେଦଟି ହେଉଛି ସ୍ୱୟଂଦୌତ୍ୟ । ନିଜେନିଜର ଦୌତ୍ୟ ସାଧନ ପ୍ରକ୍ରିୟାକୁ ସ୍ୱୟଂ ଦୌତ୍ୟ କୁହାଯାଏ । ଅନୁରାଗ ଏବଂ ମିଳନଲିପ୍ସାର ତୀବ୍ରତା ବୃଦ୍ଧିପାଇଲେ ନାୟକ ସ୍ୱୟଂଦୌତ୍ୟସାଧନ ନିମିତ୍ତ ପ୍ରୟାସୀ ହୋଇଥାଏ । ଅବଶ୍ୟ ଓଡିଆ କାଳ୍ପନିକ ଏବଂ ରାମକାବ୍ୟ ଅପେକ୍ଷା କୃଷ୍ଣକାବ୍ୟମାନଙ୍କରେ ଶ୍ରୀକୃଷ୍ଣଙ୍କ ସ୍ୱୟଂଦୌତ୍ୟ ସାଧନର ବର୍ଣ୍ଣନା ପ୍ରଚୁର ତଥା ରମଣୀୟ । ଭୃତ ପାନରା, କାଚରା, ନାବିକ ପ୍ରଭୃତି ରୂପରେ ଶ୍ରୀକୃଷ୍ଣ ସ୍ୱୟଂଦୌତ୍ୟ ସାଧନ କରିଥିବାର ବର୍ଣ୍ଣନା ଉପେନ୍ଦ୍ରଭଂଜଙ୍କ 'ଛାନ୍ଦଭୂଷଣ'ର ୨୮ଶ ଛାନ୍ଦରେ ପରିଦୃଷ୍ଟ । ନାୟକ ଅପେକ୍ଷା ନାୟିକା ମାନଙ୍କର ସ୍ୱୟଂ ଦୌତ୍ୟ ବର୍ଣ୍ଣନା ପ୍ରତି କାବ୍ୟକାର ମାନଙ୍କ ଅଧିକ ଆଗ୍ରହ ଥିବା ମଧ ଦେଖାଯାଏ । ତଥାପି ଉପେନ୍ଦ୍ରଭଂଜ, ନାୟକମାନଙ୍କର ସ୍ୱୟଂଦୌତ୍ୟ ବର୍ଣନାକୁ ଯଥାସ୍ଥାନରେ ଉପସ୍ଥାପନ କରି କାବ୍ୟସାହିତ୍ୟର ଏହି ଚାତୁର୍ଯ୍ୟପୂର୍ଣ୍ଣ ତଥା ବ୍ୟଂଜନାତ୍ମକ ବିଭବ ପ୍ରତି ଆପଣା ମୋହ ପ୍ରକାଶ କରିଛନ୍ତି । ଉପେନ୍ଦ୍ରଙ୍କ କାବ୍ୟନାୟିକା ମାନେ ରାଜକନ୍ୟା, ରାଜପୁର ଆବଦ୍ଧା ଏବଂ ସଂଖ୍ୟାଧିକ ସଖୀ, ପରିଚାରୀ ପରିବୃତା । ଅତଃ ନାୟକ, ସ୍ୱୟଂଦୌତ୍ୟ ସାଧନ କାଳରେ କୌଣସି ଏକ ସଖୀ ବା ଦୂତୀ ରୂପରେ, ବିଶେଷକରି କୌଣସି ଏକ ସ୍ତ୍ରୀର ଛଦ୍ମବେଶ ଧାରଣ ପୂର୍ବକ ନାୟିକା ନିକଟକୁ ପ୍ରୟାଣ କରିଥାଏ । 'ଲାବଣ୍ୟବତୀ' କାବ୍ୟରେ ନାୟକ ଚନ୍ଦ୍ରଭାନୁ ରାମେଶ୍ୱର ଠାରେ ନାରୀ ବେଶ ଧାରଣ କରି ନାୟିକା ଲାବଣ୍ୟବତୀକୁ ସାକ୍ଷାତ କରିଛି । ଭଂଜଙ୍କ 'ରସିକହାରାବଳୀ'ରେ ଥିବା ଏ ସଂପର୍କିତ ବର୍ଣ୍ଣନାଟି ଦେଖନ୍ତୁ -

ଦିନେ ରଖିଥିଲା ଜୀବଜୀବେଶ, ଚିନ୍ତି ମୁଁ ହୋଇଲି ସଜନିବେଶ
ଜାଣିଲା ପାଶରେ ହେଉଁ ପ୍ରବେଶ, ମୁଁ ବୋଇଲି କାନ୍ତେ ହୁଅ ଆବେଶ
ବୋଇଲା ଜୀବେଶ, ତୁମ୍ଭେ ତାଙ୍କ ଠାରେ ଚିତ୍ତ ନିବେଶ । (୧୦ମ ଛାନ୍ଦ)

**ଲୌକିକ - ନାରୀ :-**

ପ୍ରଣୟ ସଂଯୋଜନା କ୍ଷେତ୍ରରେ ଦୂତ ଏବଂ ସଖା ଅପେକ୍ଷା ଦୂତୀ ଏବଂ ସଖୀମାନଙ୍କର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ସଖୀର ଅର୍ଥ ସହଚରୀ । ନାୟିକା ସହିତ ସଂତତ ସଂଚରଣ କରୁଥିବା ସଯବୟସ୍କା ନାରୀକୁ ସଖୀ କୁହାଯାଏ । ନାୟିକାର ଆନ୍ତରିକତା ତଥା ଅନ୍ତରଙ୍ଗତା ଦୃଷ୍ଟିରୁ ସଖୀମାନେ ଦୁଇଭାଗରେ ବିଭକ୍ତ । ଯଥା- ସଖୀ ଓ ପ୍ରିୟସଖୀ । ଉପେନ୍ଦ୍ରଭଂଜଙ୍କ 'ଲାବଣ୍ୟବତୀ'ରେ ଧାତ୍ରୀପୁତ୍ରୀ ହେମମଂଜରୀ, ମନ୍ତ୍ରୀସୁତା, କାମକଳା ଏବଂ ଜ୍ୟୋତିଷକନ୍ୟା ହେଉଛନ୍ତି ନାୟିକାର ପ୍ରିୟ ସଖୀ । ରସରେଖା, ସୁରେଖା, ଚିତ୍ରରେଖା, ହାରାବଳୀ, ଚନ୍ଦ୍ରାବଳୀ, ରତ୍ନମାଳା, ମେଘମାଳା, ବିମଳା, ପ୍ରେମଶୀଳା, ସୁଶିଳା, ପରିମଳା, କଳ୍ପଲତା, ମଦାଳସା, ବଂଜୁଳା, ପ୍ରେମସୁଧାନିଧି ଓ ପ୍ରଭାମଂଜୁଳା - ଏହି ଷୋଳ ସାମନ୍ତ ସୁତା ହେଉଛନ୍ତି ନାୟିକାର ସାଧାରଣ ସଖୀ ବା ସଖୀ । ସେହିଭଳି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ରେ ହଂସକନ୍ୟା କାଦମ୍ବିନୀ ତଥା ଶଚୀ ଓ ସାରଦାଙ୍କ ମାନସ କନ୍ୟା ଶଚୀକଳା ଓ ବାଣିଜା ହେଉଛନ୍ତି ନାୟିକାର ପ୍ରିୟସଖୀ । ଉପେନ୍ଦ୍ରଭଂଜ ଏହି ପ୍ରିୟସଖୀମାନଙ୍କୁ କାର୍ଯ୍ୟଭାର ଦୃଷ୍ଟିରୁ କେବଳ ଗୁରୁତ୍ୱ ଦେଇ ନାହାନ୍ତି , ଏମାନଙ୍କୁ ମନ୍ତ୍ରୀସୁତା, ପୁରୋହିତ ସୁତା କିମ୍ବା ଦେବକନ୍ୟା ରୂପେ ବର୍ଣ୍ଣନା କରି ସାମନ୍ତସୁତା ପ୍ରଭୃତି ସାଧାରଣ ସଖୀ ମାନଙ୍କ ଠାରୁ ଉଚ୍ଚ ଆସନ ପ୍ରଦାନ କରିଛନ୍ତି । ସଖୀମାନେ ଦୌତ୍ୟକାର୍ଯ୍ୟ ଅପେକ୍ଷା ନାୟିକାର ସେବା ତଥା ତାକୁ ସାହଚର୍ଯ୍ୟ ପ୍ରଦାନ କରିବାରେ ବିଶେଷ ସମୟ ଅତିବାହିତ କରିଥାନ୍ତି । ନାୟିକାକୁ ବେଶ ଭୂଷାରେ ମଣ୍ଡନ କରିବା, ବିରହ ସମୟରେ ଉପଚାର କରିବା, କେଳିଗୃହ ସଜାଇବା, ଉଦ୍ୟାନଭ୍ରମଣ କାଳରେ ରସାଳ କଥୋପକଥନରେ ଲିପ୍ତ ରହିବା ତଥା ମିଳନ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳରେ ପରିହାସ କରିବା ପ୍ରଭୃତି କାର୍ଯ୍ୟ ସଖୀମାନଙ୍କ ଦେଇହିଁ ସାଧିତ । ପ୍ରିୟ ସଖୀ ଓ ସଖୀମାନେ ନାୟିକାର ଅନ୍ତରଙ୍ଗ ବିହାରିଣୀ ହେଲେ ମଧ ଆବଶ୍ୟକ ହେଲେ ଦୌତ୍ୟ ସାଧନ ନିମିତ୍ତ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ ।

ଦୂତୀର ସଂଜ୍ଞା ଦେବାକୁ ଯାଇ ଅଭିମନ୍ୟୁ ସାମନ୍ତ ସିଂହାର 'ବିଦଗ୍ଧଚିନ୍ତାମଣି' ରେ କହିଛନ୍ତି- ''ପ୍ରୀତିକାର୍ଯ୍ୟ ସାଧନେ ଯେ ଅଟେ ନିପୁଣ, ଦୂତୀ ବୋଲି ତାକୁ ଆଗ କରି ପ୍ରମାଣ । '' (୯୪ ଛାନ୍ଦ) ଦୂତୀ ରୂପରେ କେଉଁ ମାନଙ୍କୁ ନିର୍ବାଚନ କରାଯାଇଥାଏ, ସେ ସଂପର୍କରେ କବିରାଜ ବିଶ୍ୱନାଥଙ୍କ ସାହିତ୍ୟ ଦର୍ପଣ ଓ ଭରତମୁନିଙ୍କ ନାଟ୍ୟ ଶାସ୍ତ୍ରରେ ଉଲ୍ଲେଖ ଅଛି -

'ପ୍ରତିବେଶ୍ୟା ସଖୀ ଦାସୀ କୁମାରୀ ଦାରୁ ଶିଳ୍ପିକା
ଧାତ୍ରୀ ପାଖଣ୍ଡିନୀ ଚୈବ ଦୂତ୍ୟା ସ୍ୱିକ୍ଷଣିକା ତଥା ।' (ନାଟ୍ୟଶାସ୍ତ୍ର, ୨୫/୧୦)

'ଦୂତ୍ୟଃ ସଖୀ ନଟୀଦାସୀ ଧାତ୍ରେୟୀ ପ୍ରତିବେଶିନୀ
ବାଳା ପ୍ରବ୍ରଜିତାକାରୁଃ ଶିଳ୍ପନ୍ୟାଦ୍ୟା ସ୍ୱୟଂତଥା । ' ( ସାହିତ୍ୟଦର୍ପଣ, ୩ୟ ପରିଛେଦ)

ଅର୍ଥାତ୍ ପ୍ରତିବେଶିନୀ, ସଖୀ, ଦାସୀ, ବାଳିକା, ବଢ଼େୟାଣୀ, ଧାତ୍ରୀ ବା ଧାତ୍ରୀପୁତ୍ରୀ, ସନ୍ନ୍ୟାସିନୀ, ରଜକିନୀ, ଚିତ୍ରକାରଦିସ୍ତ୍ରୀ ପ୍ରଭୃତିଙ୍କୁ ଦୂତୀ ରୂପରେ ନିର୍ବାଚନ କରାଯାଇଥାଏ । ଏମାନଙ୍କର ଗୁଣ ବା ଯୋଗ୍ୟତା ସଂପର୍କରେ କବିରାଜ ବିଶ୍ୱନାଥ ଲେଖିଛନ୍ତି -

'କଳା କୌଶଳ ମୁସାହୋ ଭକ୍ତିଶ୍ଚିତ୍ତଜ୍ଞତା ସ୍ମୃତିଃ,
ମାଧୁର୍ଯ୍ୟ ନର୍ମବିଜ୍ଞାନଂ ବାଗ୍ମିତା ଚେତି ତଦ୍ ଗୁଣାଃ । '' (ସାହିତ୍ୟଦର୍ପଣ, ୩ୟ ପରିଛେଦ)

ଅର୍ଥାତ୍ ଦୂତୀ ମାନଙ୍କର ଦୌତ୍ୟକଳାସାଧନ ପ୍ରତି ଉତ୍ସାହ ଥିବା ଆବଶ୍ୟକ । ନାୟକ ନାୟିକାଙ୍କ ହୃଦ୍‌ଗତ ଭାବକୁ ବୁଝିବାପାଇଁ ଏମାନେ ତାଦାମ୍ୟ ଭାବବତୀ ହେବା ଉଚିତ୍ । ସ୍ମୃତିବତୀ, ମଧୁରଭାଷିଣୀ, ବାଣୀଚତୁରା,

ତଥା ରହସ୍ୟ ପଣ୍ଡିତା ହେବା ଏମାନଙ୍କର ପ୍ରଧାନ ଗୁଣ । ଏସବୁ ସତ୍ତ୍ୱେ ଏମାନଙ୍କର ପରମ ଓ ଚରମ ଯୋଗ୍ୟତା ହେଉଛି ସ୍ୱୀୟ ସ୍ୱାମିନୀ ବା ସ୍ୱାମୀଙ୍କ ପ୍ରତି ଭକ୍ତି ବା ଅନୁରକ୍ତି । ଏହିଶେଷୋକ୍ତ ଗୁଣର ଅଭାବ ଥିଲେ ନାୟକନାୟିକାଙ୍କୁ ପରସ୍ପର ପ୍ରତି ଅନୁକୂଳ କରାଇବା ପରିବର୍ତ୍ତେ ଦୂତୀ ସ୍ୱୟଂ ନାୟକ ସହ ରମଣକ୍ରୀଡାରେ ଲିପ୍ତ ରହିବାର ସଂଭାବନା ଅଧିକ । ଏଥିପାଇଁ ଦୂତୀମାନଙ୍କୁ ତିନିଭାଗରେ ବିଭକ୍ତ କରାଯାଇଛି । ଯଥା- ଆପ୍ତଦୂତୀ, ସ୍ୱୟଂଦୂତୀ ଓ ନଷ୍ଟଦୂତୀ ।

ଯେଉଁ ଦୂତୀ ମାନେ ପ୍ରାଣନାଶର ସଂଭାବନା ଉପୁଜିଲେ ମଧ୍ୟ ବିଶ୍ୱାସଘାତକତା କରନ୍ତି ନାହିଁ, ତଥା ନାୟକ ନାୟିକାଙ୍କ ପ୍ରତି ସ୍ନେହଶୀଳ ଏବଂ କାର୍ଯ୍ୟକାରଣ ସମ୍ବନ୍ଧ ଦର୍ଶାଇ ଦୌତ୍ୟକାର୍ଯ୍ୟ ସଂପାଦନ କରନ୍ତି, ସେମାନଙ୍କୁ ଆପ୍ତଦୂତୀ କୁହାଯାଏ । ଭଂଜସାହିତ୍ୟରେ ଏପରି ଦୂତୀମାନଙ୍କର ସଂଖ୍ୟା ସର୍ବାଧିକ । 'ରସଲେଖା'ର ପ୍ରେମଶୀଳା ଓ ସୁଶୀଳା, 'କଳାକୌତୁକ'ର ଶୈବ୍ୟା ତଥା ବିଭିନ୍ନ କାବ୍ୟ ସନିହିତ ପ୍ରିୟସଖୀ ଗଣ ଏବଂ ବ୍ରାହ୍ମଣୀ, ସନ୍ୟାସିନୀ ମାନେ ଏହାର ସାର୍ଥକ ଉଦାହରଣ । ଆପ୍ତଦୂତୀମାନେ କାର୍ଯ୍ୟତଃ ତ୍ରିବିଧା । ଯଥା- ପତ୍ରହାରିଣୀ, ଅମିତାର୍ଥା ଓ ନିସୃଷ୍ଟାର୍ଥା । ପତ୍ରହାରିଣୀ ଦୂତୀ ନାୟକ ନାୟିକାଙ୍କ ପତ୍ର ଆଦାନ ପ୍ରଦାନ କରେ, ଅମିତାର୍ଥା ଇଙ୍ଗିତ ବାକ୍ୟ ମାଧ୍ୟମରେ ଦୌତ୍ୟକାର୍ଯ୍ୟ ସାଧନା କରେ ଏବଂ ନିସୃଷ୍ଟାର୍ଥା ନାୟକ ନାୟିକାଙ୍କ ଅନୁରୂପ ଭାବ ବିନିମୟରେ କାର୍ଯ୍ୟହାସଲ କରେ ।

ବୟସ ବିଚାରରେ ଏମାନେ ତିନିଭାଗରେ ବିଭକ୍ତ । ଯଥା- ସମବୟସ୍କା, ବୟସାଧିକା ଓ ଅଳ୍ପବୟସ୍କା । ବୟସାଧିକା ଦୂତୀଚରିତ୍ର ଉପସ୍ଥାପନାରେ ଉପେନ୍ଦ୍ରଭଂଜ ଜଣେ କୁଶଳୀ କଳାକାର । ବୟଃବୃଦ୍ଧା ମାଳିନୀ, ବ୍ରାହ୍ମଣୀ, ସନ୍ୟାସିନୀ, ଦାସୀ ମାନଙ୍କୁ ନିଜ କାବ୍ୟ କଳେବରରେ ସ୍ଥାନଦେଇ କବି ସମକାଳୀନ ସମାଜ ବ୍ୟବସ୍ଥା ଓ ରାଜଦରବାରର ବାସ୍ତବ ଚିତ୍ରଟିଏ ପାଠକ ସମ୍ମୁଖରେ ଉପସ୍ଥାପନ କରିଛନ୍ତି । 'ଲାବଣ୍ୟବତୀ'ର ବର୍ଣ୍ଣନା ଅନୁଯାୟୀ, ଲାବଣ୍ୟବତୀ ସ ଚନ୍ଦ୍ରଭାନୁର ବିବାହ ସ୍ୱୀକୃତି ସିଂହଳରାଜାଙ୍କ ଠାରୁ ମିଳିବା ପରେ ଚନ୍ଦ୍ରଭାନୁ ସ୍ୱଦେଶକୁ ପ୍ରତ୍ୟାଗମନ କରିଛି ଏବଂ ଚନ୍ଦ୍ରଭାନୁର ସ୍ମରଣରେ ଲାବଣ୍ୟବତୀର ତନୁକ୍ଷୀଣତା ଘଟିଛି । ଏକଥା ମାତାଙ୍କ ଦୃଷ୍ଟିଗୋଚର ହୁଅନ୍ତେ ସେ ନିଜ ମାତାମହୀଙ୍କ ପୁରୁ କଉତୁକୀ ନାମ୍ନୀ ଜଣେ ବୃଦ୍ଧାଦାସୀକୁ ଡକାଇ ଆଣିଛନ୍ତି । କଉତୁକୀ ପରିହାସ ସ୍ୱଭାବର ଜଣେ ବୃଦ୍ଧା ଅଟେ । ବଶୀକରଣାଦି ମନ୍ତ୍ର ଏବଂ ନାନା ଔଷଧି ଜ୍ଞାନ ମଧ୍ୟ ତାର ରହିଛି । ଜେମାଙ୍କ ପୁରକୁ ଆସି ତାଙ୍କ ଶରୀର ପୁଷ୍ଟ ହେବା, ଭରଜ କଠିନ ହେବା, କେଶ କୁଟିଳ ଓ ପ୍ରଳମ୍ବ ହେବା ସକଶେ ତଥା ମୁଖବାସ, ସ୍ୱେଦଗନ୍ଧ ନାଶ ଏବଂ ରତି-ରଙ୍ଗ ଜାଣିବା ଉଦ୍ଦେଶ୍ୟରେ ବିଭିନ୍ନ ଔଷଧି ଓ ଉପଚାର ବିଧାନ ମାନ କହି ତାର ପ୍ରୟୋଗ ନିମିତ୍ତ ସଖୀମାନଙ୍କୁ ପରାମର୍ଶ ଦେଇଛି । (୨୯ଛାନ୍ଦ) । ପ୍ରେମସୁଧାନିଧି କାବ୍ୟରେ ମଧ୍ୟ ଜଣେ ନାମହୀନ ବୃଦ୍ଧାଦାସୀର ସଂଧାନ ମିଳୁଛି । ନାୟିକ ପୁଷ୍ପବତୀ ହେବାର ସୁସଂବାଦ ଦେବା ଉଦ୍ଦେଶ୍ୟରେ ସେ ରାଜକୁମାର ନିକଟକୁ ଆସିଛି । ଉଦ୍ଦିଷ୍ଟ ସଂବାଦ ଦେବା ସଂଗେ ସଂଗେ ସ୍ମରଶାସ୍ତ୍ରର କେତେକ ଗୋପନୀୟ ତତ୍ତ୍ୱ ନାୟକ ନିକଟରେ ପକାଶ କରି ପୁରସ୍କାର ସ୍ୱରୂପ ଲକ୍ଷେ ସ୍ୱର୍ଣ୍ଣ ମୁଦ୍ରା ପ୍ରାପ୍ତ ହୋଇଛି । (୪ର୍ଥ ଛାନ୍ଦ) ସେହିପରି 'ରସିକହାରାବଳୀ'ର ବିପ୍ରକାମିନୀ ନାୟକ ନିକଟରେ ନାୟିକାର ରୂପ ବର୍ଣ୍ଣନା କରିଛି ଏବଂ ସାକ୍ଷାତ ଦର୍ଶନ ନିମିତ୍ତ ମଧୁମାସରେ ଆୟୋଜିତ ଚନ୍ଦନଯାତ୍ରା ଦର୍ଶନ ବ୍ୟାଜରେ ପୁରୁଷୋତ୍ତମ କ୍ଷେତ୍ରକୁ ଯିବାପାଇଁ ପରାମର୍ଶ ଦେଇଛି । (୨ୟ ଛାନ୍ଦ) । ଏମାନଙ୍କ କ୍ରିୟାକଳାପକୁ ଅନୁଧ୍ୟାନ କଲେ ଜଣାଯାଏ, ଯୌବନ ବିଗତାନ୍ତେ ଦାସୀମାନେ ଆପଣା ଅନୁଭୂତିକୁ ଜୀବିକାର୍ଜନର ଏକମାତ୍ର ଉପାୟ ରୂପେ ଅବଲମ୍ବନ କରି ରାଜନଅର ମଧ୍ୟରେ ରହିଥାନ୍ତି । ରାଜପୁତ୍ର ଓ ରାଜକନ୍ୟା ମାନଙ୍କୁ ଶୃଙ୍ଗାର ଶାସ୍ତ୍ରର ଗୋପନୀୟ ତତ୍ତ୍ୱସବୁ ଶିକ୍ଷା ଦେବା ସଂଗେ ସଂଗେ ସୁନ୍ଦରୀ ରାଜକନ୍ୟା ମାନଙ୍କର ସଂଧାନ ଦେଇ ରାଜପୁରରେ ଏମାନେ ନିଜ ସ୍ଥିତିକୁ ସୁଦୃଢ଼ କରି ରଖିଥାନ୍ତି ।

ଭଂଜସାହିତ୍ୟରେ ନିସୃଷ୍ଟାର୍ଥ ଦୂତଦୂତୀ ମାନଙ୍କର କାର୍ଯ୍ୟ ଓ ତାର ସାଧନ ପ୍ରଣାଳୀ ସଂପର୍କରେ ସମ୍ୟକ୍ ଆଲୋଚନା ନକଲେ ଏମାନଙ୍କ ବାସ୍ତବ ସ୍ୱରୂପ ଏବଂ ଉପେନ୍ଦ୍ର ଭଂଜଙ୍କ କଳା ନୈପୁଣ୍ୟ ଅବବୋଧରେ ପରିପୂର୍ଣତା ଆସିବନାହିଁ । ସଂଯୋଜନା କାର୍ଯ୍ୟସଂପାଦନ ବେଳେ ଦୂତୀମାନେ ବିଶେଷ କରି ଦୁଇପ୍ରକାର ଉପାୟ ଅବଲମ୍ବନ କରିଥାନ୍ତି । ଯଥା - ବାଚିକ ଓ ମାନସିକ । ଦୂତଦୂତୀ ମାନେ ନାୟକ ନାୟିକାଙ୍କ ସଂପର୍କରେ ସାଧାରଣତଃ ଅଧିକ ପ୍ରସଙ୍ଗ ବ୍ୟକ୍ତ କରିବସିଥାନ୍ତି । (ଲାବଣ୍ୟବତୀ, ୭/୫୪) ଏହା ସର୍ବଦା ଶୋଭନୀୟ ନୁହେଁ । ବଚନ ବିକ୍ଷେପ କାଳରେ ଏମାନଙ୍କୁ କେତେକ ସତର୍କତା ଅବଲମ୍ବନ କରିବାକୁ ହୋଇଥାଏ । ଯଥା -

'ନଚମେବ ଗଚ୍ଛତି ଯଥା ଲଘୁତାଂ
କରୁଣା ଯଥାଚ କୁରୁତେ ସମୟି
ନିପୁଣ ତଥୈନ ମଭିଗମ୍ୟ ବେଦେ
ଗଭିଦୂତି କାଚିଦିତି ସନ୍ଦିଦିଶେ । '' (ସାହିତ୍ୟଦର୍ପଣ, ୩ୟ ପରଚ୍ଛେଦ)

ଅର୍ଥାତ୍ ନାୟିକା ଦୂତୀକୁ କହୁଛି, ' ଦୂତି ! ତୁ ଯାଇ ତାଙ୍କୁ ଏପରି ଭାବେରେ କହିବୁ, ଯେପରି ମୋର ନ୍ୟୂନତା ପ୍ରକାଶ ପାଇବନାହିଁ । କିନ୍ତୁ ତୋ କଥାରେ ବିମୋହିତ ହୋଇ ସେ ମୋ ପାଖକୁ ନିଶ୍ଚୟ ଆସିବେ । ପୁଣି ଏପରିଭାବେ କହିବୁ ଯେପରି ମୋ ପ୍ରତି ତାଙ୍କର କରୁଣ ଜାତ ହେବ ଏବଂ ସକଳ କଥା ତାଙ୍କୁ ଏକାନ୍ତରେ ହିଁ କହିବୁ । '' ଲକ୍ଷ୍ୟ କରିବାର କଥା, ଏଠାରେ ଚାରିଗୋଟି କଥା ଉପରେ ନାୟିକା ଗୁରୁତ୍ୱ ଆରୋପ କରିଛି । ଯଥା, ନାୟକ ସହିତ ମିଳିତ ହେବା ନିମିତ୍ତ ନାୟିକା ମନରେ ଜାତ ହୋଇଥିବା ଦୁର୍ବାର ଅଭିଳାଷ ଜନିତ ଦୁର୍ବଳତା ଦୂତୀବାକ୍ୟରୁ ପ୍ରକାଶ ପାଇବନାହିଁ; ଏହାଦ୍ୱାରା ନାୟିକାର ଲଘୁତା ପ୍ରକାଶ ପାଇବ ଏବଂ ସ୍ୱାଭିମାନ ନଷ୍ଟ ହେବ, ଦୂତୀର କଥାରେ ନାୟକ ଆକୃଷ୍ଟ ହୋଇ ନାୟିକା ପାଶକୁ ଆସିବାକୁ ବାଧହେବ, ଦୂତୀ କଥାରୁ ନାୟକା ପ୍ରତି ନାୟକର କରୁଣା ବା ସଂବେଦନା ଜାତ ହେବ ଏବଂ ଦୌତ୍ୟକାର୍ଯ୍ୟ ସାଧନ ବେଳେ ଦୂତୀ ସର୍ବଦା ପିତା, ମାତା, ଗୁରୁଜନ,ଖଳଚରିତ୍ର ମାନଙ୍କର ଉପସ୍ଥିତି ପ୍ରତି ଧ୍ୟାନ ଦେବାକୁ ହେବ ; ଅର୍ଥାତ୍ ଏକାକୀ ନାୟକକୁ ହିଁ ସକଳ କଥା କହିବାକୁ ହେବ । ଭଂଜଙ୍କ ରସଲେଖା କାବ୍ୟର ଚତୁରୀ ସଖୀଦ୍ୱୟ (ପ୍ରେମଶୀଳା ଓ ସୁଶୀଳା) ନାୟିକାର ପ୍ରେମଲେଖ ନେଇ ନାୟକକୁ ପ୍ରଦାନ କରିବା ତଥା ନାୟିକାର ଅବସ୍ଥା ବିଷୟ ନାୟକକୁ ଅବଗତ କରାଇବା ଉଦ୍ଦେଶ୍ୟରେ ଯେଉଁ କୌଶଳ ଅବଲମ୍ବନ କରିଛନ୍ତି, ତାକୁ ଦେଖନ୍ତୁ :-

ପ୍ରେମଶୀଳା ସୁଶୀଳା ଯେ ଅତ୍ୟନ୍ତ ଚତୁରୀ, କାନନେ ଗମନ କଲେ ଉପାୟ ବିଚାରି ।
ଜଣେଯାଇ କଂଜ ତୋଳୁ ଅଛି ସରୋବରେ, ଧରିଛି ଉଦନ୍ତଭରି କଢ଼ି ପଦ୍ମକରେ ।
ଫୁସ ଯାଇ ଅଛି ସେହି ଠାକୁ ସ୍ନାନ ପାଇଁ, ଆରକ ସଜନୀ ପଛେ ପରବେଶ ଯାଇ ।
ପଚାରିଲା ତାକୁ ପଦ୍ମ ତୋଳୁ କିଂପା ତୁହି, ସେ ବୋଇଲା ରସଲେଖା ହୋଇଛି ବିରହୀ ।
ଦ୍ୱିତୀୟା ବୋଇଲା ସେ ତହିଁକି ଉପଚାର, ପ୍ରଥମା ହୋଇ ବୋଲିଣ କଲା ସୀଉକାର ।
ନାଗର ବୋଇଲା ଶୁଣି ମୋର ସେହିଦଶା, ପଦ୍ମକଢ଼ି ଯୋଡିଏ ପ୍ରଦାନ କର ଯୋଷା ।
ପ୍ରେମଶୀଳା ଭାଷିଲା ପାରିଲେ ନିଅ ତୋଳି, ମୁଁ ପ୍ଲବନ କରି ନଜାଣଇ ପୁଂସ ବୋଲି ।
ସୁଶୀଳା ବୋଲେ ଗୋଟିଏ ହେଲେ ଦିଅ ସଖି, ବିନୟରେ ମାଗୁଛି ପୁରୁଷ ହୋଇ ଦୁଃଖୀ ।
ସେବୋଇଲା କି କଥା ଗୋ ବୋଲ ତତ୍ତ୍ୱଥିଲେ, କିବୋଲିବେ ଜନେ ଦେଖି ପୁଂସେ ଫୁଲଦେଲେ ।
ସେବୋଇଲା ଏତେବେଳେ କେ ଅଛି ଏଠାରେ, ଶୁଣି ଲେଖଥିଲା ପଦ୍ମଦେଲା ପୁଂସ କରେ ।
ଆଉ ପଦ୍ମମାନ ଘେନି ତରତରେ ଗଲେ, କୁମାର ଦୃଷ୍ଟି ଗୋଚରୁ ଯାଇ ମେଳ ହେଲେ ।

(୧୦ମ ଛାନ୍ଦ)

ଏଥିରେ ନାୟିକାର ନ୍ୟୂନତା ପ୍ରକାଶ ନପାଇବା ଠାରୁ ଆରଂଭ କରି ଏକାକୀ ନାୟକଙ୍କୁ ସବୁ କଥା ଜଣାଇବା ପର୍ଯ୍ୟନ୍ତ ସକଳ କୌଶଳ ଅନ୍ତର୍ନିହିତ । ସେହିପରି 'ଲାବଣ୍ୟବତୀ' କାବ୍ୟରେ ସିଂହଳ ଦେଶ ପୁରୋହିତଙ୍କ ବାଚିକ କୌଶଳଟି ମଧ ଦର୍ଶନୀୟ । ସିଂହଳରାଜ ଆଦେଶ ଦେଲେ -

କହିଲେ କର୍ଣ୍ଣାଟ ଯୁବରାଜପାଶେ ଯିବ, ପାଠ ଶୁଣାଇ ତା ମନ ସନ୍ତୋଷ କରିବ
ଆମ୍ଭ କନ୍ୟା ଯାଚିବା ନୋହିବ ସନମତ, କରିବ ଯେମନ୍ତ କର ଉପାୟ ତେମନ୍ତ ।

ଆଚାର୍ଯ୍ୟ ମହାଶୟ ଆସି ରାଜକୁମାରଙ୍କ ପାଶରେ ଉପଗତ ହୋଇଛନ୍ତି । ପ୍ରଥମେ କୁମାରଙ୍କ ସ୍ତୁତିଗାନ, ତାପରେ କାମଶାସ୍ତ୍ର କଥନ ଏବଂ ଶେଷରେ କାମିନୀ ବର୍ଣ୍ଣନା କରି ସାରି କହିଲେ -

ନାରୀରୁ ଅଧିକ ହୋଇ ନାହିଁ ତିନିପୁରୀ, ପରମ ପଦାର୍ଥ ଏକା ବୋଲାଇ ସେ ନାରୀ

* * *

ହୀରାନୀଳା ମାଣିକ୍ୟ ମୁକୁତା ବିଦ୍ରୁମର, ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତିରୀ ରତନର

* * *

କି ହେବ ଇନ୍ଦ୍ର ହୋଇଲେ ସର୍ବ ସଂପଦେସେ, ସ୍ତିରୀ ହୀନ ଠାରୁ ପାପୀ ନାହିଁ ମହୀଦେଶେ ।

ଏହାପରେ ରସିକ ପୁରୁଷର ଲକ୍ଷଣ ମାନ ବୟାନ କରି କହିଲେ, 'ତୁମେ ରାଜପୁତ୍ର, ଯୁବକ, ସୁନ୍ଦର ଏବଂ ରସିକ ମଧ । ଏଣୁ ଏ ସବୁ କାବ୍ୟରୀତି ତୁମକୁ ଅଗୋଚର ନଥିବ; କେବଳ କାବ୍ୟରୀତିନୁହଁ, ଏତଦ୍ ବିଷୟକ ଅନୁଭୂତି ମଧ ତୁମର ଥିବ, କାରଣ ନୃପସୁତା ମାନେ ତୁମ ସେବାରେ ନିପୁଣା ଅଛନ୍ତି । ରତ୍ନଧ୍ୱଜ (ପୁରୋହିତ ପୁତ୍ର) କହିଲା, ''ଆମେ ଯୁବରାଜଙ୍କ ବିବାହ ସଂପନ୍ନ ହୋଇନାହିଁ; ଯେହେତୁ ଅବନୀମଣ୍ଡଳରେ ଉପଯୁକ୍ତ କନ୍ୟା ମିଳିଲା ନାହିଁ । ଶୁଣାଯାଉଛି ଆପଣଙ୍କ ରାଜ୍ୟର ରାଜକୁମାରୀ ଅତ୍ୟନ୍ତ ସୁନ୍ଦରୀ, ଯଦି ସଂଭବ ହୁଏ, ତେବେ ଆପଣ ବିବାହ ପ୍ରସ୍ତାବ ପକାଇ ପାରନ୍ତି । '' ଆଚାର୍ଯ୍ୟ ଏହାପରେ ଲାବଣ୍ୟବତୀ ଶୋଭାକଥନରେ ଲିପ୍ତ ରହି କହିଲେ ,

ନାକନାଗେ ସମ ନାହିଁ ଥାଉ ଆଉ ଧରା, ବରଖୋଜି ମନ୍ତ୍ରୀକି ହୋଇଲା ମହାଭାରା ।
ତା ବିଚାରେ କୁଳୀନଗଣେ ମିଳିଲେ ପୁଂସ, ନୃପେ ପ୍ରବର୍ତ୍ତାଇ ବିଭା କରିବା ଅବଶ୍ୟ ।
ତୃଷାର୍ତ୍ତ ସିନା ସଲିଳ ପାଶେ ଉପଗତ, ପାଣି ତୃଷାର୍ତ୍ତପାଶକୁ ଆସେ କି ଘେନତ ।
ନଦୀ ସନ୍ନିଧିକି ଜଳ ପାନ କରି ଗଲେ, ତାହା ଅସନମତ ହୋଇଛି କେଉଁ କାଳେ ।
ଆପଣେ ଆମ୍ଭ ସଂଗତେ ହେଉ ଆସିବାକୁ, ନୃପେ କହି ନିର୍ବାହ କରିବା ଏକାର୍ଯ୍ୟକୁ ।
ଏ ଉତ୍ତାରେ ରତ୍ନଧ୍ୱଜ ଦ୍ୱିଜ ସଂଗେ ଯାଇ, ସଚିବକୁ ଘେନି ନୃପ ଛାମୁରେ ପକାଇ ।

(୨୮ଛାନ୍ଦ)

ଦୂତଦୂତୀ ମାନଙ୍କର ଏପରି ବହୁବିଧ ବାଚିକ କୌଶଳ ଭଂଜସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ । ବର୍ତ୍ତମାନ ଏମାନଙ୍କର ମାନସିକ କୌଶଳ ସଂପର୍କରେ ବିଚାର କରାଯାଉ ।

ବିପଦ ସଂକୁଳ ପରିବେଶ, ପରିସ୍ଥିତିରେ ଉଭୟ ନାୟକ ନାୟିକାଙ୍କୁ ସାହଚର୍ଯ୍ୟ ପ୍ରଦାନ କରିବା ତଥା ଏମାନଙ୍କ ମିଳନରେ ସୃଷ୍ଟି ହେଉଥିବା ସମସ୍ୟାକୁ, ଦୂର କରିବା ଲାଗି ବେଳେବେଳେ ସଂଯୋଜକ ଚରିତ୍ର ମାନେ ଅଦ୍ଭୁତ ମାନସିକ କୌଶଳ ଅବଲମ୍ବନ କରିଥାନ୍ତି । 'ଲାବଣ୍ୟବତୀ' କାବ୍ୟରେ ବ୍ରହ୍ମଚାରୀ, ନାୟିକାକୁ ନାୟକର ଚିଟାଉ ଦେବା ଉଦ୍ଦେଶ୍ୟରେ, ଅନ୍ୟ ଉପାୟ ନପାଇ, ଚମ୍ଭୁବଂଧନ ବିଦ୍ୟାବଳରେ

ନାରୀରୂପ ଧାରଣ ପୂର୍ବକ ଅନ୍ତଃପୁର ମଧ୍ୟରେ ପ୍ରବେଶ କରିଛି । (୧୮ ଛାନ୍ଦ) 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଚିତ୍ରହଂସ ଓ ମାଙ୍ଗଲ୍ୟା ଶୁକସାରିକ ରୂପନେଇ ନାୟକ ନାୟିକାଙ୍କ ମିଳନ କାର୍ଯ୍ୟରେ ଉପୁଜିଥିବା ପ୍ରତିବନ୍ଧକୁ ଦୂରେଇ ଦେଇ ପାରିଛନ୍ତି । (୨୧ ଛାନ୍ଦ) । ସେହିପରି ବହୁକାବ୍ୟରେ ମନ୍ତ୍ରଜ୍ଞାତା ଯୋଗୀ, ଯୋଗିନୀ ମାନେ ମନ୍ତ୍ରବଳରେ ନାୟକ ନାୟିକାଙ୍କ ମିଳନକୁ ସଂଭବପର କରାଇପାରିଛନ୍ତି । ତେବେ ଏସବୁ ଆଧିଭୌତିକତା ପୂର୍ଣ୍ଣ ବର୍ଣ୍ଣନା ଅପେକ୍ଷା 'ଲାବଣ୍ୟବତୀ'ରେ ସଖୀମାନଙ୍କର ମାନସିକ କୌଶଳଟି ଅଧିକ ଆକର୍ଷଣୀୟ । ନାୟିକା ଲାବଣ୍ୟବତୀ ପାଲିଙ୍କିରେ ବସି ରାମେଶ୍ୱର ଦର୍ଶନ ନିମିତ୍ତ ଆସିଲାବେଳେ ସଙ୍ଗୀତ ପ୍ରବୀଣା ସଙ୍ଗିନୀ ଜଣେ ପାଲିଙ୍କି ସମ୍ମୁଖରେ ବୀଣାବାଦନ କରି କୁମାର ଥିବା ସ୍ଥାନ ଆଡକୁ ଧୀରେ ଧୀରେ ଗତି କରିଛି । ମନ୍ତ୍ରୀସୁତା ତାମ୍ବୁଳ ସେବାରେ ନିଯୁକ୍ତା ଅଛି , ମେଘମାଳା ଚାମର ଢ଼ାଳୁଛି , ଧାତ୍ରୀ ପୁତ୍ରୀର କରଧରିଛି ଲାବଣ୍ୟବତୀ । ପରିଚାରିକା ମାନେ ପାଲିଙ୍କି ସମ୍ମୁଖରେ ଚାଲିଛନ୍ତି । କ୍ରମଶଃ ଏମାନେ ନାୟକର ସନ୍ନିକଟ ହୋଇଛନ୍ତି । ଏତିକି ବେଳେ -

ପ୍ରିୟସହଚରୀ ବିଜ୍ଞା ଅନୁସରି ତରୁଣ କେଶରୀ ଥିବାକୁ
ଧରପାନ ବୋଲି ଡାହାଣେ ଯାଚିଲା ପାଛିଲା ନେତ୍ର ପଡିବାକୁ
ସେଲାଗେ, ଶୁକପଢ଼ିଦେଲା ଏଭାଷା ।
ସୁମନା ରସାତୁର ହୋଇ ଭ୍ରମର ଏ ଦିଗେ କରିଅଛି ଆଶା । (୨୭ ଛାନ୍ଦ)

ଅପୂର୍ବ କୌଶଳ ଏ ! ନାୟକ ନାୟିକାଙ୍କ ସାକ୍ଷାତଦର୍ଶନ ସଂଭବ କରାଇବା ନିମିତ୍ତ ସଖୀ ମନ୍ତ୍ରୀସୁତାର ଡାହାଣ ଦିଗରୁ ତାମ୍ବୁଳ ପ୍ରଦାନ ଏବଂ ଶୁକପକ୍ଷୀର ସୂଚନା ଦେବା କାର୍ଯ୍ୟ ସଂଯୋଜକ ଚରତ୍ରମାନଙ୍କର ମାନସିକ କୌଶଳର ରମଣୀୟ ଦୃଷ୍ଟାନ୍ତ । ଭଂଜସାହିତ୍ୟରେ ନାୟିକାମାନଙ୍କର ସ୍ୱୟଂଦୌତ୍ୟ ସାଧନ ପ୍ରତି ବର୍ତ୍ତମାନ ଦୃଷ୍ଟି ନିକ୍ଷେପ କରିବା ।

**ସ୍ୱୟଂଦୂତୀ :-**

ରୂପଗୋସ୍ୱାମୀ 'ଉଜ୍ଜ୍ୱଳନୀଳମଣି ଗ୍ରନ୍ଥରେ ଲେଖିଛନ୍ତି -

'ଅତ୍ୟୌତ୍ସୁକ୍ୟ ତ୍ରୁଟଦ୍ୱ୍ରୀଡାୟାଚ୍ ରଗାତିମୋହିତା
ସ୍ୱୟମେବାଭି ଯୁଙ୍କ୍ତେସା ସ୍ୱୟଂଦୂତୀ ତତଃ ସ୍ମୃତା । ''
(ଦୂତୀଭେଦପ୍ରକରଣ)

ଉତ୍କଟ ବିରହ ବେଦନା କିମ୍ବା ସମାଜିକ ବାଧା ବଂଧନ ଅଥବା ଅନ୍ୟନିକଟରେ ନିଜର ଦୁର୍ବଳତାକୁ ପ୍ରକାଶ କରିବାର ଲଜ୍ଜା ଓ ଭୀତି ହିଁ ନାୟିକାକୁ ନିଜେ ନିଜର ଦୌତ୍ୟକର୍ମ କରିବା ପାଇଁ ପ୍ରରୋଚିତ କରିଥାଏ । ନାୟିକା ଯେତେବେଳେ ନିଜେ ନିଜର ଦୌତ୍ୟକର୍ମ ସାଧନକରେ, ସେତେବେଳେ ତାକୁ ସ୍ୱୟଂ ଦୂତୀ କୁହାଯାଏ । ବିଶେଷତଃ ପ୍ରଗଳ୍ଭା ଓ ପୌଢ଼ା ନାୟିକା ମାନଙ୍କର ସ୍ୱୟଂଦୌତ୍ୟକୁ ଭିତ୍ତିକରି ସଂସ୍କୃତ ଓ ପ୍ରାକୃତ ଭାଷାର କବି ମାନେ ବହୁ ରମଣୀୟ ପଦାବଳୀ ସୃଷ୍ଟି କରିଯାଇଛନ୍ତି । ଗାଥା ସପ୍ତଶତୀ, ଅମରୁଶତକ, ଶୃଙ୍ଗାର ଶତକ, ରସମଂଜରୀ, ଆର୍ଯ୍ୟାସପ୍ତଶତୀ ପ୍ରଭୃତି ଗ୍ରନ୍ଥରେ ସ୍ୱୟଂଦୌତ୍ୟର ବହୁ ରୂପବିଭବ ଦେଖିବାକୁ ମିଳେ । ଆପ୍ତଦୌତ୍ୟ ଅପେକ୍ଷା ସ୍ୱୟଂଦୌତ୍ୟ ଅଧିକ ଚାତୁର୍ଯ୍ୟପୂର୍ଣ୍ଣ ଓ ବ୍ୟଂଜନାତ୍ମକ ହୋଇଥିବାଯୋଗୁଁ ଆଳଂକାରିକମାନେ କାବ୍ୟିକ ଧ୍ୱନି କିମ୍ବା ବକ୍ରୋକ୍ତି ବିଚାର ବେଳେ ଏହି ପ୍ରକାର ଶ୍ଳୋକ ଗୁଡିକୁ ଉଦାହରଣ ରୂପେ ବିଶ୍ଳେଷଣ କରିଛନ୍ତି । ଏ ସଂକ୍ରାନ୍ତରେ ଉପେନ୍ଦ୍ରଭଂଜଙ୍କ ଦୃଷ୍ଟିଭଙ୍ଗୀ କିଂତୁ ଭିନ୍ନ । ତାଙ୍କ କାବ୍ୟନାୟିକା ମାନେ ରାଜକନ୍ୟା, ଅଜପ୍ରସଖୀ, ଦାସୀ ଓ ପରିଚାରିକା ପରିବୃତା ତଥା

ସ୍ୱାଭିମାନ ସିକ୍ତା । ଆପଣା ସ୍ୱାଭିମାନ ନଷ୍ଟ ହେବାର ଆଶଙ୍କାରେ ନିଜପକ୍ଷରୁ ନାୟକ ନିକଟକୁ ପ୍ରଥମକରି ପତ୍ର ପ୍ରେରଣ ନିମିତ୍ତ ମଧ୍ୟ ପରାଙ୍ମୁଖା (ଲାବଣ୍ୟବତୀ, ୧୭ଛାନ୍ଦ) ଅତଃ ଏତାଦୃଶ ନାୟିକାମାନଙ୍କୁ ସ୍ୱୟଂଦୂତୀ ସ୍ତରକୁ ନଆଣି କବି ଆପଣା ସୃଷ୍ଟିର କଳାତ୍ମକ ଶୋଭନ ସଂଗତି ରକ୍ଷା କରିଛନ୍ତି । କିଂତୁ ଇତର ପ୍ରୌଢ଼ା ନାୟିକା, ଉପନାୟିକା ମାନଙ୍କର ସ୍ୱୟଂଦୌତ୍ୟ ବର୍ଣ୍ଣନା ଦୃଷ୍ଟିରୁ ଉପେନ୍ଦ୍ର ସାହିତ୍ୟ ନୀରସ, ନିଷ୍ପ୍ରଭ ନୁହେଁ । ତାଙ୍କ ସୁଭଦ୍ରାପରିଣୟ କାବ୍ୟରେ ଏପରି ଏକ ସ୍ୱୟଂଦୂତୀ କୁ ଆମେ ଦେଖିବାକୁ ପାଉ । ଯଥା -

''ସ୍ୱୟଂଦୂତୀ ହିଁ ଚିରେ ଆଦରି, ନାଗରେ ଦୃଷ୍ଟିପାତ ନକରି
କହେକେ ସଖୀ ହସ୍ତକୁ ଧରି, ଚାତୁରୀ କରି ଯେ,
ଶାଶୁ ଶ୍ୱଶୁର ପୁରକେ ଶୋଇ, ବର ଅଛନ୍ତି ବିଦେଶେ ଯାଇ
ଏକା ମୁଁ ଥାଇ ନିଦ୍ରା ନୁହଁଇ, ରାତ୍ରକୁ ଡରି ଯେ,
ଭୁବନେ ରହିଛି ଭୂତ ମନ୍ମଥଯେ, ସ୍ଥିତ ହୋଇଛି ଯେଣୁ ଦ୍ୱାରେ ଅଶ୍ୱତ୍‌ଥଯେ,
ସାହା ମୋ ତୁହି କହିଲି ତୋତେ, ଛାଣ ଅବଧି ମୋହ ସଂଗତେ
ହର ରଜନୀ କୁହୁକ ମତେ, କର କୃତାର୍ଥ ଯେ '' । (୬୪ ଛାନ୍ଦ)

ସ୍ୱୟଂଦୂତୀମାନେ ବାଚିକା, ଆଙ୍ଗିକା ଓ ଚାକ୍ଷୁଷା ଭେଦରେ ତ୍ରିବିଧା ଅଟନ୍ତି । କବିଙ୍କ ରସପଞ୍ଚକ ଓ ଛାନ୍ଦଭୂଷଣ କାବ୍ୟରେ ଏହି ତ୍ରିବିଧ ସ୍ୱୟଂ ଦୂତୀମାନଙ୍କୁ ଦେଖିବାକୁ ମିଳେ । ବଚନ, ଅଙ୍ଗ ଓ ଚକ୍ଷୁର ଇଙ୍ଗିତ ମାଧ୍ୟମରେ ଶ୍ରୀକୃଷ୍ଣଙ୍କ ନିକଟରେ ନିଜର ଅଭିପ୍ରାୟ ବ୍ୟକ୍ତ କରି ଛାନ୍ଦଭୂଷଣ କାବ୍ୟର ଗୋପାଙ୍ଗନାଗଣ ସ୍ୱୟଂଦୌତ୍ୟସାଧନରେ ନିଦର୍ଶନ ସ୍ୱରୂପ ଭଂଜ ସାହିତ୍ୟରେ ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିଛନ୍ତି ।

**ନଷ୍ଟଦୂତୀ :-**

ଆପ୍ତଦୂତୀର ବିପରୀତ କାର୍ଯ୍ୟକରୁଥିବାରୁ ଦୂତୀକୁ ନଷ୍ଟ ଦୂତୀ କୁହାଯାଏ । ଅର୍ଥାତ୍ ଏମାନେ ନାୟିକାର ସୁଖ ଦୁଃଖ ଜଣାଇ କିମ୍ବା ସନ୍ଦେଶ ପ୍ରଦାନ କରି ନାୟକକୁ ନାୟିକା ପ୍ରତି ଅନୁକୂଳ କରାଇବା ପରିବର୍ତ୍ତେ ନିଜେ ନାୟକ ସହିତ ରମଣ କ୍ରୀଡାରେ ଲିପ୍ତ ରୁହନ୍ତି । ନାୟକର ବାଧ୍ୟବାଧକତାରେ ଅଥବା ସ୍ୱଇଚ୍ଛାରେ ଏମାନେ ଏପରି କରିଥାନ୍ତି ଏବଂ ପରବର୍ତ୍ତୀ କାଳରେ ନାୟିକା ଠାରୁ ଏଥିପାଇଁ ଭର୍ତ୍ସନା ଶୁଣିଥାନ୍ତି । ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ନଷ୍ଟଦୂତୀର ଦୃଷ୍ଟାନ୍ତ ବିରଳ ନୁହେଁ । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ମମ୍ମଟ ଭଟ୍ଟଙ୍କ 'କାବ୍ୟ ପ୍ରକାଶ' ଅନ୍ତର୍ଗତ ଏଇଶ୍ଳୋକଟିକୁ ଏଠାରେ ଉଦ୍ଧାର କରାଯାଉଛି ।

''ନିଃଶେଷଚ୍ୟୁତ ଚନ୍ଦନ ସ୍ତନତଟଂ ନିର୍ମୃଷ୍ଟ ରାଗୋଽଧରେ ।
ନେତ୍ରେ ଦୂରମନଞ୍ଜନେ ପୁଲକିତା ତନ୍ୱୀ ତବେୟଂ ତନୁଃ
ମିଥ୍ୟାବାଦିନୀ ଦୂତି ବାନ୍ଧବଃଜନସ୍ୟା ଜ୍ଞାତ ପୀଡାଗମେ
ବାପୀଂ ସ୍ନାତୁ ମିତୋ ଗତାସି ନପୁନସ୍ତସ୍ୟାଧମ ସ୍ୟାନ୍ତିକମ୍ । '' (୨/୯)

ଅର୍ଥାତ୍, ନାୟିକା ପ୍ରେରିତା ଦୂତୀ ନାୟକ ସହିତ ସହବାସ ଜନିତ ସଂଭୋଗ ଶକୁନମାନ ଦୂର କରିବା ଉଦ୍ଦେଶ୍ୟରେ ସ୍ନାନ କରି ଆସି ନାୟିକାକୁ କହୁଛି, '' ମୁଁ ତାଙ୍କୁ ଦେଖି ପାରିଲି ନାହିଁ, ବାଟରେ ସ୍ନାନ କରି ଫେରି ଆସିଲି । '' ଚତୁରୀ ନାୟିକା ଜାଣିପାରି ଦୂତୀକୁ କହୁଛି, ''ସଖୀର ଦୁଃଖକୁ ଜାଣିପାରୁନଥିବା ଆଲୋ ମିଛେଇ ଦୂତି ! ତୋ ସ୍ତନପାର୍ଶ୍ୱରୁ ଚନ୍ଦନ ପ୍ରଲେପ ଏବଂ ଅଧରରୁ ତାମ୍ବୁଳ-ରକ୍ତିମା ତଥାପି ସଂପୂର୍ଣ୍ଣ ଲିଭି ଯାଇନି, କେବଳ ନେତ୍ର ଦ୍ୱୟର ପ୍ରାନ୍ତଭାଗରୁ ଅଂଜନ ପୋଛି ହୋଇଯାଇଛି । ପୁଣି ସ୍ନାନ ଜନିତ ଶୈତ୍ୟହେତୁ ତୁ ରୋମାଞ୍ଚିତ ହେଉଛୁ । ''

ଉଜ୍ଜ୍ୱଳନୀଳ ମଣିକାର ରୂପଗୋସ୍ୱାମୀ କିଂତୁ ଦୂତୀ ମାନଙ୍କୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଯଥା - '' ଦୂତୀ ସ୍ୱୟଂ ତଥାପ୍ତାଚ ଦ୍ୱିଧାତ୍ରା ପରିକୀର୍ତ୍ତିତା '' (ଦୂତୀଭେଦ ପ୍ରକରଣ) ନଷ୍ଟଦୂତୀର ପରିକଳ୍ପନା ସେ ଆଦୌକରିନାହାନ୍ତି । ଅବଶ୍ୟ କୃଷ୍ଣ କାବ୍ୟମାନଙ୍କରେ ନଷ୍ଟ ଦୂତୀର ପରିକଳ୍ପନା ଏକାନ୍ତ ବିରଳ ମଧ ଅସ୍ୱାଭାବିକ । 'ଉଜ୍ଜ୍ୱଳନୀଳମଣ' କୃଷ୍ଣଭକ୍ତି ସାହିତ୍ୟ ଭିତ୍ତିକ ଏକ ଅଳଂକାର ଗ୍ରନ୍ଥ ହେତୁ ଏଥିରେ ନଷ୍ଟ ଦୂତୀର ପରିକଳ୍ପନା ନରହିବା ସ୍ୱାଭାବିକ । କିଂତୁ ଓଡିଆ ସାହିତ୍ୟର ଆଦିକବି ସାରଳା ଦାସଙ୍କ ପରିକଳ୍ପନାରେ ଠିକ୍ ବିପରୀତ ସାଧିତ । ଅର୍ଥାତ୍ ଶ୍ରୀରାଧା ପ୍ରେରିତା ଦୂତୀ ସହଜ ସୁନ୍ଦରୀ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ବର୍ଣ୍ଣନା ମାଧମରେ ସାରଳା ଦାସ ପ୍ରଥମ କରି ଓଡିଆ ସାହିତ୍ୟରେ ଏବଂ କୃଷ୍ଣକାବ୍ୟ ଜଗତରେ ନଷ୍ଟ ଦୂତୀ ପରିକଳ୍ପନା କରିଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରତାପ ରାୟଙ୍କ 'ଶଶିସେଣା' ପରି କେତେକ କାଳ୍ପନିକ କାବ୍ୟ ଏବଂ 'ଚାରିସଙ୍ଗାତ ଓ ରାଜାଝିଅ' ପରି କେତେକ ଲୋକ ଗଳ୍ପରେ ନଷ୍ଟ ଦୂତୀ ମାଲୁଣୀ ମାନଙ୍କୁ ଦେଖିବାକୁ ମିଳେ । ଭଂଜଙ୍କ କାବ୍ୟ ଜଗତରେ ଚଳପ୍ରଚଳ କରିଥିବା ଦୂତୀମାନେ ପ୍ରାୟଶଃ ବିଶ୍ୱସ୍ତ ଏବଂ ସଂଜମୀ । ଏଣୁ ତାଙ୍କ କାବ୍ୟ ଜଗତରେ ନଷ୍ଟ ଦୂତୀ ମାନଙ୍କର ସ୍ଥାନ ଏକାନ୍ତ ନ୍ୟୁନ । ତେବେ ନଷ୍ଟ ଦୂତୀର ସଂଜ୍ଞା ଓ ସ୍ୱରୂପ ଦର୍ଶାଇ ବାକୁ ଯାଇ ସେ 'ରସପଞ୍ଚକ'ରେ ଯେଉଁ ରସାଳ ବର୍ଣ୍ଣନା ଉପସ୍ଥାପନ କରିଛନ୍ତି, ତାହା ଅବଶ୍ୟ ଉଲ୍ଲେଖନୀୟ । ଦୂତୀର ସର୍ବାଙ୍ଗରେ ସଂଭୋଗ ଶକୁନ ଲକ୍ଷ୍ୟକରି ନାୟିକା ତାକୁ ପରିହାସ କରନ୍ତେ ଦୂତୀ କହୁଛି -

''ଚତୁରୀ ଦୂତୀ କହେ ରାମା କତି, ଚନ୍ଦ୍ରଭାଗାତୀରେ ଦେଖି ତୋ ପତି
ଚରିତ ତୋର କହୁଁ ଆଗର, ଚାଲିଯାଇ ଜନେ ଲଭିଲି ଡର
ଚପଳେ ଯାଇ ଲୁଚିଲି ମୁହିଁ, ଚୋର ପ୍ରାୟ କୁଂଜ ଭିତରେରହି ।
ଚୋଖ କଣ୍ଟକ ଲାଗି ଜାନୁବୁକ, ଚାଷଭୂମି ପ୍ରାୟେ ହୋଇଛି ଦେଖ
ଚଞ୍ଚଳ ହୋଇ ନିଶ୍ୱାସ ବହି, ଚମକେ ବୁକୁ ଦେଖ କର ଦେଇ ।
ଚତୁରୀ ଖରେ କହିଲା ଧିରେ, ଚିରି ନଗଲା ଶାଢ଼ୀ କିଭାଗ୍ୟରେ
ଚାରୁ ଅଧର ପ୍ରବାଳ ତୋର, ଛଟକେ ନଖେ ଚିରିଲା ପ୍ରକାର
ଚିର କ୍ଷୁଧାରେ କୁଂଜେ ଥିଲା କୀରେ, ଚୋବାଇଲା ଓଷ୍ଠ ବିମ୍ୱ ଭ୍ରମରେ । ''

ମାନବେତର ସଂଯୋଜକ ଚରିତ୍ର :-

ସଂଖ୍ୟାଧିକ ଭୌତିକ ନାରୀ ଓ ପୁରୁଷ ସଂଯୋଜକ ଚରିତ୍ରଙ୍କ ଉପସ୍ଥିତି ସତ୍ତ୍ୱେ କବିଙ୍କର ମାନବେତର ସଂଯୋଜକ ଚରିତ୍ର ଅବଲମ୍ବନ ପାଠକମନରେ ନିଶ୍ଚିତ ଭାବେ କୌତୂହଳ ସୃଷ୍ଟି କରେ । ଅବଶ୍ୟ ସୁପ୍ରସିଦ୍ଧ ବୈଦିକ ଉପାଖ୍ୟାନ, ସଂସ୍କୃତ କଥା ସାହିତ୍ୟ ତଥା ପାଲିଜାତକେ କଥାଭିତରେ ବହୁ ମାନବେତର ପ୍ରାଣୀ ଚରିତ୍ର ରୂପେ ସ୍ଥାନ ପାଇଛନ୍ତି । ଏହି ପ୍ରାଚୀନ ସାହିତ୍ୟର ପ୍ରଭାବରେ ସଂସ୍କୃତ ସାହିତ୍ୟରେ ପଶୁପକ୍ଷୀ ମାନଙ୍କୁ ମୁଖ୍ୟ ଏବଂ ସଂଯୋଜକ ଚରିତ୍ରର ଭୂମିକା ପ୍ରଦାନ କରାଯାଇଛି । ବାଣଭଟ୍ଟଙ୍କ ପ୍ରସିଦ୍ଧ ଗଦ୍ୟକାବ୍ୟ 'କାଦମ୍ବରୀ'ର ବୈଶଂପାୟନ  ନାମକ ଶୁକ ପକ୍ଷୀ, ଶ୍ରୀହର୍ଷଙ୍କ ନୈଷଧର ହଂସ, ରୂପଗୋସ୍ୱାମୀ କୃତ 'ବିଦଗ୍ଧମାଧବ'ର କକ୍ଖଟୀ ବାନରୀ, ସୁରଙ୍ଗ ନାମକ ହରିଣ ଏବଂ ରଙ୍ଗିଣୀ ନାମକ ହରିଣୀ ତଥା ଶୁକ ପକ୍ଷୀ ପ୍ରଭୃତି ଚରିତ୍ରଙ୍କୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ସେହିପରି 'ଶ୍ରମଦ୍ ଭାବବତ' ପ୍ରଭାବରେ କୃଷ୍ଣକାବ୍ୟକାରମାନେ ବଂଶୀଦଣ୍ଡ ବା ବଂଶୀ ସ୍ୱନକୁ ସାର୍ଥକ ସଂଯୋଜକ ଚରିତ୍ର ରୂପେ ବ୍ୟବହାର କରି ବିବିଧ କାର୍ଯ୍ୟ ହାସଲ କରିଛନ୍ତି । ରାମକଥା ଭିତ୍ତିକ କାବ୍ୟ ମାନଙ୍କରେ ଜଟାୟୁ, ବକ, କୁକୁଟ, ବାନର ପ୍ରଭୃତି ପଶୁପକ୍ଷୀ ମାନଙ୍କର ଅବଲମ୍ବନ ବ୍ୟତିରେକେ କାବ୍ୟକଳାର ଅଭିବୃଦ୍ଧି ଅସଂଭବ ମନେହୁଏ ।

ଭଂଜସାହିତ୍ୟରେ ମାନବେତର ସଂଯୋଜକ ଚରିତ୍ର ମାନଙ୍କର ବହୁରୂପ ବିଭବ ଦେଖିବାକୁ ମିଳେ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ରେ ବ୍ରହ୍ମାବାହାନ ହଂସ, 'ଲାବଣ୍ୟବତୀ'ରେ ଶୁକପକ୍ଷୀ, 'ଛାନ୍ଦଭୂଷଣ' ରେ ବଂଶୀ, ବୈଦେହୀଶ ବିଳାସ' ଏବଂ 'ଅବନାରସତରଙ୍ଗ'ରେ ବକ, ଜଟାୟୁ ପ୍ରଭୃତି ପଶୁପକ୍ଷୀ ଜାତୀୟ ସଂଯୋଜକ ଚରିତ୍ରଙ୍କୁ ଅବଲମ୍ବନ କରି କବି ସ୍ୱୀୟ କାବ୍ୟ ସମସ୍ୟା ମାନ ସମାଧାନ କରିଛନ୍ତି । ଏସବୁ ଚରିତ୍ର ଅବଲମ୍ବନର ପୃଷ୍ଠ ଦେଶରେ କବିଙ୍କ କଳ୍ପନା ବିଳାସ ସହିତ କାବ୍ୟ ସମସ୍ୟା ସମାଧାନ ନିମିତ୍ତ ଉପଯୁକ୍ତ ଚରିତ୍ର ଚୟନ ପରାକାଷ୍ଠା ଏବଂ କାବ୍ୟ ପରଂପରା ପାଳନ ମନୋଭାବ ଥିବା ସ୍ପଷ୍ଟ ବାରିହୋଇ ଯାଏ । 'ଲାବଣ୍ୟବତୀ'ରେ କବି ଲେଖିଛନ୍ତି -

''ଗୃହକପୋତ ପଢ଼ାଶୁକ ସଂଘାତ ଶାରୀ ପଂଜରାକି ନେଲେ
ରଜନୀ ଥିବା ଯିବାର ଜାଣି ବାକୁ ପୁରପାଶେ ଲୟାଇଲେ । ''(୩୧ ଛାନ୍ଦ)

ନବବିବାହିତ ଦଂପତିଙ୍କ ମିଳନ ଉଦ୍ଦେଶ୍ୟରେ ମଧୁଶଯ୍ୟା ଗୃହକୁ ବିଭିନ୍ନ ସାମଗ୍ରୀ ଦ୍ୱାରା ବିଚିତ୍ର କରି ସଜାଇବା ପରେ ସଖୀମାନେ ସେହି ପୁରପାର୍ଶ୍ୱରେ ଗୃହକପୋତ (ପାରା), ଶୁକ, ସାରିକା ପଂଜରୀ ନେଇ ଲୟାଇଲେ । କାରଣ ଏମାନଙ୍କ ରାବରୁ ନାୟକ ନାୟିକା ରଜନୀ ଶେଷ ହେବାର ସୂଚନା ପାଇ ପାରିବେ । ବାସ୍ତବରେ ସେହି ନିଷିଦ୍ଧ ତଥା ମଧୁମୟ ପରିବେଶକୁ କୌଣସି ମାନବୀୟ ଚରିତ୍ରର ଗମନ ଏକାନ୍ତ ଅପ୍ରାସଙ୍ଗିକ, ଅସଂଗତ । ତେଣୁ କବିଙ୍କ ଔଚିତ୍ୟ ଦୃଷ୍ଟି ଏଠାରେ ଶୁକ, ସାରିକା ପରି ମାନବେତର ସଂଯୋଜକ ଚରିତ୍ରକୁ ଅବଲମ୍ବନ କରିଛି । 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ଚନ୍ଦ୍ରରେଖା', ପରି ବହୁକାବ୍ୟରେ ଶୁକ , ସାରିକା ପକ୍ଷୀ ମାନଙ୍କର ସଂଯୋଜନା କାର୍ଯ୍ୟକୁ ନେଇ ପାଠକ ମନରେ ସୃଷ୍ଟିହେଉଥିବା ସଂଶୟ ଦୂରୀକରଣ କଳ୍ପେ ଉପେନ୍ଦ୍ରଭଂଜ ' କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ରେ ଲେଖିଛନ୍ତି -

'ମନେମନେଧାୟି ଧାୟି ସେହିସେହି ଉକ୍ତି ଘେନିଲେ କିକଥାଏ ପକ୍ଷୀଙ୍କ ଏତେ ଶକ୍ତି
ପୁଣି ଗୁଣିଲେ ଏବିଧି ପଢ଼ାଇବା ଖଗ, ହୋଇଥିଲେ ପୂର୍ବେ ହଂସ ଦୂତ ଅତି ଅଙ୍ଗ ।
ନଳଦମୟନ୍ତୀ କାମଦେବ ପ୍ରଭାବତୀ, ରାଜା ରକ୍ଷ ପୁରେ ମିଳି କରିଦେଲେ ପ୍ରୀତି । ''
(୨୧ ଛାନ୍ଦ)

ନାୟକ ନାୟିକାଙ୍କ ସଂପର୍କରେ ଶୁକ ସାରିକା ଯେଉଁ ବାର୍ତ୍ତାଳାପ କଲେ, ସେଥିରୁ ପୋଟା ଓ ଉପାଧାୟୀଙ୍କୁ ନାୟକ ନାୟିକାଙ୍କ ମିଳନ ନିମିତ୍ତ ବାଟ ଦିଶିଗଲା । କିନ୍ତୁ ସେମାନେ ଆଶ୍ଚର୍ଯ୍ୟ ହେଲେ, ପକ୍ଷୀମାନଙ୍କର ଏତେ ଶକ୍ତି ଆସିଲା କିପରି ! ପୁଣି ସେମାନେ ସ୍ମରଣ କଲେ ଯେ, ପୂର୍ବେ ହଂସ ପକ୍ଷୀ ପରି ଅଙ୍ଗଦୂତ ମଧ୍ୟ ରାଜପୁରସ୍ଥିତା ଦମୟନ୍ତୀଙ୍କ ସହିତ ନଳଙ୍କର ଏବଂ ରକ୍ଷପୁର ଆବଦ୍ଧା ରତିଙ୍କ ସହିତ କାମଦେବଙ୍କର ମିଳନ ସିଦ୍ଧ କରିଥିଲେ । ଏ ବିଚାର ଉପେନ୍ଦ୍ର ଭଂଜଙ୍କର । ପ୍ରାଚୀନ କାବ୍ୟ ପରଂପରାର ଏହି ଉଦାହରଣ ମାଧ୍ୟମରେ କବି ପାଠକ ମାନଙ୍କର ସଂଶୟ ଦୂର କରିବାର ପ୍ରୟାସ କରିଛନ୍ତି । ସେହିପରି 'ବୈଦେହୀଶ ବିଳାସ', 'ଅବନାରସ ତରଙ୍ଗ' ପ୍ରଭୃତି ରାମ କାବ୍ୟରେ ପରିବେଶକୁ ଲକ୍ଷ୍ୟରଖି ମାନବେତର ପଶୁପକ୍ଷୀ ମାନଙ୍କୁ ସଂଯୋଜକ ଚରିତ୍ର ରୂପେ କବି ବ୍ୟବହାର କରିଛନ୍ତି । ଅବଶ୍ୟ ଏଥିରେ ନୂତନତା ପରିବର୍ତ୍ତେ କାବ୍ୟପରଂପରାର ଅନୁକରଣ ପାଟବ ପରିସ୍ଫୁଟ । କିଂତୁ ଆଧିଭୌତିକ ସଂଯୋଜକ ଚରିତ୍ର ଚୟନ କ୍ଷେତ୍ରରେ କବିଙ୍କ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ ।

**ଆଧିଭୌତିକ ସଂଯୋଜକ ଚରିତ୍ର :-**

ଭଂଜଙ୍କ କାବ୍ୟସଂଭାର ହେଉଛି ବହୁ ବିଚିତ୍ର ଆଧିଭୌତିକ ସଂଯୋଜକ ଚରିତ୍ରଙ୍କ କ୍ରୀଡାସ୍ଥଳୀ, ବିହାରଭୂମି । ଉପେନ୍ଦ୍ର ପୂର୍ବବର୍ତ୍ତୀ କାବ୍ୟକାର ମାନେ ଏଭଳି ଚରିତ୍ର ମାନଙ୍କୁ ଯେ ଅବଲମ୍ବନ କରିନଥିଲେ, ତାହା କୁହାଯାଇନପାରେ; କିଂତୁ ଆଧିଭୌତିକ ସଂଯୋଜକ ଚରିତ୍ର ମାନଙ୍କର ବହୁଳବ୍ୟବହାର

ସେମାନଙ୍କ ସୃଷ୍ଟିରେ ଦୃଷ୍ଟିଗୋଚର ହୁଏ ନାହିଁ । କାବ୍ୟର ବିଷୟବସ୍ତୁକୁ ରସୋତ୍ତୀର୍ଣ୍ଣ, ଗତିଶୀଳ ତଥା ସମସ୍ୟା ମୁକ୍ତ କରିବା ପାଇଁ ବିଷୟ ବସ୍ତୁର ପରିବେଶ ଓ ପରିସ୍ଥିତି ଅନୁଯାୟୀ ନୂତନ ଉପାଖ୍ୟାନ ଏବଂ ନୂତନ ଚରିତ୍ର ସୃଷ୍ଟିକରାଯାଇଥାଏ । କୌଣସି ସୀମିତ ଶକ୍ତି ସଂପନ୍ନ ଭୌତିକ ଚରିତ୍ର ଦେଇ କାବ୍ୟିକ ସମସ୍ୟା ସମାଧାନ କରିବାରେ ଯେଉଁଠି ପ୍ରାସଙ୍ଗିକତା ରହେ ନାହିଁ, ସେଇଠି କବିର କଳ୍ପନାଶକ୍ତି ଏକ ଆଲୌକିକ ଶକ୍ତି ସଂପନ୍ନ ଭୌତିକ ଚରିତ୍ର କିମ୍ବା ଦେବାଦେବୀ ପ୍ରଭୃତି ଆଧିଭୌତିକ ଚରିତ୍ରକୁ ଅବଲମ୍ବନ କରିବା ଶ୍ରେୟସ୍କର ମନେକରେ । ଅତଏବ ଭଂଜୀୟ କାବ୍ୟାବଳୀ ମଧ୍ୟରେ ଥିବା ଆଧିଭୌତିକ ସାଯୋଜକ ଚରିତ୍ର ଗୁଡିକୁ ସ୍ୱରୂପ ଓ କାର୍ଯ୍ୟକଳାପ ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତ କରାଯାଇଛି । ସ୍ୱରୂପ ଦୃଷ୍ଟିରୁ ଆଧିଭୌତିକ ଚରିତ୍ର ମାନେ ହେଲେ - 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାରଦ, 'ଲାବଣ୍ୟବତୀ'ର ହରପାର୍ବତୀ, ନିଶ୍ୱାସଚଣ୍ଡିକା, ନାରଦ, 'ରସିକହାରାବଳୀ'ର ଯକ୍ଷଗଣ, 'ରସଲେଖା'ର ଅମ୍ବିକା, ନାରଦ ପ୍ରଭୃତି । ଏମାନେ ସମସ୍ତେ ଦେବାଦେବୀ ଅଥବା ସେମାନଙ୍କର ଆଜ୍ଞାକାରୀ ଯକ୍ଷ, ଗନ୍ଧର୍ବ, ବନଦେବୀ, ଗ୍ରାମଦେବୀ ପ୍ରଭୃତି ଚରିତ୍ର । ଏମାନେ ନାୟକ ନାୟିକାଙ୍କ ପିତା ମାତାଙ୍କୁ ସନ୍ତାନପ୍ରାପ୍ତିର ବର ପ୍ରଦାନ ଠାରୁ ଆରମ୍ଭ କରି ନାୟକ ନାୟିକାଙ୍କ ମିଳନରେ ଉପୁଜୁଥିବା ସକଳ ପ୍ରତିବନ୍ଧକୁ ଦୂର କରିବା, ମିଳନୋତ୍ତର ବିଚ୍ଛେଦ ପର୍ଯ୍ୟାୟରେ ନାୟକ ନାୟିକାଙ୍କ ସହାୟତା କରିବା ଏବଂ ପୁନର୍ମିଳନ କରାଇବା ଭଳି ଅଜସ୍ର କାର୍ଯ୍ୟଭାର ଗ୍ରହଣ କରିଥାନ୍ତି ।

କାର୍ଯ୍ୟ କଳାପ ଦୃଷ୍ଟିରୁ, ଆଧିଭୌତିକ ଚରିତ୍ର ମାନେ ହେଲେ ' କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ମାଙ୍ଗଲ୍ୟା ଚିତ୍ରପୁଂସ, 'ଭାବବତୀ'ର ନାମହୀନ ମୁନି, 'ରସଲେଖା'ର ନିଶାକର ଋଷି ତଥା ବିଭିନ୍ନ କାବ୍ୟରେ ଥିବାଯୋଗିନୀ, ସନ୍ୟାସିନୀ ପ୍ରଭୃତି ଚରିତ୍ର । ଏମାନେ ମାୟା ବଳରେ ହଠାତ୍ ନାୟକ ନାୟିକାଙ୍କୁ ସ୍ଥାନାନ୍ତରିତ କରିପାରୁଥିଲେ , ଇଚ୍ଛାନୁଯାୟୀ ବିଭିନ୍ନ ରୂପଧାରଣ (ଶୁକ, ସାରିକା) କରିପାରୁଥିଲେ, ଏବଂ ଯୋଗବଳରେ ବିଯୋଜକ ଚରିତ୍ର ଦ୍ୱାରା ଅପହୃତ ନାୟକର ଠିକଣା ଜାଣିପାରି ମନ୍ତ୍ର ବଳରେ ତାକୁ ସ୍ୱଦେହରେ ଆଣି ନିଜପୁରରେ ଛାଡି ଦେଇ ପାରୁଥିଲେ । ଏମାନେ ଭୌତିକ ସନ୍ୟାସୀ, ସନ୍ୟାସିନୀ ହେଲେ ମଧ୍ୟ ଅଦ୍ଭୁତ, ଅଲୌକିକ ପ୍ରତିଭାର ଅଧିକାରୀ ଥିଲେ । ଭଂଜଙ୍କ କାବ୍ୟ ଚରିତ ଓ ମୁଖ୍ୟ ଚରିତ୍ର ମାନଙ୍କର ସୁଷ୍ଠୁ ରୂପାୟନର ନିମିତ୍ତ ଆଧିଭୌତିକ ସଂଯୋଜକ ଚରିତ୍ର ଗୁଡିକ ଅପରିହାର୍ଯ୍ୟ ମନେ ହୁଅନ୍ତି । କାରଣ ଭଂଜଙ୍କ କାବ୍ୟ ନାୟକ ନାୟିକା ମାନେ ଦୈବୀ ଶାପ ଗ୍ରସ୍ତ ଦେବପୁତ୍ର, ଦେବକନ୍ୟା କିମ୍ବା ଗନ୍ଧର୍ବ ଅପ୍ସରା । ମର୍ତ୍ତ୍ୟପୁରରେ ମଧ୍ୟ ଏମାନଙ୍କ ଜୀବନ ସେହି ଅଭିଶାପ ଦ୍ୱାରା ନିୟନ୍ତ୍ରିତ । ଅର୍ଥାତ୍ ଏମାନଙ୍କ ଜନ୍ମ, ମିଳନ ତଥା ମିଳନରେ ସୃଷ୍ଟି ହେଉଥିବା ପ୍ରତିବନ୍ଧ ମଧ୍ୟ ଦୈବୀକୃତ । ଏପରି ସ୍ଥଳେ ଏମାନଙ୍କ ମିଳନ, ବିଚ୍ଛେଦ ସଂପାଦନରେ କୌଣସି ସାଧାରଣ ଭୌତିକ ଚରିତ୍ର ସହାୟତା କରିବା ଅସଂଭବ । ଅତଃ ଭଂଜସାହିତ୍ୟରେ ମାତ୍ରାଧିକ ସଂଯୋଜକ ଚରିତ୍ରଙ୍କ ବିଚରଣ ଅତି ଗୁରୁତ୍ୱପୂର୍ଣ୍ଣ ଓ ଅନତି କ୍ରମଣୀୟ । ଉପେନ୍ଦ୍ରଭଂଜଙ୍କ ସ୍ୱୀକାରୋକ୍ତି - ''ପୁରାଣ ଛାଇ କଳ୍ପନା ମାଧୁରୀ ଚାରୁ ଚିତ୍ରଲେଖା ହେମ ମଂଜରୀ'' (ଚୈତ୍ରକାବ୍ୟଛୋଦୟ, ୧ମ ଛାନ୍ଦ)କୁ ଭିତ୍ତିକରି ଡଃ. ସୁଦର୍ଶନ ଆଚାର୍ଯ୍ୟ କହିଛନ୍ତି, ''ଏହି କାବ୍ୟକାରମାନେ ସ୍ୱୀୟ କଳ୍ପନା ସହିତ ପୁରାଣର ଛାୟାକୁ ସମନ୍ୱିତକରି କାଳ୍ପନିକ କାବ୍ୟ ସୃଷ୍ଟି କରିଥିବା ଯୋଗୁଁ ଜଟିଳ ସମସ୍ୟାର ଆଶୁ ସମାଧାନ ପାଇଁ ପୁରାଣ- କବିର ପ୍ରଭାବରେ ଏ ପ୍ରକାର ଚରିତ୍ର ମାନଙ୍କୁ ସୃଷ୍ଟି କରୁଥିବା ସଂଭାବନା କରାଯାଇପାରେ । ''(ଓଡିଆ କାବ୍ୟ କୌଶଳ, ପୃ- ୭୭) ସେହିପରି ଭଂଜଙ୍କ ଅନ୍ୟଏକ ସ୍ୱୀକାରୋକ୍ତି - ''ଅନୁଭବରୁ ପ୍ରଖ୍ୟାତ ମାନସ ରଚନା, ଶୁଣ ସୁରସିକମାନେ ହୋଇଣ ସୁମନା'' (ରସିକହାରାବଳୀ, ୧ମଛାନ୍ଦ) କୁ ସଂବଳ କରି କହିହେବ, ସମକାଳୀନ ସମାଜ ଭିତରେ ପ୍ରତିଷ୍ଠିତ ଥିବା ତାଂତ୍ରିକ ପରଂପରା ଏବଂ ଏତଦ୍ ସଂପର୍କିତ କବିଙ୍କ ଅନୁଭୂତିହିଁ ଅଦ୍ଭୁତକର୍ମା, ଯୋଗୀ, ସନ୍ୟାସୀ, ସନ୍ୟାସିନୀ, ଐନ୍ଦ୍ରଜାଲିକ, ଜାଙ୍ଗଳିକ ପ୍ରଭୃତି ଚରିତ୍ର ସୃଷ୍ଟିର ପ୍ରଧାନ ପୃଷ୍ଠଭୂମି ।

**ଉପସଂହାର :-**

ଆଲୋଚନାର ନିଷ୍କର୍ଷ ସ୍ୱରୂପ କହିହେବ, ଭଂଜସାହିତ୍ୟ ଅନ୍ତର୍ଗତ ଏହି ଚରିତ୍ର ମାନଙ୍କୁ ସର୍ବଦା ଗୌଣ ଚରିତ୍ର ରୂପେ ବିଚାର କରି ସେମାନଙ୍କ ଅଧ୍ୟୟନରେ ଅବହେଳା ପ୍ରଦର୍ଶନ କରିବା ଉଚିତ୍ ନୁହେଁ । କାବ୍ୟକଳେବର ମଧ୍ୟରେ ଏପରି ଚରିତ୍ର ମାନଙ୍କର କାର୍ଯ୍ୟକଳାପକୁ ଭିତ୍ତିକରି ଏମାନଙ୍କୁ ସଂଯୋଜକ ଚରିତ୍ର କହିବା ଅଧିକ ଯୁକ୍ତି ଯୁକ୍ତ । ଭଂଜସାହିତ୍ୟରେ ସମସାମୟିକ ସମାଜ ତଥା ରାଜପୁରର ବାସ୍ତବଚିତ୍ର ଅଧ୍ୟୟନ ନିମିତ୍ତ ସଂଯୋଜକ ଚରିତ୍ର ଗୁଡିକ ହିଁ ପ୍ରକୃଷ୍ଟ ମାଧ୍ୟମ । ଅଧିକନ୍ତୁ କାବ୍ୟକଳାର ଉତ୍କର୍ଷ ସାଧନ ନିମିତ୍ତ ଏହି ଚରିତ୍ର ଗୁଡିକ ଏକାନ୍ତ ଅପରିହାର୍ଯ୍ୟ । ଏମାନଙ୍କ ବ୍ୟତିରେକେ କାବ୍ୟର ବିଷୟବସ୍ତୁ ଗତିଶୀଳ ହୋଇପାରିବ ନାହିଁ । ନାୟକ ନାୟିକାଙ୍କ ପ୍ରଣୟଭାବକୁ ନେଇ ଶୃଙ୍ଗାର ରସର ପରିଚର୍ଯ୍ୟା ହୋଇପାରେ ; କିନ୍ତୁ ସଂଯୋଜକ ଚରିତ୍ର ମାନଙ୍କର ଅନୁପସ୍ଥିତିରେ କାବ୍ୟ ନବରସ ରୁଚିରା ହେବା ସଂଭବପର ନୁହେଁ । ରାଜକୁମାର ରାଜକୁମାରୀଙ୍କ ପ୍ରଣୟ ଭିତ୍ତିକ ବିଷୟ ବସ୍ତୁକୁ କାବ୍ୟରୂପ ଦେବାରେ ଏହି ସଂଯୋଜକ ଚରିତ୍ର ମାନେ କିଭଳି ଅତ୍ୟାବଶ୍ୟକ, ତାର ଅନୁଭବ ଭିତ୍ତିରେ ସ୍ୱୟଂ ଉପେନ୍ଦ୍ରଭଂଜ ଲେଖିଛନ୍ତି -

''ଶଶୀ ଯୋଗେ ନିଶି ନିଶି ଯୋଗେ ଶଶୀ
ସିନା ସୁଷମାକୁ ଲଭନ୍ତି
ସଂଧ୍ୟା କରାଇ ଦୁହିଁଙ୍କ ସଂଗତି................। '' (ସୁଭଦ୍ରାପରିଣୟ, ୯ମ ଛାନ୍ଦ)

ଅର୍ଥାତ୍ ନିଶି ଯୋଗୁଁ ଚନ୍ଦ୍ରଙ୍କର ଏବଂ ଚନ୍ଦ୍ର ହେତୁ ରଜନୀର ସୁଷମା ଲାଭ ହୁଏ । ଏ ଦୁହିଁଙ୍କର ମିଳନରେହିଁ ଉଭୟଙ୍କର ସୌନ୍ଦର୍ଯ୍ୟ ବୃଦ୍ଧିପାଏ । ଗୋଟିକର ଅନୁପସ୍ଥିତିରେ ଅନ୍ୟଟି ନିଷ୍ପ୍ରଭ । କିଂତୁ ଏ ଦୁହିଁକର ମିଳନ ସଂଘଟନ କର୍ତ୍ତ୍ରୀର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ; ସେ ହେଉଛି ସଂଧ୍ୟା ରୂପୀ ସଖୀ ବା ଦୂତୀ ।

*ଅଧ୍ୟାପକ, ଓଡିଆ ବିଭାଗ,*
*ଏରୋନଟିକ୍ସ ମହାବିଦ୍ୟାଳୟ, ସୁନାବେଡା, କୋରାପୁଟ ।*

# ବୈଦେହୀଶବିଳାସରେ ଆଇନର ଆଲେଖ୍ୟ

ଶ୍ରୀ କିଶୋରଚନ୍ଦ୍ର ମିଶ୍ର

ରୀତିଯୁଗର କବିକୁଳ ଭଞ୍ଜ ଉପେନ୍ଦ୍ର ଥିଲେ ଜଣେ ବହୁଶାସ୍ତ୍ରଦର୍ଶୀ, ସଂସ୍କୃତ ଭାଷାଭିଜ୍ଞ ଏବଂ ପ୍ରତିଭାବାନ୍ ବିଦଗ୍ଧ କବି, ତାଙ୍କର ପ୍ରସିଦ୍ଧ କାବ୍ୟ ତ୍ରୟୀ ମଧରେ ବୈଦେହୀଶବିଳାସ ଏକ ସାଧନାସିଦ୍ଧ, ସ୍ୱୟଂ ସଂପୂର୍ଣ୍ଣ ସୌରଭମୟ ସୃଷ୍ଟି, କାଳ୍ପନିକ କାବ୍ୟରେ କଥାବସ୍ତୁର ସ୍ୱାଧୀନ ସଂଯୋଜନା, ଚରିତ୍ର ଚିତ୍ରଣରେ ଚମତ୍କାରିତା ପ୍ରଦର୍ଶନ ପ୍ରଭୃତି ପାଇଁ କବିପକ୍ଷେ ଯେଉଁ ସୁଯୋଗ ଥାଏ, ବୈଦେହୀଶ ବିଳାସ ପରି ଏକ ପୁରାଣ ଅନୁସୃତ ମହାକାବ୍ୟରେ ତାହା ସୀମିତ, ଉପେନ୍ଦ୍ର ଭଞ୍ଜ ନିଜର ପାଣ୍ଡିତ୍ୟ ଓ ବହୁଶାସ୍ତ୍ର ଦର୍ଶିତାର ବିଭିନ୍ନ ସୂଚନା ସ୍ଥଳ ବିଶେଷରେ ପ୍ରଦାନ କରିଥିଲେ ମଧ ତାଙ୍କର ଆଇନ ସଂପର୍କିତ ଜ୍ଞାନ ବିଷୟରେ ସଚେତନ ଭାବରେ କେଉଁଠି କିଛି ଉଲ୍ଲେଖ କରିନାହାନ୍ତି, ବେଦ, ବେଦାନ୍ତ, ସଂହିତା ଇତ୍ୟାଦି ଗ୍ରନ୍ଥ ଅଧୟନ କରି ସାମାଜିକ ଏବଂ ଜନଜୀବନର ଧାର୍ମିକ ଧାରା ସଂପର୍କରେ ତାଙ୍କର ସ୍ପଷ୍ଟ ଧାରଣା ଥିବା ନିଃସନ୍ଦେହ, ପୁଣି କେତେକ ଗତଜାତ ରାଜାମାନଙ୍କର ମନୋମୁଖୀ ଶାସନସଂପର୍କରେ ମଧ ତାଙ୍କର ପ୍ରତ୍ୟକ୍ଷ ଧାରଣା ଥିବା ଅସମ୍ଭବ ନୁହେଁ, ଧର୍ମାନୁମୋଦିତ ସାମାଜିକ ବ୍ୟବସ୍ଥା ଭିତରେ ଭାରତୀୟ ଆଇନର ସ୍ୱରୂପ ବିକାଶ ଲାଭ କରିଛି, ଉପେନ୍ଦ୍ରଭଞ୍ଜଙ୍କ ବୈଦହୀଶ ବିଳାସରେ ଏଭଳି କେତେକ ଚିତ୍ର ମଧରେ ଅତ୍ୟାଧୁନିକ ଆଇନର ନିଖୁଣ ଚିନ୍ତାଧାରା ପ୍ରତିଫଳିତ ହୋଇଥିବା ପ୍ରଣିଧାନଯୋଗ୍ୟ, ଅଧାପକ ଗୌରୀ କୁମାର ବ୍ରହ୍ମା ଭଞ୍ଜ ସାହିତ୍ୟର ବିଚିତ୍ର ବ୍ୟାଖ୍ୟା କରି 'ଚନ୍ଦ୍ରଭାନୁ' ଶବ୍ଦରୁ 'ଜବାହାରଲାଲ ଭାରତର ଭାବୀ ପ୍ରଧାନ ମନ୍ତ୍ରୀ କଥା ଭଞ୍ଜଙ୍କୁ ଜଣାଥିଲା' - ଅର୍ଥ ବାହାର କରିବାରୁ ନିଆଁଖୁଣ୍ଟା ସମ୍ପାଦକ ପଣ୍ଡିତ ଗୋଦାବରୀଶ ମହାପାତ୍ର ଅକ୍ଷେପ କରିଥିଲେ- ''ଭଞ୍ଜ ସାହିତ୍ୟ ଖଞ୍ଜ ସାହିତ୍ୟ - ଖଞ୍ଜି ପାରିଲେ ସବୁ ସମ୍ଭବ, '' ଏଠାରେ ସେଭଳି ''ଖଞ୍ଜିପାରି'' ଭଞ୍ଜଙ୍କ ଆଇନ ଜ୍ଞାନକୁ ବ୍ୟାଖ୍ୟାକରାନଯାଇ ପ୍ରମାଣ ଉପସ୍ଥାପନ କରାଯାଇଛି ।

ଏଠାରେ ସୂଚନା ଯୋଗ୍ୟଯେ ଆଧୁନିକ ଆଇନର ତଥାକଥିତ ପ୍ରଗତିଶୀଳ ଦିଗ ପ୍ରତି ଭଂଜେ ଆଦୌ ସଚେତନ ନଥିଲେ । ତା' ହୋଇଥିଲେ ପ୍ରଜାନୁରଞ୍ଜକ, ପିତୃଭକ୍ତ, ସନାତନ ଧର୍ମର ପୃଷ୍ଟପୋଷକ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ଚରିତ୍ର ଭିନ୍ନ ପ୍ରକାର ହୋଇଥାନ୍ତା । ସେ ଆଧୁନିକ ଆଇନ ସଚେତନ ପୁତ୍ର ଭଳି ଆଚରଣ କରିଥାଆନ୍ତେ । ପିତାଙ୍କୁ ବୃଦ୍ଧ, ବିକୃତ ମସ୍ତିଷ୍କ, ବିମାତା ଅନୁରକ୍ତ ବୋଲି ପ୍ରମାଣ କରି ବଳାତ୍କାରରେ ପୈତୃକ ସଂପତ୍ତି ଦଖଲ କରିନିଅନ୍ତେ । ଅପର ପକ୍ଷେ ଗୁଜବ ରଚନାକାରୀଙ୍କ କଥାରେ ପ୍ରଜାନୁରଞ୍ଜନ ଓ କୁଳମର୍ଯ୍ୟାଦାର ଦ୍ୱାହି ଦେଇ ରାମଚନ୍ଦ୍ରଙ୍କ ନିର୍ବାସନ ଦଣ୍ଡକୁ ସୀତା ବିନାଦ୍ୱିଧାରେ ଗ୍ରହଣ କରିନେଇ ନଥାଆନ୍ତେ । ଅନ୍ଧ ସ୍ତାବକତା ଓ ଅନୁଦାର ଏକ ଦେଶ ଦର୍ଶିତାର ଉର୍ଦ୍ଧ୍ୱରେ ରହି ବୈଦେହୀଶ ବିଳାସର ଅନୁଶୀଳନ କଲେ ଆଇନର ଆଲେଖ୍ୟ ବଡ ଉପଭୋଗ୍ୟ ବୋଧ ହୁଏ ।

୧. **Act of insubordination.** (Role 3 of The Orissa Govt. servent conduct rules. 1959)

ଉପରିସ୍ଥ କର୍ମଚାରୀ ମାନେ ଅଧସ୍ତନ ମାନଙ୍କୁ ସାମାନ୍ୟତମ ଅବମାନନାରେ କୈଫିୟତ ତଲବ କରିଥାଆନ୍ତି । ଏସବୁ ଉଚ୍ଚ ପଦବୀର ଦର୍ପ ଓ ନିମ୍ନ ପଦବୀର ଦୈନ୍ୟର ପରିଚାୟକ । ରାମଚନ୍ଦ୍ର ଶରଟିଏ

ସହିତ ଗୋଟିଏ ପତ୍ର ହନୁମାନ ମାଧ୍ୟମରେ ରାବଣ ନିକଟକୁ ପଠାଇଲେ । ସୀତାଙ୍କୁ ନଫେରାଇଲେ ଏହି ଶରରେହିଁ ରାବଣ ବଦ୍ଧ ହେବ - ଏହାଥିଲା ବକ୍ତବ୍ୟ । ଏହାର ପ୍ରତ୍ୟୁତ୍ତରରେ ରାବଣର ଉଦ୍ଧତ ମନ୍ତବ୍ୟ -

'ବାର୍ତ୍ତା ଯା ଲେଖିଛି ଆଜ୍ଞାପତ୍ର ନୁହେଁ, ଜଣାଣ ସେ ହୋଇଥିବ ,
ବ୍ରହ୍ମାନପ୍ତା ସୁତ, କୁବେର ମୋ ଭ୍ରାତ, ପୁତ୍ର ଜିଣିଛି ବାସବ , ରେ ବାଇ . . . . ।

ଧନ , ଆଭିଜାତ୍ୟ, କ୍ଷମତା ଓ ଶକ୍ତିରେ ରାବଣ ନିଜକୁ ରାମଙ୍କ ଠାରୁ ଉଚ୍ଚାସନରେ ଦେଖିଛି । ଏଣୁ ଅଧିଷ୍ଠାନ ରାବଣ ପାଖକୁ ଅଧସ୍ତନ ରାମ କେବେ ଆଜ୍ଞାପତ୍ର ଲେଖିବା ସମ୍ଭବ ନୁହେଁ, ବରଂ ଜଣାଣ ଲେଖିଥିବେ ବୋଲି କହିଛି । ଉପରିସ୍ଥ ମାନଙ୍କୁ ନିର୍ଦ୍ଦେଶ ନୁହେଁ, ନିବେଦନ କରାଯିବା ଏକ ସ୍ୱୀକୃତ ପରଂପରା ।

## ୨. Previous practice priveleges -

ଏହି ଆଇନ ନ୍ୟାୟାଳୟରେ ବିଶେଷ ଭାବରେ ପ୍ରୟୋଗ କରାଯାଏ । ଆଜିର ଆଇନଜୀବୀ ମାନେ ବିଭିନ୍ନ ଆଇନ ବହି ଘାଣ୍ଟିବା ପରିବର୍ତ୍ତେ ବିଭିନ୍ନ ବିଚାରାଳୟ ଓ ବିଚାରପତିଙ୍କ ବିଚାର ପଦ୍ଧତିକୁ ସଂଗ୍ରହକରି ଯୁକ୍ତି ଉପସ୍ଥାପନ କରିଥାଆନ୍ତି । ପୂର୍ବ ନିଷ୍ପତ୍ତି ପରିପ୍ରେକ୍ଷୀରେ ଚଳିତ ମୋକଦ୍ଦମାର ଫଏସଲା ପାଇଁ ବିଚାରପତିଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥାଏ । ଏହି ଯୁକ୍ତିର ଆଶ୍ରୟ ନେଇ ରାବଣ ଅଶୋକବନରେ ସୀତାଙ୍କୁ ପ୍ରଲୁବଧ କରିଛି -

ବିଭାକର ବଲ୍ଲଭୀ ପଦ୍ମନୀ, ବିଳାସଇ ସେ ମଧୁପ ଘେନି,
ବିଭାକର ବଂଶୀ ପ୍ରିୟା ତୁ ପଦ୍ମିନୀ, ମୁଁ ମଧୁପ ହୁଅ ରସଦାନୀରେ ବରାଙ୍ଗୀ ''

ଠିକ୍ ସେହି ଭଳି ବିଧବା ତାରାକୁ ରାମଚନ୍ଦ୍ରଙ୍କ ଉପଦେଶରେ ପରଂପରାକୁ ହିଁ ଆଇନଗତ ମର୍ଯ୍ୟାଦା ଦିଆଯାଇଛି, ବାଳୀ ହେଉଛି ଇନ୍ଦ୍ରପୁତ୍ର, ଇନ୍ଦ୍ର ବଦଳିଲେ ମଧ ଶଚୀ ନୂତନ ଇନ୍ଦ୍ରଙ୍କ ପତ୍ନୀ ଭାବରେ ରହନ୍ତି । ଏଣୁ ପୁତ୍ରବଧୂ ତାରା ଶାଶୁଙ୍କୁ ଅନୁସରଣ କରିବା ଉଚିତ ।

ବିଧବା ତୁ କିପାଇଁ ହେବୁ ଲୋକେ,
ବସ ସୁଗ୍ରୀବ କୋଳେ ଅଭିଷେକେ ।
ବସୁ ପ୍ରହ୍ଲାଦ ଇନ୍ଦ୍ରପଦ ଲଭି
ବୃଷା ଥାଉ ଶଚୀ ତାର ବଲ୍ଲଭୀ ।
ବଧୂ ଅଧିକ କି ଶାଶୁ ଠାବରୁ
ବୋଧି ତାକୁ ବାଣୀ ଏହି ନ୍ୟାସରୁ ।

ଏଠାରେ ଯୁକ୍ତିକୁ ବଳବତ୍ତର କରିବା ନିମନ୍ତେ ଇନ୍ଦ୍ରଙ୍କ ଜୀବିତାବସ୍ଥାରେ ସୁଦ୍ଧା ଶଚୀଙ୍କର ପ୍ରହ୍ଲାଦକୁ ପୁନଃ ବରଣର ଉଲ୍ଲେଖ କରାଯାଇଛି, ରାଜତନ୍ତ୍ର ଶାସନରେ ପ୍ରଥମ ପୁତ୍ର ଧର୍ମଜ ସନ୍ତାନ ହିସାବରେ ସିଂହାସନର ବସିବା କଥା । କିନ୍ତୁ ଭରତ ପାଇଁ ସିଂହାସନ ଦାବୀ ସପକ୍ଷରେ ଯୁକ୍ତି ଉପସ୍ଥାପନ କରି ମନ୍ଥରା ପରଂପରାକୁ ହିଁ ଅକାଟ୍ୟ ଆଇନରୂପେ ଉଲ୍ଲେଖ କରିଛି -

''ବଳିଷ୍ଟ ଦାନବେ ପୂର୍ବ ଦେବ କହି ଅନୁଜ ଦେବତା ଇନ୍ଦ୍ର
ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି କେହି ହୋଇନାହିଁ ସାନ୍ଦ୍ର ।

୩. **ଗ୍ରାମପଞ୍ଚାୟତ ଆଇନ** - ଦଶରଥଙ୍କ ମନ୍ତ୍ରୀ ପରିଷଦରେ ବିଭିନ୍ନ ମନୋବୃତ୍ତିର ପାଞ୍ଚଜଣ ସଦସ୍ୟଥିବା ଭଞ୍ଜ ବର୍ଣ୍ଣନା କରିଛନ୍ତି, ସେମାନଙ୍କ ମଧ୍ୟରେ କେହି ଜ୍ୟୋତିଷୀ, କେହି ଐତିହାସିକ ତ କେହି ଚାର୍ବାକ ପନ୍ଥୀନାସ୍ତିକ, ''ବସି ବଶିଷ୍ଠ ଜାବାଳି ବାମଦେବ କାଶ୍ୟପ ସୁମନ୍ତ ଘେନି, '' ଏହି ପଦରୁ ଜଣାଯାଏଯେ ମନ୍ତ୍ରୀ ପରିଷଦ ରାଜତନ୍ତ୍ରର କ୍ରୀଡନକ ନହୋଇ ଉପଦେଷ୍ଟାର ଯଥାର୍ଥ ଭୂମିକା ନିର୍ବାହ କରୁଥିଲେ। ଗଣତାନ୍ତ୍ରିକ ପଞ୍ଚାୟତ ବ୍ୟବସ୍ଥାର ସୂଚନା ଭଞ୍ଜଙ୍କର ମନୋଜ୍ଞ କଳ୍ପନାର ପରିଚାୟକ। ଅତଏବ କୈକେୟୀଙ୍କ ବରଦାନ ହେତୁ ରାମଙ୍କର ବନବାସ ଦ୍ୱାରା ମନ୍ତ୍ରୀ ପରିଷଦର ନିର୍ଦ୍ଧାରଣ ଅକାମୀ ହୋଇ ପଡିବାରୁ ପରିଷଦ-ମୁଖ୍ୟ ବିଶିଷ୍ଠ ନିର୍ଭୀକ ଭାବରେ ଦଶରଥଙ୍କୁ ପଚାରିଛନ୍ତି - '' ବିଭାବରୀ ପ୍ରାନ୍ତରେ, ବିଭୁ ହୁଅନ୍ତେ ପରା ରାଜ୍ୟରେ ? '' ଦଶରଥଙ୍କର ଅଗଣତାଂତ୍ରିକ ଓ ଆଇନ ଅସଙ୍ଗତ ସ୍ୱୈରାଚାରକୁ ଗଣତଂତ୍ର - ପଞ୍ଚାୟତ ସମର୍ଥନ କରିନାହିଁ।

୪. **Suspicion** :- ଦଣ୍ଡବିଧି ଆଇନରେ ତଦନ୍ତ ପ୍ରଣାଳୀ ବ୍ୟକ୍ତିର ସନ୍ଦେହଜନକ ଗତିବିଧି, ମାନବିକ ବିଚାରଧାରା, ଉଦ୍ଦେଶ୍ୟ, ସୁଯୋଗ, ସନ୍ଦିଗ୍ଧର ଚରିତ୍ର ଓ ପରିଣାମ ଉପରେ ବିଶେଷ ଗୁରୁତ୍ୱ ଆରୋପକରେ। ବିରାଧ ରାକ୍ଷସର ସନ୍ଦେହ ଓ ସିଦ୍ଧାନ୍ତ ଏହି ବିଧାନର ଅନୁକୂଳ।

ବ୍ରହ୍ମାଣ୍ଡେ ଏକ ସୁନ୍ଦରୀ ରତି, ବିନା ଏତେ ଶୋଭା କେଉଁ ଯୁବତୀ ।
ବଳେ ଘେନିଥିଲା ଶମ୍ବର ପୁରୀ, ବିବାଦେ ଜିଣିବା କରିଛି ଚୋରୀ।
ବିବେକ ଏହି ଚୋରି ପ୍ରମାଣ, ବନେ ବୁଲେ ଘେନି ଜଟା ଧାରଣ।

ରାମଚନ୍ଦ୍ର ଶମ୍ବରାସୁରକୁ ପରାଭୂତ କରି ରତିପ୍ରତିମାକୁ ହସ୍ତଗତ କରିବା ସନ୍ଦେହ ଜନକ, ଏଯଦି ଚୋରୀ କରିନଥାନ୍ତେ ଜଟାଜୁଟ ବିମଣ୍ଡିତ ଛଦ୍ମ ବେଶରେ ନିର୍ଜନ ବନରେ ବୁଲୁଥାନ୍ତେ କାହିଁକି ?

୫. **Kidnapping** (Section 363, Ipc)

ସୀତାହରଣପରେ ରାମଚନ୍ଦ୍ରଙ୍କ ମନରେ ଆଇନଗତ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ, ପତ୍ନୀ ହିସାବରେ ସୀତାଙ୍କର ଉପଯୁକ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଦାବୀକରିବାର ଅଧିକାର ଅଛି। ବଣରେ କିନ୍ତୁ ଏହାର ଅଭାବଥିଲା। ଏଣୁ ସୀତାକାଳେ ସ୍ୱଇଚ୍ଛାରେ ସ୍ୱାମୀଙ୍କୁ ପରିତ୍ୟାଗ କରି ସୁଖମୟ ଜୀବନ ଯାପନ ଉଦ୍ଦେଶ୍ୟରେ ରାବଣର ବିମାନ ଆରୋହଣ କରିଥାଇ ପାରନ୍ତି। ଏପରିହୋଇଥିଲେ ନାରୀ ଅପହରଣ ଆଇନ ପର୍ଯ୍ୟାୟଭୁକ୍ତ ହୋଇନପାରେ, ମାତ୍ର କୁକ୍କୁଟର ସୁଚିନ୍ତିତ ମନ୍ତବ୍ୟ ଓ ଯୁକ୍ତିରେ ରାବଣର ଅପରାଧ ଆଇନ ପରିସର ଭୁକ୍ତ ହୋଇପାରିଛି -

ବିଚାର କରନା ବନ ପର୍ବତେ, ବୁଲି ସୁକୁମାରୀ ଶ୍ରମ ପ୍ରବର୍ତ୍ତେ
ବିମାନେ ତା ସଂଗେ ସୁଖାର୍ଥେ ଯାଇ, ବୁଝିବାରେ ମୋ ଅନୁରାଗ ନାହିଁ।
ବାରିଧର ଆଖି, ବକ୍ଷ ଦେଶକୁ ପଙ୍କିଳ କରିଛି।

ସାଂପ୍ରତିକ ପରିବର୍ତ୍ତିତ ସାମାଜିକ ଅବସ୍ଥା ପରିପ୍ରେକ୍ଷୀରେ ପ୍ରମର ପରକୀୟା ପ୍ରୀତି ସ୍ୱାଭାବିକତାରେ ପରିଣତ ହେଲାଣି, ବହୁ ପୂର୍ବରୁ ଭଞ୍ଜେ ଏହାର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି, ନିଆଁ ଖୁଣ୍ଟା ସମ୍ପାଦକ କହିଲେ -

ଗ୍ରାମସେବିକା ବା Health Visitor
ବସିଥାଆନ୍ତି ଯାହାଙ୍କ ପାଖେ,
ଜିପ୍ ଚଢ଼ି ଯେ ଗାଆଁକୁ ଆସନ୍ତି
B. D . O ତାହାଙ୍କୁ କହନ୍ତି ଲୋକେ।

୬. **Imprisonment or exile :-**

ଭରତପାଇଁ ରାଜସିଂହାସନ ଯୋଗାଡ କରିବା କୈକେୟୀଙ୍କ ସ୍ୱାର୍ଥସିଦ୍ଧିର ସହାୟକ, କିନ୍ତୁ ରାମଙ୍କୁ ବନ- ବିତାଡନ ଦଣ୍ଡରେ ଦଣ୍ଡିତ କରିବା ଉଦ୍ଦେଶ୍ୟ ପ୍ରାୟଶଃ ସବୁ ରାମାୟଣରେ ଦୁଷ୍ପ୍ରାପ୍ୟ । ବୈଦେହୀଶ ବିଳାସରେ ପ୍ରତିଫଳିତ ବିବୃତି ଯେତିକି ଆଇନ ସଂଗତ ସେତିକି ସାମାଜିକ ଦାୟିତ୍ୱ ବୋଧର ପରିଚାୟକ, ରାମଙ୍କ ଉପସ୍ଥିତିରେ ଭରତଙ୍କ ରାଜପଣ ଅସ୍ତିତ୍ୱହୀନ ହୋଇପଡିବ । ପୁଣି ଶାନ୍ତି ଶୃଙ୍ଖଳା ବ୍ୟାହତ ହେବାର ଆଶଙ୍କା ବି ରହିଛି, ଏଣୁ ରାମଙ୍କଠାରେ ଅନାର୍ଯ୍ୟ ସୁଲଭ ଅସାମାଜିକତାର ଆରୋପ କରାଯାଇ ନିର୍ବାସିତ କରିବା ସପକ୍ଷରେ ଯୁକ୍ତି କରାଯାଇଛି -

'ବିଶ୍ୱମ୍ଭରା ପତି ହୋଇ ସୀତା ବଲ୍ଲଭ ଉତ୍ସାହୀ
ପଶୁବୁଦ୍ଧି ଦେଖି ପେଶି ବନ ।''

୭. **Sedition** (Section 104-A, IPC)

ରାମଚନ୍ଦ୍ର ସର୍ବଭୌମ ସମ୍ରାଟ ରାବଣର ଔପନିବେଶିକ ରାଜ୍ୟ ଦଣ୍ଡକାରଣ୍ୟରେ ଅନଧିକାର ଅବସ୍ଥାନ କରିଛନ୍ତି । ପୁଣି ସୂର୍ପଣଖା ଭଳି ଜଣେ ବିଧବା, ଅସହାୟା ନାରୀକୁ ବିକଳାଙ୍ଗ କରି ଆଇନକୁ ନିଜ ହାତକୁ ନେଇଛନ୍ତି । ବାବୁ ନାକଣ୍ଠିରୀ ଦାନ ଯୋଗ୍ୟ ଯୋଷାକୁ :- ଲକ୍ଷ୍ମଣଙ୍କ ପ୍ରତି ରାମଙ୍କର ଏ ଛଳପୂର୍ଣ୍ଣ ନିର୍ଦ୍ଦେଶ ସଂପୂର୍ଣ୍ଣ ବେଆଇନ ଅସଂଗତ ଓ ପାରଙ୍ଗମତାର ପରିସୀମା ଭୁକ୍ତ ମଧ ନୁହେଁ । ଏଣୁ ଅମାର୍ଜନୀୟ ରାଜଦ୍ରୋହୀ ଅପରାଧ । ଅପରପକ୍ଷେ ତ୍ରିଭୁବନ ବିଜୟୀ ରାବଣ ସହିତ ସଂଘର୍ଷ ପାଇଁ ଏହା ପ୍ରତ୍ୟକ୍ଷ ଆହ୍ୱାନ ମାତ୍ର । ପରିଣାମରେ ''ହେମ ସାରଙ୍ଗ ରଙ୍ଗରେ ଲଙ୍କା ଦଣ୍ଡଧାରୀ । ସୀତା ଶୀତାଂଶୁ ମୁଖୀକୁ ଉଟଜରୁ ହରି'' ରାମଙ୍କ ପ୍ରତି ଯଥୋଚିତ ଶାସ୍ତି ବିଧାନ କରିଛି ।

୮. **Disciplinary procedure & consumer's protection Act** (1986) :-

ସମାଜରେ ଚିକିତ୍ସକମାନେ ପ୍ରାଣରକ୍ଷାକାରୀ ଭାବରେ ସମ୍ମାନିତ । ଚିକିତ୍ସାରେ ଅବହେଳା ଜନିତ ବ୍ୟାଧିବୃଦ୍ଧି ଅଥବା ଅକାଳ ମୃତ୍ୟୁ ପାଇଁ ଚିକିତ୍ସକ ମାନେ ଦାୟୀ ବା ଦଣ୍ଡିତ ହେଉନଥିଲେ । ଏବେ ସେମାନଙ୍କୁ ଖାଉଟି ସୁରକ୍ଷା ଆଇନ ପରିସରଭୁକ୍ତ କରାଯାଇ କୌଣସି ସେବାଜନିତ ଅଭାବ ନିମନ୍ତେ ଶାସ୍ତିବିଧାନର ବ୍ୟବସ୍ଥା ହୋଇଛି । ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସରେ ଏହାର ସୂଚନା ଉଲ୍ଲେଖ କରିଛନ୍ତି, ସୂର୍ପଣଖାର ନାସା କର୍ଣ୍ଣ ଛେଦନ ପରେ ଲଙ୍କାକୁ ଯାଇ ରାବଣ ସମ୍ମୁଖରେ ଫେରାଦ ଦେଲାବେଳକୁ ସ୍ରବୁଥିବା ରକ୍ତଧାରା ଜମାଟ ବାନ୍ଧି ବ୍ୟାଧିର ସଂନ୍ଦେହ ସୃଷ୍ଟି କରିଛି, କାରଣ ବୃକ୍ଷା-ବୃକ୍ଷାସନ-ବାସୁକୀ-ଏସମସ୍ତେ ରାବଣର ଶକ୍ତିକୁ ଚିହ୍ନିଥିବା ହେତୁ ରାବଣ-ଭଗ୍ନୀର ନାସାକର୍ଣ୍ଣ ଛେଦନ ଭଳି ଦୁଃସାହସ କରିପାରିବେନି । ଏଣୁ ବୈଦ୍ୟ ଅଶ୍ୱିନୀ କୁମାରଙ୍କ ଅବହେଳାରୁ ହିଁ କୌଣସି ବ୍ୟାଧି ବୃଦ୍ଧି ଘଟି ସୂର୍ପଣଖାର ଏ ଅବସ୍ଥା ହୋଇଛି । ଏଇ ନିଷ୍କର୍ଷରେ ଉପନୀତ ହୋଇ ରାବଣ ଆସ୍ଫାଳନ କରିଛି ବୈଦ୍ୟଙ୍କୁ ଶାସ୍ତି ବିଧାନ କରିବା ପାଇଁ ।

''ବାଜୀ ଦଇବତ ଶିରୀ ଆଜି ହତ କରିବି ଅବଧି
ବଢ଼ି କି ରୋଗ ଏ ଦଶା ହେଲା ଭୋଗ ନ ଦେଲେ ଔଷଧି । ''

୯. **Abolition of Untouchability Act** :-

ଅସ୍ପୃଶ୍ୟତା ନିବାରଣ ଆଧୁନିକ ଭାରତର ଏକ ପ୍ରମୁଖ ଆଇନଗତ ପ୍ରସଙ୍ଗ । ଋଷ୍ୟଶୃଙ୍ଗ, ଭରତା ଉପାଖ୍ୟାନରେ ଉପେନ୍ଦ୍ରଭଞ୍ଜ ଏହାର ଅବତାରଣା କରିଛନ୍ତି । ବେଶ୍ୟାଙ୍କ ଠାରୁ ନିର୍ବିକାରରେ ଫଳମୂଳ

ଗ୍ରହଣ କଲେ ସୁଦ୍ଧା ଘୃତପକ୍ୱ ଛେନା ଗ୍ରହଣରେ କୁଣ୍ଠା ପ୍ରକାଶ କରି ଋଷ୍ୟଶୃଙ୍ଗ ଜାତି ପଚାରିଛନ୍ତି । କିନ୍ତୁ ଅସ୍ପୃଶ୍ୟତାର ଉଚ୍ଛେଦ ଘଟାଇ ଭଂଜେ ଋଷ୍ୟଶୃଙ୍ଗଙ୍କୁ ଭୋଜନ କରାଇଛନ୍ତି -

ବାଢ଼ିଲେ ସେ ଘୃତ ପକ୍ୱ ଆମିକ୍ଷା ଅଗ୍ରତେ
ବର୍ଣ୍ଣ ପୁଚ୍ଛେ କି ଭୋଜନ କର ସେ ବୋଲନ୍ତେ ।

## ୧୦. **Adultery** (Section 497 IPC) -

ରାମାୟଣରେ ସୂର୍ପଣଖା ନିର୍ଲ୍ଲଜ ରତିଭିକ୍ଷା ଏବଂ ଜରତାର ନଗ୍ନ ଯୌନ ବିଳାସ ଘୃଣ୍ୟ ବ୍ୟଭିଚାରର ବିରଳ ନମୁନା; ଶୃଙ୍ଗାର ରସ ଅନଭିଜ୍ଞ ଋଷ୍ୟଶୃଙ୍ଗଙ୍କୁ ବଳତ୍କାରରେ ବିପରୀତ ରତି କରିବାରେ ପଶ୍ଚାତ୍ ପଦ ହୋଇନାହିଁ ବୃଦ୍ଧାଜରତା -

"ବିଜ୍ଞାସେ ପ୍ରଥମ ରସେ ଚନ୍ଦ୍ର ଚାଳି ଦେଲା ।
ବିଜ୍ଞାନେ ଋଷି କୁମାର ଉରାନେ ଶୋଇଲା ।
ବିଧୁନନ ବିରଚିଲା ପୁରୁଷାୟିତ ରେ
ବନପତି ଉପରେ କି ହରିଣୀ କ୍ରୀଡ଼ା କରେ ।"

ସୂର୍ପଣଖାର ବେଶସଜ୍ଜା ଏବଂ ନିସଙ୍କୋଚ ପ୍ରେମଭିକ୍ଷା ବନ୍ଧନ ହୀନ ବେଆଇନ ବ୍ୟଭିଚାର ପର୍ଯ୍ୟାୟଭୁକ୍ତ ।

"ବଶୀଭୂତ ହୋଇ ତବ ଶୋଭାକୁ ଚାହିଁ
ବସିବାକୁ ତୁମ୍ଭକୋଳେ ଆସିଛି ମୁହିଁ ।
ବନ୍ଧନକରି ଭୁଜରେ ଜାଣଇ ସ୍ମରଣ
ବକ୍ଷରେ ଯେ ଚକ୍ର ବନ୍ଧ ପୁରୁଷାୟିତ ,"

ପ୍ରକୃତି ବର୍ଣ୍ଣନାରେ ମଧ୍ୟ କେତେକ ସ୍ଥଳରେ ଉନ୍ମୁକ୍ତ ବ୍ୟଭିଚାରର ସୂଚନା ରହିଛି ।

## ୧୧. **Forgery for purpose of cheating**, (Sec - 468, IPC)

ଅଧିକାଂଶ ରାମାୟଣରେ ସୀତାଙ୍କୁ ବିଭ୍ରାନ୍ତ କରିବା ନିମିତ୍ତ ରାବଣ କର୍ତ୍ତୃକ କେବଳ ରାମଙ୍କର ମାୟାମୁଣ୍ଡ ପ୍ରଦର୍ଶନ କରାଯାଇଛି । କିନ୍ତୁ ଏହା ଯଥାର୍ଥ ଜାଲିୟାତି ନୁହେଁ, ଇନ୍ଦ୍ରଜିତ ହନ୍ତା ଲକ୍ଷ୍ମଣହେଉଛନ୍ତି ଶେଷଦେବଙ୍କ ଅବତାର, ଅମିତ ବିକ୍ରମଶାଳୀ ଓ ଅଗ୍ରଜ ଅନୁଗତ । ଲକ୍ଷ୍ମଣ ଜୀବିତ ଥିବା ପର୍ଯ୍ୟନ୍ତ କେହି ରାମଙ୍କୁ ବଧ କରିପାରିବେନାହିଁ । ପୁଣି ମାରୀଚର 'ରଖହେ ଲକ୍ଷ୍ମଣ' ଧ୍ୱନିରେ ସୀତା ମଧ୍ୟ ପ୍ରତାରିତା । ଏଣୁ ରାମଙ୍କ ମସ୍ତକ ଛେଦନ ଘେନି ରାବଣର ଦାବୀ ଅଯୌକ୍ତିକ । ଉପେନ୍ଦ୍ରଭଂଜ ଏଠାରେ ଦୁଇଟି ମାୟାମୁଣ୍ଡ ଉପସ୍ଥାପିତ କରି ଜାଲିୟାତିକୁ ସନ୍ଦେହ ମୁକ୍ତ କରାଇ ସଂପୂର୍ଣ୍ଣ ବିଶ୍ୱାସ ଯୋଗ୍ୟତା ପ୍ରଦାନ କରିଛନ୍ତି ।

"ବୁହାଇ ମାୟାଶିର ବେନି, ଅସୁର ଛେଦନ ପରା ଏକ୍ଷଣି,
ବହଇ ରୁଧିରଧାର, ବସୁଧା ସୁତାକୁ ଭଣି ଯେ
ବଧିଲି ଦେବର ବର, ବରାରୋହା ମତେ ବର ।"

ଇନ୍ଦ୍ରଜିତର ମାୟାସୀତା ବଧ ତ୍ରୁଟିଶୂନ୍ୟ ନୁହେଁ । ହଠାତ୍ କପିସୈନ୍ୟ ଓ ଶ୍ରୀରାମ ବିଭ୍ରାନ୍ତ ହେଲେ ମଧ୍ୟ ମାୟାସୀତାର ବକ୍ଷୋଜରେ ବାୟସ ଚଞ୍ଚୁଘାତ ଚିହ୍ନ ଦୁଷ୍ପ୍ରାପ୍ୟ ।

୧୨. **Criminal Breach of Trust** (Sec - 406 IPC)

ପ୍ରେମ ଓ ରାଜନୀତିରେ ପ୍ରତିଶ୍ରୁତି ଦିଆଯାଏ । ମାତ୍ର କ୍ୱଚିତ ପାଳନ କରାଯାଏ । ଭାରତୀୟ ସଂବିଧାନରେ ପ୍ରତିଶ୍ରୁତିଭଙ୍ଗ ଏକ ଦଣ୍ଡନୀୟ ଅପରାଧବୋଲି ବୋଧହୁଏ ଉଲ୍ଲେଖ କରାଯାଇନାହିଁ । ରାମ ଓ ସୀତାଙ୍କର ବାସରରାତିର ଶପଥପାଠ ଦାମ୍ପତ୍ୟ ଜୀବନର ଏକ ନିର୍ଭର ଯୋଗ୍ୟ ପ୍ରତିଶ୍ରୁତି, ତାହା ଶେଷ ପର୍ଯ୍ୟନ୍ତ ପାଳିତ ହୋଇଛି । କିନ୍ତୁ କୈକେୟୀଙ୍କୁ ଦଶରଥ ଯାଚିଥିବା ଦୁଇଟିବର ଅନିର୍ଦ୍ଦିଷ୍ଟ କାଳ ସ୍ଥଗିତ ରହିଥିବା ବହୁରାମାୟଣରେ ପରିଦୃଷ୍ଟ । ବୈଦେହୀଶ ବିଳାସରେ ଦଶରଥଙ୍କ ସ୍ୱୀକାରୋକ୍ତି'' ସୁତ ହୋଇ ତୋଷିଲୁ ତୋ ସୁତ ହେବ ରାଜନ'' ରାମଙ୍କୁ ଅଭିଷେକ କରାଯିବା ଘୋଷଣାରେ ''ବାଳ ବାଲୁକା ଖେଳ'' ରେ ପରିଣତ ହୋଇ ଯାଇଛି । ଏହା ପ୍ରତିଶ୍ରୁତି ଭଙ୍ଗର ଉପଯୁକ୍ତ ପ୍ରମାଣ ।

୧୩. **ନାବାଳିକା ଧର୍ଷଣ** (Sec. 376 (B) IPC)

କେବଳ ଶାରଦା ପ୍ରସାଦ ଆଇନ ନୁହେଁ, ଭାରତୀୟ ଦଣ୍ଡବିଧିରେ ବାଳିକା ବିବାହ ଏକ ଯୌନଗତ ନିର୍ଯ୍ୟାତନା । ବାଲ୍ମିକୀ ରାମାୟଣରେ ସୀତାଙ୍କ ବିବାହ ବୟସ ଛଅ ବର୍ଷ ବୋଲି ପ୍ରମାଣିତ । ଉପେନ୍ଦ୍ରଭଞ୍ଜ ଏହି ଆଇନଗତ ଅସଙ୍ଗତିର ପରିହାର ପାଇଁ ସୀତାଙ୍କୁ ପ୍ରାପ୍ତ ବୟସ୍କା ଭାବେ ବର୍ଣ୍ଣନା କରିଛନ୍ତି ।

୧୪. **Attempt to commit Suicide.** (Sec. 309 IPC)

ସାମାଜିକ ଓ ଶାସ୍ତ୍ରୀୟ ପରଂପରାରେ ଆତ୍ମହତ୍ୟା ଏକ ଅପରାଧ । ଆତ୍ମହତ୍ୟାକାରୀର ଆତ୍ମା ନଷ୍ଟ ହେତୁ ପାରଲୌକିକ କ୍ରିୟା ନିର୍ବାହ କରାଯାଏ ନାହିଁ । ଭାରତୀୟ ଦଣ୍ଡବିଧି ଧାରାରେ ଆତ୍ମହତ୍ୟା ପାଇଁ ଉଦ୍ୟମ ଏକ ଗର୍ହିତ ଓ ଧର୍ତ୍ତବ୍ୟ ଅପରାଧ । ବୈଦେହୀଶ ବିଳାସରେ ମାୟାସୀତା ବଧରେ ରାମଙ୍କ ଆତ୍ମହତ୍ୟା ଉଦ୍ୟମ ଲକ୍ଷଣୀୟ ।

୧୫. **Theft** (Section 370 , IPC)

ହନୁମାନ ସୀତାଙ୍କୁ କାନ୍ଧରେ ବସାଇ, ସମସ୍ତ ପ୍ରକାର ନିରାପତ୍ତାର ପ୍ରତିଶ୍ରୁତି ଦେଇ ରାମଙ୍କ ପାଖରେ ପହଞ୍ଚାଇଦେବା ପ୍ରସ୍ତାବ ଦେଇଛି । ରାମାୟଣରେ ଏ ପ୍ରସ୍ତାବକୁ ସୀତାଙ୍କର ପ୍ରତ୍ୟାଖ୍ୟାନ ବିଷୟ ଉଲ୍ଲେଖ ଥିଲେ ମଧ ବୈଦେହୀଶ ବିଳାସରେ ଆଇନତଃ ଅସିଦ୍ଧ ହେତୁ ସୀତା ଏ ପ୍ରସ୍ତାବକୁ ଅସମ୍ମତି ପ୍ରଦାନ କରିଛନ୍ତି । ''ବାଧକ ପ୍ରଭୁ ବିରଧୁକୁ ହେବ ।

ବେନିବିଷୟ ଚଉର୍ଯ୍ୟେକୁ ଯିବ ।

ବିଶ୍ୱବିଶ୍ରୁତ ଆଇନ୍‌ପ୍ରଣେତା ହାମୁରାବିଙ୍କର 'ଯେଷାକୁ ତେସା' (Tit for tat)ର ଏହା ଏକ ବିରୋଧାଭାସ ।

୧୬. **Bigamous marriage** (Sec. 494 IPC)

(Marrying again during the life time of a husband or wife.)

ଉପେନ୍ଦ୍ରଭଞ୍ଜ ଅନପତ୍ୟ, ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ଧ୍ୱଜାଧାରୀ, ସ୍ୱକୀୟା ପ୍ରେମର ପୃଷ୍ଠଭୂମିରେ କେତେକ ରାଧାକୃଷ୍ଣ ପ୍ରୀତି ସମ୍ବଳିତ କବିତା ବ୍ୟତିକ୍ରମ ହେଲେ ମଧ ରାଜନ୍ୟ ବହୁବଲ୍ଲଭା ' ନୀତିକୁ ସେ ଆନ୍ତରିକ ସମର୍ଥନ କରିନାହାନ୍ତି । ପିତାମହ ଧନଞ୍ଜୟଭଞ୍ଜଙ୍କ ବହୁପତ୍ନୀକତା ଓ ଅନ୍ୟାନ୍ୟ କୁଦୃଷ୍ଟାନ୍ତର ସେଥିଲେ ପ୍ରତ୍ୟକ୍ଷ ଦ୍ରଷ୍ଟା । ଅଧୁନିକ କାଳରେ Plural marriage ପାଇଁ ଆଇନଗତ ପ୍ରତିବନ୍ଧକ ରହିଛି ।

ଯାମଦଗ୍ନିଙ୍କ ଧନୁରେ ଗୁଣ ସଂଧାନବେଳେ ସୀତାଙ୍କ ମନରେ ସପତ୍ନୀ-ଶଙ୍କାର ଉଦ୍ରେକ ହୋଇଛି । '' ବିମନଯେ ଜାନକୀ ସପତ୍ନୀ ଭୟ ଗୁଣି - ର ଭୟ ରାମଙ୍କ 'ବଳ କଷେ ଏ ବିରହ ନୋହେ ସହି '' ରେ ତିରୋହିତ ହୋଇଛି ।

୧୩. Abetment to any Offence (Sec. 109 of IPC)

ମାରୀଚକୁ କନକ କୁରଙ୍ଗ ବେଶ ଧାରଣ ପାଇଁ ରାବଣର ପ୍ରବର୍ତ୍ତନା ଓ ଅବଜ୍ଞାସ୍ଥଳେ କରବାଳ କୋଷମୁକ୍ତ କରି ଭୟଭୀତ କରିବା ଭାରତୀୟ ଦଣ୍ଡବିଧି ଧାରା ୧୦୯ ଓ ୫୦୬ (Criminal intimidation) ହୋଇପାରେ । ଏହା ରାମାୟଣର ଅନୁରୂପ, କିନ୍ତୁ ରାମାୟଣର ମୃତ୍ୟୁଭୀତ ମାରୀଚ ବୈଦେହୀଶ ବିଳାସରେ ମୁକ୍ତି ମାର୍ଗୀ -

''ବିଚାରିଲା ତାଡକେୟ ଏ ମାଇଲେ ହୋଇବି ଅମୋକ୍ଷ,
ବୈକୁଣ୍ଠ ଗମନ୍ତି ରାମକରୁ ହତି ଦେଖିଛି ପ୍ରତ୍ୟକ୍ଷ,''

ସ୍ୱାର୍ଥପରାୟଣା ସୂର୍ପଣଖାର ରାବଣକୁ ସୀତା ହରଣ ପାଇଁ ଉତ୍ତେଜିତ କରିବାରେ ତାର୍କିକ କବି ଉପେନ୍ଦ୍ରଙ୍କ ବିଶ୍ଳେଷଣଭଙ୍ଗୀ ଅତୁଳନୀୟ । ସୀତା ହେଉଛନ୍ତି ଅସାମାନ୍ୟା ସୁନ୍ଦରୀ । '' ବ୍ରହ୍ମାଣ୍ଡ ଲକ୍ଷରେ ଖୋଜିଲେ ଲକ୍ଷ୍ୟରେ ତାପରି ନାହିଁ ସୁନ୍ଦରୀ'' । ରାବଣ ସଭାରେ ନୃତ୍ୟ କରୁଥିବା ରମ୍ଭା, ଉର୍ବଶୀ ପ୍ରଭୃତି ସୀତାଙ୍କର ଦାସୀପଣକୁ ଭାଜନ । ତେବେ, ଅପସରୀ ଗର୍ଭସମ୍ଭୂତା ମନ୍ଦୋଦରୀ ମହାରାଣୀର ସୌନ୍ଦର୍ଯ୍ୟାଧିକ୍ୟ ହେତୁ ରାବଣ ସୀତା ହରଣରୁ ନିବୃତ୍ତ ରହିପାରେ । ଏଣୁ ସୂର୍ପଣଖା କହିଛି -

''ବିଧ୍ୱଂସୀ ହେଲା ସେ ସଂଶୟ ରଭସେ ତାହାର ଦର୍ଶନେ
ବିଧାତା ରଖିଛି ଛନ୍ଦ ନାମେ ମନ୍ଦ ତାହାର ଗୋପନେ , ''

ସୂର୍ପଣଖା ସ୍ୱୟଂ ଅଭିଶପ୍ତ ଅପସରୀ, ରୂପର ରୋଷଣି ଜାଳି, ନିର୍ଲ୍ଲଜ ବକ୍ର ଚାହାଣୀ ହାଣି ରାମ ଲକ୍ଷ୍ମଣଙ୍କୁ ପ୍ରେମ ନିବେଦନ କରିଛି । କିନ୍ତୁ ସେକଥାକୁ ଲୁଚାଇ, ବିଭ୍ରାନ୍ତି କର ବିବୃତି ଦେଇ ରାବଣକୁ ସୀତାଚୋରୀ ଭଳି କୁକାର୍ଯ୍ୟ ପାଇଁ ପ୍ରବର୍ତ୍ତିତ କରିଛି ।

ବର ଦେବରକୁ ମାରି ମୁଁ ତାହାକୁ ଆଣନ୍ତି ତୋ ପାଇଁ
ବିକୃତ ରୂପେ ଯାଉ ତାଙ୍କ ସମୀପେ ଏ ଦଣ୍ଡ ସେ ଦେଇ ।

କାମୁକ, ଅପରିଣାମଦର୍ଶୀ ରାବଣ ପାଇଁ Abetment to offence ନିମନ୍ତେ ସୂର୍ପଣଖାର ଏ ଅପକୌଶଳ ଫଳବତୀ ହୋଇଛି ।

ଏମିତି ଖୋଜି ବସିଲେ ବୈଦେହୀଶବିଳାସରୁ ଭାରତୀୟ ଆଇନର ବହୁ ଦିଗ ଉଦ୍‌ଘାଟିତ ହୋଇପାରିବ । ଏଭଳି ଗଭୀର ଗବେଷଣା ପାଇଁ ଯେଉଁ ଆଇନଗତ ପାଣ୍ଡିତ୍ୟ ଓ ରମ୍ୟବୋଧ ଆବଶ୍ୟକ ତାହା ମୋଠାରେ ନାହିଁ । ବିଦଗ୍ଧ ଆଇନଜ୍ଞ ମାନଙ୍କର ସେଥିରେ ଅଧିକାର, ପ୍ରକାଶଲୁବ୍‌ଧ ପତଙ୍ଗର ଏ ଅନଧିକାର ଅନୁପ୍ରବେଶ ଜନିତ ଅପରାଧ ଅମାର୍ଜନୀୟ ନୁହେଁ ।

*ଗାୟତ୍ରୀନଗର, ଭଞ୍ଜନଗର , ଗଂଜାମ*

# ମଧ୍ୟଯୁଗୀୟ ଓଡ଼ିଆ କାବ୍ୟର ଅନୁବାଦ ଯୋଗ୍ୟତା

ଡକ୍ଟର ଦୁର୍ଗାମାଧବ ନନ୍ଦ

ଓଡ଼ିଆ ସାହିତ୍ୟର ଇତିହାସରେ ମଧ୍ୟଯୁଗର ସୀମାସରହଦ୍ ଅତ୍ୟନ୍ତ ଦୀର୍ଘ ଓ ବ୍ୟାପକ। ସମାଲୋଚକ ଗଣଙ୍କ ମତରେ ୧୫୦୦ ଖ୍ରୀଷ୍ଟାବ୍ଦରୁ ୧୮୫୦ ଖ୍ରୀଷ୍ଟାବ୍ଦ, ଅର୍ଥାତ ତିନିଶହ ପଚାଶ ବର୍ଷର ଅବଧି ମଧ୍ୟରେ ଯେଉଁ ବିଶାଳ କାବ୍ୟ/ମହାକାବ୍ୟ/ଗୀତିକାବ୍ୟ କ୍ଷେତ୍ର ସୃଷ୍ଟି ହୋଇଥିଲା, ସେ ସବୁ ଏହି ଯୁଗରହିଁ ଅବଦାନ। (୧) ରମଣୀୟ ଉପବନ ମଧ୍ୟରେ ମନୁଷ୍ୟ ପ୍ରବେଶ କଲେ ଯେପରି ବିଭିନ୍ନ ଜାତିର ପୁଷ୍ପର ସୌରଭରେ ତା'ର ମନ, ପ୍ରାଣ ପୁଲକିତ ହୋଇ ଉଠିଥାଏ, ଠିକ ସେହିପରି ମଧ୍ୟଯୁଗୀୟ କାବ୍ୟରାଜି ସ୍ୱୀୟ ସୁଗନ୍ଧ ତଥା ସୌନ୍ଦର୍ଯ୍ୟରେ ଦୀପ୍ତିବନ୍ତ। ସେହି ଅଗଣିତ କାବ୍ୟ-କୁସୁମର ମହକ ଆଜି କେବଳ ଓଡ଼ିଶା ଭିତରେ ହିଁପରିବ୍ୟାପ୍ତ। ରାଜ୍ୟ ବାହାରକୁ ଯିବାର ଅବକାଶହିଁ ନାହିଁ। ଯିବାବେଳକୁ ବହୁ ପ୍ରତିବନ୍ଧକ। ଏହାର କାରଣ ମଧ୍ୟ ଅତି ସ୍ପଷ୍ଟ। କେହି କେହି କହନ୍ତି ଯେ ଏହି କାଳର କାବ୍ୟ କବିତା ଛନ୍ଦ ଓ ବୃତ୍ତରେ ଛନ୍ଦାୟିତ। ସାଙ୍ଗୀତିକତା ତାହାର ପ୍ରାଣ। ରସ ପରିବେଷଣ, ବର୍ଣ୍ଣନା ବୈଚିତ୍ର୍ୟ, ଅଳଂକାର ସୌନ୍ଦର୍ଯ୍ୟ, ଅଦ୍ଭୁତ କଳ୍ପନା ବିକାସ ଏବଂ ବହୁ ଅର୍ଥ ବ୍ୟଞ୍ଜିତ ଶବ୍ଦ ସଂଯୋଜନା ପ୍ରଭୃତି ସେ ସବୁ ସୃଷ୍ଟିର ବୈଶିଷ୍ଟ୍ୟ। ଏ ସମସ୍ତ ଗୁଣ ବିଶିଷ୍ଟ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଆମ ଓଡ଼ିଆଙ୍କ ଛଡା ଅନ୍ୟ କେହି ଯେପରି ଗ୍ରହଣ କରିପାରିବେ ନାହିଁ। ଯଦି କରିବେ ତେବେ ସେ ସବୁ ଶ୍ରୀହୀନା ହୋଇପଡିବେ। ତେଣେ ଯଶପ୍ରିୟ କବିର ଏକମାତ୍ର ଆର୍ତ୍ତନାଦଯେ ତା'ର ସୃଷ୍ଟିର ବାସନା ଦେଶ ବିଦେଶରେ ଚହଟି ଯାଉ। ଏଥିପାଇଁ ମଧ୍ୟ ଶ୍ରୀରାମଙ୍କ ନିକଟରେ ତା'ର ଅଜସ୍ର ନିବେଦନ।

''ସୁମନଭୁକ୍ ଯେ କୀଟ ବୃଷ, ସକାଶେ ନୋହୁ ଏ ପୁସ୍ତକ ନାଶ
ସମସ୍ତ ଦେଶରେ ପ୍ରକାଶ ହେଉ. ସଂସାର ମଧ୍ୟେ ଚିରକାଳ ଥାଉ
ସ୍ତବ ଏଥିପାଇଁ, ଶ୍ରୀନ୍ତେ ଶ୍ରୀରଘୁନାଥ ଆରାଧଇ।'' (୨)

କେବଳ ସେତିକି ନୁହେଁ, ସେ ପ୍ରଭୁଙ୍କର ଆଜ୍ଞାର ଅପେକ୍ଷାରେ। କେବେ ଏବଂ କିପରି ତା'ର ରଚନାର ପରିପ୍ରଚାର ହେବ ? ଯେପରି ହେଉ ସୃଷ୍ଟିର ବ୍ୟାପକ ପ୍ରସାରରେ ହିଁ ତା'ର ମନସ୍କାମନାର ପରିପୂର୍ତ୍ତି।

''ରାଘବ କୋଶଳ ଦେଶ-ଈଶ ସୀତାବନ୍ଧୁ
ରାକ୍ଷସ କୁଳ କମଳ ସୁଖହର ବିଧୁ ଯେ।
ରସିକହେ ଉପଇନ୍ଦ୍ର ଭଂଜ ବୀରବର
ରାଜ୍ୟେ ରାଜ୍ୟେ ଯାଉ ଗୀତ ଏହି ଆଜ୍ଞାକର ଯେ।'' (୩)

କିନ୍ତୁ ରାଜ୍ୟ ବାହାରକୁ ବା ଦେଶବିଦେଶକୁ କବିର ସୃଷ୍ଟି ଫସଲ କିପରି ଯିବ, ସେଥିପାଇଁ ଏହି ଯୁଗର କବି ନିରୁତ୍ତର। ଆଜି ଯେପରି ଏଥିପାଇଁ ଆମେ ଅନୁବାଦ ଶୈଳୀଟିକୁ ମାଧ୍ୟମ କରିଥାଉ, ସେତେବେଳେ ତାହା ବୋଧହୁଏ ନଥିଲା। ଯଦିବା ଥିଲା, ତା'ର ଉଲ୍ଲେଖ ବିଚରା କବିର ସୃଷ୍ଟିରୁ ଉପଲବ୍ଧ ହୁଏନାହିଁ। ସେ ଯାହାହେଉ, ଆଜିର ପରିପ୍ରେକ୍ଷୀରେ ସେ ସବୁର ପ୍ରଚାର ନିମନ୍ତେ ଆମ୍ଭେମାନେ ଅନୁବାଦ ମାଧ୍ୟମରେ ଉଦ୍ୟମକଲେ କ୍ଷତି ବା କ'ଣ ଅଛି। ଏହି ପ୍ରସଂଗରେ ହିଁ ଆଲୋଚ୍ୟ ପ୍ରବନ୍ଧର ଅବତାରଣା।

ମଧ୍ୟଯୁଗୀୟ ଓଡିଆ କାବ୍ୟର ଅନୁବାଦ ଯୋଗ୍ୟତା ସଂପର୍କରେ ବିଚାର କରିବା ପୂର୍ବରୁ ଆମକୁ ଅନୁବାଦର ସଂଜ୍ଞା, ସ୍ୱରୂପ ଓ ପ୍ରକାରଭେଦ ସଂପର୍କରେ ସମ୍ୟଗ୍ ଅବହିତ ହେବା ବିଧେୟ । 'ଘଞ' ପ୍ରତ୍ୟୟ ଯୁକ୍ତ 'ବଦ୍' ଧାତୁ ବାଦ ରୂପରେ 'ଅନୁ' ଉପସର୍ଗ ସହ ମିଳିତ ହେଲେ 'ଅନୁବାଦ' ଶବ୍ଦଟି ନିଷ୍ପନ୍ନ ହୋଇଥାଏ । ଏହାର ଶାବ୍ଦିକ ଅର୍ଥ ହେଉଛି - ପୁନଃ କଥନ' । ଇଂରାଜୀ ଭାଷାରେ 'ଟ୍ରାନସ୍‌ଲେସନ'କୁ ଅନୁବାଦର ପ୍ରତିଶବ୍ଦ ଭାବେ ଆପାତତଃ ଗ୍ରହଣ କରାଯାଇଥାଏ । ପାଶ୍ଚାତ୍ୟ ସମାଲୋଚକ ଡଃ. ଜନ୍‌ସନ୍‌ଙ୍କ ମତରେ - 'ଅର୍ଥକୁ ସୁରକ୍ଷିତ ରଖି ଅନ୍ୟ ଭାଷାରେ ତା'ର ଅନ୍ତରଣ କରିବାହିଁ ହେଉଛି ଅନୁବାଦ ।' ସେହିପରି ଅନ୍ୟତମ ଆଲୋଚକ ଏ.ଏଚ୍.ସ୍ମିଥ ସେହି ସଂଜ୍ଞାସହ ଯୋଗକରି କହନ୍ତି ଯେ 'ସବୁ ପ୍ରକାରର ଅନୁବାଦରେ କିଛି ଅଂଶ ହରେଇବାକୁ ପଡିଥାଏ ।(୪) ସାମଗ୍ରିକ ଭାବେ ବିଚାର କଲେ - ଗୋଟିଏ ଭାଷାରେ ବ୍ୟକ୍ତ ଭାବଧାରା ଯଥା ସମ୍ଭବ ସମାନ ଓ ସହଜ ଅଭିବ୍ୟକ୍ତି ଦ୍ୱାରା ଅନ୍ୟଭାଷାରେ ବ୍ୟକ୍ତ କରିବା ପ୍ରଚେଷ୍ଟାକୁହିଁ ଅନୁବାଦ କୁହାଯାଇଥାଏ । ଏହି ଶୈଳୀ ଅତିମାତ୍ରାରେ ଉତ୍ସଭାଷାଶ୍ରିତ ହେଲେ ଲକ୍ଷ୍ୟଭାଷାର ସହଜ ପ୍ରକୃତି ଖଣ୍ଡିତ ହୋଇଯିବାର ବିପଦ ମଧ୍ୟ ରହିଛି । ଏଥିପାଇଁ ପ୍ରସିଦ୍ଧ ତାମିଲ୍ କବି ପ୍ରଫେସର ରାମଚନ୍ଦ୍ର ଶର୍ମା ଅନୁବାଦ କୌଶଳକୁ ବୁଝାଇବାକୁ ଯାଇ ଉଲ୍ଲେଖ କରିଛନ୍ତି - "Translation is like a stabiliser, which transfer what ever energy is necessary for a particular class of readers."(୫) ବସ୍ତୁତଃ ଯେ କୌଣସି ଭାଷାର ସୃଷ୍ଟିକୁ ଭଲରୂପେ ବୁଝି, ଅନୁଭବ ତଥା ହୃଦୟଙ୍ଗମ କରି ଅନ୍ୟଭାଷାରେ ତା'ର ସମତୁଲ୍ୟ ଅନୁଭବଟିଏ ସୃଷ୍ଟି କରିବାକୁ ଅନୁବାଦ କୁହାଯିବା ବିଧେୟ । ଏହା ମଧ୍ୟ ବିଭିନ୍ନ ପ୍ରକାରେ ସଂଘଟିତ ହୋଇଥାଏ । ଯଥା- ଶବ୍ଦାନୁବାଦ, ଭାବାନୁବାଦ, ଛାୟାନୁବାଦ, ସାରାନୁବାଦ, ମର୍ମାନୁବାଦ, ବ୍ୟାଖ୍ୟାନୁବାଦ, ବାର୍ତ୍ତାନୁବାଦ ଓ ରୂପାନୁବାଦ ବା ରୂପାନ୍ତରଣ ପ୍ରଭୃତି । ଏଥିରୁ କେଉଁଟି ଉତ୍କୃଷ୍ଟ ତାହା କହିବା ସମ୍ଭବପର ନୁହେଁ । ସୁତରାଂ ଅନୁବାଦକର ପ୍ରଥମ ମୁଖ୍ୟକାର୍ଯ୍ୟ ହେଲାଯେ ସେ ମୂଳପାଠ୍ୟର ଅର୍ଥଗତ ଅଭାସ (IMPORT) କୁ ଏମିତି ସନ୍ତର୍ପଣରେ ଭାଷାନ୍ତରିତ କରିବ ଯେମିତିକି ଏହାର କୌଣସି ଅଂଶ ବିରୂପ ହବନି କି ପାଠକମାନଙ୍କୁ ବିରକ୍ତ କଲାଭଳି ଏହାର କୌଣସି ଲକ୍ଷଣ ଉଦ୍ଦିଷ୍ଟ ଭାଷାରେ ସ୍ଥାନ ପାଇବନି । ଏହା ହେଲେ ଯାଇ ପାଠକ ଅନୂଦିତ ପାଠ୍ୟଟି ପଢ଼ି ମୂଳପାଠ୍ୟ ପଢ଼ିବାର ଆନନ୍ଦ ଉପଭୋଗ କରିପାରିବ ।(୬)

ସର୍ବୋପରି ଅନୁବାଦ ଏକ କଷ୍ଟସାଧ୍ୟ କଳା । ଏଥିରେ ହାତ ଦେବାକୁ ହେଲେ ଅନୁବାଦକକୁ ଅତିକମ୍‌ରେ ଭାଷାବିଜ୍ଞାନ, ବ୍ୟତିରେକୀ, ଦ୍ୱିଭାଷିକତା ଓ ଦ୍ୱିସାଂସ୍କୃତିକତା ସମ୍ବନ୍ଧରେ କିଞ୍ଚିତଜ୍ଞାନ ଅର୍ଜନ କରିବା ବିଧେୟ । ଅନ୍ୟ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ମୂଳପାଠ୍ୟ ଓ ଅନୂଦିତ ପାଠ୍ୟ ଭଳି ଦି'ସଉତୁଣୀଙ୍କ ସହ ସମ୍ପର୍କ ରହିଛି ବୋଲି ସେ ସବୁବେଳେ ସତର୍କ ରହିବା ଉଚିତ । ଦି' ସଉତୁଣୀଙ୍କୁ ଏକାବେଳକେ ସନ୍ତୋଷ କରିବା ଯେ କେତେ ଦୁରୂହ, ତା' ସମସ୍ତେ ଭଣାଅଧିକେ ଜାଣନ୍ତି । (୭)

ଅଧୁନା ପୃଥିବୀରେ ଅନୁବାଦ କଳାର ଲୋକପ୍ରିୟତା ଯଥେଷ୍ଟବେଶି । କାରଣ ଜୀବନର କିୟତ୍‌କାଳମଧ୍ୟରେ ମନୁଷ୍ୟ ପୃଥିବୀର ସମସ୍ତ ଭାଷା ଓ ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିବା ଅସମ୍ଭବ । ଏଣୁ ଗୋଟିଏ ଭାଷାର ସୃଷ୍ଟି ସମୂହକୁ ଅନ୍ୟପାଠକଙ୍କ ନିକଟରେ ପହଞ୍ଚାଇବାକୁ ହେଲେ ଆମକୁ ଅନୁବାଦ କୌଶଳରହିଁ ଆଶ୍ରୟ ନେବାକୁ ପଡିବ । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ମଧ୍ୟଯୁଗୀୟ ଓଡିଆ ସାହିତ୍ୟକୁ ଅନୁବାଦ କଲେ କେତେଦୂର ସାର୍ଥକ ହୋଇପାରିବ, ବିଚାର କରି ଦେଖିବା ।

ବହୁ ପଣ୍ଡିତ, ସମାଲୋଚକ, ତଥା ପ୍ରାଚୀନବିତ୍‌ମାନଙ୍କ ମତରେ ଏହିକାଳର କାବ୍ୟ କବିତା ଅନୁବାଦର ଅଯୋଗ୍ୟ । କାରଣ ସ୍ୱରୂପ ସେମାନେ ଦେଖାନ୍ତି ଯେ ଆମର କବିମାନେ ଥିଲେ ସଂଗୀତଜ୍ଞ । ଛନ୍ଦବୃତ୍ତର ତାଳେ ତାଳେସେମାନଙ୍କ ଛାନ୍ଦଗୁଡିକ ରଚିତ । ଦ୍ୱିତୀୟରେ ସେମାନେ ଯେଉଁ କଳାରେ ବର୍ଣ୍ଣନା, ରସପରିବେଷଣ, ଅଳଂକାରର ପ୍ରୟୋଗ, ଶବ୍ଦ ସଂଯୋଜନା, ଅଦ୍‌ଭୁତ କଳ୍ପନା ଆଦି କରିଯାଇଛନ୍ତି, ସେ ସବୁ ଅନୁବାଦ ହେଲେ, ମୂଳ ସୃଷ୍ଟିର ଗୌରବ ନଷ୍ଟ ହେବ । ଏହି ପ୍ରସଙ୍ଗରେ ଇଂରାଜୀ ଆଲୋଚକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ । "Only the ideas of Upendra Bhanja can be conveyed to the out side world, through these translation. For the inherent music of his poetry and the magic setting of his words satisfying the exigencies of different figures of speech an untranslatable."(୮) ସେହିପରି ଅନ୍ୟଜଣେ ଆଲୋଚକଙ୍କ ମତରେ 'ଉପେନ୍ଦ୍ରଙ୍କ ବିସ୍ତୃତ ସାହିତ୍ୟର ରୂପଗତ ଓ ଅର୍ଥଗତ ବୈଚିତ୍ର୍ୟ ଏପରି ଯେ ଅନୂଦିତ ହେଲେ ଅଧିକାଂଶ କ୍ଷେତ୍ରରେ ତହିଁର ଅର୍ଥ ଗରିଷ୍ଠତା ରହି ପାରିବ କି ନା ସନ୍ଦେହ । * * * ଉପେନ୍ଦ୍ରଭଞ୍ଜ ନିଜ ସାହିତ୍ୟରେ ଏକ ଏକ ଅର୍ଥପାଇଁ ଏକାଧିକ ଶବ୍ଦ ବ୍ୟବହାର କରି ନିର୍ଦ୍ଦିଷ୍ଟ ସ୍ଥଳରେ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରିଛନ୍ତି । ଯେପରି 'ସୂର୍ଯ୍ୟ' ଅର୍ଥ ପ୍ରକାଶ କରିବାକୁ ବିକର୍ତ୍ତନ, ତରଣୀ, ସବିତା, ରବି ପ୍ରଭୃତି ଏକାଧିକ ଶବ୍ଦ ବ୍ୟବହାର- ଏହି ପ୍ରତ୍ୟେକ ଅର୍ଥଘେନି ସେ ଅସଂଖ୍ୟ ଶବ୍ଦର ପ୍ରୟୋଗ କରିଛନ୍ତି । ସେଗୁଡିକର ମୌଳିକ ଅର୍ଥଦ୍ୟୋତକ ଅନୁବାଦ ହେଲେ ରହିପାରିବ ତ? * * * ଉକ୍ତ ସାହିତ୍ୟରୁ ସାଙ୍ଗୀତିକ ଗୁଣକୁ ପରିହାର କଲେ ଏହାର ମାଧୁର୍ଯ୍ୟ ଯେ କେବଳ ଲୁପ୍ତହେବ ତା'ନୁହେଁ, ବରଂ ବିକଳାଙ୍ଗ ହୋଇପଡିବ ।(୯) ମଧ୍ୟଯୁଗୀୟ କବି ତଥା ସେମାନଙ୍କ ସୃଷ୍ଟି ସମୂହର ଅନୁବାଦ କ୍ଷେତ୍ରରେ ଉଣାଅଧିକେ ଏହି ମତହିଁ ପ୍ରକାଶ ପାଇଥାଏ ।

ତଥାପି ଏହି କାଳର ସାହିତ୍ୟକୁ ଅନ୍ୟଭାଷାଭାଷୀଙ୍କ ନିକଟରେ ଆମକୁ ପହଞ୍ଚାଇବାକୁ ପଡିବ । ଏଥିପାଇଁ ଉପରଲିଖିତ ଅନୁବାଦର ଶୈଳୀକୁ ଆପଣେଇବାକୁ ପଡିବ । ଆମକୁ ମନେରଖିବାକୁ ହେବ ଯେ 'ଗୀତାଞ୍ଜଳୀ'ର ଇଂରାଜୀ ଅନୁବାଦ ହୋଇନଥିଲେ, ରବୀନ୍ଦ୍ରନାଥ ଟାଗୋର ବିଶ୍ୱକବିର ମର୍ଯ୍ୟାଦା ପାଇପାରିନଥାନ୍ତେ । ଏହି ଅନୁବାଦ ବେଳେ ମଧ୍ୟ ମୂଳ ବଂଗଳା ଭାଷାର ଶବ୍ଦଗତ ଚମତ୍କାରିତା ଓ ସାଙ୍ଗୀତିକତା ନଷ୍ଟ ହୋଇଥିଲା । ଏଣୁ ଅର୍ଜ୍ଜୁନ ଦାସ, ନରସିଂହ ସେଣ, ବିଷ୍ଣୁଦାସ, ଦେବଦୁର୍ଲ୍ଲଭ ଦାସ, ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ରଭଞ୍ଜ, କୃଷ୍ଣଦାସ, ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ, ଯଦୁମଣି ଓ ଗୋପାଳକୃଷ୍ଣ ପ୍ରଭୃତି କବିଙ୍କ ସୃଷ୍ଟିର କଳାଗତ ଓ ଭାବଗତ ସୌନ୍ଦର୍ଯ୍ୟକୁ ଅନୁବାଦ ମାଧ୍ୟମରେ ବିଶ୍ୱ ଦରବାରରେ ପହଞ୍ଚାଇବାକୁହିଁ ପଡିବ । ଏଥିପାଇଁ ଉପାୟ ଅନ୍ୱେଷଣ କରିବା ଆବଶ୍ୟକ ।

ପ୍ରଥମତଃ ଏହି ଯୁଗର ସୃଷ୍ଟି ସମୂହକୁ ସଂସ୍କୃତରେ ଅନୁବାଦ କଲେ, ଏହାର ବିଶେଷ କ୍ଷତି ହେବନାହିଁ । କାରଣ ଆମର ଓଡିଆ ଭାଷା ତତ୍ସମ ଓ ତଦ୍‌ଭବ ଶବ୍ଦବହୁଳ ଆମର ଛନ୍ଦ ଶୈଳୀ ମୁଖ୍ୟତଃ ସଂସ୍କୃତାନୁସାରୀ । ଆମର ବର୍ଣ୍ଣନାବୈଚିତ୍ର୍ୟ, ଅଳଂକାରର ପ୍ରୟୋଗ, ରସପରିବେଷଣ ଆଦି ବହୁମାତ୍ରାରେ ସଂସ୍କୃତ କାବ୍ୟ/ମହାକାବ୍ୟର ଛାୟାରେ ବପୁବନ୍ତ । ଶବ୍ଦ ପ୍ରୟୋଗ କ୍ଷେତ୍ରରେ ମଧ୍ୟ ସେ ସବୁ ସଂସ୍କୃତ ଗ୍ରନ୍ଥ ଗୁଡିକର ଅଧିକ ନିକଟବର୍ତ୍ତୀ । ଗୋଟିଏ ଉଦାହରଣ ମଧ୍ୟ ଏଠାରେ ପ୍ରଦାନ କରାଯାଇପାରେ । ସ୍ୱର୍ଗୀୟ

ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ମଧ୍ୟଯୁଗୀୟ କବି ଉପେନ୍ଦ୍ରଭଂଜଙ୍କ 'ଲାବଣ୍ୟବତୀ'କାବ୍ୟର ସଂସ୍କୃତ ଅନୁବାଦ କଲାବେଳେ ଯେଉଁ କଳାଗତ ସୌନ୍ଦର୍ଯ୍ୟ ରକ୍ଷାକରିପାରିଛନ୍ତି ଲକ୍ଷ୍ୟ କରନ୍ତୁ ।

''ଦେଖି ନବକାଳିକା - ବଳଳିକା ବାଳିକା-ଆଳୀ କାଳିକାକାନ୍ତ ସ୍ମରି
ରକ୍ଷା କେମନ୍ତେ କରି - କରିବା ମରକରୀଗତିକି - ଏମନ୍ତ ବିଚାରି ସେ ସହଚରୀ
ଭାବେ ବଞ୍ଚିଲେ ଏ କାଳକୁ । କଥା ଥିବ କାଳ କାଳକୁ
ଏକେ ତ କ୍ଷୀଣ ଦିନ - ହେଲା ଦୁର୍ଦ୍ଦିନ ଦିନ - ନ ଲଭିବଲ୍ଲଭ ମେଳକୁରେ ।।'' (୧୦)
ଦୃଷ୍ଟ୍ୱାକାଳୀ ଘନାଳିଶ୍ରିତବକ କାଳିକେ ବେଶକାନ୍ତା
ସଖ୍ୟାରକ୍ଷା କଥଂ ବୋ ସମଦ୍‌କରିଗତେଃ ସମ୍ବିଧାୟେତ୍ୟଭାଳି
ବାଳାଦୀନା ନବୀନାନଧିଗତ ମିଳନାପ୍ରେୟସା ଦୁର୍ଦ୍ଦିନେଷୁ
ଜୀବନ୍ତୀ କ୍ଷେମମୀୟାଦ୍ ଯଦି ଭବତ ବିଧିଃ ସୁପ୍ରସନଃ କଦାଚିତ୍ । ''(୧୧)

ଉପର୍ଯ୍ୟୁକ୍ତ ଉଦାହରଣଦ୍ୱୟର ସାଙ୍ଗୀତିକ ରାଗ ପୃଥକ୍ ଅଟେ । ଉପେନ୍ଦ୍ର 'କାମୋଦୀ' ରାଗରେ ଛାନ୍ଦଟିକୁ ଲେଖିଲାବେଳେ ପଣ୍ଡିତ ତ୍ରିପାଠୀ ସଂସ୍କୃତର 'ସ୍ରଗ୍‌ଧରା' ଛାନ୍ଦ ମାଧ୍ୟମରେ ମୂଳରୂପର ସାଙ୍ଗୀତିକ ସୌନ୍ଦର୍ଯ୍ୟକୁ ରକ୍ଷାକରିବାକୁ ପ୍ରୟାସ କରିଥିବା ଲକ୍ଷ୍ୟ କରାଯାଇଥାଏ । ଏହି ପ୍ରସଂଗରେ ଆହୁରି ମଧ୍ୟ ମତବ୍ୟକ୍ତ କରାଯାଇପାରେ ଯେ ଯଦି ସଂସ୍କୃତ କାବ୍ୟ / ମହାକାବ୍ୟ/ଦୃଶ୍ୟକାବ୍ୟର ଅନୁବାଦ ଜର୍ମାନୀ, ଇଂରେଜୀ, ଫ୍ରାନସ୍ ତଥା ଋଷିଆର ଭାଷାରେ ଅନୂଦିତ ହୋଇପାରୁଛି, ତେବେ ମଧ୍ୟଯୁଗୀୟ ସାହିତ୍ୟର ଅନୁବାଦ ବେଳେ ଆମେ କାହିଁକି ପ୍ରତିବନ୍ଧକ ସୃଷ୍ଟି କରିବା ?

ବୈଦେଶିକ ଭାଷାରେ ଅନୁବାଦ କରିବା ପୂର୍ବରୁ ଭାରତୀୟ ଭାଷାଗୁଡିକରେ ଏହି ଅନୁବାଦ ଆହୁରି ଅଧିକ ଜୀବନ୍ତ ହୋଇ ପାରିବ । କାରଣ ଆମ୍ଭର ଦକ୍ଷିଣ ଭାରତୀୟ ମଧ୍ୟଯୁଗୀୟ ସାହିତ୍ୟରେ ଓଡିଆ ଭାଷାପରି ବହୁ ପ୍ରବନ୍ଧକାବ୍ୟ ରାଗ, ଛନ୍ଦବୃତ୍ତ ମଧ୍ୟରେ ଛନ୍ଦାୟିତ ହୋଇ ସୃଷ୍ଟି ହୋଇଛି । ଏପରିକି ତେଲୁଗୁ ଭାଷାର କେତେକ ପ୍ରବନ୍ଧ କାବ୍ୟର ପ୍ରଭାବ ମଧ୍ୟ ଦକ୍ଷିଣଓଡିଶାର କବିମାନଙ୍କ ଉପରେ ପଡିଥିବାର ଅନୁଭୂତ ହୁଏ । ଏଣୁ ଆମର କାବ୍ୟ କବିତା ତଦୀୟ ଭାଷାଗୁଡିକରେ ଅଚିରେ ଅନୁବାଦ ହେବାରେ କୌଣସି ଅସୁବିଧା ନାହିଁ । ଏହା ଫଳରେ ସାଙ୍ଗୀତିକ ସୌନ୍ଦର୍ଯ୍ୟ ମଧ୍ୟ ରକ୍ଷା କରାଯାଇପାରିବ ।

କେବଳ ଇଁରେଜୀ ବା ଅନ୍ୟାନ୍ୟ ବୈଦେଶିକ ଭାଷାରେ ଅନୁବାଦ କଲାବେଳେ ଅନୁବାଦକକୁ ଶବ୍ଦାନୁବାଦ ପରିବର୍ତ୍ତେ ଭାବାନୁବାଦ ବା ମର୍ମାନୁବାଦ ଶୈଳୀକୁ ଆପଣେଇବା ଉଚିତ। କାରଣ ଆମର ସାମାଜିକ ଓ ସାଂସ୍କୃତିକ ବୈଚିତ୍ର୍ୟ ସେହି ଦେଶବାସୀଙ୍କ ଠାରୁ ଭିନ୍ନ । ସେହିପରି ରଢ଼ି, ପ୍ରବଚନ, ଢଗଢ଼ମାଳୀ ଆଦିର ଅନୁବାଦ ବେଳେ ସମତୁଲ୍ୟ ଶବ୍ଦଟିଏ ଇଂରେଜୀ ଭାଷାରେ ଖୋଜିବାକୁ ପଡିବ । ନଚେତେ ଅନୁବାଦ ସାର୍ଥକ ହୋଇପାରିବ ନାହିଁ । ଖାପଛଡା ବୋଧହେବାର ସମ୍ଭାବନା ବେଶି । ଏ କ୍ଷେତ୍ରରେ ଅଦ୍ୟାବଧି ଯେଉଁ ପରୀକ୍ଷା ନିରୀକ୍ଷା ହୋଇଛି, ତନ୍ମଧ୍ୟରୁ ଗୋଟିଏ/ଦୁଇଟିର ଉଦାହରଣ ଏଠାରେ ପ୍ରଦାନ କରାଯାଇପାରେ । ଅନୁବାଦକ କପିଳେଶ୍ୱର ଦାସ ଏ ଦିଗରେ ବହୁ ପ୍ରଶଂସନୀୟ ଉଦ୍ୟମ କରିଯାଇଛନ୍ତି । ସେ ମହାଶୟ ଶଙ୍କର ଦାସଙ୍କ 'ବାରମାସୀ କୋଇଲି' ଦନାଇ ଦାସଙ୍କ 'ଗୋପୀଭାଷା' ପ୍ରତାପରାୟଙ୍କ 'ଶଶୀସେଣା' ନିଶଙ୍କରାୟ ରାଣୀଙ୍କ 'ଶଶୀରେଖା', ଉପେନ୍ଦ୍ରଭଂଜଙ୍କ ଲାବଣ୍ୟବତୀ, କବିସୂର୍ଯ୍ୟ ବଳଦେବ

ରଥଙ୍କ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ଓ କେତେକ ଚଉପଦୀ, ଯଦୁମଣି, ଗୌରହରି, ଗୋପଳକୃଷ୍ଣ, ବନମାଳୀ, ଗୋବିନ୍ଦରାୟଗୁରୁ ଆଦିଙ୍କ ସୃଷ୍ଟି ସମ୍ଭାର ସହ କେଶବ ରାମାୟଣ ଓ ବିଚିତ୍ର ରାମାୟଣର କିଛି କିଛି ଅଂଶକୁ ଇଂରେଜୀ ଭାଷାରେ ଯେଉଁ ଅନୁବାଦ କରିଛନ୍ତି, ତା'ର ପଟାନ୍ତର ନାହିଁ । ଯଥା:-

କ) ବାରମାସୀ କୋଇଲି - ଶଙ୍କର ଦାସ

ଆରେ ବାବୁ ଚାପଧାରୀ କି ଦଣ୍ଡ ହେଲା ତୋହରି
କାନ୍ଦି କଉଶଲ୍ୟା ବୋଲନ୍ତି କୈକେୟୀ
ଅରଜିବ କେଉଁ କିରୀଲୋ, କୋଇଲି ଶୁଣଲୋ
ଏହି ମଗୁଶୀର ମାସ କାକର ପଡେ ବିଶେଷ
କାକର ପବନ ବହେ ଘନ ଘନ, ମୋ ପୁତ୍ର କରିବ କିସଲୋ ,କୋଇଲି । ''

ଇଂରେଜୀ ଅନୁବାଦ - Kausalya cries - What sad fats hath over taker my beloved son, the bow-holder ! what renown will Kaikeyi gain there by, O cockoo ! In the month of Margasira forest falls fast; cold wind blows crisp. What will my son do, O cockoo ! (୧୨)

ଖ) ବିଚିତ୍ର ରାମାୟଣ : ବିଶ୍ୱନାଥ ଖୁଣ୍ଟିଆ

''କହ ହନୁମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବକୁଶଳ
ମରକତହେମ ବେନି କଳେବର ହୋଇନାହାନ୍ତି ନା ଦୁର୍ବଳ
ହନୁହେ, ବେନିଭାଇଙ୍କର କୁଶଳ,
କୁଶଳ କରି ଲକ୍ଷ୍ମଣ ସେବା କରୁଥାନ୍ତିଟିକି ପାଦକମଳ ;

O, Hanu ! speak to me the welfafe of my dear husband and that of Lakshman, Have they become weak - the emerald and the golden - bodied ? Is Lakshman deftly serving the Lotus feet (of his eldest brother)" (୧୩)

ଏପରି ଯଦିଓ ବହୁ ଉଦାହରଣ ଦିଆଯାଇପାରିବ, ତଥାପି ପ୍ରବନ୍ଧର କଳେବର ଦୀର୍ଘ ହୋଇଯିବାର ଆଶଙ୍କାଥିବାରୁ, ଆମେ ସେଥିରୁ କ୍ଷାନ୍ତ ରହିବାକୁ ବାଧ ହେଉଅଛୁଁ । କିନ୍ତୁ ଏ ସମସ୍ତ ଅନୁବାଦ ଶୈଳୀକୁ ଲକ୍ଷ୍ୟକଲେ ଜଣାଯାଏଯେ ଏହାଦ୍ୱାରା ମୂଳପାଠ୍ୟର ସାଙ୍ଗୀତିକ ସୌନ୍ଦର୍ଯ୍ୟ ନିଶ୍ଚିତ ଭାବେ ନଷ୍ଟ ହେଉଅଛି । ପୂର୍ବରୁ ମଧ ଆମେ ଉଲ୍ଲେଖ କରିଅଛୁଁ ଯେ ଗୋଟିଏ ଭାଷାରୁ ଅନ୍ୟଏକ ଭାଷାକୁ ଅନୁବାଦ କଲାବେଳେ ମୂଳଗ୍ରନ୍ଥର ସକଳ ବୈଶିଷ୍ଟ୍ୟ କସ୍ମିନ କାଳେ ଅକ୍ଷୁର୍ଣ୍ଣ ରଖିହେବ ନାହିଁ । କିଛି ପାଇବାକୁହେଲେ, ନିଶ୍ଚିତ କିଛି କ୍ଷତି ମଧ ସହିବାକୁପଡିବ । ସେଥିପାଇଁ ମଧ କେହି କେହି ଏହି କାର୍ଯ୍ୟକୁ ଏକ ''ପବିତ୍ର ପାପ'' ବୋଲି କହିଥାନ୍ତି । (୧୪) କିନ୍ତୁ ଉଚ୍ଚତର ଜ୍ଞାନଚର୍ଚ୍ଚା, ନିଜ ସାହିତ୍ୟର ଅଭିବୃଦ୍ଧି, ତଥା ପରିପ୍ରଚାର ନିମନ୍ତେ ଅନୁବାଦକୌଶଳକୁ ଆଜି ବିଶ୍ୱରେ ମନୀଷୀଗଣ ଆଦରକରିଥାନ୍ତି । ମଧ୍ୟଯୁଗୀୟ ଓଡିଆସାହିତ୍ୟ ପକ୍ଷରେ ମଧ ଆମେ ସେହି ମାର୍ଗରେ ପ୍ରବେଶ କରିବା ସର୍ବୋ।ଦୌ ଉଚିତ ହେବ । ଏହାଦ୍ୱାରା ଆମ ପ୍ରାଚୀନ ସାହିତ୍ୟର ଗୌରବ ଅନ୍ୟଭାଷୀ ଭାଷୀଙ୍କ ନିକଟରେ ପହଞ୍ଚିପାରିବ । ଏହି ପ୍ରସଙ୍ଗରେ ଏଠାରେ ମଧ କୁହାଯାଇପାରେଯେ

ଆଜି ଶିଶୁଶଂକର ଦାସଙ୍କ ଉଷାଭିଳାଷ ଓ କବି ଉପେନ୍ଦ୍ରଭଂଜଙ୍କ 'ରସିକହାରାବଳୀ' ପରି କାବ୍ୟର ଅନୁବାଦ ସ୍ୱିଜରଲାଣ୍ଡର ଭାଷାରେ ହୋଇଗଲାଣି । ସେଠାକାର ଲୋକମାନେ ଗ୍ରନ୍ଥଦ୍ୱୟର ଭାବବସ୍ତୁକୁ ବୁଝିବା ସହ ଆମର ତାଳପତ୍ରରେ ଅଂକାଯାଇଥିବା ଚିତ୍ରର ସୌନ୍ଦର୍ଯ୍ୟକୁ ମଧ ଉପଭୋଗ କରିପାରୁଛନ୍ତି । 'ରସିକହାରାବଳୀ'ର ନାମକରଣ ସେଠାର ଭାଷାରେ ହୋଇଛି - "Dieperlenke He dem Geliebten"। ଦେଖନ୍ତୁ - ସେଠାକାର ପାଠକବର୍ଗଙ୍କ ମନରେ କବି ଉପେନ୍ଦ୍ର ରସୋଦୟ କରି ପାରିଲେ । ସେମାନେ କବିଙ୍କ ସଙ୍ଗୀତକୁ ଖୋଜୁନାହାନ୍ତି । ସେମାନେ ମୁଖ୍ୟତଃ କାବ୍ୟର ରସପରିବେଷଣ, ବର୍ଣ୍ଣନାବୈଚିତ୍ର୍ୟ ତଥା କଳ୍ପନା ପ୍ରବଣତାକୁହିଁ ପ୍ରଶଂସା କରିଥାନ୍ତି । ଠିକ୍ ସେହିପରି 'ବୈଦେହୀଶ ବିଳାସ' ଓ ଅନ୍ୟ କେତେକ ମଧ୍ୟଯୁଗୀୟ କାବ୍ୟ ଦେବନାଗରୀ ଲିପିରେ ଲେଖାଯାଇ ପ୍ରଚାର ହେଉଅଛି । ଉତ୍ତରଭାରତର ଅଗଣିତ ପାଠକ ହିନ୍ଦିଅକ୍ଷରରେ ଲିଖିତ ଆମର କାବ୍ୟ କବିତାର ସୌନ୍ଦର୍ଯ୍ୟକୁ ମଧ ଆଜି ଉପଭୋଗ କରିପାରୁଛନ୍ତି ।

ଉପର୍ଯ୍ୟୁକ୍ତ ସମସ୍ତ ଆଲୋଚନାରୁ ପ୍ରତୀତ ହୁଏ ଯେ ମଧ୍ୟଯୁଗୀୟ ଓଡିଆ ସାହିତ୍ୟ ଅନୁବାଦର ଅଯୋଗ୍ୟ ଆଦୌ ନୁହେଁ । ଆକ୍ଷରିକ ଅନୁବାଦ ନହେଲେ ମଧ ଭାବାନୁବାଦ ବା ମର୍ମାନୁବାଦ ରୀତିରେ ସେହି ସାହିତ୍ୟରେ ଗର୍ଭିତ ହୋଇ ରହିଥିବା ସମସ୍ତ କାବ୍ୟିକ ବିଭବକୁ ବିଶ୍ୱବାସୀଙ୍କ ନିକଟରେ ପହଞ୍ଚାଇବାକୁ ପଡିବ । ସେଥରେହିଁ ଓଡିଆ ସାହିତ୍ୟର ଗୌରବ ବୃଦ୍ଧି ହୋଇପାରିବ ।

**ପାଦଟୀକା :-**


୧. ଆଚାର୍ଯ୍ୟ, ଡଃ ସୁଦର୍ଶନ, ୧୯୮୩, ଓଡିଆ କାବ୍ୟ କୌଶଳ, ପ୍ରକାଶିକା - ଶ୍ରୀମତୀ ବିନୋଦିନୀ ଆଚାର୍ଯ୍ୟ, ବ୍ରହ୍ମପୁର, ପୃ-୧

୨. ଭଂଜ, ଉପେନ୍ଦ୍ର, ସୁଭଦ୍ରାପରିଣୟ, ସପ୍ତଦଶ ଛାନ୍ଦ, ୨୫ ପଦ।

୩. ଭଂଜ, ଉପେନ୍ଦ୍ର, ରସପଞ୍ଚକ, ୧/୧୯ ପଦ।

୪. ପଟ୍ଟନାୟକ, ଡଃ ଅଜୟ, ୧୯୯୭, ଅନୁବାଦ : ପରିଭାଷା ଓ ପ୍ରକାର ଭେଦ (ପ୍ରବନ୍ଧ) ବନମାଳୀ ବାରିକ ଓ ଅନ୍ୟମାନେ, (ସଂ) ଗବେଷଣାବିଧି ଓ ଅନୁବାଦ କଳା, ଓଡିଆ ଗବେଷଣା ପରିଷଦ, କଟକ, ପୃ-୩।

୫. ତତ୍ରୈବ, ପୃ-୬ ଏବଂ ୭।

୬. ମହାନ୍ତି, (ଡଃ) ପଞ୍ଚାନନ, ୧୯୯୭, ବଡକଠିନ ସେ ପ୍ରୀତି ପାଳିବା (ପ୍ରବନ୍ଧ) ବନମାଳୀ ବାରିକ ଓ ଅନ୍ୟମାନେ, (ସଂ) ଗବେଷଣାବିଧି ଓ ଅନୁବାଦ କଳା, ଓଡିଆ ଗବେଷଣା ପରିଷଦ, କଟକ, ପୃ-୧୮।

୭. ତତ୍ରୈବ, ପୃ - ୧୯।

୮. ପଟ୍ଟନାୟକ, ବିଚ୍ଛନ୍ଦଚରଣ, ୧୯୫୦ Kabisamrat Upendra Bhanja - Sovenir preface, Page - V

୯. ମହାନ୍ତି, ବିଷ୍ଣୁମୋହନ, ୧୯୫୮, ଉପେନ୍ଦ୍ର ସାହିତ୍ୟ ସମାଲୋଚନା, ଦାଶରଥୀ ପୁସ୍ତକାଳୟ, କଟକ, ପୃ-୨୭୫ ଓ ୨୭୯.

୧୦. ଭଂଜ, ଉପେନ୍ଦ୍ର, ଲାବଣ୍ୟବତୀ ଛା ୨୨/୧ ପଦ।

୧୧. ତ୍ରିପାଠୀ, (ପଣ୍ଡିତ) ଅନନ୍ତ, ଲାବଣ୍ୟବତୀ (ସଂସ୍କୃତ ଅନୁବାଦ) ୨୨/୧ ପଦ.
୧୨. ଦାସ, କପିଳେଶ୍ୱର, ୧୯୬୮, ଅନୁବାଦ, କପିଳେଶ୍ୱର ଦାସ (ସଂପା) ଚନ୍ଦ୍ରକଳା, ୧ମ ବର୍ଷ, ୧ମ ସଂଖ୍ୟା, ଚିଙ୍ଗୁଡିଖୋଲ, ପୃ-୪୨
୧୩. ଦାସ, କପିଳେଶ୍ୱର, ୧୯୬୮, ଅନୁବାଦ, କପିଳେଶ୍ୱର ଦାସ (ସଂପା) ଚନ୍ଦ୍ରକଳା, ୧ମ ବର୍ଷ, ତୃତୀୟ ସଂଖ୍ୟା, ଚିଙ୍ଗୁଡିଖୋଲ, ପୃ-୨୬
୧୪. ପଟ୍ଟନାୟକ (ଡଃ) କୈଳାଶ, ୧୯୯୭, (ପ୍ରବନ୍ଧ) ପବିତ୍ର ପାପର କାରଣ ଜିଜ୍ଞାସା,ବନମାଳୀ ବାରିକ ଓ ଅନ୍ୟମାନେ, (ସଂ) ଗବେଷଣାବିଧି ଓ ଅନୁବାଦ କଳା, ଓଡିଆ ଗବେଷଣା ପରିଷଦ, କଟକ, ପୃ-୨୧।

*ପ୍ରାଧ୍ୟାପକ, ଖଲ୍ଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟ,*
*ବ୍ରହ୍ମପୁର ।*

# ଲୋକକଳାର ବାଙ୍ମୟ ପ୍ରକାଶ 'ମୁରୁଜ' - ଏକ ଆଲୋଚନା

ଡଃ. ସୀମାଞ୍ଚଳ ପ୍ରଧାନ

ଲୋକକଳାର ପରିସର ଅତ୍ୟନ୍ତ ବ୍ୟାପକ । ଆଦିମ ମଣିଷର ଗୁହାଚିତ୍ର ଠାରୁ ଆଧୁନିକ ଶିଳ୍ପୀର ପ୍ରତୀକାତ୍ମକ ଚିତ୍ର ପର୍ଯ୍ୟନ୍ତ ସବୁକିଛି ଲୋକକଳା ଅନ୍ତର୍ଭୁକ୍ତ କରାଯାଇପାରେ । ଶିଳ୍ପୀର ବିଦଗ୍ଧମାନସରୁ ସୃଷ୍ଟିଲାଭ କରିଥିବା ଚିତ୍ରପଟ କୃତ୍ରିମତାର ସ୍ପର୍ଶରେ ସୁରୁଚିର ହୋଇପାରେ । କିନ୍ତୁ ସାଧାରଣ ମଣିଷର ଭାବନା ଯେଉଁ କଳାସୃଷ୍ଟି ମଧ୍ୟରେ ସ୍ୱାଭାବିକ ଓ ଅନାବିଳ ରୂପ ଲାଭ କରିଥାଏ, ତାହାହିଁ ପ୍ରକୃତ ଲୋକକଳା । ଏଥିରେ କୃତ୍ରିମତାର ସ୍ଥାନ ନାହିଁ । ଏଥିପାଇଁ ତୂଳିକାର ଆବଶ୍ୟକତା ହୁଏ ନାହିଁ କିମ୍ବା କଳାଗତ ବିଭିନ୍ନ ବାଦ ସଂପର୍କରେ ଜ୍ଞାନ ଆହରଣ କରିବାକୁ ପଡେ ନାହିଁ । ଲୋକଶିଳ୍ପୀ ନିଜର ଅନୁଭୂତି, ଚିନ୍ତା, ଆଶା ଆକାଂକ୍ଷା ପ୍ରଭୃତିକୁ ତା'ର ସ୍ୱତନ୍ତ୍ର ରୀତିରେ ରୂପଦାନ କରିଥାଏ । ଏହା ପୁରୁଷ ସୃଷ୍ଟ ହୋଇପାରେ କିମ୍ବା ନାରୀ ସୃଷ୍ଟ ହୋଇପାରେ । ଉଭୟଙ୍କ ଦ୍ୱାରା ସୃଷ୍ଟ ଲୋକକଳାର ପାର୍ଥକ୍ୟ ବାରିନେବା ଏକ ଦୁରୂହ ବ୍ୟାପାର ନୁହେଁ । ପୁରୁଷସୃଷ୍ଟ ଲୋକକଳାମଧ୍ୟରେ ନାରୀରସୌନ୍ଦର୍ଯ୍ୟ, ଶିକାରର ଚିତ୍ର, ଯୁଦ୍ଧ, ଯାତ୍ରା, ନୌବିହାର ପ୍ରଭୃତିକୁ ଅନ୍ତର୍ଭୁକ୍ତ କରାଯାଇପାରେ । କିନ୍ତୁ ନାରୀ ସୃଷ୍ଟ, ଲୋକକଳା ତା'ର କଳ୍ପିତ ଦେବ ଦେବୀ, ଗୃହ ଉପକରଣ, ଅଳଂକାର ପ୍ରଭୃତ ଭିତରେ ସୀମାବଦ୍ଧ । ଏହି ଲୋକକଳାର ନିଦର୍ଶନ କୌଣସି ସୁବିଖ୍ୟାତ କଳା ଗ୍ରନ୍ଥରେ ଦେଖିବାକୁ ମିଳିନପାରେ । ଏହା ପ୍ରତିଦିନ ଘରେ ଘରେ ସୃଷ୍ଟି ଲାଭ କରେ । ଏବଂ ସେହି ଦିନ ହିଁ ନିଶ୍ଚିହ୍ନ ହୋଇଯାଏ । ଲୋକକଳାର ପ୍ରକୃତ ସଂଗ୍ରାହକ ଲୋକକବି । ବିଭିନ୍ନ ଲୋକ ସାହିତ୍ୟରେ ଏହାର ସ୍ୱରୂପ ଓ ବିଶେଷତ୍ୱ ସଂପର୍କରେ ବହୁବିଧ ସୂଚନା ଦେଖିବାକୁ ମିଳିଥାଏ । ଓଡିଶାରେ ପ୍ରଚଳିତ ଥିବା ଏହି ଲୋକ କଳାର ସ୍ୱରୂପ ସେହିପରି ଓଡିଆ ଲୋକସାହିତ୍ୟ ମଧ୍ୟରେ ଉଜ୍ଜୀବିତ ।

ଉତ୍କଳୀୟ ନାରୀ ବର୍ଷର ପ୍ରତ୍ୟେକ ଦିନ ବିଭିନ୍ନ ଧରଣର ଚିତ୍ରକଳା ନିଜ ରୁଚି ଅନୁଯାୟୀ ଅଙ୍କନ କରିଥାଏ । ଏହି ସମସ୍ତ ଲୋକଚିତ୍ର ଆମର ସାମାଜିକ ଜୀବନ ସହ ଯେ ଏକାନ୍ତ ଭାବେ ସଂପୃକ୍ତ, ଏହାକୁ ଅସ୍ୱୀକାର କରାଯାଇନପାରେ । ସୁଖରେ ଜୀଇଁବା ପାଇଁ ତେଲ ଲୁଣର ହିସାବ ମଧ୍ୟରେ କାଣିଚାଏ ଆନନ୍ଦର କୈବଲ୍ୟ ପାଇବା ପାଇଁ କିମ୍ବା ଆପଣା ମନର ସୂକ୍ଷ୍ମ ରସାନୁଭୂତିକୁ ରୂପଦେବା ପାଇଁ ଲୋକଚିତ୍ରର ଜନ୍ମ ( ୧ ) ବୋଲି କୁହାଯିବା ଅସଂଗତ ନୁହେଁ ।

ଗାଁ ଗହଳିର ସରଳ ଓ ଅନାବିଳ ହୃଦୟର ସ୍ପନ୍ଦନ ମଧ୍ୟରୁ ଯେଉଁ ଚିତାର ଝରଣା ଝରିଯାଏ, ତାହା ଲୋକଚିତ୍ରର ଶୁଦ୍ଧରୂପ ( ୨ ) । ସାମାଜିକ ଚଳଣି, ବିବାହ ଉତ୍ସବ, ବନ୍ଧୁ ନିମନ୍ତ୍ରଣ, ପୂଜା ପର୍ବାଣି, ଓଷା ବ୍ରତ, ଯାନି ଯାତ୍ରା ପ୍ରଭୃତି ଦିନ ମାନଙ୍କରେ ପ୍ରତ୍ୟେକ ଓଡିଆ ପରିବାରରେ ଏହାର ଚିତ୍ରାବଳୀ ବିଭିନ୍ନ ରୂପରେ ନାରୀ ମାନେ ଅଙ୍କନ କରିଥିବାର ଦୃଷ୍ଟି ଗୋଚର ହୁଏ । ନାରୀ ଶିଳ୍ପୀର ମନକୁ ଯାହା ଆସେ, ସେ ଅବିରାମ ଗତିରେ ତାହା ଆଙ୍କି ଦିଇଯାଏ । ନିଜ ମନ ପସନ୍ଦ ହେବା ଯାଏଁ ସେହି ଚିତ୍ରକୁ ସେ ଆକର୍ଷଣୀୟ କରିବା ପାଇଁ ଚେଷ୍ଟା କରେ । ଉକ୍ତ ଚିତ୍ରକଳା ଶିକ୍ଷା କରିବା ପାଇଁ ନାରୀ ଅନ୍ୟଠାରୁ ଶିକ୍ଷା ବା ତାଲିମ ନିଏ ନାହିଁ । ସେ କେବଳ ଗାଁ ଦାଣ୍ଡରେ, ପୂଜା ପର୍ବରେ ପୂଜିତ ଠାକୁରଙ୍କ ବେଦୀ ଉପରେ ଅଙ୍କିତ ଚିତ୍ରକୁ ଅନୁଧ୍ୟାନ କରି ନିଜେ ହୁଏ ଲୋକଚିତ୍ରର ଶିଳ୍ପୀ । ଭାରତର ବିଭିନ୍ନ ଅଞ୍ଚଳର ଲୋକଚିତ୍ର ମଧ୍ୟରେ ଏକ ଅପୂର୍ବ ସାମଞ୍ଜସ୍ୟ ଦେଖିବାକୁ

ମିଳେ । ଏହାର କାରଣ ସ୍ୱରୂପ କୁହାଯାଇପାରେ ବିବାହିତା ଝିଅ ନିଜ ଅଞ୍ଚଳରୁ ବାହା ହୋଇ ଅନ୍ୟ ଅଞ୍ଚଳକୁ ଗଲାବେଳେ ସାଙ୍ଗରେ ସେ ଚିତ୍ରକଳା ନେଇ ଯାଇଥାଏ । ସେଗୁଡିକୁ ବିଭିନ୍ନ ଉତ୍ସବବାଦି ଦିନ ମାନଙ୍କରେ ଅଙ୍କନ କରି ସେ ଅଞ୍ଚଳରେ ନୂତନ ଚିତ୍ରର ପ୍ରଚଳନ କରିବା ଆରମ୍ଭ କରିଥାଏ । ଏହି ଲୋକଚିତ୍ର ଗୁଡିକ ଆମର ଧାର୍ମିକ ଜୀବନ ସହ ଓତଃପ୍ରୋତ ଭାବେ ଜଡିତ ।

ଧର୍ମର ବିରାଟ ଆବରଣକୁ ଖସାଇ ଦେଲେ ନିଛକ ସମାଜିକ ରୀତି ନୀତିର ଅଭିବ୍ୟକ୍ତି ଅଳ୍ପ ରହେ । ତାହାରି ମଧ୍ୟରୁ ଉପନୟନ, ବିଭାଘର, କର୍ଣ୍ଣବେଧ, କ୍ଷୀରି ନିମନ୍ତ୍ରଣ ପ୍ରଭୃତି ଗୋଟିଏ ସାମାଜିକ ବ୍ୟବସ୍ଥା । ସେଥିରେ ଚିତାର ମଣ୍ଡଣି ଥାଏ । ବିଭାଘର ସମୟରେ ମଙ୍ଗଳଚିତା ରୂପେ  ବର ପାଲିଙ୍କି, କନ୍ୟା ସବାରୀ, ପୂର୍ଣ୍ଣକୁମ୍ଭ , ଦଧିମାଛ, ଘଡି, ବାଡୁଅ ପାଣି, ଗାଧୁଆ ମଣ୍ଡପ, ପିଢ଼ା, ଅଳଂକାର ଇତ୍ୟାଦି ଚମତ୍କାର ରୂପେ ଚିତ୍ରିତ ହୋଇଥାଏ । ପୁଆଣି ସମୟରେ ଭାରହାଣ୍ଡି ଚିତ୍ର କରିବା କିମ୍ବା ବାଟହାଣ୍ଡି ଚିତ୍ର କରିବା ଓ ବିବାହ ସମୟରେ ନବବଧୂର ଶିଉଳି ଲିଖନ କିମ୍ବା ଗୁରୁଜନ ମାନଙ୍କ ପାଇଁ ଠାଆ ଭାଙ୍ଗିବା ଭିତର ଦେଇ ମନୋରଞ୍ଜନ କୋଟିକମ ସବୁ ଝରିପଡିଥାଏ (୩) । ଉପର୍ଯ୍ୟୁକ୍ତ ଲୋକକଳାର ଶିଳ୍ପୀରୂପେ ମୁଖ୍ୟତଃ ନାରୀ ମାନଙ୍କୁ ହିଁ ଗ୍ରହଣ କରାଯାଇଥାଏ ।

କୁମାରୀ ଠାରୁ ଆରମ୍ଭ କରି ବୃଦ୍ଧା ପର୍ଯ୍ୟନ୍ତ ସମସ୍ତେ ଏହି ଲୋକ ଚିତ୍ରର ସ୍ରଷ୍ଟା । ଆଜିକାଲିର ଆଧୁନିକା ରମଣୀ ମାନଙ୍କ ଠାରେ ଏହି କଳାବିଭବର ବିକାଶ ଦେଖିବାକୁ ମିଳୁନଥିଲେ ସୁଦ୍ଧା ଗ୍ରାମ୍ୟନାରୀର ହାତରୁ ଯେ ଏହାର ଅସଂଖ୍ୟ ଚିତ୍ର ଆପେ ଆପେ ଝରିପଡେ, କହିବା ଅନାବଶ୍ୟକ । ପଲ୍ଲୀ ଲଳନାର ଏହି ଚିତ୍ରାବଳୀରୁ ସେମାନଙ୍କ କଳା ନୈପୁଣ୍ୟ, ସୌନ୍ଦର୍ଯ୍ୟଜ୍ଞାନ ଓ ମନସ୍ତତ୍ତ୍ୱ ସହଜରେ ଉପଲବ୍ଧି କରିହୁଏ । ଏହା ସାଧାରଣ ଜନତା ମଧ୍ୟରେ ଏତେ ଲୋକପ୍ରିୟତା ହାସଲ କରିଥିଲା ଯେ ବାତ୍ସାୟନ କାମ ସୂତ୍ର ମଧ୍ୟରେ ଚଉଷଠୀ କଳାର (୪) ଉଲ୍ଲେଖ କଲାବେଳେ ଏହାକୁ ତାହାର ଅନ୍ତର୍ଭୁକ୍ତ କରିଛନ୍ତି ।

ଏହି ଲୋକଚିତ୍ର ନିମିତ୍ତ ଶିଳ୍ପୀକୁ ବିଶେଷ କିଛି ଖର୍ଚ୍ଚାନ୍ତ ହେବାକୁ କିମ୍ବା ପରିଶ୍ରମ କରିବାକୁ ପଡିନଥାଏ । ସାମାନ୍ୟ କେତୋଟି ରେଖାବିନ୍ଦୁ ମାଧ୍ୟମରେ ସମସ୍ତ ଲୋକଚିତ୍ରର ସୃଷ୍ଟି  ଏଥିପାଇଁ ବହୁମୂଲ୍ୟ ଉପାଦାନର ମଧ୍ୟ ଆବଶ୍ୟକ ହୁଏ ନାହିଁ । ଚାଉଳ ପିଠଉ, ମୁରୁଜ ଗୁଣ୍ଡ ଓ କିଛି ସାଧାରଣ ରଙ୍ଗ ହିଁ ଏଥିପାଇଁ ଯଥେଷ୍ଟ । ନାରୀର ଅନାମିକା ଅଙ୍ଗୁଳି (ଝୋଟି ପାଇଁ), ତର୍ଜନୀ ଅଙ୍ଗୁଳି (ମୁରୁଜ ପାଇଁ) ଓ ବୃଦ୍ଧାଙ୍ଗୁଳିର ଚାଳନାରେ ବିଭିନ୍ନ ପ୍ରକାର ଝୋଟି କିମ୍ବା ଚିତା ଅଙ୍କିତ ହୋଇଥାଏ । ନାରୀ ସୃଷ୍ଟ ଏହି ଲୋକଚିତ୍ରର ଯେଉଁ ପରିଚୟ ଲୋକସାହିତ୍ୟରୁ ଉପଲବ୍ଧ ହୁଏ , ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଏହାକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା : ଝୋଟି ଚିତା, ମୁରୁଜ ଚିତା ଓ କୁଟେଇ ଚିତା । ଝୋଟି ଓ ମୁରୁଜ ଚିତା କ୍ଷଣସ୍ଥାୟୀ ଥିବାବେଳେ କୁଟେଇ ଚିତା ସ୍ଥାୟୀ ଅଟେ । ଏହି ଚିତା ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ଅଙ୍କନ କରାଯାଏ । ଝୋଟିଚିତା ଠାରୁ ମୁରୁଜ ଚିତାର ପ୍ରଚଳନ ବ୍ୟାପକ । କାରଣ ଦୈନନ୍ଦିନ ଜୀବନରେ ମୁରୁଜ ଚିତା ଦେବା ଝୋଟି ଚିତା ଠାରୁ ସହଜ । ଏହି ଚିତା ଗୁଡିକ ସକାଳ ଓ ସଂଜରେ ପକାଯାଇଥାଏ । ଚିତା ପକାଇବା ପୂର୍ବରୁ ନାରୀ ଉପଯୁକ୍ତ ସ୍ଥାନ ନିର୍ବାଚନ କରେ । ଯେଉଁଠି ପାରୁ ସେଇଠି ଚିତା ପକାଯାଏ ନାହିଁ । ମୁଖ୍ୟତଃ ବାରଣ୍ଡାର ସମ୍ମୁଖରେ, ବାଡି ବାରଣ୍ଡାରେ, ପୂଜାସ୍ଥାନରେ ଓ ଏରୁଣ୍ଡିବନ୍ଧ ଉପରେ ନାରୀମାନେ ଚିତା ପକାଇଥାନ୍ତି । ଚିତା ପକାଇବା ପୂର୍ବରୁ ନିର୍ବାଚିତ ସ୍ଥାନକୁ ଗୋମୟ ଜଳ କିମ୍ବା ଗେରୁରେ ଲିପାଯାଏ (୫) । ଧର୍ମଭୀରୁ ନାରୀପାଇଁ ଗୋବର ପବିତ୍ରତାର ପ୍ରତୀକ । ଏହା ବ୍ୟତୀତ ବୈଜ୍ଞାନିକ ଦୃଷ୍ଟିକୋଣରୁ

ଦେଖିଲେ ଗୋବର ଜୀବଣୁ ନାଶକ ଏବଂ ବିଷାକ୍ତ ସର୍ପ ପାଇଁ ପ୍ରତିରୋଧକର କାର୍ଯ୍ୟ କରେ । ଗୋବର ଲିପିବା ଦ୍ୱାରା ସ୍ଥାନଟି ନିର୍ମଳ ଓ ପବିତ୍ର ରହେ । ଫଳରେ ତା'ରି ଉପରେ ଅଙ୍କିତ ଚିତ୍ର (ଝୋଟି) ସୁନ୍ଦର ତଥା ଆକର୍ଷଣୀୟ ଦେଖାଯାଏ । କେହି କେହି ଗୋବର ଲିପି ସାରିବା ପରେ ଝୋଟି ଦେବା ସ୍ଥାନକୁ ଡ଼ଉ (Red Mud) ରଙ୍ଗରେ ରଙ୍ଗୀନ କରିଥାନ୍ତି । ଅବଶ୍ୟ ମୁରୁଜଚିତା ପାଇଁ ଏହାର ଆବଶ୍ୟକତା ନାହିଁ । ପିଠଉ ଝୋଟି ନିମିତ୍ତ ଏହାଯେ ଏକାନ୍ତ ଆବଶ୍ୟକ କହିବା ନିଷ୍ପ୍ରୟୋଜନ । ବର୍ତ୍ତମାନ ନିମ୍ନରେ ଝୋଟିଦବା ଓ ଚିତା ପକାଇବାର ସମୟ ଓ ପ୍ରକାରଭେଦକୁ ଦୁଇଟି ସାରଣୀ ମାଧ୍ୟମରେ ଉପସ୍ଥାପନ କରାଯାଉଛି ମାତ୍ର ।

ସକାଳ ଓ ସଂଜ ଓଡିଆଣୀ ମାନଙ୍କ ପାଇଁ ଚିତା ଦେବାର ପ୍ରକୃଷ୍ଟ ସମୟ । ଏହି ଚିତା ଭାରତର ବିଭିନ୍ନ ପ୍ରଦେଶରେ ବିଭିନ୍ନ ନାମରେ ନାମିତ । ରାଜସ୍ଥାନରେ ମେହେନ୍ଦୀ ମାଡନେ, ଗୁଜୁରାଟରେ ରାଙ୍ଗୋଡି, କର୍ଣ୍ଣାଟକରେ ରାଙ୍ଗୋଲି, ଉତ୍ତର ପ୍ରଦେଶରେ ଚୌକ ପୂରନା, ବିହାରରେ ଏଁପନ, ବଙ୍ଗଳାରେ ଆଲପନା, ଆନ୍ଧ୍ର ପ୍ରଦେଶରେ ମୁଗ୍ଗୁ, ଓଡିଶାରେ ଏହା ଝୋଟି ବା ଚିତା ନାମରେ ନାମିତ ବର୍ତ୍ତମାନ ଝୋଟି ମଧ୍ୟରୁ ମୁରୁଜ ଝୋଟି ସଂପର୍କରେ ଆଲୋଚନା କରାଯାଉଛି ।

ଏକ ପ୍ରକାର ପଥରକୁ ଗୁଣ୍ଡକରି ମୁରୁଜ ପ୍ରସ୍ତୁତ କରାଯାଏ । କେହି କେହି ଏହି ମୁରୁଜରେ ବିଭିନ୍ନ ରଙ୍ଗ ମିଶ୍ରଣ କରିଥାନ୍ତି । ପ୍ରତିଦିନ ସକାଳ ଓ ସଂଜବେଳେ ନାରୀମାନେ ଦାଣ୍ଡବାରଣ୍ଡାର ପାହାଚରେ, ବାରି ବାରଣ୍ଡାର ପାହାଚରେ ମୁରୁଜ ଚିତା ପକାଇଥାନ୍ତି । ଏହି ପ୍ରକାର ଚିତାକୁ ଦୈନନ୍ଦିନ ଚିତା କୁହାଯାଏ । ବୃଦ୍ଧ ଓ ତର୍ଜନୀର ମଧ୍ୟଦେଇ ଏକ ସରଳ ରେଖାରେ ମୁରୁଜ ଖସିପଡେ । ଏହି ରେଖାଗୁଡିକୁ ସଂଯୋଗ କରି ଚିତା ପକାଯାଏ । ମୁରୁଜରେ ମଧ୍ୟ ବିଭିନ୍ନ ଲୌକିକ ଦେବଦେବୀ, ପଶୁପକ୍ଷୀ, ପାଦପଦ୍ମ, ବୃକ୍ଷ ଲତାପରି ଅନେକ ଚିତ୍ର ଅଙ୍କନ କରାଯାଉଥିବାର ଦେଖିବାକୁ ମିଳେ । ତିନୋଟି ସରଳ ରେଖାକୁ ତ୍ରିକୋଣାକାରରେ ଆଙ୍କି ଉପରକୁ ମୁହଁ କରିଥିବା ସରଳ ରେଖା ଉପରେ ପାଞ୍ଚଗୋଟି ଛୋଟଛୋଟ ସରଳରେଖା ଟଣାଯାଇ ତାହାକୁ ଲକ୍ଷ୍ମୀପାଦ ବୋଲି ଚିହ୍ନିତ କରାଯାଏ । ଏହିପରିଭାବେ ନାରୀମାନେ ବହୁବିଧ ଚିତା ନିଜର କଳ୍ପନାନୁଯାୟୀ ସୃଷ୍ଟି କରିଥାନ୍ତି ।

ମୁରୁଜ ଚିତା କ୍ଷଣସ୍ଥାୟୀ । ଟିକିଏ ଜୋରରେ ପବନ ବହିଲେ କିମ୍ବା ହାତ ଗୋଡ ବାଜିଲେ ତାହା ଲିଭିଯାଏ । ଏହି ମୁରୁଜ ଚିତା ସହ ଏକ ପ୍ରକାର ଲୋକ ବିଶ୍ୱାସ ମଧ୍ୟ ଜଡିତ । ଦାଣ୍ଡ ବାରଣ୍ଡାରେ ଦିଆଯାଇଥିବା ଝୋଟି ଯଦି ପିଲାଙ୍କ ହାତ ଗୋଡ ବାଜି ଲିଭିନଯାଏ ତେବେ ସେହି ଘରୁ ଯୋଗୀ ଭିକାରି ଭିକ୍ଷାନିଅନ୍ତି ନାହିଁ । କାରଣ ସନ୍ତାନହୀନ ପରିବାରରୁ ଭିକ୍ଷାନେବା ପାଇଁ ମଧ୍ୟ ବାରଣ କରାଯାଇଛି । ଏଣୁ ଏହି ଚିତା ଦେବାପରେ ତାହାଯଦି ଅକ୍ଷୁର୍ଣ୍ଣ ରହେ ତେବେ ତାହା ଅମଙ୍ଗଳ ସୂଚକ । ଫଳରେ ସରଳମନା ସନ୍ତାନବତୀ ନାରୀ ମଧ୍ୟ ଏଥିପାଇଁ ପରିବାରର ମଙ୍ଗଳ କାମନା ଉଦ୍ଦେଶ୍ୟରେ ମୁରୁଜରେ ଚିତାପକାଇ ଥାଏ । ଏଥିରେ ଚିତା ପକାଇବା ଦ୍ୱାରା କିଛି ସମୟପରେ ତାହା ପବନ କିମ୍ବା କାହାର ହେଲେ ହାତଗୋଡ ବାଜି ଲିଭିଯିବ ଏବଂ ଗୃହସ୍ୱାମୀ ଅମଙ୍ଗଳରୁ ମୁକ୍ତି ପାଇବେ । ଏହିପରି ଗୃହର ଶାନ୍ତି ଓ ମଙ୍ଗଳ ରଙ୍ଗୋଲି ଆଣିଦେଇଥାଏ ବୋଲି ଏଯାଏଁ କର୍ଣ୍ଣାଟକର ଲୋକ ସମାଜରେ ଏହିବିଶ୍ୱାସ ନିହିତ (୬) ।

ଘରବାରଣ୍ଡାରେ ମୁରୁଜ ଚିତା ଦେବା ବ୍ୟତୀତ ନାରୀମାନେ ପ୍ରତିଦିନ ଚଉରା ମୂଳରେ ଚିତା ପକାଇବା ଏକବିଧି (୭) । ବିଭିନ୍ନ ଓଷା - ବ୍ରତ, ଯାନି-ଯାତ୍ରା ଉତ୍ସବ ପ୍ରଭୃତି ଦିନମାନଙ୍କରେ ମଧ୍ୟ ଗୃହର ବିଭିନ୍ନ ସ୍ଥାନରେ ମୁରୁଜ ଚିତା ଦିଆଯାଇଥିବା ଦେଖିବାକୁ ମିଳେ । ସୁଦଶା ବ୍ରତରେ ନାରୀ ମାନେ ସକାଳୁ ସ୍ନାନ ପୂର୍ବକ ଦିଅଁଙ୍କ ଘର ଲିପା ପୋଛା କରି ଦଶବର୍ଣ୍ଣ ମୁରୁଜରେ ମଣ୍ଡପ ଲେଖିବା, ଦଶ ପାଖୁଡାର

ପଦ୍ମ କାଟିବା (୮), ଅନନ୍ତ ବ୍ରତଦିନ ପଞ୍ଚ ମୁରୁଜରେ ଶଂଖ, ଚକ୍ର, ଗଦା, ପଦ୍ମ ପ୍ରଭୃତି ଅଙ୍କନ କରିବା (୯), ଚଉରାମୂଳ ଲିପାପୋଛା କରି ରଙ୍ଗ ମୁରୁଜରେ ମଣ୍ଡଳ କାଟିବା (୧୦), କାର୍ତ୍ତିଅଂଳା ଓଷାରେ ପିଢ଼ା ଧୋଇ ତା' ଉପରେ ମୁରୁଜରେ ଚିତା ଲେଖିବା (୧୧), ରାଇଦାମୋଦର ବ୍ରତରେ କୃଷ୍ଣପକ୍ଷ ପ୍ରତିପଦା ଠାରୁ ଶୁକ୍ଲପକ୍ଷ ନବମୀ ପର୍ଯ୍ୟନ୍ତ - ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ଛତି, ତରାସ, ଆଲଟ, ଚାମର, ପତାକା, ଆକାଶ ଦୀପ, ଶଂଖ, ଚକ୍ର, ଗଦା, ପଦ୍ମ, ଧ୍ୱଜ, ଅକ୍ଷତ, ଦୁବ, ବଳିତା, କୁଡୁଆ, ଘର, ଭୋଗମଣ୍ଡପ, ସଂକୀର୍ତ୍ତନ ଦଳ, କୁଡୁଆ ବାଲାଲୋକ, ଗୋବରୁଣୀ, ଚାରିଦ୍ୱାରପାଳ, ପଞ୍ଚବଟ, ଗରୁଡ ଖମ୍ବ, ଅରୁଣ ଖମ୍ବ ଏବଂ କାପ୍ତା କାପ୍ତି ମୁରୁଜ ଦିଆଯାଏ । ଶୁକ୍ଲପକ୍ଷ ନବମୀ ଠାରୁ ପୂର୍ଣ୍ଣମା ଯାଏଁ କାପ୍ତା କାପ୍ତି ପରିବର୍ତ୍ତେ ବଗ ବଗୁଲି, ଲକ୍ଷ୍ମୀ ନାରାୟଣ ଓ ରାଧା ଦାମୋଦର ମୂର୍ତ୍ତି ମୁରୁଜରେ ଅଙ୍କନ କରାଯାଉଥିବା ଦେଖାଯାଏ (୧୨) । ଓଷାଦିନ ବ୍ୟତୀତ ଶ୍ରାଦ୍ଧ ଦିବସରେ ମଧ୍ୟ ପିଣ୍ଡ ସ୍ଥାନରେ ମୁରୁଜରେ ରେଖାଙ୍କି ଚିତ୍ର କାଟୁଥିବା ପରିଦୃଷ୍ଟ (୧୩) । ପିଣ୍ଡ ସ୍ଥାନରେ ସାଧାରଣତଃ ମୁରୁଜ ବ୍ୟତୀତ ଅରୁଆ ଚାଉଳ ଚୂନାରେ ମଣ୍ଡଳ କାଟିବା ଓଡିଆ ଘରମାନଙ୍କର ଏକ ପରମ୍ପରା । ଏହାଛଡା ନିମନ୍ତ୍ରିତ ବନ୍ଧୁ, ମୁଖ୍ୟତଃ ଜ୍ୱାଇଁ ମାନଙ୍କୁ 'ଠା' ପିଢ଼ା ' କରି ଭୋଜନ ଦେବା ପ୍ରଥା ଅଦ୍ୟାପି ରକ୍ଷଣଶୀଳ ଓଡିଆ ପରିବାର ମଧ୍ୟରେ ଦେଖାଯାଇଥାଏ । ଭୋଜନ ପରିବେଷଣ ପୂର୍ବରୁ ନିର୍ବାଚିତ ସ୍ଥାନକୁ ଲିପାପୋଛା କରି ପ୍ରଥମେ ମୁରୁଜରେ ଚିତା ଦିଆଯାଏ । ସେହି ଚିତା ଉପରେ ଭୋଜନ ପାତ୍ର ରଖାଯାଏ । 'ଠା' ପିଠା ସମୟରେ ନାରୀମାନେ ପକାଉଥିବା ମୁରୁଜଚିତାରୁ ସେମାନଙ୍କର କଳାଜ୍ଞାନ ସଂପର୍କରେ ଏକ ସ୍ୱଚ୍ଛଧାରଣା ଲୋକମନରେ ଜାଗରିତ ହୁଏ ।

ପୁରୁଷ ଅଙ୍କିତ ଲୋକକଳା ଠାରୁ ନାରୀଅଙ୍କିତ ଲୋକକଳା ବାସ୍ତବତାର ଅତି ନିକଟ ବର୍ତ୍ତୀ ବୋଲି କୁହାଯାଇପାରେ । ଏ ଯାଏଁ ଓଡିଶାର ବିଭିନ୍ନ ଗ୍ରାମ୍ୟ ସମାଜରୁ ଚିତା ସଂପର୍କରେ ବିଭିନ୍ନ ତଥ୍ୟ ସଂଗ୍ରହ ହୋଇପାରିନାହିଁ । ସଂସ୍କୃତି ବିଭାଗ ଏ ଦିଗରେ ବିଶେଷଧ୍ୟାନ ଦେଲେ ଲୁପ୍ତ ପ୍ରାୟ ଉତ୍କଳୀୟ ସଂସ୍କୃତର ପୁନରୁତ୍‌ଥାନ ହୋଇପାରିବ ବୋଲି ଆଶା କରାଯାଉଛି ।

୧. ଓଡିଶୀ ଚିତ୍ର : ବିନୋଦ ରାଉତ ରାୟ, ଝଂକାର , ୯ମ ବର୍ଷ ୯ମ ସଂଖ୍ୟା ପୃଷ୍ଠା ୮୮୫ ।

୨. ଓଡିଶୀ ଚିତ୍ର : ବିନୋଦ ରାଉତରାୟ, ଝଙ୍କାର ୯ମ ବର୍ଷ ୯ମ ସଂଖ୍ୟା, ପୃଷ୍ଠା ୮୮୫ ।

୩. ତତ୍ରୈବ ; ୯ମ ବର୍ଷ ୧୦ମ ସଂଖ୍ୟା ପୃଷ୍ଠା ୯୨୩ ।

୪. ଗୀତ, ବାଦ୍ୟ, ନୃତ୍ୟ, ନାଟ୍ୟାଭିନୟ, ଆଲେଖ୍ୟ ବା ଚିତ୍ରଣ, ବିଶେଷକ ଛେଦ ବା ଚିତା ଲେଖା, ଚାଉଳ ଓ ଫୁଲରେ ଚିତ୍ର ରଚନା, ପୁଷ୍ପାସ୍ତରଣ, ଦଶନବାସନାଙ୍ଗରାଗ, ମଣି ଭୂମିକା, ଶୟନ ରଚନା, ଉଦକ ବାଦ୍ୟ (ଜଳ ତରଙ୍ଗ ବାଦ୍ୟ), ଉଦକ ଘାତ (ସୁବାସିତ ଜଳ ସେଚନ), ଚିତ୍ର ଯୋଗ (ବୃଦ୍ଧ, ଯୁବକ ଆଦିଙ୍କ ଅବସ୍ଥା ପରିବର୍ତ୍ତନ କରିବା), ମାଲ୍ୟ ଗ୍ରନ୍ଥନ, କେଶ ଶେଖରୀ ପୀଡ ଯୋଜନ (ମୁଣ୍ଡରେ ଫୁଲ ସଜାଇବା), ନେପଥ୍ୟ ଯୋଗ (ଦେଶ, କାଳ, ପାତ୍ରାନୁସାରେ ବସ୍ତ୍ର ଭୂଷଣାଦି ପରିଧାନ), କର୍ଣ୍ଣ ପତ୍ରଭଙ୍ଗ (କାନକୁ ବେଶ ଦ୍ୱାରା ଶୋଭିତ କରିବା), ସୁଗନ୍ଧ ଯୋଜନ ଭୂଷଣ, ଇନ୍ଦ୍ରଜାଲ, କୌଚୁମାରଯୋଗ (ଅସୁନ୍ଦରକୁ ସୁନ୍ଦର କରିବା), ହସ୍ତ ଲାଘବ, ନାନା ପ୍ରକାର ଶାକ ବ୍ୟଞ୍ଜନାଦି ପ୍ରସ୍ତୁତି କରଣ, ପ୍ରପାନକ ପ୍ରସ୍ତୁତି କରଣ, ସୂଚୀ କର୍ମ (ଛୁଞ୍ଚିରେ ନାନା ପ୍ରକାର କାରିଗରୀ), ସୂଚୀକର୍ମ, ପ୍ରହେଳିକା ପ୍ରତିମାଳା ବା ଶ୍ଳୋକାନ୍ତ ଆବୃତ୍ତି, ଦୁର୍ବାଚକ ଯୋଗ (କଠିଣ ଶବ୍ଦ ବା କାବ୍ୟର ତାତ୍ପର୍ଯ୍ୟ ବାହାର କରିବା, କାବ୍ୟ ସମସ୍ୟା ପୂର୍ତ୍ତି, ବେତରେ ପଟୀ ଓ ଖଟର ଲେବାର ଆଦି ବୁଣିବା, ତର୍କୁକର୍ମ (ଟାକୁଡି), ବଢ଼େଇ କାମ, ଗୃହ ନିର୍ମାଣ, ଧାତୁ ଓ ରତ୍ନ ପରୀକ୍ଷା, ଧାତୁବାଦ (ମିଶ୍ରିତ

ଧାତୁରୁ ଅସଲ ଧାତୁ ପୃଥକ୍ କରିବା), ମଣିରା ବିଜ୍ଞାନ, ଖଣିବିଦ୍ୟା, ବୃକ୍ଷାୟୁର୍ବେଦ ଯୋଗ, ମେଷ କୁକ୍କୁଟ ଲାବକ ଯୁଦ୍ଧ ବିଦ୍ୟା, ଶୁକ ସାରିକା ପ୍ରପାଳକ, ଉତ୍ସାଦନ ବା ସୁଗନ୍ଧ ଲେପନ, କେଶ ମାର୍ଜନ କୌଶଳ, ଅକ୍ଷର ମୁଷ୍ଟିକା କଥନ, ମ୍ଳେଚ୍ଛ ଭାଷା ଜ୍ଞାନ, ଦେଶ ଭାଷା ଜ୍ଞାନ, ଦୈବୀ ଘଟନାରୁ ଭବିଷ୍ୟତ ବିଷୟ ଜାଣିବା, ଯନ୍ତ୍ର ନିର୍ମାଣ, ଧାରଣ, ମାତୃକା , ଅନ୍ୟର ପଢ଼ିବା ଦେଖି ସେହିପରି ପଢ଼ାଯିବା, ଅନ୍ୟର ମନ ଅନୁସାରେ କବିତା ରଚନା, କ୍ରିୟା ବିକଳ୍ପ ଛଳିତକ ଯୋଗ (ନାଟକ ବିଶେଷ), ଅଭିଧାନ କୋଷ ଛନ୍ଦୋଜ୍ଞାନ, ବସ୍ତ୍ର ଗୋପନ, ବାଳକ୍ରୀଡା କ୍ରମ, ଦ୍ୟୁତ କ୍ରୀଡା, ବିନୟ ଓ ଶିଷ୍ଟାଚାର, ପଶା ଆଦି କ୍ରୀଡା, ବୈଦୟିକୀ ବିଦ୍ୟାଜ୍ଞାନ, ବୈତାଳିକ ବିଦ୍ୟାଜ୍ଞାନ । ''

(ସହକାର : ବିଂଶ ଭାଗ, ଅଷ୍ଟମ, ନବମ ସଂଖ୍ୟା, ପୃଷ୍ଠ ୭୩୫)

୫. ରବିନାରାୟଣ ବ୍ରତ କଥା - ଓଡିଶାର ଓଷା ବ୍ରତ କଥା ; ପୃଷ୍ଠା ୪୬ ।

୬. Rangoli signfies symbolically the peace and prosperity of the house, if we dont find Rangoli in front of any house, it is signifies that some certain inauspicies or infelicitious events occurred to that house."

(Folk arts craft : Note on the floor drawings of Karnatak, Page-86)

୭. କୁଆଁର ପୂନେଇଁ ଗୀତ - ୫ ପଲ୍ଲୀଗୀତି ସଂଚୟନ (ପ୍ରଥମ ଭାଗ) ପୃଷ୍ଠା ୪୯୧

୮. ସୁଦଶା ବ୍ରତ କଥା - ଓଡିଶାର ଓଷା ବ୍ରତ କଥା - ପୃଷ୍ଠା - ୦୧

୯. ଅନନ୍ତ ବ୍ରତ କଥା - ଲୋକଗଳ୍ପ ସଂଚୟନ, ପୃଷ୍ଠା - ୪୭୮

୧୦. ଅନନ୍ତ ବ୍ରତ କଥା - ଓଡିଶାର ଓଷା ବ୍ରତ କଥା , ପୃଷ୍ଠା - ୩୮

୧୧. କାଞ୍ଜିଅଂଳା ଓଷା କଥା - ତତ୍ରୈବ, ପୃଷ୍ଠା ୩୩

୧୨. ଓଡିଶି ଚିତ୍ର - ବନୋଦ ରାଉତରାୟ, ପୃଷ୍ଠା - ୪୧

୧୩. ସିଂହରାଜାଙ୍କ ଶିରାଧ ପୁରୋହିତଙ୍କ ବିରାଜ - ଲୋକଗଳ୍ପ ସଂଚୟନ - ଡଃ. କୁଂଜବିହାରୀ ଦାଶ, ପୃଷ୍ଠା - ୨୬

*ମୁଖ୍ୟ ଅଧ୍ୟାପକ, ଓଡିଆ ଭାଷା ଓ ସାହିତ୍ୟ ବିଭାଗ*
*ମା ମାର୍କମା ମହାବିଦ୍ୟାଳୟ, ବିଷମକଟକ, ଜି: ରାୟଗଡା - ୭୬୫୦୧୯*

# ‘ଓଡିଆ କାବ୍ୟ କୌଶଳ’ରେ ବିଷୟ ବିମର୍ଶ

ଡଃ. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା

‘ଓଡିଆ କାବ୍ୟ କୌଶଳ’ ଗ୍ରନ୍ଥଟି ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ପି.ଏଚ.ଡି. ସନ୍ଦର୍ଭ ରୂପେ ରଚିତ ହୋଇଥିଲା । ଏହାର ପ୍ରଥମ ସଂସ୍କରଣର ପ୍ରକାଶକୀୟ ଘୋଷଣାନାମାର ତାରିଖ ମାର୍ଚ୍ଚ ୨୯, ୧୯୮୩ । ଡକ୍ଟର ଆଚାର୍ଯ୍ୟ ତାଙ୍କ ପି.ଏଚ.ଡି. ପରୀକ୍ଷା ନିମିତ୍ତ ଗଭୀର ଆନ୍ତରିକତା ସହିତ ସମଗ୍ର ସତୁରୀ ଦଶକ ବ୍ୟାପୀ ଗବେଷଣାର ଇଚ୍ଛିକୁ ଅଙ୍ଗୀକୃତ କରି ଏ ଗ୍ରନ୍ଥ ରଚନା କରିଥିଲେ । ଆମୂଳଚୂଳ ଏହି ସନ୍ଦର୍ଭରେ ଯେତେ ପ୍ରସଙ୍ଗ ଆଲୋଚିତ ହୋଇଛି ପ୍ରତ୍ୟେକଟିର ଅବଧାରଣ ଏବଂ ବିଷୟ ବିଶ୍ଳେଷଣ ଯେପରି ପ୍ରାଞ୍ଜଳ ତଥା ଯୁକ୍ତିନିଷ୍ଠ ହୋଇଛି, ତହିଁରୁ ଗବେଷକ ଭାବରେ ଡକ୍ଟର ଆଚାର୍ଯ୍ୟଙ୍କ ଅଧ୍ୟୟନର ଗଭୀରତା ତଥା ତଜ୍ଜନିତ ଅବବୋଧର ସ୍ୱଚ୍ଛତା ଛତ୍ରେ ଛତ୍ରେ ପ୍ରତିଫଳିତ ହୋଇଛି । କାବ୍ୟର କୌଶଳ ତାଙ୍କର ପ୍ରତ୍ୟକ୍ଷ ଆଲୋଚ୍ୟ, କିନ୍ତୁ ତାହାର ଭିତ୍ତିଭୂମି ରୂପେ ଡକ୍ଟର ଆଚାର୍ଯ୍ୟ ଯେତେଗୁଡିଏ ପ୍ରକରଣର ଆଲୋଚନା ଅପରିହାର୍ଯ୍ୟ ମନେ କରିଛନ୍ତି, ସେହି ପ୍ରକରଣମାନଙ୍କରେ ବକ୍ତବ୍ୟ ବିଷୟର ବାହୁଲ୍ୟ ଯୋଗୁଁ ଅବତରଣିକା ଦୀର୍ଘ ହୋଇଯିବା ଭୟରେ ଲେଖକ ବାରଂବାର କୈଫିୟତ୍ ଦେଲା ଭଳି ଭାଷାରେ କହିଛନ୍ତି, “ ଆମେ...ବାଧ୍ୟ ହୋଇଛୁଁ । ” ଅବତରଣିକାର ବହୁକଥନ ସତେ ଯେପରି ଅସହ୍ୟ ହୋଇଛି; କିନ୍ତୁ ବସ୍ତୁତଃ, ବିଷୟଟିର ସାଙ୍ଗୋପାଙ୍ଗ ଉପସ୍ଥାପନ ଦୃଷ୍ଟିରୁ ତାହା ଅନିବାର୍ଯ୍ୟ ହୋଇଛି । ପରିଶେଷରେ ସେହି ସକଳ ଆଲୋଚନା ଯୋଗୁଁ ସମଗ୍ର ଗ୍ରନ୍ଥଟିର ସାମୂହିକ ଉପଯୋଗିତା ସୁସଂପନ୍ନ ହୋଇଛି ଏହା ବି ସତ୍ୟ ।

ଗ୍ରନ୍ଥ ପ୍ରବେଶରେ ଲେଖକ ଆପଣାର ଆଲୋଚ୍ୟ ବିଷୟର ଉପସ୍ଥାପନା କରନ୍ତି : “ (ଆଲୋଚ୍ୟ ଏକ ଶତାବ୍ଦୀର) ସମାଲୋଚକମାନେ କାବ୍ୟର ବିଷୟ ବସ୍ତୁ ଭିତରେ ଯାହା କିଛି ଦେଖିବାକୁ ପାଇଛନ୍ତି ତାକୁ ହିଁ ନିଜ ନିଜ ଅନୁସୃତ ପଦ୍ଧତି ଅନୁସାରେ ବିଚାର କରିଛନ୍ତି । କାବ୍ୟର ଭାଷା, ବିଷୟବସ୍ତୁ, ଚରିତ୍ରଚିତ୍ରଣ, ଧର୍ମମତବାଦ, କବିଙ୍କ ମାନସିକ ଅଭିମୁଖ୍ୟ, କାବ୍ୟବିକାଶର ଐତିହାସିକ ପୃଷ୍ଠଭୂମି ସହିତ କାବ୍ୟରେ ବ୍ୟବହୃତ ରୀତି, ଗୁଣ, ରସ, ଧ୍ୱନି - ଏହିପରି ବିଷୟଗତ ଉପାଦାନ ଥିଲା ସେ ସମାଲୋଚନାର ପ୍ରଧାନ ଅବଲମ୍ବନ । ସ୍ଥୂଳତଃ, ଏପରି ଆଲୋଚନା ହେଉଛି ପୂର୍ଣ୍ଣତଃ ବସ୍ତୁଧର୍ମବିଷୟ ନିଷ୍ଠ; କାବ୍ୟ ଭିତରେ କବି ‘କ’ଣ’ ଲେଖିଛନ୍ତି - ଏପରି ଏକ ପ୍ରଶ୍ନର ସମାଧାନ କେବଳ ଆମେ ସେଇ ଆଲୋଚନାରେ ଦେଖିବାକୁ ପାଉଁ । କିନ୍ତୁ କବି କାବ୍ୟ ଭିତରେ ସେ ‘କ’ଣ’କୁ ‘କିପରି’ ରୂପାୟିତ କରିଛନ୍ତି - ଏପରି ଏକ ପ୍ରଶ୍ନର ସମାଧାନ ସେଇ ଆଲୋଚନାରେ କେବେ ପ୍ରାଧାନ୍ୟ ଲାଭ କରିନଥିଲା କହିଲେ ଚଳେ । ”

ଡକ୍ଟର ଆଚାର୍ଯ୍ୟଙ୍କ ଏହି ମତ ଆଦୌ ଅଯଥାର୍ଥ ନୁହେଁ । ଏବଂ ଏହି ଉପଲବ୍ଧି ଯୋଗୁଁ ସେ ସେହି ‘କିପରି’ ପ୍ରଶ୍ନକୁ ଆପଣା ଜିଜ୍ଞାସା କୋଟାରେ ରଖି କାର୍ଯ୍ୟାରମ୍ଭ କରିଛନ୍ତି ।

ତାଙ୍କର ଏହି କିପରି ତତ୍ତ୍ୱକୁ ସ୍ପଷ୍ଟ କରିବାକୁ ଯାଇ ସେ କାବ୍ୟକୁ ଏକ ସ୍ଥାପତ୍ୟ ସହ ତୁଳନା କରିଛନ୍ତି । କବି ଏହାର ସ୍ଥପତି, ଚାରୁତ୍ୱ ଯୁକ୍ତ ଶବ୍ଦ, ଅର୍ଥ, ଭାବ , ଅନୁଭବ, ଜ୍ଞାନ ଏହାର ଇଟା, ବାଲି, ସିମେଣ୍ଟ ପ୍ରଭୃତି ଉପାଦାନ ସହ ତୁଳନୀୟ । ଗୃହ ନିର୍ମାଣରେ ଲୋଡା ହୁଏ ପ୍ଲାନ୍, ଡିଜାଇନ୍ ବା ନକସା । ତାହାରି ଅନୁସରଣରେ ମାଟି ଉପରେ ସୌଧର ନିର୍ମାଣ ବେଳେ ତଥାପି ଆବଶ୍ୟକ ହୁଏ ନିର୍ମାଣ - କଳା । ସେହିପରି ସଂଗୃହୀତ ଶବ୍ଦାର୍ଥ ପ୍ରଭୃତି ଉପକରଣର ଯଥାଯଥ ବିନ୍ୟାସ କଳ୍ପେ ପ୍ରତିଭାଧର କବି ଏକ ପରିକଳ୍ପନା କରନ୍ତି ଏବଂ ତାହାର ରୂପାୟନ ନିମିତ୍ତ ସୌନ୍ଦର୍ଯ୍ୟାନୁଭୂତିର ଆଧାରରେ କାବ୍ୟର ଆତ୍ମାର ସୂଚନୋପଯୋଗୀ ଅଙ୍ଗଉପାଙ୍ଗର ସନ୍ନିବେଶ କରନ୍ତି । ଏହି କାର୍ଯ୍ୟରେ ତଥାପି ଲୋଡା ହୁଏ ତାଙ୍କର କଳାନିପୁଣତା । କାବ୍ୟ ନିର୍ମାଣ ସଂପର୍କୀୟ ଏହି ସମଗ୍ର ପଦ୍ଧତିହିଁ ଡକ୍ଟର ଆଚାର୍ଯ୍ୟଙ୍କ 'କିପରି' ତତ୍ତ୍ୱ । ସାଧାରଣଙ୍କ ବୋଧ ଗମ୍ୟ କରିବା ନିମିତ୍ତ ଏହାକୁ ସେ "ଟେକ୍‌ନିକ୍" ବୋଲି କହିଛନ୍ତି ଏବଂ ନିଜ ଭାଷାରେ କହିଛନ୍ତି 'କାବ୍ୟ - କୌଶଳ' । ଟେକ୍‌ନିକ୍ ହେଉଛି (Method of performance) କ୍ରିୟାସାଧନର ପଦ୍ଧତି - ଚାରୁକଳା ବା ସୁକୁମାର କଳା ପ୍ରସଙ୍ଗରେ ଏ ପଦ୍ଧତିରେ କାରିଗର ବା ଶିଳ୍ପୀର ସୌନ୍ଦର୍ଯ୍ୟ-ବିଧାନ - ଚାତୁରୀ ଅବଶ୍ୟ ସ୍ୱୀକାର୍ଯ୍ୟ । ସେହିପରି କବିକର୍ମ ପଦ୍ଧତି କୌଶଳ ଅର୍ଥାତ୍ କୁଶଳତା ବା ନିପୁଣତା- ଯୁକ୍ତ ଗଠନଚାତୁରୀ କହିବାରେ ସମୀଚୀନତା ସ୍ୱୀକାର୍ଯ୍ୟ ମନେ ହୁଏ । ଏ କୌଶଳର ସମର୍ଥକ ରୂପେ ଡକ୍ଟର ଆଚାର୍ଯ୍ୟ ଅନେକତ୍ର ଗଠନ - ଶିଳ୍ପ ପଦର ବ୍ୟବହାର କରିଛନ୍ତି

ଆମ ଶାସ୍ତ୍ର ପରଂପରାର ନିର୍ଦ୍ଦେଶ ହେଉଛି : କବିର୍ମନୀଷୀ ପରିଭୂଃ ସ୍ୱୟଂଭୂଃ । ଅଗ୍ନି ପୁରାଣ କହେ ଜଗତ୍ ସୃଷ୍ଟିରେ ନରତ୍ୱ_ଦୁର୍ଲଭ, ତହିଁରେ ବିଦ୍ୟା ସୁଦୁର୍ଲଭ; ଏବଂ ପୁଣି ଏହି ଭାଗ୍ୟବାନ୍ ବିଦ୍ୱାନ୍ ମାନଙ୍କ ମଧ୍ୟରେ କବିତ୍ୱଂ ଦୁର୍ଲଭଂତତ୍ର, ଶକ୍ତିସ୍ତତ୍ର ସୁଦୁର୍ଲଭା" । ତେଣୁ ଶକ୍ତିଧର କବି ଏକ ବିସ୍ମୟକର ସ୍ୱୟଂ ସୃଷ୍ଟ ପଦାର୍ଥ , ଏହି ପ୍ରାଚୀନ ମତ ନେଇ ଏପର୍ଯ୍ୟନ୍ତ ଏକ ସର୍ବଜନଗ୍ରାହୀ ମୀମାଂସା ହୋଇଛି ବୋଲି ମନେହୁଏନା । ଆନନ୍ଦବର୍ଦ୍ଧନ ଏହି କବିଶକ୍ତିର ସୁଦୁର୍ଲଭତ୍ୱ ପ୍ରସଙ୍ଗରେ କହନ୍ତି - "ଅସ୍ମିନ୍ ବିପୁଳ - କବି - ପରଂପରାବାହିନି ସଂସାରେ ବ୍ୟାସ-ବାଲ୍ମିକି-କାଳିଦାସ ପ୍ରଭୃତୟଃ ଦ୍ୱିତ୍ରାଃ ପଞ୍ଚଷା ବା ମହାକବୟ ଇତି ଗଣ୍ୟନ୍ତେ " । କିନ୍ତୁ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ଅଥବା ପାଶ୍ଚାତ୍ୟଶିକ୍ଷା ପ୍ରାପ୍ତ ଆମର ଆଧୁନିକ ସମାଲୋଚକଙ୍କ ବିଚାରରେ କବିଶକ୍ତିର ଏହି ସ୍ୱଭାବବାଦ ଅଥବା ଆକସ୍ମିକ ଦୁର୍ଲଭତା ମତବାଦ ତାର ପୂର୍ବ ଲୋକପ୍ରିୟତା ହରାଇଛି । ମୁଖ୍ୟତଃ ଜ୍ଞାନ-ବିଜ୍ଞାନ ।

ପୁରୁଷାନୁକ୍ରମିକତାକୁ ଅସ୍ୱୀକାର ନ କଲେହେଁ ବ୍ୟକ୍ତିର ସାମାଜିକ ବିବର୍ତ୍ତନ ତଥା ସାଧନା ଉପରେ ଅଧିକ ବାଦୀ ପାଶ୍ଚାତ୍ୟ ସମାଲୋଚକ ଗୁରୁତ୍ୱ ଆରୋପ କରନ୍ତି । ଆଧୁନିକ ଭାରତୀୟ ସମାଲୋଚନା ମଧ୍ୟ ଏହି ମତର ସମର୍ଥକ । ଜାତି , ଦେଶ, ବଂଶର ଐତିହ ଓ ପରଂପରା ତଥା ପରିବେଶ-ପରିବେଷ୍ଟନୀର ନିୟନ୍ତ୍ରଣ ମଧ୍ୟରେ ଜନ୍ମଲାଭ କରିଥିବା ଶିଶୁ ଦିନେ ଏକ ବ୍ୟକ୍ତିରେ ବିବର୍ତ୍ତିତ ହୁଏ । ବ୍ୟକ୍ତିର ବିକାଶ- କ୍ରମ ପରିପ୍ରେକ୍ଷୀରେ ବୃହତ୍ତର ପରିଧିର ଜାତି, ଦେଶ ଓ ବଂଶ ଏବଂ ଅଧିକ ନିକଟତର ପରିଧିର ପରିବେଶ - ପରିବେଷ୍ଟନ ବସ୍ତୁତଃ ବ୍ୟକ୍ତି-ବିକାଶର ପୃଷ୍ଠଭୂମି : ଦୂର ନିକଟ ସମ୍ପର୍କ ନେଇ ପ୍ରଭାବର କ୍ଷୀଣତା ଅଥବା ପ୍ରଗାଢତା

ବିଚାରରେ ଯଥାକ୍ରମେ ପରୋକ୍ଷ ଅଥବା ପ୍ରତ୍ୟକ୍ଷ ପୃଷ୍ଠଭୂମି ରୂପେ ସେଗୁଡିକ ଗ୍ରାହ୍ୟ । ପରବର୍ତ୍ତୀ ସ୍ତରରେ ଶିଶୁ ପାଇଁ ଅଧିକ ଅର୍ଥପୂର୍ଣ୍ଣ ହୋଇଉଠେ ପାରିବାରିକ ତଥା ସାମାଜିକ ପ୍ରଭାବ, ଯାହା କ୍ରମେ ଅନୁଭୂତିର ଉପାଦାନ ଯୋଗାଇ ଶିଶୁର ମନକୁ ଗଠନ କରେ । ଶିକ୍ଷା ଓ ସ୍ୱାଧ୍ୟାୟ ହୁଏ ସେହି ମାନସିକ ବିକାଶର କାରଣ ତଥା ନିର୍ଣ୍ଣାୟକ । ଏହି ଧାରାରେ ବିକଶିତ ମନର ଅଧିକାରୀ ସମର୍ଥ ମଣିଷ ଆପଣାର ସ୍ୱାଧୀନ ଚିନ୍ତା ଏବଂ ସ୍ୱଚ୍ଛନ୍ଦ କଳ୍ପନା ମାଧ୍ୟମରେ ଆପଣା ବ୍ୟକ୍ତି ଶକ୍ତିର ସ୍ୱାତନ୍ତ୍ର୍ୟ ଓ ସ୍ୱାରସ୍ୟ ପ୍ରମାଣିତ କରି ପ୍ରତିଷ୍ଠାବନ୍ତ ହୁଏ । ସାହିତ୍ୟ ଏବଂ କଳାକ୍ଷେତ୍ରରେ ଜାତିର ପ୍ରାକ୍ତନ ସାହିତ୍ୟ ସଂପଦକୁ ପୁଞ୍ଜି କରି ଅଗ୍ରସର ହେଲାବେଳେ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ଦର୍ଶନ, ଇତିହାସ ସହ ସାହିତ୍ୟ ଦର୍ଶନରୁ ମିଳେ ମାର୍ଗନିର୍ଦ୍ଦେଶ; ଯୁଗଚେତନା ଓ ଯୁଗରୁଚିର ଆଧାରରେ ଆତ୍ମରୁଚି ଓ ଆତ୍ମଶକ୍ତିର କାର୍ଯ୍ୟକାରିତା ଯୋଗୁଁ ନବନବୋନ୍ମେଷ ସମ୍ଭବ ହୁଏ ।

ବ୍ୟକ୍ତି ବିକାଶର ଏହି ପଦ୍ଧତି ଡକ୍ଟର୍ ଆଚାର୍ଯ୍ୟଙ୍କୁ ସାମଗ୍ରିକ ଭାବେ ତାଙ୍କ ଆଲୋଚନାର ନକ୍ସା ଯୋଗାଇଛି । ଏହି ଧାରାରେ ବସ୍ତୁତଃ ପ୍ରତ୍ୟେକ କବି ଓ ତାଙ୍କ ସୃଷ୍ଟି ଆପଣାର ସ୍ୱାତନ୍ତ୍ର୍ୟ ଯୋଗୁଁ ହୁଅନ୍ତି ଅଧ୍ୟୟନର ଏକ ଏକ ସ୍ୱତନ୍ତ୍ର ବିଷୟ । କିନ୍ତୁ ଖ୍ରୀ :୧୫୦୦ ରୁ ୧୮୫୦ କାଳର ପ୍ରାୟ ସାଢ଼େ ତିନି ଶହ ବର୍ଷ ବ୍ୟାପୀ ସମୟ ମଧ୍ୟରେ ସୃଷ୍ଟ ଓଡିଆ କାବ୍ୟର ଅଙ୍ଗ ଓ ଆତ୍ମା ଉଭୟତ୍ର ସ୍ଥୂଳତଃ ସ୍ଥିତି ଓ ଧାରାରେ ବୈଷମ୍ୟ ଅପେକ୍ଷା ସାମ୍ୟର ମାତ୍ରା ବହୁ ପରିମାଣରେ ଅଧିକ : ଅର୍ଜୁନ ଦାସଙ୍କ 'ରାମବିଭା' ଏବଂ 'କଳ୍ପଲତା' କାବ୍ୟଦ୍ୱୟରେ କଳ୍ପିତ ଆଖ୍ୟାନବସ୍ତୁ, ତାହାର ପରିବେଷଣରେ ଅନୁସୃତ ବିଷୟ ବିଭାଗ କ୍ରମ - ଛାନ୍ଦନିର୍ଦ୍ଦେଶ - ସଂଗୀତ ଶୃଙ୍ଖଳା - ଶବ୍ଦାର୍ଥ ପ୍ରୟୋଗ ଶୈଳୀ - ବର୍ଣ୍ଣନୀୟ ଉପାଦାନ ତଥା ବର୍ଣ୍ଣନାରୀତି ଏବଂ ଶେଷରେ ସେ ରଚନାର ଚରମ ଆତ୍ମିକ ଲକ୍ଷ୍ୟ ଧ୍ୱନିବା ରସର ସମାହାରରେ କାବ୍ୟର ଯେଉଁ ଆଦର୍ଶ ଏକ ସୁଗଠିତ ଜାତୀୟ ରାଜପଥ ତୁଲ୍ୟ ନିର୍ମିତ ହେଲା ଓଡିଆ ଜାତିର ଓଡିଆଭାଷୀ କବି ଅଳ୍ପାଧିକ ସେହି ରାଜଦାଣ୍ଡରେ ହିଁ ଚାଲିଛନ୍ତି ଶତାବ୍ଦୀ ଧରି । କବି ପ୍ରତିଭାର ବ୍ୟତିକ୍ରମ ଅନୁଯାୟୀ ନିର୍ମିତ କାବ୍ୟର ଅଙ୍ଗଉପାଙ୍ଗରେ ବ୍ୟକ୍ତିକ୍ରମ ଆତ୍ମପ୍ରକାଶ କରି ବୈଷମ୍ୟକୁ ପ୍ରମାଣିତ କରିଥିବା ସତ୍ତ୍ୱେ ସଂସ୍କୃତ କାବ୍ୟର ଦୃଷ୍ଟାନ୍ତ ଅଳଂକାର ଗ୍ରନ୍ଥର ମାର୍ଗ ନିର୍ଦ୍ଦେଶ ବଳବତ୍ତର ରହି ଗୁରୁ ଅର୍ଜୁନ ଦାସଙ୍କୁ ପ୍ରମାଣିତ କରିଯାଇଛନ୍ତି ପ୍ରାୟ ସର୍ବତ୍ର । ତେଣୁ ପ୍ରାୟ ଚଉଦଟି ପିଢ଼ିର ବ୍ୟାପକ ସାର୍ଦ୍ଧ-ତିନିଶତ ବର୍ଷ ସମୟର ଏକ ବିଶାଳ କାବ୍ୟ ପରଂପରାକୁ ଗୋଟିଏ ଶ୍ରେଣୀର ସୃଷ୍ଟି ବୋଲି ଧରିନେବାରେ ଅସଂଗତି ନାହିଁ । ଏହା ଫଳରେ ଏ ବିଶାଳ କାବ୍ୟ ସୃଷ୍ଟିର 'କିପରି' ତତ୍ତ୍ୱ ଅବଧାରଣ କଲାବେଳେ କେତେକ ସାଧାରଣ ସୂତ୍ର ନିର୍ଦ୍ଦେଶ କରିଦେବା ଡକ୍ଟର ଆଚାର୍ଯ୍ୟଙ୍କ ସିଦ୍ଧାନ୍ତରେ ସମ୍ଭବ ହୋଇଛି ।

କିନ୍ତୁ ସ୍ୱରୂପ ତଥା ସ୍ୱଭାବ ଯାହା ହେଉ, କାବ୍ୟ ହେଉଛି କବିକର୍ମ । କାବ୍ୟଗଠନରେ ଟେକ୍‌ନିକ୍ ବା କୌଶଳ ଅବଲମ୍ବନ କରିବା ପ୍ରସଙ୍ଗରେ କବିର ସ୍ୱରୂପ ଉଦ୍‌ଘାଟନ ଆବଶ୍ୟକ । ଆଧୁନିକ ସମାଲୋଚକର ଦୃଷ୍ଟିଭଙ୍ଗୀ ନେଇ ଓଡିଶାର ମଧ୍ୟଯୁଗୀୟ ରାଜନୈତିକ, ସାମାଜିକ, ଧାର୍ମିକ, ସାଂସ୍କୃତିକ ତଥା ଅର୍ଥନୈତିକ ଅବସ୍ଥାର ପ୍ରଭାବମଧ୍ୟରେ ସଂବର୍ଦ୍ଧିତ କବିର ମନ, ବୁଦ୍ଧି ଓ ବିଚାରଧାରା ବିଶ୍ଲେଷଣ କରିବାରେ ଗବେଷକ ଆଚାର୍ଯ୍ୟଙ୍କ ନିଷ୍ଠାପର ଶ୍ରମ ଏବଂ ତନ୍ନିତ ସିଦ୍ଧାନ୍ତର ସ୍ପଷ୍ଟ ଉଲ୍ଲେଖ ସ୍ତରେ ସ୍ତରେ ଉନ୍‌ମୋଚିତ କରିଯାଏ

ସେ କାଳକବିର ସାଧାରଣ ଜୀବନକୁ । ଲକ୍ଷ୍ୟ କରିବାର କଥା ଯେ ଯୁଗର ଶତ ଶତ କବିଙ୍କୁ ଏକ ସାଧାରଣ ଶ୍ରେଣୀରେ ଗ୍ରହଣ କରିବାର ପ୍ରସ୍ତାବ ମନଃପୂତ ନ ହେଲେ ମଧ ସେମାନଙ୍କ ସୃଷ୍ଟ କର୍ମର ଆଦର୍ଶରେ ଏକ ଗତାନୁଗତିକ ସାଧାରଣତ୍ୱ ଥିବାରୁ ସେମାନଙ୍କ ଦୃଷ୍ଟିଭଙ୍ଗୀର ଏକ ସାଧାରଣତ୍ୱ ସ୍ୱତଃ ପ୍ରତିପନ୍ନ ହୁଏ । ବିଶେଷତଃ ଏମାନଙ୍କ ଶିକ୍ଷା ଏବଂ କାବ୍ୟାଦର୍ଶକୁ ଯେପରି ନିୟନ୍ତ୍ରିତ କରୁଥିଲା ସଂସ୍କୃତର ଆଳଂକାରିକ ଆଦର୍ଶ, ସେହିପରି ସେମାନଙ୍କ ସମକ୍ଷରେ ଆଦର୍ଶ ହୋଇ ରହିଥିଲା ସଂସ୍କୃତ କାବ୍ୟ । ଏହା ସହ ଗ୍ରାହକ କୋଟୀରେ ଥିଲେ ଯେଉଁ ଆଦିରସାଶ୍ରିତ କାବ୍ୟାମୋଦୀ ବିଳାସୀ ଆଶ୍ରୟଦାତା ରାଜନ୍ୟଗୋଷ୍ଠୀ ସେମାନଙ୍କ ପ୍ରଭାବରେ କବିମଣ୍ଡଳୀଙ୍କ ମଧରେ ସ୍ୱାଭାବିକ ଭାବେ ଆସୁଥିଲା ଆଦିରସ-ପରିବେଷଣ-ପଟୁତା-ପ୍ରଦର୍ଶନ କ୍ଷେତ୍ରରେ ଏକ ପ୍ରତିଯୋଗିତା ବୁଦ୍ଧି ଏବଂ ତାହାହିଁ ଥିଲା କାବ୍ୟ ସୃଷ୍ଟିର ପ୍ରତ୍ୟକ୍ଷ ପ୍ରେରଣାଭୂମି । ସମଗ୍ର ଚେତନା ଏବଂ କଳ୍ପନାର ଏହି ଏକମୁଖୀ ଗତି ଯୋଗୁଁ କାଳ୍ପନିକ ବର୍ଣ୍ଣନା ଚାତୁରୀର ଏକ ନିର୍ଦ୍ଦିଷ୍ଟ ଛାଞ୍ଚରେ ସତେ ଯେପରି ସମଗ୍ର କବି ଶକ୍ତିର ଏକ ସମରୂପତ୍ୱ ସ୍ୱତଃ ସଂପାଦିତ ହେଉଥିଲା । ଡକ୍ଟର ଆଚାର୍ଯ୍ୟ ସେ କାଳର କବିଗୋଷ୍ଠୀର ଏହି ଏକାକାର ବିବର୍ତ୍ତନର ଧାରା ପ୍ରଦର୍ଶନ କରିବାରେ ଆପଣାର ଅଧୟନ ଓ ବିଶ୍ଳେଷଣର ନିପୁଣ ପ୍ରୟୋଗ କରିଛନ୍ତି । ବିଶେଷତଃ ପ୍ରାମାଣିକ ଅଳଂକାର ଗ୍ରନ୍ଥ ସମୂହର ତତ୍ତ୍ୱବୋଧକ ଅଧୟନର ଯେଉଁ ପଦାଙ୍କ ତାଙ୍କ ଗ୍ରନ୍ଥର ଅଙ୍ଗୀଭୂତ ହୋଇଛି ଏବଂ ସେହି ତତ୍ତ୍ୱଗୁଡିକର ପ୍ରୟୋଗ ଦୃଷ୍ଟିରୁ ଓଡିଶାର ବହୁକବିଙ୍କ ବହୁକାବ୍ୟର ଅଧୟନ ଓ ବିଶ୍ଳେଷଣାତ୍ମକ ଦୃଷ୍ଟାନ୍ତଗୁଡିକ ଯେପରି ତାଙ୍କ ଗ୍ରନ୍ଥରେ ଯୁକ୍ତିଯୁକ୍ତ ଭାବେ ପ୍ରଯୁକ୍ତ ହୋଇଛି ସେହି ଆଧାରରେ ଶଂସିତ କାଳର କବିଙ୍କ ମାନସିକ ତଥା କାବ୍ୟିକ ଆଭିମୁଖ୍ୟର ସାଧାରଣତ୍ୱ ବିଷୟରେ ତାଙ୍କ ସିଦ୍ଧାନ୍ତ ଅବଶ୍ୟ ସ୍ୱାଗତଯୋଗ୍ୟ । ଓଡିଆକାବ୍ୟସମୂହର ତଥା ସାମାଗ୍ରିକ ଭାବେ କବିଗୋଷ୍ଠୀର ଏକ ସାଧାରଣ ପ୍ରକୃତି ପ୍ରଦର୍ଶନ କରିବାରେ ଡକ୍ଟର ଆଚାର୍ଯ୍ୟଙ୍କ ଗବେଷଣାର ବୈଶିଷ୍ଟ୍ୟ ଅନିସ୍ୱୀକାର୍ଯ୍ୟ ।

ପ୍ରସଙ୍ଗକ୍ରମେ ପାଶ୍ଚାତ୍ୟ ଆଭିମୁଖ୍ୟରେ ବ୍ୟକ୍ତିର ବୈଶିଷ୍ଟ୍ୟ ଏକ ମୌଳିକ ସ୍ୱୀକୃତି । ତେଣୁ ସେ ସମାଲୋଚନାରେ ବ୍ୟକ୍ତିର ଅବଦାନ ନିର୍ଣ୍ଣୟ ହୁଏ ଲକ୍ଷ୍ୟ । ପୁନଶ୍ଚ ବ୍ୟକ୍ତିର ସ୍ୱକୀୟ ଜୀବନର ସୁଖଦୁଃଖାଦି ସକଳ ଅନୁଭୂତି କେତେବେଳେ ପ୍ରତ୍ୟକ୍ଷ, କେତେବେଳେ ଅବା ପରୋକ୍ଷଭାବେ ବ୍ୟକ୍ତିର ରଚନାରେ ମୂର୍ତ୍ତିମନ୍ତ ହୋଇଥାଏ । କିନ୍ତୁ ପ୍ରାଚ୍ୟ ସମାଲୋଚନାରେ ଅନୁଭୂତିର ବ୍ୟକ୍ତିନିଷ୍ଠତା ଅପେକ୍ଷା ସମୂହନିଷ୍ଠତା ହିଁ ସ୍ୱୀକୃତ ହୁଏ; ଫଳତଃ ସାହିତ୍ୟ ବା କାବ୍ୟ ବ୍ୟକ୍ତିର ସୃଷ୍ଟି ହେଲେ ହେଁ ସମାଲୋଚନାରେ ସୌନ୍ଦର୍ଯ୍ୟାନୁଭବର ସୂଚକରୂପେ ଅଳଂକାର ରୀତି-ଗୁଣ-ରସ-ଧ୍ୱନି-ବକ୍ରୋକ୍ତି ପ୍ରଭୃତି ସାହିତ୍ୟତତ୍ତ୍ୱ ବିଚାର ସାମଗ୍ରୀର ଗୌରବ ଲାଭକରେ । ଡକ୍ଟର ଆଚାର୍ଯ୍ୟ ପ୍ରାଚ୍ୟ ପାଶ୍ଚାତ୍ୟ ସମାଲୋଚନାରେ ଏହି ପାର୍ଥକ୍ୟ ଲକ୍ଷ୍ୟ କରିଛନ୍ତି । ଦୃଷ୍ଟାନ୍ତ କୋଟୀରେ ଉପେନ୍ଦ୍ରଭଞ୍ଜଙ୍କୁ ନେଇ ଉଲ୍ଲେଖ କରିଛନ୍ତି ଯେ କବି ରାଜପୁତ୍ର ହେଲେହେଁ ରାଜ୍ୟଭ୍ରଷ୍ଟ ବିପତ୍ନୀକ ଭାବେ ଯେଉଁ ଜୀବନ ବିଡମ୍ବନାର ଶରବ୍ୟ ହୋଇଥିଲେ ତାହା ତାଙ୍କ ବିପୁଳ ସୃଷ୍ଟି ମଧରେ ରୂପାୟିତ ହୋଇନାହିଁ । ଏପରିକି କାଳିଦାସଙ୍କ 'ଅଜବିଳାପ' ଅଥବା 'ରତିବିଳାପ' ବର୍ଣ୍ଣନାର ମାନବିକ ଅନୁଭୂତି ମଧରେ ସମ୍ଭାବ୍ୟ କବିନିଷ୍ଠ ବ୍ୟକ୍ତିଗତ ଅନୁଭୂତିର ପ୍ରତିଫଳନ ସମ୍ଭାବନା ଭଳି ଉପେନ୍ଦ୍ରଭଞ୍ଜଙ୍କ ସୃଷ୍ଟିରେ କୌଣସି ପ୍ରସଙ୍ଗ ମିଳେ ନାହିଁ । ଏହା ସତ୍ୟ । କାଳିଦାସଙ୍କ ମହାକାବ୍ୟରେ ବିଷୟ ଓ ଘଟନାକ୍ରମର ଯେଉଁ ବୈଚିତ୍ର୍ୟ ଏବଂ ନାୟକ ନାୟିକା ପ୍ରକୃତି ଦୃଷ୍ଟିରୁ

ଯେଉଁ ବୈବିଧ୍ୟ ରହିଛି, ଉପେନ୍ଦ୍ରଙ୍କ ସ୍ଥୂଳ ବିଷୟବସ୍ତୁର ଗତାନୁଗତିକତା ମଧ୍ୟରେ ତାହା ନାହିଁ । ଉପେନ୍ଦ୍ର ସୃଷ୍ଟିର ନାୟକ ନାୟିକାଙ୍କ ଜୀବନ ପରିସର କେତେ ସୀମିତ ନୁହେଁକି ? ସେମାନେ ଓଳିଆରୁ ଗଢା ହେଲାଭଳି ପ୍ରେମର ରୂପାୟନ ପାଇଁ ପରିକଳ୍ପିତ; ସେ ଜୀବନରେ ମୁଖ୍ୟତଃ ଦୁଇଟି ଅଧ୍ୟାୟ : ବିବାହକୁ ଏକ ବିଭାଜକ ରୂପେ ଧରିନେଲେ ପ୍ରାଗ୍‌ବିବାହ କାଳରେ ସମ୍ଭୋଗ ପାଇଁ ପ୍ରସ୍ତୁତି ଏବଂ ଦ୍ୱିତୀୟ ଭାଗରେ ବିବାହୋତ୍ତର ବାସ୍ତବ ସମ୍ଭୋଗ, ଆକସ୍ମିକ ବିରହ-ବିପ୍ରଲମ୍ଭ ଏବଂ ପୁନର୍ମିଳନ । ଶୃଙ୍ଗାର ପରିବେଷଣର୍ ଏହି ଫର୍ମାରେ ଏମାନେ ଦୁଇଟି ଏକମୁଖୀ ଜୀବନ । ପୁତ୍ରକନ୍ୟାର ଜନକ ଜନନୀ ହେବାର ଆନନ୍ଦ, ଦାୟିତ୍ୱ ଏବଂ ଗୌରବ, ଗୃହିଣୀର ନିଷ୍ଠାପର ସେବା ଏବଂ ଆତ୍ମସୁଖ ବିସର୍ଜନର ମହାବ୍ରତ, ସଖାସଖୀର ନିଃସ୍ୱାର୍ଥ ନିବିଡ ବନ୍ଧୁତା ଅଥବା ପକ୍ଷାନ୍ତରେ ଚଣ୍ଡୀ, ଦୁଃଖିନୀ, ବିଧବା, କୁଳନାଶିନୀ, ଦୁଶ୍ଚରିତ୍ରା ଇତ୍ୟାଦି ଇତ୍ୟାଦି ଜୀବନର ବିବିଧ ପ୍ରକାଶର ସ୍ୱାଭାବିକତା ସତ୍ତ୍ୱେ ସେସୃଷ୍ଟି ତତ୍ ପ୍ରତି ଆଦୌ ଉନ୍ମୁଖନୁହେଁ । ଭଣା ଅଧିକ ଏକ ଗତାନୁଗତିକ ଧରାବନ୍ଧା ପ୍ରେମ ମଧ୍ୟରେ ଆମ ରୀତିକାବ୍ୟ ହୋଇଯାଇଛି ସାମୂହିକତାର ପ୍ରତିନିଧି । ଡକ୍ଟର ଆଚାର୍ଯ୍ୟ ସେହି କାବ୍ୟର ଏ ପ୍ରକୃତି ସ୍ପଷ୍ଟଭାବେ ହୃଦୟଙ୍ଗମ କରିଛନ୍ତି ।

ସଂସ୍କୃତ କାବ୍ୟ ପରଂପରାରେ କାଳିଦାସଙ୍କ ଧ୍ୱନିପ୍ରଧାନ କାବ୍ୟଧାରା ବିବର୍ତ୍ତିତ ହୋଇ ଦିନେ ବର୍ଣ୍ଣନା ସର୍ବସ୍ୱ ଅଳଂକାର ପ୍ରଧାନ ନୈଷଧୀୟ କାବ୍ୟର ରୂପ ଧାରଣ କରିଥିଲା । ବିଳାସଚତୁର ଭୋଗୀ ରାଜାର ଏବଂ ତାହାର ପାରିଷଦ ବର୍ଗଙ୍କ ସାମନ୍ତୀୟ ସୁଖଭାବନା ଏହାର କାରଣ । ଭାରତରେ ତଥା ଓଡିଶାରେ ଆଧୁନିକ ଭାରତୀୟ ଭାଷାର ଆତ୍ମପ୍ରତିଷ୍ଠା ବେଳକୁ ଚାଲିଥିଲା ନୈଷଧର ଯୁଗ । ତଥାପି ଷୋଡଶ ଶତାବ୍ଦୀ ଆରମ୍ଭରେ ଅର୍ଜୁନ ଦାସଙ୍କ ନେତୃତ୍ୱରେ ସମାରବ୍ଧ ଓଡିଆ କାବ୍ୟ ପରଂପରା ତାହାର ଆଦ୍ୟକାଳର ଆଖ୍ୟାନ ପ୍ରଧାନ ହେବାର କାରଣ କବିର ଆତ୍ମସଚେତନ ଉଦ୍ୟମ । ସଂସ୍କୃତ କାବ୍ୟ ସହ ପ୍ରତିଯୋଗିତା କାଳରେ ନିତ୍ୟାନନ୍ଦ ଆଖ୍ୟାନ ବସ୍ତୁର ଉପସ୍ଥାପନ ଅବଶ୍ୟ ଏକ ଅଭିନନ୍ଦନୀୟ ଉଦ୍ୟମ । ଏହି ସମୟର ଲୋକକଥା ଆଧାରିତ ବନମାଳୀ ଦାସଙ୍କ ଚାଟଇଚ୍ଛାବତୀ କାବ୍ୟର ଖୁବ୍ ପ୍ରତିଶ୍ରୁତି ଥିଲା । ଚାଟଶାଳୀର ସହଶିକ୍ଷା ବ୍ୟବସ୍ଥା ମଧ୍ୟରେ ସେ କାଳର ରାଜଜେମା ଇଚ୍ଛାବତୀଙ୍କ ସହପାଠୀ ଥିଲା ଚାଟଟିଏ, ଅଜ୍ଞାତ କୁଳଶୀଳ ହେଲେ ମଧ୍ୟ ରୂପଗୁଣ ସଂପନ୍ନ । ଆପାତତଃ ସେ ଜଣେ ସାଧାରଣ ଜନତା ଗୋଷ୍ଠୀର ଲୋକ । ତଥାପି ନର ଓ ନାରୀ ରୂପେ ସେମାନଙ୍କ ପ୍ରବୃତ୍ତି ସାନ୍ନିଧ୍ୟଜନିତ ଘନିଷ୍ଠତାର ସୁଯୋଗରେ ଉଠିଯାଇଛି ପ୍ରେମ କୋଟୀକି । କିନ୍ତୁ ସାମାଜିକ ଶୃଙ୍ଖଳାର ଚାପରେ କବି ସମାଧାନର ସୂତ୍ର ଯୋଗାଇବାକୁ ଯାଇ ଏ ନାୟକକୁ କରିଦେଲେ ଏକ ପଦଚ୍ୟୁତ ରାଜପୁତ୍ର । ସକଳ ପ୍ରତିଶ୍ରୁତି ମିଳେଇ ଗଲା ସାମାଜିକ ଜୀବନର ସଂକୀର୍ଣ୍ଣ ଚାପରେ । ଏ ପ୍ରାଥମିକ କାଳର ଆହୁରି ଅନେକ କାବ୍ୟରେ ମଧ୍ୟ ସ୍ୱଚ୍ଛନ୍ଦ ଚିନ୍ତନର ଧାରାଥିଲା । ଏହା ଡକ୍ଟର ଆଚାର୍ଯ୍ୟ ଲକ୍ଷ୍ୟ କରିଛନ୍ତି । ତାଙ୍କ ମତରେ ସେତେବେଳେ ଏ କାବ୍ୟର ଏକ ନିର୍ଦ୍ଦିଷ୍ଟ କୌଶଳ ଅଭାବ ଯୋଗୁଁ ପ୍ରଚଣ୍ଡ ପ୍ରତିଷ୍ଠାବନ୍ତ ସଂସ୍କୃତ ସାହିତ୍ୟର ଗ୍ରହଣୀୟତା ନିକଟରେ ସତେ ଅବା ପରାଜୟ ସ୍ୱୀକାର କରି ବର୍ଣ୍ଣନା ପ୍ରଧାନ ଆଳଂକାରିକ କାବ୍ୟଧାରାର ମାଗବରଣ କରିନେବା ବ୍ୟତୀତ ଉପାୟ ନଥିଲା । ମନେ ହୁଏ କବି ନରସିଂହ ସେଣଙ୍କ ପରିମଳା ଏବଂ ଦୀନକୃଷ୍ଣଙ୍କ ରସକଲ୍ଲୋଳକୁ ସେହି ନୂତନ ଧାରାର ଅୟମାରମ୍ଭର ମର୍ଯ୍ୟାଦା ଦିଆଯାଇପାରିବ । ଏ ଆଦର୍ଶ ତେଣୁ ସ୍ୱତଃ

ବଦଳି ଯାଇଛି ଗ୍ରାହକ ରୁଚିର ଚାପରେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶେଷତଃ ସାମନ୍ତ ଗୋଷ୍ଠୀର ଆଶ୍ରିତ କବିର ଗ୍ରାସାଚ୍ଛାଦନ ସମସ୍ୟାର ସମାଧାନ ଲାଗି ବିଳାସୀ ପୃଷ୍ଠପୋଷକର ସଂପ୍ରୀତି ଅବଶ୍ୟ କାମ୍ୟ ଥିଲା ।

ଏହାହିଁ ଓଡ଼ିଆ ରୀତିକାବ୍ୟ ବିବର୍ତ୍ତନର ଇତିହାସ । ଡକ୍ଟର ଆଚାର୍ଯ୍ୟ ନୈପୁଣ୍ୟ ସହକାରେ ସକଳ ତଥ୍ୟର ସଂଗ୍ରହ ଏବଂ ଯଥାଯଥ ସଂକଳନ ମଧ୍ୟରେ ଆପଣା ସିଦ୍ଧାନ୍ତ ଘୋଷଣା କରିଛନ୍ତି ଉପସଂହାରରେ - * * *'' ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରୁ ଓଡ଼ିଆ କାବ୍ୟ ସାହିତ୍ୟର ଭୂୟୋବିକାଶ ସାଧିତ ହୋଇଥିଲେ ହେଁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏ ଦେଶର କାବ୍ୟକାରମାନେ ଏକ ନିଶ୍ଚିତ ଅନୁସନ୍ଧାନ କରିଚାଲିଛନ୍ତି । ପୁରାଣ ପରଂପରାରୁ ବିଚ୍ଛିନ୍ନହୋଇ ଏହି କାବ୍ୟସାହିତ୍ୟ ଯେତେବେଳେ ନିଜର ଏକ ସ୍ୱତନ୍ତ୍ର ରୂପ ପ୍ରତିଷ୍ଠା ପାଇଁ ପ୍ରୟାସୀ ହୋଇଉଠିଲା, ସେତେବେଳେ ବିଷୟଗତ ଚାରୁତା ଦ୍ୱାରା ପାଠକର ମାନସ-ରଞ୍ଜନ କରିବା ହିଁ ଥିଲା ଏହାର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ଏହି ଦେଢ଼ଶତ ବର୍ଷର କାବ୍ୟ ବିଷୟ ବସ୍ତୁ ମଧ୍ୟରେ ଗତାନୁଗତିକତା ପ୍ରାୟଶଃ ପରିଦୃଷ୍ଟ ନୁହେଁ । ଅନୁରୂପ ଭାବେ ଏ ସମୟର କାବ୍ୟଶିଳ୍ପ କୌଶଳ ମଧ୍ୟ ଏକ ନିର୍ଦ୍ଦିଷ୍ଟ ରୀତିର ଆଶ୍ରୟରେ ଗଢ଼ି ଉଠିବାର ଅବକାଶ ପାଇନାହିଁ ।* * *''

ପ୍ରାଥମିକ କାଳର କାବ୍ୟମାନଙ୍କରେ ପ୍ରଦତ୍ତ ଆଖ୍ୟାନ ବସ୍ତୁର ନକ୍ସାଉପରେ ଉତ୍ତରକାଳର ସ୍ଥପତିକବି ଟେକ୍‌ନିକ୍ ସର୍ବସ୍ୱ ସୌଧ ନିର୍ମାଣ କରି ବାଢ଼ିଦେଲେ ଅଳଂକାରମାଳା ପରିହିତ ବର୍ଣ୍ଣାଢ଼୍ୟ ରୀତିକାବ୍ୟ । ଏକ ନିର୍ଦ୍ଦିଷ୍ଟ ଗତାନୁଗତିକ ମଡେଲ ଉପରେ ଚକଚକିଆ ରଙ୍ଗ ମାରିବାରେ ମୁଖ୍ୟତଃ ଶିଳ୍ପୀ ଆପଣାର ଶକ୍ତି ବିନିଯୋଗ କଲେ । ଆପଣା ସୃଷ୍ଟିକି ରୋଚକ କରିବା ଲାଗି ଶିଳ୍ପୀ ଯେଉଁ ସୂତ୍ର ପ୍ରୟୋଗ କଲେ ତାହାକୁ 'କାବ୍ୟକୌଶଳ' ଆଖ୍ୟା ଦେଇ ଡକ୍ଟର ଆଚାର୍ଯ୍ୟ ତାଙ୍କ ପ୍ରତିଶ୍ରୁତି 'କିପରିତତ୍ତ୍ୱ'ର ବ୍ୟାଖ୍ୟାନ କରିଛନ୍ତି ।

## II

ପାଠକ ଚିତ୍ତରେ ଏକ ରଞ୍ଜକ ସୌନ୍ଦର୍ଯ୍ୟବୋଧ ସୃଷ୍ଟି ଦ୍ୱାରା କାବ୍ୟର ସାଫଲ୍ୟ ନିରୂପିତ ହୋଇଥାଏ । କହିବା ବାହୁଲ୍ୟ କାବ୍ୟକର୍ତ୍ତା କବିର ଏହା ଚରମ ଲକ୍ଷ୍ୟ ସେହି ଲକ୍ଷ୍ୟ ହାସଲ କରିବା ଲାଗି କବି ଶବ୍ଦାର୍ଥ ପ୍ରୟୋଗ କଲାବେଳେ ଯେଉଁ ଚାତୁରିପୂର୍ଣ୍ଣ ଉପାୟ ବା ପଦ୍ଧତି ଅନୁସରଣ କରନ୍ତି ତାହା ହିଁ ଆମ ଉପସ୍ଥିତ ଆଲୋଚନାର ''କାବ୍ୟ-କୌଶଳ'' । କହିବା ବହୁଲ୍ୟ ଏ ପ୍ରସଂଗରେ ଏକ ଶିଳ୍ପସଂଗତ ଅଭିନବ ପ୍ରଭାବ ସୃଷ୍ଟି ନିମିତ୍ତ ଶିଳ୍ପୀର ଏକ ସ୍ୱକୀୟ କୁଶଳତା ବା ନୈପୁଣ୍ୟ ହିଁ ଉପଲକ୍ଷିତ । କବି ଯେଉଁ ''ମୂର୍ତ୍ତିମନ୍ତ'' କାବ୍ୟ ପ୍ରତିମା ନିର୍ମାଣ କରିବାକୁ ''ବିଚାରନ୍ତି'' ତହିଁରେ ଆମୂଳଚୂଳ ସୌନ୍ଦର୍ଯ୍ୟ ବିଧାନ ହୁଏ ତାଙ୍କର କର୍ମ । ତେଣୁ କାବ୍ୟର ପ୍ରଥମ ଦର୍ଶନ ଅଥବା ନାମ ଶ୍ରବଣ ଠାରୁ ଆରମ୍ଭ କରି ତାର ଅଙ୍ଗ ଉପାଙ୍ଗ ତଥା ଆତ୍ମା ପ୍ରତ୍ୟେକ ସ୍ତରରେ କାବ୍ୟ-କୌଶଳର ସନ୍ଧାନ ଓ ନିରୂପଣ କରାଯାଇପାରିବ । ଶ୍ରୀମାନ୍ ସୁଦର୍ଶନ ବାବୁ ଏହାହିଁ କରିଛନ୍ତି । ତାଙ୍କ ଗ୍ରନ୍ଥର ସପ୍ତମରୁ ଏକାଦଶ ପରିଚ୍ଛେଦ ମଧ୍ୟରେ ସେ ଲକ୍ଷ୍ୟ କରିଥିବା କୌଶଳ ଗୁଡିକର ସାଙ୍ଗୋପାଙ୍ଗ ଆଲୋଚନା କରିଛନ୍ତି । ନିର୍ଦ୍ଦିଷ୍ଟ ଭାବେ କହିଲେ । କାବ୍ୟରେ

ନାମକରଣ, ଛାନ୍ଦ ବିଭାଜନ, କାବ୍ୟାରମ୍ଭ ଓ ସମାପ୍ତି, ବିଷୟ ସଂଯୋଜନ ଏବଂ ଆତ୍ମପ୍ରତିଷ୍ଠା ପ୍ରତ୍ୟେକ ସ୍ତରରେ ଅନୁସୃତ ସୌନ୍ଦର୍ଯ୍ୟବୋଧର ସୂଚନାତ୍ମକ ଶିଳ୍ପ ନୈପୁଣ୍ୟର ପ୍ରକାର, ପଦ୍ଧତି ଏବଂ ପ୍ରଭାବର ତନ୍ନ ତନ୍ନ ବିଶ୍ଳେଷଣ କରିବାରେ ଆପଣାର କୃତିତ୍ୱ ପ୍ରମାଣିତ କରିଛନ୍ତି ।

ପ୍ରସଂଗ କ୍ରମେ ବକ୍ତବ୍ୟ ଯେ ଗ୍ରନ୍ଥର ଆମୂଳଚୂଳ ଡକ୍ଟର ଆଚାର୍ଯ୍ୟଙ୍କ ଆଲୋଚନାରେ ମଧ୍ୟ ଏକ ଶୈଳୀଗତ ସ୍ୱକୀୟତା ରହି ତାଙ୍କ ବିଚାରର ଅବବୋଧ ଦିଗରେ ଖୁବ୍ ସହାୟକ ହୋଇଛି । ଯେ କୌଣସି ବିଚାର୍ଯ୍ୟ ଉପାଦାନ ସଂପର୍କରେ ପାରଂପରିକ ଶାସ୍ତ୍ରୀୟ ତଥ୍ୟାବଳୀର ଉପସ୍ଥାପନରେ ଅକାତର ନିଷ୍ଠା ଦ୍ୱାରା ସଂପୃକ୍ତ ଉପାଦାନଗତ ଐତିହ୍ୟ ପ୍ରଦର୍ଶନ କରିବା ପରେ ଓଡିଆ ଓ ସମସାମୟିକ ଅନ୍ୟାନ୍ୟ ଭାରତୀୟ ଭାଷାରେ ବିକାଶର ଧାରା ସୂଚନା ଦେବା ସହିତ ଆମ କାବ୍ୟରେ ତାହାର ସ୍ଥିତି ପ୍ରଦର୍ଶନ ହେଉଛି ତାଙ୍କ ପଦ୍ଧତିର ବୈଶିଷ୍ଟ୍ୟ । ସବୁ ପ୍ରସଙ୍ଗ ଏହି ଧାରାରେ ହିଁ ଆଲୋଚିତ ହୋଇ ତାଙ୍କ ବିଦ୍‌ବତ୍ତାର ପ୍ରମାଣ ବହନ କରିଛି । ସାଧାରଣସୂତ୍ର ନିର୍ଣ୍ଣୟ କଲାବେଳେ ଅନେକ ସ୍ଥଳରେ ସେ ବିଷୟଟିର ଚିତ୍ରାତ୍ମକ ଉପସ୍ଥାପନ କରି ତାଙ୍କ ଅବବୋଧର ସ୍ୱଚ୍ଛତା ପ୍ରଦର୍ଶନ କରିଛନ୍ତି । ବିଶେଷତଃ ତାଙ୍କ ଅଧ୍ୟୟନ ପରିସରର ଏହି କାବ୍ୟଗୁଡିକ ପ୍ରତି ତାଙ୍କର ଶ୍ରଦ୍ଧାସତ୍ତ୍ୱେ ଭାବପ୍ରବଣତାବଶତଃ କାବ୍ୟର ତଥା କବିର ଅବରୁଦ୍ଧ ପରିବେଶ ଜନିତ ସଂକୀର୍ଣ୍ଣତା ତଥା ଗତାନୁଗତିକତା ପ୍ରଦର୍ଶନ କରିବାରେ ଯଥେଷ୍ଟ ନିରପେକ୍ଷତା ଅବଲମ୍ବନ କରିଛନ୍ତି । ତେଣୁ ତାଙ୍କର ଏ ଆଲୋଚନା ଗ୍ରନ୍ଥଟିର ବୈଶିଷ୍ଟ୍ୟ ଅବଶ୍ୟ ଅଭିନନ୍ଦିତ ହୋଇଆସିଛି ।

ତଥାପି କୌଶଳ ନିରୂପଣ ପ୍ରସଙ୍ଗରେ ନାମକରଣ କୌଶଳରେ ଶିଳ୍ପନୈପୁଣ୍ୟ ଅପେକ୍ଷା ପରିଚୟ ପ୍ରୟୋଜନ ଜନିତ ନିୟମ, ଲକ୍ଷଣ, ରୀତିହିଁ ବହୁସ୍ଥଳରେ ଅନୁସୃତ ହୋଇଛି । ସଂସ୍କୃତ ଅଳଂକାରଶାସ୍ତ୍ର ତଥା କବିରୀତିରେ ମଧ୍ୟ ଏହା ପରିଦୃଷ୍ଟ । ବିଦଗ୍ଧଚିନ୍ତାମଣି, ପ୍ରବନ୍ଧପୂର୍ଣ୍ଣ ଚନ୍ଦ୍ର ଭଳି ଅଳ୍ପ କେତୋଟି ନାମରେ ହିଁ କବି ପାଠକ ମନରେ ପ୍ରାରମ୍ଭରୁ ଉତ୍‌କଣ୍ଠା ଜଗାଇ ଯେଉଁ ପ୍ରଭାବ ସୃଷ୍ଟି କରିଛନ୍ତି ତାହା ହିଁ ଏ କୌଶଳକୁ ପ୍ରମାଣିତ କରିଥାଏ । ସ୍ୱୀକାର୍ଯ୍ୟ ଯେ ଏ କୌଶଳର ପ୍ରୟୋଗ ସ୍ଥଳ ଖୁବ୍ ସ୍ୱଳ୍ପ ଏବଂ ଏହାମଧ୍ୟ ଡକ୍ଟର ଆଚାର୍ଯ୍ୟଙ୍କ ଦୃଷ୍ଟି ଏଡାଇ ଯାଇନାହିଁ । ଏହି ଯୁକ୍ତି ଅଥବା ମନ୍ତବ୍ୟ ମଧ୍ୟ ଠିକ୍ ଅନୁରୂପ ଭାବେ ଓଡିଆ କାବ୍ୟର ଛାନ୍ଦବିଭାଜନ କୌଶଳ ପ୍ରତି ପ୍ରଯୁଜ୍ୟ । ଏହା ବିଷୟ ବିଭାଜନ ପାଇଁ ଏକ ବାଧ୍ୟବାଧକତା କହିଲେ ଅସଂଗତ ହେବ ନାହିଁ ମନେ ହୁଏ । ଅବଶ୍ୟ ଆଖ୍ୟାନ ବସ୍ତୁର ନୂତନତା ଥିଲେ ଛାନ୍ଦ ବିଭାଜନର ମଧ୍ୟ ଅନୁସନ୍ଧିକ ଚାରୁତା କଳ୍ପନା କରାଯାଇପାରେ ଯଦି ନାଟକୀୟ କୌତୂହଳୋଦ୍ଦୀପକ ତଥା ନାଟକ ସନ୍ଧି ସୂଚିତ ବିଷୟ ଗୁମ୍ଫନ ବିଷୟରେ କବି ସଚେତ ଥାଆନ୍ତି । ଏ ଭଳି କୌଶଳ ବିଶେଷ ସୁଲଭ ନୁହେଁ । କାବ୍ୟାରମ୍ଭର କୌଶଳ ଅନେକ କାବ୍ୟରେ ବେଶ୍ ଆମୋଦ ସୃଷ୍ଟିର କାରଣ ହୁଏ । ପରିସମାପ୍ତିରେ କେତେକ ଗତାନୁଗତିକ ଉପାଦାନ ସତ୍ତ୍ୱେ କବିର ଆତ୍ମପରିଚୟ ଅନେକତ୍ର ଅନୁଧ୍ୟାନର ବିଷୟ ହୋଇଥାଏ । ଏହି କ୍ଷେତ୍ର ଗୁଡିକରେ ପରଂପରା ତଥା ଓଡିଆର ନିଜସ୍ୱ ପ୍ରୟୋଗର ବୈବିଧ୍ୟ ପ୍ରଦର୍ଶନ ଉପରେ ଡକ୍ଟର ଆଚାର୍ଯ୍ୟଙ୍କ ଅନୁସନ୍ଧିତ୍ସା ବହୁଳଭାବେ ପ୍ରମାଣିତ ହୋଇଛି ଅବଶ୍ୟ ।

ଓଡ଼ିଆ କାବ୍ୟର ବିଷୟ ସଂଯୋଜନାରେ କବିର ନୈପୁଣ୍ୟ ଅଧିକ ପ୍ରତ୍ୟକ୍ଷ ହୋଇଥିବା ସତ୍ୟ । ଡକ୍ଟର ଆଚାର୍ଯ୍ୟ ଅକାତର ନିଷ୍ଠା ସହକାରେ ଓଡ଼ିଆ କାବ୍ୟର କଥାବସ୍ତୁ ଚିନ୍ତନ ଏବଂ ତାହାର ଉପସ୍ଥାପନାର ଯେପରି ଅଧ୍ୟୟନ କରିଛନ୍ତି ତାହା ତାଙ୍କ ଦ୍ୱାରା ପ୍ରଦତ୍ତ ପାଦଟୀକାମାନଙ୍କରେ ମୂର୍ତ୍ତ ହୋଇଛି । ସର୍ବୋପରି ତାଙ୍କ ଗ୍ରନ୍ଥର ପରିଶିଷ୍ଟରେ ସେ ଦେଖିଥିବା ଯେଉଁ ପ୍ରକାଶିତ ଅପ୍ରକାଶିତ କାବ୍ୟରାଜିର ସଂକଳନଟି ଦେଇଛନ୍ତି ସେ ଗୁଡ଼ିକରୁ ତାଙ୍କର ଓଡ଼ିଆ କାବ୍ୟ ଧାରଣାର ପୁଷ୍କଳତା ସ୍ୱତଃ ପ୍ରତିପାଦିତ ହୋଇଛି । ପୂର୍ବସୂରି ସଂସ୍କୃତ କବିଙ୍କ ଧାରାର ଅନୁବର୍ତ୍ତନରେ ଯୁଗରୁଚି, ଗ୍ରାହକ ରୁଚି ଏବଂ କବିର ସ୍ୱୀୟ ଶକ୍ତିର ସମନ୍ୱୟ ଦର୍ଶାଇବାରେ ଆବଶ୍ୟକ ତଥ୍ୟଗୁଡ଼ିକର ଯଥାଯଥ ପରିବେଷଣ ଯୋଗୁଁ ସମଗ୍ର ବିଶ୍ଳେଷଣ ଓ ସିଦ୍ଧାନ୍ତ ପ୍ରଭାବଶାଳୀ ହୋଇଛି । ଏହି ପ୍ରସଙ୍ଗରେ ଓଡ଼ିଆ କାବ୍ୟରେ ଦ୍ୱାଦଶଉପାଦାନ ନିର୍ଣ୍ଣୟ ଏକ ସୁଚିନ୍ତିତ ବିଧି ହେଲେ ହେଁ ଏହା ସବୁ କାବ୍ୟରେ ପ୍ରାୟ ଅଲଘଂନୀୟ ପ୍ରେମର ସ୍ଥାନ ପାଇଥିବା ଯୋଗୁଁ ଯେଉଁ ଗତାନୁଗତିକତା ଦୁରତିକ୍ରମ୍ୟ ହୋଇଛି ସେ ବିଷୟ ପୂର୍ଣ୍ଣଭାବେ କବିର ଦୃଷ୍ଟି ହୁଏତ ଏଡ଼ାଇ ଯାଇ ନାହିଁ । ତେଣୁ ବର୍ଣ୍ଣନାର ଅଭିନବତ୍ୱ ଲାଗି କବି ଆପଣାର କଳ୍ପନାକୁ ପ୍ରୟୋଗ କରିଛନ୍ତି । ଏହି କ୍ଷେତ୍ରରେ ବସ୍ତୁତଃ ଏକ ପ୍ରତିଯୋଗିତାର ଧାରା ଲକ୍ଷ୍ୟ କରିହୁଏ । ବିସ୍ତୃତ ତଥା ଉଦ୍‌ଭଟ କଳ୍ପନାର୍ ବହୁବର୍ଣ୍ଣା ବର୍ଣ୍ଣନା ମଧ୍ୟରେ ଆଦିରସାଶ୍ରିତ ସ୍ୱାଦ୍ୟ ଭାବରେ ସାମଗ୍ରୀ ଯୋଗାଣ ବ୍ୟବସାୟରେ ନିପୁଣ କଳାକାର ଗ୍ରାହକ ମନକୁ ପ୍ରାୟ ଆୟତ୍ତ କରି ଆଖ୍ୟାନ ବସ୍ତୁର ଅଗ୍ରଗତି ବିଷୟରେ  ଅନବହିତ କରି ଦେଇ ପାରୁଥିଲେ, ଏହା ହିଁ ଥିଲା ତାଙ୍କର କୌଶଳ କହିବା ସମୀଚୀନ ହେବ । ପ୍ରସଙ୍ଗକ୍ରମେ ବକ୍ତବ୍ୟ ଯେ ସେକାଳର ସେହି ପରାଧୀନ ନିର୍ବୀର୍ଯ୍ୟ ନିରୀହ ଜନତା ପାଇଁ କର୍ମପ୍ରେରଣା ଯୋଗାଇବାର ଉପାୟ ମଧ ଥିଲା ଏହି କାବ୍ୟ । ଏଥିରେ କର୍ମଚେତନା ନଥିଲା, ନଥିଲା ବି ପ୍ରଭାବଶାଳୀ କାନ୍ତାସମ୍ମିତ ଉପଦେଶ । ଥିଲା କେବଳ ବାଃ, ବାଃ କହି ହସିବାର ଉପାଦାନ, ଯାହା ଯୋଗୁଁ ଦୀର୍ଘରାତ୍ରୀର ଜାଗରଣ ଜନିତ କ୍ଲାନ୍ତି ଭିତରେ ବି ପରବର୍ତ୍ତୀ ସକାଳର କଠୋର ଜୀବନ ସଂଗ୍ରାମ ଲାଗି ଖୋରାକ୍ ପାଇଥିଲେ ସେକାଳ ଲୋକେ । ଆଜିବି ତ ଏ ଧାରା ତାର ଜନପ୍ରିୟତା ହରାଇ ନାହିଁ । ବିଷୟ ବସ୍ତୁର ସୋପାନବଦ୍ଧ ଗତାନୁଗତିକତା ମଧ୍ୟରେ ତଥାପି କାବ୍ୟକୁ ରୋଚକରସାଳ କରିଦେବାର ସେହି କୌଶଳ ସୋଦାହରଣ ପ୍ରଦର୍ଶନ କରିବାରେ ଶ୍ରୀମାନ୍ ସୁଦର୍ଶନଙ୍କ ସିଦ୍ଧି ପୁଷ୍କଳ ହୋଇଛି ।

ପ୍ରସଂଗକ୍ରମେ, ଓଡ଼ିଆ କାବ୍ୟର ବିଷୟ ସଂଯୋଜନା କୌଶଳର ଆଲୋଚନା ପ୍ରସଙ୍ଗରେ ଅତି ସ୍ୱାଭାବିକ ଭାବେ ଡକ୍ଟର ଆଚାର୍ଯ୍ୟ ଓଡ଼ିଆ କାବ୍ୟର ବିବର୍ତ୍ତନ ପ୍ରଶ୍ନ ବିଷୟରେ ସଚେତନ ହୋଇ କହିଛନ୍ତି - ''ନବୀନତାର ମୋହରେ ବିମୁଗ୍‌ଧ ହେଲେ ହେଁ ଏହି କାବ୍ୟକାରମାନେ ଏକ ସୀମିତ ତଥା ଅବରୁଦ୍ଧ ପରିବେଶ ତଥା ବାତାବରଣ ମଧ୍ୟରେ କାଳାତିପାତ କରୁଥିବା ଯୋଗୁଁ କୌଣସି ବୈପ୍ଳବିକ ପରିବର୍ତ୍ତନ ସଂଘଟନ କରିବା ପାଇଁ ସମର୍ଥ ହୋଇ ପାରିନଥିଲେ । କିନ୍ତୁ ଉନବିଂଶ ଶତାବ୍ଦୀର ପ୍ରାରମ୍ଭବେଳକୁ ବାସ୍ତବ ଘଟଣା ଭିତ୍ତିରେ ବ୍ରଜନାଥଙ୍କ ସମରତରଙ୍ଗ ରଚନା, କବିସୂର୍ଯ୍ୟ ଚନ୍ଦ୍ରକଳାକାବ୍ୟକୁ ଅସଂପୂର୍ଣ୍ଣ କରି ଛାଡ଼ିଦେବା, ଯଦୁମଣି କାବ୍ୟର ନାମ ପ୍ରବନ୍ଧ ପୂର୍ଣ୍ଣ ଚନ୍ଦ୍ର ରଖିଥିଲେ ହେଁ ଷୋଳଛାନ୍ଦ ପରିବର୍ତ୍ତେ ଆଠ ଛାନ୍ଦରେ କାବ୍ୟ ପରିସମାପ୍ତ କରିବା ପ୍ରଭୃତି ବିଷୟର ପୃଷ୍ଠଭୂମିରେ ବିଚାର କଲେ ଏହି ଟେକ୍‌ନିକ୍ ସର୍ବସ୍ୱ କାବ୍ୟ ପ୍ରତି କବିମାନଙ୍କର (ଅନ୍ତତଃ, ସ୍ୱାଧୀନ ଚିନ୍ତନ - ସମର୍ଥ ବିଦ୍ୟମାନ ଥିଲା ତାହା ଆମେ

ସ୍ପଷ୍ଟ ଭାବେ ଅନୁଭବ କରିଥାଉଁ । '' ଡକ୍ଟର ଆଚାର୍ଯ୍ୟଙ୍କ ଏ ମନ୍ତବ୍ୟର ପ୍ରତିପାଦ୍ୟ ହେଲା ଯେ ଏ ସମୟର କବି (ଏବଂ ଗ୍ରାହକ) ମନରେ ଏକ ନୂଆ ଧାରା ପାଇଁ ବ୍ୟାକୁଳତା ଥିଲା ପ୍ରାଣସ୍ପନ୍ଦନ । ଫଳତଃ, ନବଶିକ୍ଷା ଲାଭ ସହିତ ନୂତନ କାବ୍ୟଧାରାର ଆଦର୍ଶ ବା ଦୃଷ୍ଟାନ୍ତ ଦେଖିବା ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହା ହେଲା ନବ୍ୟ ଆନ୍ଦୋଳନର ଏକତମ କାରଣ ।

ଓଡ଼ିଆ କାବ୍ୟର ବହିରଙ୍ଗ କୌଶଳ ସଂପର୍କୀୟ ଆଲୋଚନା ପରେ ଡକ୍ଟର ଆଚାର୍ଯ୍ୟ ଶଂସିତ କାବ୍ୟର ଆତ୍ମିକ କୌଶଳ ପ୍ରସଂଗରେ ଅନୁଧାନ କରିଛନ୍ତି । ପ୍ରଥମେ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ସଂସ୍କୃତ ଅଳଂକାରଗ୍ରନ୍ଥରେ କାବ୍ୟାତ୍ମାଜିଜ୍ଞାସାର ସାରସଂକ୍ଷିପ୍ତ ପରିଚୟ ଉଲ୍ଲେଖ କରି କହନ୍ତି, '' ଏହି କାବ୍ୟାତ୍ମା କାବ୍ୟର ଅଣୁ ପରମାଣୁରେ ପରିବ୍ୟାପ୍ତ; ଉପସର୍ଗ ଓ ପ୍ରତ୍ୟୟଠାରୁ ପ୍ରକରଣ ଓ ପ୍ରବନ୍ଧ ପର୍ଯ୍ୟନ୍ତ ସର୍ବତ୍ର ଏହାର ଅବସ୍ଥିତି । କିନ୍ତୁ 'ନେତି'-ନିର୍ଦ୍ଦିଷ୍ଟ ମାନବାତ୍ମା ତୁଲ୍ୟ ଏହାର ସ୍ୱରୂପ ଉଦ୍‌ଘାଟନ ଅତ୍ୟନ୍ତ ଦୁରୂହ ବ୍ୟାପାର । ଅବଶ୍ୟ ଏ କଥା ସ୍ୱୀକାର୍ଯ୍ୟ ଯେ ଯାହା କାବ୍ୟର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ ବିଧାୟକ ତତ୍ତ୍ୱ ତାହାହିଁ କାବ୍ୟର ଆତ୍ମା । * * * ତାହାପରେ ଏକ ମନୋରମ ବିଶ୍ଳେଷଣରେ ସେ କହନ୍ତି '' * * * ଏହା (କାବ୍ୟ) ଦ୍ୱାରା ବ୍ୟକ୍ତିର ଚିନ୍ତା ସମଷ୍ଟି-ଚିନ୍ତାରେ ରୂପାନ୍ତରିତ ହୁଏ; ଜଣେ କବିର ଅନୁଭୂତି ଏକ ସାଧାରଣ ଅନୁଭୂତିରେ ପରିଣତ ହୁଏ । କିନ୍ତୁ ସାଧାରଣ ବ୍ୟକ୍ତି ବିଶେଷର ବାସ୍ତବାନୁଭୂତିଠାରୁ ପ୍ରତିଭାଧର କାବ୍ୟ ସ୍ରଷ୍ଟାର କାବ୍ୟାନୁଭୂତି ସ୍ୱତନ୍ତ୍ର ଓ ଉନ୍ନତ; ଏହାର ଅପରପର୍ଯ୍ୟାୟ ସୌନ୍ଦର୍ଯ୍ୟାନୁଭୂତି । ଏହି ବ୍ୟକ୍ତିଗତ ସୌନ୍ଦର୍ଯ୍ୟାନୁଭୂତିକୁ ପାଠକ ପ୍ରାଣରେ ସଂଚାରିତ କରିବା ପାଇଁ କବି ଯେଉଁ ବିବିଧ କୌଶଳର ଆଶ୍ରୟ ନିଏ, ତାହା ହିଁ କାବ୍ୟ-କୌଶଳ । ପରିଚିତ ଶବ୍ଦ ଓ ଅର୍ଥକୁ ଏକ ନବୀନ ଦୀପ୍ତିରେ ଉଦ୍‌ଭାସିତ କରି ସେ ପାଠକ ପ୍ରାଣରେ ଅପୂର୍ବ ଚମତ୍କୃତି ଜାଗ୍ରତ କରିବା ସଂଗେ ତାହାର ମାନସ (ଚିତ୍ତ ?) ଲୋକରେ ଲୋକୋତ୍ତର ଆନନ୍ଦ ସଞ୍ଚାର କରିଥାଏ । ଏଣୁ କାବ୍ୟ କେବଳ ଆନନ୍ଦ ପ୍ରଦାୟକ କିମ୍ବା ସୌନ୍ଦର୍ଯ୍ୟ - ଜନୟିତ୍ରୀ ନ ହୋଇ ହୁଏ ଆନନ୍ଦଘନ ଏବଂ ସୌନ୍ଦର୍ଯ୍ୟମୟ । ''* * * ନୀରସ ପରିଦୃଶ୍ୟମାନ ବସ୍ତୁସତ୍ତାକୁ ସରସ ତଥା ଚମତ୍କୃତ ରସ ସଂପଦରେ** ପରିଣତ କରିବା ପାଇଁ ଯେଉଁ ଉପାଦାନଟି ଏକାନ୍ତ ସମର୍ଥ ତାହାହିଁ କାବ୍ୟର ଆତ୍ମା । ''ପୁଣି ସେ କହନ୍ତି, ''କାବ୍ୟାତ୍ମା ଯେପରି କାବ୍ୟ-ନିରପେକ୍ଷ, ସେହିପରି ତାହା କାବ୍ୟ - ସମାଲୋଚକମାନଙ୍କ ବାଦାନୁବାଦର ଊର୍ଦ୍ଧ୍ୱରେ ଅବସ୍ଥିତ । '' ଏହି ଆତ୍ମାର ଅନୁପ୍ରବେଶ ଘଟିଲେ କବି- ନିବଦ୍ଧ ଶବ୍ଦାର୍ଥରୁ ଯେଉଁ ଚମତ୍କୃତିର ଉଦ୍‌ଭବ ଘଟେ ତାହା ସ୍ରଷ୍ଟା, କବି ଓ ଗ୍ରାହକ ପାଠକ ଉଭୟଙ୍କ ନିମିତ୍ତ ଏକ ବିସ୍ମୟକର ଆନନ୍ଦର କାରଣ ହୁଏ ।

ଏହି ବିଶ୍ଳେଷଣ ଓ ଧାରଣାର ଭିତ୍ତିରେ ଡକ୍ଟର ଆଚାର୍ଯ୍ୟ ଓଡ଼ିଆ କାବ୍ୟର ଆତ୍ମା ପରିପ୍ରେକ୍ଷୀରେ ତାଙ୍କ ସିଦ୍ଧାନ୍ତ ଜଣାଇଛନ୍ତି, ''ଆଲୋଚ୍ୟ ସମୟର (ଓଡ଼ିଆ) କାବ୍ୟଗୁଡ଼ିକୁ ଅନୁଶୀଳନ କଲେ. ଏହା ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ଚମତ୍କୃତି ହିଁ କାବ୍ୟର ଆତ୍ମା'' । '' ସମସାମୟିକ ଭାରତୀୟ ସାହିତ୍ୟରେ ମଧ ଚାଲିଥିଲା ଚମତ୍କୃତିର ଜୟଯାତ୍ରା ଏବ ତାହାରି ଫଳଶ୍ରୁତି ହୋଇଛି ସଂସ୍କୃତ ଅଳଂକାର ଶାସ୍ତ୍ରରେ ଚମତ୍କାର ବା ଚମତ୍କୃତିର ବିଶଦ ଆଲୋଚନା । କୁନ୍ତକଙ୍କ ''ବକ୍ରୋକ୍ତିଜୀବିତମ୍'' ଗ୍ରନ୍ଥରେ ଚମତ୍କାରିତାର ପ୍ରଥମ ଓ ପ୍ରତ୍ୟକ୍ଷ ଉଲ୍ଲେଖ ଦର୍ଶାଇ ପରବର୍ତ୍ତୀ କ୍ଷେମେନ୍ଦ୍ର -ନାରାୟଣ-ବିଶ୍ୱେଶ୍ୱର -କବିକର୍ଣ୍ଣପୂର -ଜଗନ୍ନାଥ-

ହରିପ୍ରସାଦ ପ୍ରମୁଖ ଆଚାର୍ଯ୍ୟମାନଙ୍କ ଅନୁଶୀଳନରେ ଚମତ୍କାରବାଦର ଚର୍ଚ୍ଚା ଏବଂ ବିଶ୍ଳେଷଣ ବିଷୟରେ ସ୍ୱୀୟ ଅଧ୍ୟୟନ ଦର୍ଶାଇବାରେ ଡକ୍ଟର ଆଚାର୍ଯ୍ୟଙ୍କ ନିଷ୍ଠା ଏବଂ ବିଦ୍ୱତ୍ତା ଅନନ୍ୟ ହୋଇଛି । ଏବଂ ସେ ଓଡ଼ିଆ କବି ଓ କାବ୍ୟ ପ୍ରସଙ୍ଗରେ ତାଙ୍କର ସମଗ୍ର ଆଲୋଚନା ମଧ୍ୟରେ ଏହି ଚମତ୍କାର ପ୍ରତିପାଦନ ଲକ୍ଷ୍ୟରେ ହିଁ ନିଜ ଅନୁଶୀଳନକୁ ନିୟନ୍ତ୍ରିତ କରିଥିବା ସ୍ୱୀକାର କରିଛନ୍ତି । ତେଣୁ ଶେଷରେ ଓଡ଼ିଆ କାବ୍ୟର ଆତ୍ମିକ-କୌଶଳ ବିବେଚନା ନିମିତ୍ତ ଉପସ୍ଥାପନ କରିଛନ୍ତି ଚମତ୍କୃତି ତତ୍ତ୍ୱ ।

ପ୍ରସଂଗକ୍ରମେ ସଂସ୍କୃତ ଆଳଂକାରିକମାନଙ୍କ ଆଲୋଚନାରେ ଚମତ୍କାରର ଏକ ନିର୍ଦ୍ଦିଷ୍ଟ ବ୍ୟାଖ୍ୟା ଦିଆଯାଇପାରିଛି ବୋଲି ହୃଦ୍‌ବୋଧ ହୁଏ ନାହିଁ । ପୂର୍ବାଚାର୍ଯ୍ୟମାନଙ୍କ ବକ୍ରତା, ଧ୍ୱନି, ରସ, ଔଚିତ୍ୟ, ରମଣୀୟତା, ଅଳଂକାର ପ୍ରଭୃତି ସକଳ ନିର୍ଣ୍ଣାୟକ ତତ୍ତ୍ୱର ପୁନଶ୍ଚ ଏକ ଶେଷ ଲକ୍ଷ୍ୟ ନିରୂପିତ ହୋଇଛି - ଚମତ୍କାର । ଏହାର ବ୍ୟାଖ୍ୟା ପ୍ରସଙ୍ଗରେ ଲୋକୋତ୍ତର ଆହ୍ଲାଦ, ଚିତ୍ତବିସ୍ତାରରୂପ ବିସ୍ମୟାନନ୍ଦ ପ୍ରଭୃତିରେ ସେହି ଆନନ୍ଦ, ଆହ୍ଲାଦ ସହିତ ଲୋକୋତ୍ତର ଜ୍ଞାନର ସଂବନ୍ଧକୁ ପୁଣି ଫେରି ଆସିଛନ୍ତି ସମସ୍ତେ । ଏ ଚମତ୍କାରକୁ ବିସ୍ମୟ କୋଟୀକୁ ନେଇ ସର୍ବତ୍ର ଅଦ୍‌ଭୁତରସର ପ୍ରସଙ୍ଗ ଉପସ୍ଥାପନର ଯଥାର୍ଥତା ମଧ୍ୟ ମନଃପୂତ ହୁଏ ନାହିଁ । ବସ୍ତୁତଃ ରସଗଙ୍ଗାଧର କର୍ତ୍ତାଙ୍କ ବିଶେଷଣଟିଏ ଏ ସଂପର୍କରେ ବଡ ହୃଦୟଗ୍ରାହୀ - ''ଅନୁଭବସାକ୍ଷିକ'' ଅର୍ଥାତ୍ ଏ ରମଣୀୟତା ବା ଚମତ୍କାର ସବୁ ସହୃଦୟଙ୍କ ଅନୁଭବରେ ଅଛି, ତାହାରି ଉପରେ ନିର୍ଭର କରିବାକୁ ହେବ ଏହାର ପ୍ରକୃତ ଧାରଣା ନିମିତ୍ତ । କବି ରାଧାନାଥ କହିଲା ଭଳି ''ବଚନ ବିଷୟ ନୁହଇ ଏ ଛବି/ହୃଦ ସେ କେବଳ ପାରେ ଅନୁଭବି'' । ବସ୍ତୁତଃ କାବ୍ୟାତ୍ମା ସଂପର୍କିତ ଆଲୋଚନାରେ ଅନେକ ଆଚାର୍ଯ୍ୟ ଏହାର ଅନିର୍ବଚନୀୟତା ମଧ୍ୟ ସ୍ୱୀକାର କରନ୍ତି । ବାସ୍ତବରେ ଏହାକୁ ବିସ୍ମୟାନନ୍ଦ ପର୍ଯ୍ୟାୟଭୁକ୍ତ କରିବା ଅପେକ୍ଷା ଆହ୍ଲାଦ ବା ଆନନ୍ଦର ଏକ ଭାବାବିଷ୍ଟ ବା ଭାବଘନ/ଭାବ ବିହ୍ୱଳ ଅବସ୍ଥା କହିବା ହୁଏ ତ ଅଧିକ ଗ୍ରହଣୀୟ ମନେ ହୁଏ । ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଏହାକୁ ଯଥାର୍ଥତଃ କହିଛନ୍ତି ଆନନ୍ଦଘନ ବା ଘନୀଭୂତ ଆନନ୍ଦ । ଏ ଅବସ୍ଥାରେ ଭାବର ତନ୍ମୟତାରେ କେବଳ ''ବାଃ, ବାଃ'' ଭଳି କେତେକ ଆନନ୍ଦାବବୋଧସୂଚକ ଅବ୍ୟୟ ହିଁ ପ୍ରୟୋଗ କରାଯାଇପାରେ । (ଇଂରେଜି Thrill, ecstasy, rapture ଶବ୍ଦ ଏହାର ସମାର୍ଥକ ହୋଇପାରେ ।)

ଏହି ଚମତ୍କାରକୁ ଓଡ଼ିଆ କାବ୍ୟର ଆତ୍ମା ବୋଲି ନିର୍ଦ୍ଦେଶ କରି ଡକ୍ଟର ଆଚାର୍ଯ୍ୟ ଯଥାର୍ଥ ସମୀକ୍ଷା କରିଛନ୍ତି । କିନ୍ତୁ ତାଙ୍କର ମୁଖ୍ୟ ବିଚାର୍ଯ୍ୟ କାବ୍ୟକୌଶଳ ଅର୍ଥାତ୍ କବିକର୍ମନିପୁଣତା । ଆମ ଅଳଂକାର ଶାସ୍ତ୍ରରେ କାବ୍ୟ ବା କବିକର୍ମର ଆଲୋଚନାରେ ଶ୍ରେଷ୍ଠ ତତ୍ତ୍ୱରୂପେ ଆତ୍ମାର ବିଚାର ମୁଖ୍ୟ ହେଲେ ହେଁ ତାହାକୁ କବିକର୍ମ ବୋଲି କୌଣସି ଆଚାର୍ଯ୍ୟ କହିନାହାନ୍ତି । କାବ୍ୟର ସଂଜ୍ଞା ମାନଙ୍କରେ ଅଗ୍ନି ପୁରାଣର ''ଇଷ୍ଟାର୍ଥବ୍ୟବଚ୍ଛିନ୍ନ ପଦାବଳୀ ଠାରୁ ଆରମ୍ଭ କରି ପଣ୍ଡିତ ରାଜ ଜଗନ୍ନାଥଙ୍କ ''ଶବ୍ଦ'' ର ଉଲ୍ଲେଖରେ କବି କର୍ମ ବସ୍ତୁତଃ ଶବ୍ଦ ଓ ଅର୍ଥ ମଧ୍ୟରେ ପର୍ଯ୍ୟବସିତ । ଅର୍ଥର ଏକ ଉଦ୍ଦେଶ୍ୟ, ବିଶେଷତ୍ୱ, ବକ୍ରତା, ବା ଭଙ୍ଗୀ ପ୍ରଭୃତି ଯେପରି ନିର୍ଦ୍ଦିଷ୍ଟ ହୋଇଛି ସେହିପରି କବିର ଉଦ୍ଦେଶ୍ୟ ତଥା ଭାଷାରଚନା ଉଭୟର ପ୍ରତିପାଦ୍ୟ ହୋଇଛି ଏବଂ ଚରଣ ସୌନ୍ଦର୍ଯ୍ୟ ବୋଧ ବା ଆସ୍ୱାଦ୍ୟ ଆନନ୍ଦ; ତାହା ହିଁ ଆଖ୍ୟାତ ହୋଇଛି କାବ୍ୟର

ଆତ୍ମା ନାମରେ । ଏହି ଆତ୍ମା ସ୍ରଷ୍ଟାକବିର କର୍ମ ସହିତ ସଂପୃକ୍ତ ନିଶ୍ଚୟ, କିନ୍ତୁ ସଂଶ୍ଳିଷ୍ଟ ନୋହିଥିବାରୁ ତାହା କବିର ପ୍ରତ୍ୟକ୍ଷ କର୍ମ ପରିସରର ଅନ୍ତର୍ଭୁକ୍ତ ନୁହେଁ । ତେଣୁ ଚମତ୍କୃତିକୁ କାବ୍ୟର ଆତ୍ମା ବୋଲି ସ୍ୱୀକାର କଲା ପରେ ଏହାର କବିକର୍ମନିଷ୍ଠ କାରଣ ଅର୍ଥାତ୍ ଶବ୍ଦାର୍ଥ ତାହାର ପ୍ରୟୋଗଗତ ଅବଲମ୍ବନର ବିଚାର ଅବଶ୍ୟମ୍ଭାବୀ ହୋଇଛି । ଏହି ପ୍ରସଂଗରେ ଆଲୋଚ୍ୟ ଗ୍ରନ୍ଥରେପଦ, ଛନ୍ଦ, ବିଷୟ ବସ୍ତୁ, ବର୍ଣ୍ଣନା, ଧ୍ୱନି, ରସ ଓ ଅଳଂକାରାଦି ପ୍ରସଙ୍ଗ ଅନୁସରଣରେ ଚମତ୍କାର ଜନକ କବିକର୍ମର ବ୍ୟାପକ ଅଧ୍ୟୟନ କରି ଡକ୍ଟର ଆଚାର୍ଯ୍ୟ ଓଡିଆ କାବ୍ୟର ଆତ୍ମିକ କୌଶଳ ବିଭବର ଆଲୋଚନାରେ ସ୍ୱୀୟ କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ଅଧ୍ୟୟନର ଏ ପ୍ରସଙ୍ଗଟି ଆମ ସମାଲୋଚନା କ୍ଷେତ୍ରରଏକ ନୂତନ ଦିଗ । ଏହାର ପୁଙ୍ଖାନୁପୁଙ୍ଖ ଆବିଷ୍କାର ନିମିତ୍ତ ଆବଶ୍ୟକ ଯେଉଁ ବ୍ୟାପକ ଅଧ୍ୟୟନ ତାହା ସହିତ ପରିଶିଷ୍ଟ ନିର୍ଦ୍ଦିଷ୍ଟ କାବ୍ୟଗୁଡିକର ଅଧ୍ୟୟନ ତଥା ଯଥୋଚିତ ଉପଯୋଗ ଫଳରେ ଏହି ଅଭିନବ ଆଲୋଚନାଟି ଅତ୍ୟନ୍ତ ମୂଲ୍ୟବାନ ହୋଇଛି, ଏହା ନିଃସନ୍ଦେହ । ବିଶେଷତଃ ମଧ୍ୟଯୁଗୀୟ କାବ୍ୟର ଶୈଳିକ ବୈଶିଷ୍ଟ୍ୟ ପ୍ରଦର୍ଶନ କ୍ଷେତ୍ରରେ ଏହି ଗ୍ରନ୍ଥଟି ପ୍ରଥମ ସ୍ଥାନର ଗୌରବ ସହିତ ଏକ ପ୍ରମୁଖ ପ୍ରାମାଣିକ କୃତିରୂପେ ଅବଶ୍ୟ ଆଦୃତ ହୋଇ ରହିଥିବ ।

ଗୋପାଳମାଳ,
ବୁଢ଼ାରଜା, ସମ୍ବଲପୁର ।

# ସାହିତ୍ୟ ସମୀକ୍ଷକ ଡଃ ସୁଦର୍ଶନ ଆଚାର୍ଯ୍ୟ

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ

ଓଡିଆ ସମାଲୋଚନା ସାହିତ୍ୟର ଆଧୁନିକ ପର୍ବରେ ଯେଉଁ ଅଳ୍ପ କେତେଜଣ ସମୀକ୍ଷକ ଗୁଣାତ୍ମକ ସମାଲୋଚନା ସୃଷ୍ଟିରେ ଆତ୍ମନିବେଶ କରିଛନ୍ତି, ତନ୍ମଧ୍ୟରୁ ଡଃ ସୁଦର୍ଶନ ଆଚାର୍ଯ୍ୟ ଅନ୍ୟତମ । ଏହି ଚିର ଗମ୍ଭୀର ମେଳାପୀ ବ୍ୟକ୍ତିତ୍ୱଟି ସମାଲୋଚନାକୁ ସାହିତ୍ୟର ଏକ ସାଧାରଣ କର୍ମ ଭାବରେ ଗ୍ରହଣ ନକରି ଜୀବନ ବ୍ୟାପି ସାଧନାର ଏକ ବିଶେଷ ଅଙ୍ଗ ଭାବରେ ଗ୍ରହଣ କରି ନେଇଛନ୍ତି । କେବଳ ସୃଷ୍ଟିର ସମ୍ୟକ ଆଲୋଚନା ନୁହେଁ; ବରଂ ସୃଷ୍ଟି ସହିତ ସମ୍ବନ୍ଧାନ୍ୱିତ ସ୍ରଷ୍ଟାର ବ୍ୟକ୍ତିତ୍ୱ, ତାର ପରିବେଶ ପୃଷ୍ଠଭୂମି ଓ ସ୍ରଷ୍ଟାର ଅନ୍ତର୍ନିହିତ ପ୍ରତିଭା ସହିତ ସନ୍ନିହିତ ଉପାଦାନ ମାନଙ୍କର ତନ୍ନ ତନ୍ନ ବିଶ୍ଳେଷଣ ପୂର୍ବକ ଏକ ନିର୍ଦ୍ଦିଷ୍ଟ ବାସ୍ତବ ଉପସଂହାରରେ ଉପନୀତ ହେବାପାଇଁ ସେ ସର୍ବଦା ଚେଷ୍ଟା କରି ଆସିଛନ୍ତି । ନିଜର ଆଭିମୁଖ୍ୟକୁ ସ୍ପଷ୍ଟ ଓ ତଥ୍ୟନିଷ୍ଠ କରିବା ନିମିତ୍ତ ଇତିହାସ ଠାରୁ ଆରମ୍ଭ କରି ବିଭିନ୍ନ ଶାସ୍ତ୍ର, ପୁରାଣ ଆଦିର ଅଧ୍ୟୟନ କରିଛନ୍ତି । ଡଃ ଆଚାର୍ଯ୍ୟଙ୍କ ପାଣ୍ଡିତ୍ୟ, ଶାଣିତ ଦୃଷ୍ଟିଭଙ୍ଗୀ, ବିଷୟ ବିଶ୍ଳେଷଣରେ ନୂତନ ଦୃଷ୍ଟିପାତ ତାଙ୍କ ସମାଲୋଚନା ସାହିତ୍ୟକୁ ଅଭିନବ ରୂପ ପ୍ରଦାନ କରିଛି ।

**ବ୍ୟକ୍ତିଗତ ବୃତ୍ତ :-**

ସାମାଜିକ ପରିବେଶ, ପରଂପରା ଓ ପାରିବାରିକ ଶିକ୍ଷା ବ୍ୟକ୍ତିର ବ୍ୟକ୍ତିତ୍ୱ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଡଃ. ଆଚାର୍ଯ୍ୟଙ୍କ ଜନ୍ମ ଏକ ସଂସ୍କୃତି ସଂପନ୍ନ ପଣ୍ଡିତ ପରିବାରରେ ୧୯୩୯ ମସିହା ଜାନୁୟାରୀ ମାସରେ । ପିତା ଯତିରାଜ ଆଚାର୍ଯ୍ୟ କେବଳ ଜଣେ ପଣ୍ଡିତ ନଥିଲେ, ଆୟୁର୍ବେଦ ଠାରୁ ଆରମ୍ଭ କରି ବିଭିନ୍ନ କାବ୍ୟଶାସ୍ତ୍ର ରଚନା କରି ସ୍ୱୀୟ ପ୍ରତିଭାର ଅଭ୍ରାନ୍ତ ନିଦର୍ଶନ ପ୍ରତିପାଦନ କରିଯାଇଛନ୍ତି । ଯତିରାଜଙ୍କ ପିତା ମୋହନ ଆଚାର୍ଯ୍ୟ ଜଣେ ବିଶିଷ୍ଟ ସାହିତ୍ୟ ସାଧକ ଥିଲେ । ତାଙ୍କ ପିତା ନାରାୟଣ ଆଚାର୍ଯ୍ୟ ଲଘୁ ଚନ୍ଦ୍ରିକା, ପାର୍ଥ ସାରଥିସ୍ତବ, ନୃସିଂହାର୍ଚ୍ଚନ ଚନ୍ଦ୍ରିକା ଆଦି ବହୁ ଗ୍ରନ୍ଥର ପ୍ରଣେତା । ଡଃ ଆଚାର୍ଯ୍ୟଙ୍କର ବୃଦ୍ଧ ପ୍ରପିତାମହ ଶ୍ରୀକର ଆଚାର୍ଯ୍ୟ ସାତ୍ୱତ ବ୍ରହ୍ମ ସଂହିତା ତଥା ଅନ୍ୟାନ୍ୟ ଗ୍ରନ୍ଥ ପ୍ରଣୟନ ସହିତ ଗୋଟିଏ ସୁବୃହତ ସୁଭାଷିତ ଶ୍ଳୋକ ସଂଗ୍ରହ ସଂକଳନ କରିଥିଲେ । ପରଂପରା କ୍ରମେ ଉତ୍ତରାଧିକାରୀ ସୂତ୍ରରେ ଡଃ ଆଚାର୍ଯ୍ୟସେହି ପ୍ରତିଭାର ଅଧିକାରୀ ହେବା ଆଦୌ ବିଚିତ୍ର ନୁହେଁ । ଯେଉଁ ବଂଶରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚା ଓ ଲିଖନ ଏକ ପରଂପରା ରୂପେ ପରିଗୃହୀତ ହୋଇଆସୁଥିଲା, ଡଃ ଆଚାର୍ଯ୍ୟଙ୍କ ଉପରେ ତାର ପ୍ରଭାବ ରହିବା ସ୍ୱାଭାବିକ । ମୌଳିକ ସୃଷ୍ଟି

ବଂଶଗତ ପରମ୍ପରା ହୋଇଥିଲେ ହେଁ, ଏଥିରୁ ବିଚ୍ୟୁତ ହୋଇ ଡଃ. ଆଚାର୍ଯ୍ୟ ମୌଳିକ ସୃଷ୍ଟିର ପର୍ଯ୍ୟାଲୋଚନା ନିମିତ୍ତ ଆଗ୍ରହ ପ୍ରକାଶ କରିଛନ୍ତି ଏବଂ ଗୋଟିଏ ସଂସ୍କୃତି ସଂପନ୍ନ ପରିବାରର ଦାୟାଦ ରୂପେ ସମାଲୋଚନା କ୍ଷେତ୍ରରେ ନିଜର ଏକ ବିଶିଷ୍ଟ ଆସନ ସ୍ଥାପନ କରିପାରିଛନ୍ତି । ପୁନରାୟ ସଂସ୍କୃତ ମାଧ୍ୟମରେସେ ତାଙ୍କର ପ୍ରାଥମିକ ଶିକ୍ଷା ଲାଭ କରିଥିବାରୁ ଓ ପରେ ପରେ ଆଧୁନିକ ସାହିତ୍ୟ ପଠନ ପାଠନରେ ମନୋନିବେଶ କରିଥିବାରୁ ଉଭୟ ସଂସ୍କୃତ ଏବଂ ଇଂରାଜୀ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ରହିଛି । ଏହି ଦୃଷ୍ଟିରୁ ତାଙ୍କ ସମାଲୋଚନାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀର ଅପୂର୍ବ ସମନ୍ୱୟ ସ୍ଥାପନ ହୋଇ ପାରିଛି । ସଂସ୍କୃତ ଅଳଂକାର ଶାସ୍ତ୍ର ଏବଂ ଇଂରାଜୀ ସମୀକ୍ଷା ତତ୍ତ୍ୱକୁ ଉପଜୀବ୍ୟ କରି ସେ ଓଡିଆ ସମାଲୋଚନା ସାହିତ୍ୟରେ ପ୍ରବେଶ କରିଛନ୍ତି । ସଂସ୍କାର ରୂପେ ରହିଆସିଥିବା ପରଂପରାର ଅନୁରୋଧରେ ସେ ପ୍ରାଚୀନ ସାହିତ୍ୟ ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି; ମାତ୍ର ଆଧୁନିକ ଶିକ୍ଷା ସାହିତ୍ୟର ନୂତନ ଆକଳନ ନିମିତ୍ତ ତାଙ୍କୁ ପ୍ରଚୋଦିତ କରିଛି ।

ଡଃ ଆଚାର୍ଯ୍ୟଙ୍କ ସମାଲୋଚନାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯଥା- ସାହିତ୍ୟ ତଥା ଗବେଷଣାତ୍ମକ ଆଲୋଚନା ଓ ସଂପାଦନାର ସମାଲୋଚନା ।

**ସାହିତ୍ୟ ଓ ଗବେଷଣାତ୍ମକ ଆଲୋଚନା :-**

ଆଲୋଚନା ପ୍ରସଂଗରେ ସୂଚନା ଦିଆଯାଇଛି ଯେ, ଡଃ ଆଚାର୍ଯ୍ୟଙ୍କ ଜନ୍ମ ଏପରି ଏକ ସଂସ୍କୃତି ସଂପନ୍ନ ପରିବାରରେ, ଯେଉଁଠାରେ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚାର ପରଂପରା ଅନାହତ ରହିଥିଲା । ଏହି କାରଣରୁ ସ୍ନାତକୋତ୍ତର ଶ୍ରେଣୀରେ 'ଆଧୁନିକ ଓଡିଆ ସାହିତ୍ୟ' ସ୍ୱତନ୍ତ୍ର ପତ୍ର ରୂପେ ଅଧ୍ୟୟନ କରିଥିଲେହେଁ ମଧ୍ୟଯୁଗୀୟ ସାହିତ୍ୟ ପ୍ରତିଥିଲା ତାଙ୍କର ଦୁର୍ବାର ଆକର୍ଷଣ । ସେଥିପାଇଁ ମଧ୍ୟଯୁଗୀୟ ସାହିତ୍ୟ ସମାଲୋଚନାରେ ସେ ନିଜର ବିଶେଷତ୍ୱ ପ୍ରତିପାଦନ କରିପାରିଛନ୍ତି । ଏ ଯାବତ୍ ତାଙ୍କର ତିନିଖଣ୍ଡି ସମାଲୋଚନା ପୁସ୍ତକ ପ୍ରକାଶ ଲାଭ କରିଛି । ଯଥା- ସାହିତ୍ୟ ଓ ସାହିତ୍ୟିକ (୧୯୬୮), ସ୍ରଷ୍ଟା ଓ ସୃଷ୍ଟି (୧୯୭୨) ଓ ଓଡିଆ କାବ୍ୟ କୌଶଳ (୧୯୮୩, ଗବେଷଣାତ୍ମକ ନିବନ୍ଧ) । ଏତଦ୍‌ବ୍ୟତୀତ ପଚାଶରୁ ଊର୍ଦ୍ଧ୍ୱ ସମାଲୋଚନା ଓଡିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ଲାଭ କରିଥିଲେ ହେଁ, ତାହା ସଂକଳିତ ହୋଇ ପାରିନାହିଁ । ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ ସମୟରେ ତାଙ୍କର ପ୍ରଥମ ଆଲୋଚନା 'ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ' ପ୍ରକାଶ ପାଇଥିଲା 'କୋଣାର୍କ' ୧ମ ବର୍ଷ ୨ୟ ସଂଖ୍ୟାରେ । ଏହାପରେ ସେ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ଝଙ୍କାର, କୋଣାର୍କ ତଥା ଓଡିଶାର ବହୁ ପ୍ରତିଷ୍ଠିତ ପତ୍ରିକାରେ ତାଙ୍କର ଆଲୋଚନାଗୁଡିକ ପ୍ରକାଶ ଲାଭ କରି ସୁଧୀମଣ୍ଡଳର ଦୃଷ୍ଟି ଆକର୍ଷଣ କରିପାରିଛି ।

ପରଂପରା ଓ ପୂରୋଦ୍ଦୃଷ୍ଟି ତାଙ୍କ ଆଲୋଚନାର ପ୍ରଥମ ବୈଶିଷ୍ଟ୍ୟ। ପାରଂପରିକ ରୀତିରେ ସମାଲୋଚନା ରଚନାର ସେ ପରିପନ୍ଥୀ। ମଧ୍ୟଯୁଗୀୟ ସାହିତ୍ୟାଲୋଚନା ସମୟରେ ମଧ୍ୟ ସେ ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଛନ୍ତି। ସତ୍ୟର ଆବିଷ୍କାର ବିସ୍ମୃତ ପ୍ରାୟ ରଚନା ତଥା ରଚୟିତାଙ୍କୁ ଉଦ୍ଧାର, ମାର୍ଜିତ ଶବ୍ଦ ପ୍ରୟୋଗ, ବାକ୍ୟ ବିନ୍ୟାସରେ ପରିମିତି ବୋଧ, ମୌଳିକ ବିଚାରଧାରା, ନିରପେକ୍ଷ ବିଶ୍ଳେଷଣ ପ୍ରାମାଣିକ ତଥା ତଥ୍ୟ ଭିତ୍ତିକ ବିଚାରଧାରା, ଯୁକ୍ତିନିଷ୍ଠ ଆଲୋଚନା ତାଙ୍କୁ ଏକ ବିଶିଷ୍ଟ ଆଲୋଚକର ଆସନ ପ୍ରଦାନ କରିଛି। ବ୍ୟାପକ ଅଧ୍ୟୟନ ଓ ଗଭୀର ଅଧ୍ୟବସାୟ ଦ୍ୱାରା ମଧ୍ୟଯୁଗୀୟ ସାହିତ୍ୟ ଆଲୋଚନାରେ ସେ ଯେଉଁ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି, ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ଆଲୋଚକଙ୍କ ଆଲୋଚନାରେ ତାହା ଦେଖିବାକୁ ମିଳିଥାଏ। ନୂତନ ଦୃଷ୍ଟିକୋଣରୁ ସୃଷ୍ଟିର ପର୍ଯ୍ୟାଲୋଚନା ଏବଂ ଲୋକଲୋଚନର ଅଗୋଚରରେ ରହିଥିବା ପ୍ରତିଭାମାନଙ୍କୁ ପରିଚିତ କରାଇବା କ୍ଷେତ୍ରରେ ତାଙ୍କର ସାଧନା ଅତୀବ ପ୍ରଶଂସନୀୟ। ଡଃ ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟରେ ଯେଉଁ ଆଲୋଚନା ଧାରାଟିର ପ୍ରବର୍ତ୍ତନ କରିଥିଲେ, ଡଃ ଆଚାର୍ଯ୍ୟଙ୍କ ହାତରେ ତାହା ପରିପୁଷ୍ଟିଲାଭ କରିଥିବାର ଜଣାଯାଏ। ସେଥିପାଇଁ ତାଙ୍କ ଆଲୋଚନାରେ ଚର୍ବିତଚର୍ବଣ କିମ୍ବା ଅନ୍ୟସିଦ୍ଧାନ୍ତର ଅନ୍ଧାନୁସରଣ ଦେଖିବାକୁ ମିଳିନଥାଏ। ତଥ୍ୟ ସଂଗ୍ରହ ଏବଂ ସଂଗୃହୀତ ତଥ୍ୟର ଉପଯୁକ୍ତ ବିଶ୍ଳେଷଣ ଦ୍ୱାରା ସତ୍ୟର ଉଦ୍‌ଘାଟନ ତାଙ୍କ ଆଲୋଚନାର ଅନ୍ୟତମ ବୈଶିଷ୍ଟ୍ୟ।

ଡଃ. ଆଚାର୍ଯ୍ୟଙ୍କ ପ୍ରଥମ ପ୍ରକାଶିତ ସମାଲୋଚନା ପୁସ୍ତକ 'ସାହିତ୍ୟ ଓ ସାହିତ୍ୟିକ'। ଏହାର ଦୁଇଟି ଭାଗ ରହିଛି। ପ୍ରଥମ ଭାଗରେ ସାହିତ୍ୟ ସଂପର୍କୀୟ ଆଲୋଚନା ରହିଥିବା ସମୟରେ ଦ୍ୱିତୀୟ ଭାଗରେ କେତେକ ପରିଚିତ ଓ ବିସ୍ମୃତ ପ୍ରାୟ ସାହିତ୍ୟିକ ସମ୍ବନ୍ଧରେ ଆଲୋକପାତ କରାଯାଇଛି। ପ୍ରଥମଭାଗର ଚାରୋଟି ପ୍ରବନ୍ଧରୁ ଆଲୋଚକଙ୍କ ସଂସ୍କୃତ ସାହିତ୍ୟ ତଥା ଅଳଂକାର ଶାସ୍ତ୍ରରେ ଗଭୀର ପ୍ରବେଶ ଏବଂ ବିଷୟ ବିଶ୍ଳେଷଣରେ ନୂତନ ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ। ମଙ୍ଗଳାଚରଣ କାବ୍ୟ ରଚନାରେ ଏକ ପରଂପରା ରୂପେ ଗୃହୀତ ହୋଇଥିଲେହେଁ ଏହି ମଙ୍ଗଳାଚରଣ କାହିଁକି ? ଏହାର ସ୍ୱରୂପ କ'ଣ ? ଏ ଗୁଡିକ କବି ମାନସର ବା କବି ଜୀବନ ଚରିତର କି ସୂଚନା ପ୍ରଦାନ କରନ୍ତି ? କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ଏଗୁଡିକର ଆବଶ୍ୟକତା କ'ଣ ? ଆଦି ସଂପର୍କରେ ବିସ୍ତୃତ ଆଲୋଚନା 'ମଙ୍ଗଳାଚରଣ' ପ୍ରବନ୍ଧରେ ରହିଛି। ଏହି ମଙ୍ଗଳାଚରଣରେ କବିର ବିଶ୍ୱାସବୋଧ ଓ ମାନସିକତା କିପରି କାର୍ଯ୍ୟ କରିଥାଏ ଡଃ ଆଚାର୍ଯ୍ୟ ବୈଜ୍ଞାନିକ ପଦ୍ଧତିରେ ତାର ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି। ଏଥିରୁ କବିର ଧର୍ମମତ ସ୍ପଷ୍ଟ ହେବା ସଂଗେ ସଂଗେ ପାଠକ ଲାଭ କରିଥାଏ ଭଗବତ୍ ଅନୁକଂପା ବ୍ରହ୍ମାନନ୍ଦ ସହୋଦର ତୁଲ୍ୟ ଆନନ୍ଦ। ତେଣୁ ମଙ୍ଗଳାଚରଣ ସଂସ୍କୃତ କାବ୍ୟ ସାହିତ୍ୟର ଏକ ପରଂପରା ରୂପେ ଗୃହୀତ ହୋଇଥିଲେହେଁ ଏଥିରେ କବିର ବିଶ୍ୱାସବୋଧ ଓ ମାନସିକତା ଅଧିକ ଗୁରୁତ୍ୱ ପୂର୍ଣ୍ଣବୋଲି ଆଲୋଚକ ମତବ୍ୟକ୍ତ କରିଛନ୍ତି। ଦ୍ୱିତୀୟ ପ୍ରବନ୍ଧ 'କବିଜନ ସୁଲଭ ବିନୟ' ରେ ଆଲୋଚକ ତାର ମୂଳ ଉଦ୍ଦେଶ୍ୟଟିକୁ ବ୍ୟକ୍ତ କରିବାକୁ ଯାଇ ସଂସ୍କୃତ ସାହିତ୍ୟ

ସାଗର ମନ୍ଥନ କରିଛନ୍ତି । ଅଳଂକାର ଶାସ୍ତ୍ରରେ ଏହା ସଂପର୍କରେ କୌଣସି ସୂଚନା ନଥିଲେହେଁ ଗର୍ବ ପରିହାର ପାଇଁ କବିଙ୍କ ପାଣ୍ଡିତ୍ୟ ଓ ଗୁଣଗ୍ରାହିତା ନିମିତ୍ତ ଏହି ନମ୍ରତା ସ୍ୱାଭାବିକ ବୋଲି ସେ କହିଛନ୍ତି । 'କବି ଓ କଳ୍ପନା' ପ୍ରବନ୍ଧରେ ସାହିତ୍ୟ ସହିତ କଳ୍ପନାର ସମ୍ବନ୍ଧ ଅବତାରଣା କରିବାକୁ ଯାଇ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ଭିତ୍ତିରେ ଏହାର ସ୍ୱରୂପ ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଛନ୍ତି । କଳ୍ପନା ବ୍ୟତିରେକ ସାହିତ୍ୟ ସୃଷ୍ଟି ଅସମ୍ଭବ । ସେଥିପାଇଁ ଇଂରାଜୀ ଆଲୋଚକ ହେଜଲିଟ୍ କହିଥିଲେ - Poetery is the language of Imagination and passion. କଳ୍ପଲୋକସହିତ ଦୃଶ୍ୟମାନ ଜଗତକୁ, ଅସୀମ ସହିତ ସସୀମର ଯୋଗସୂତ୍ର ସ୍ଥାପନ କ୍ଷେତ୍ରରେ କଳ୍ପନା କବିଙ୍କୁ ସହାୟତା କରିଥାଏ । ଡଃ. ଆଚାର୍ଯ୍ୟଙ୍କ ଭାଷାରେ ''ପ୍ରତିଭାବାନ କବି ସାଧାରଣ ମାନବ ଚକ୍ଷୁରେ ଏକ ପ୍ରହେଳିକା । ସେ କଳ୍ପଲୋକର ,କିନ୍ତୁ କଳ୍ପଲୋକ ସହିତ ତାହାର ସଂପର୍କ ନାହିଁ । କବି ଏହିପରି ଦୃଶ୍ୟମାନ ଜଗତର ଅନିତ୍ୟ ଜୀବ, କିନ୍ତୁ ସେ ଅଜ୍ଞାତ ସଂସାରର ନିତ୍ୟ ଦେବତା , ସେ ସସୀମତାର କୋଳରେ ଲାଳିତ ପାଳିତ, ସସୀମ ତା'ର ଜୀବନ ସରଣୀ, କିନ୍ତୁ ସେ ଅସୀମ ଶକ୍ତିମାନ ଏବଂ ଅସୀମତାରେ ତାର ବିଳାସ । ଦେଶକାଳରେ ତାର ଜୀବନ ଆବଦ୍ଧ । କିନ୍ତୁ ସେ ଦେଶାତୀତ, କାଳାତୀତ । କିନ୍ତୁ ଏହି ଦ୍ୱନ୍ଦ୍ୱମଧ୍ୟରେ ସେ ଏପରି ଏକ ସମନ୍ୱୟ ସୃଷ୍ଟିକରେ, ଯାହା ସାଧାରଣଙ୍କୁ ଚମତ୍କୃତ କରେ । ସସୀମ ଓ ଅସୀମ, ଇନ୍ଦ୍ରୀୟ ରାଜ୍ୟ ଓ ଅତୀନ୍ଦ୍ରିୟ ରାଜ୍ୟ, ବ୍ୟଷ୍ଟି ଓ ସମଷ୍ଟି ଲୌକିକ ଓ ଲୋକୋତ୍ତର ସତ୍ତା ମଧ୍ୟରେ କବି ଏକ ଯୋଗସୂତ୍ର । (କବି ଓ କଳ୍ପନା- ସାହିତ୍ୟ ଓ ସାହିତ୍ୟିକ । ପୃ-୨୨ ୧ମ ସଂସ୍କରଣ) କଳ୍ପନାର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ଆଲୋଚକ କବି ସୃଷ୍ଟିରେ ଏହାର ଉପାଦେୟତା ଏବଂ ବାସ୍ତବତା ସହିତ ଏହି କଳ୍ପନାର ସଂପର୍କର ଏକ ଯୁକ୍ତିଯୁକ୍ତ ସିଦ୍ଧାନ୍ତ ପ୍ରତିପାଦିତ କରିଛନ୍ତି । କାଳିଦାସଙ୍କ 'ରଘୁବଂଶମ୍' କାବ୍ୟର ଷଷ୍ଠ ସର୍ଗ ଅବଲମ୍ବନରେ 'କାଳିଦାସଙ୍କ ସାହିତ୍ୟରେ ସ୍ୱୟମ୍ବର ବର୍ଣ୍ଣନା' ପ୍ରବନ୍ଧଟି ରଚିତ । ଏଥିରେ ଆଲୋଚକ କାଳିଦାସୀ ପ୍ରତିଭାର ମୂଲ୍ୟାୟନ କରିବା ସଂଗେ ସଂଗେ ସଂସ୍କୃତ ସାହିତ୍ୟରେ ତାଙ୍କର ଯେଉଁ ଅଗାଧ ପ୍ରବେଶ ରହିଛି, ତାର ପ୍ରମାଣ ପ୍ରଦାନ କରିଛନ୍ତି । ପରବର୍ତ୍ତୀ ତିନୋଟି ପ୍ରବନ୍ଧ ମୁଖ୍ୟତଃ ଭଞ୍ଜ ସାହିତ୍ୟର ନେତ୍ର ବର୍ଣ୍ଣନା, ସୌନ୍ଦର୍ଯ୍ୟବୋଧ ଓ ସାର୍ବଜନୀନତାକୁ ଭିତ୍ତିକରି ରଚିତ । ନେତ୍ର ବର୍ଣ୍ଣନା ପ୍ରସଂଗରେ ଆଲୋଚକ କାଳିଦାସ ଓ ଶ୍ରୀହର୍ଷଙ୍କ କାବ୍ୟକୃତିର ଆଲୋଚନା ସହିତ ଉପେନ୍ଦ୍ରଙ୍କ ବର୍ଣ୍ଣନାର ବୈଶିଷ୍ଟ୍ୟ ସୂଚାଇଛନ୍ତି । ତୁଳନାତ୍ମକ ସମାଲୋଚନା ପଦ୍ଧତିରେ ସଂସ୍କୃତ ସାହିତ୍ୟ ସହିତ ଉପେନ୍ଦ୍ରଙ୍କ ସାହିତ୍ୟର ତୁଳନା କରି କବିଙ୍କ ବୈଶିଷ୍ଟ୍ୟ ଓ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ସେହିପରି ଭଞ୍ଜ ସାହିତ୍ୟର ସୌନ୍ଦର୍ଯ୍ୟବୋଧ ପ୍ରସଂଗରେ ଡଃ ଆଚାର୍ଯ୍ୟ ସୌନ୍ଦର୍ଯ୍ୟତତ୍ତ୍ୱର ତାତ୍ତ୍ୱିକ ବ୍ୟାଖ୍ୟା କରିବାକୁ ଯାଇ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟ ତତ୍ତ୍ୱ ପ୍ରସଙ୍ଗର ଅବତାରଣା କରି ଭଞ୍ଜ ସାହିତ୍ୟରେ ତାର ରୂପାୟନ ସଂପର୍କରେ ଆଲୋଚନା କରିଛନ୍ତି । ଗୋପବନ୍ଧୁ ଦାସଙ୍କ ଅବକାଶ ଚିନ୍ତା'ର 'ଉପେନ୍ଦ୍ରଭଂଜ' କବିତାଂଶ' 'ଗାଏ ତୁମ୍ଭ ଗୀତ' ମନ୍ତବ୍ୟ ମାଧ୍ୟମରେ ଭଞ୍ଜସାହିତ୍ୟର ସାର୍ବଜନୀନତା ସମ୍ବନ୍ଧରେ ଆକଳନ କରାଯାଇଛି । ଗାନ ଯୋଗ୍ୟତା ବା ସାଙ୍ଗୀତିକତା ଯେ ଉପେନ୍ଦ୍ର ସାହିତ୍ୟର ଚରମ ବୈଶିଷ୍ଟ୍ୟ, ଅସ୍ୱୀକାର କରାଯାଇନପାରେ ।

ବିଲର ଚଷା, ଅନ୍ତଃପୁରର ଯୋଷା, ପଥରପଥିକ - ସମସ୍ତଙ୍କ ପାଇଁ ଉପେନ୍ଦ୍ର ସାହିତ୍ୟର ଦ୍ୱାର ଉନ୍ମୁକ୍ତ । ଉପେନ୍ଦ୍ର ସାହିତ୍ୟ ସପକ୍ଷ ଓ ବିପକ୍ଷ ମତ ଆଲୋଚନା ଦ୍ୱାରା ତାଙ୍କ ସୃଷ୍ଟିର ବୈଶିଷ୍ଟ୍ୟ ପ୍ରତିପାଦନ କ୍ଷେତ୍ରରେ ଆଲୋଚକ ସୂକ୍ଷ୍ମ ବିଚାର ବୋଧର ପରିଚୟ ପ୍ରଦାନ କରିଛନ୍ତି । ଗତିଶୀଳ 'ସାହିତ୍ୟ ପ୍ରବନ୍ଧ ରେ ସାମଗ୍ରିକ ଦୃଷ୍ଟି କୋଣରୁ ସାହିତ୍ୟର ଅନ୍ତଃସ୍ୱର ସମ୍ବନ୍ଧରେ ଆଲୋକପାତ କରାଯାଇଛି । ଗତିଶୀଳତାହିଁ ସାହିତ୍ୟର ଧର୍ମ । ଏ ସଂପର୍କରେ ଡଃ ଆଚାର୍ଯ୍ୟଙ୍କ ମତ ହେଉଛି ''ସ୍ରୋତସ୍ୱିନୀର ସୌନ୍ଦର୍ଯ୍ୟ ଯେପରି ଗିରିଗୁହା କିମ୍ବା ସାଗର ତରଙ୍ଗରେ ନାହିଁ କିନ୍ତୁ ଅଛି ତାର ପ୍ରବହମାନତାରେ, ତାର ଗତିଶୀଳତା ମଧ୍ୟରେ , ଠିକ୍ ସେହିପରି ସାହିତ୍ୟର ମାଦକତା ତଥା ଚିର ଚମତ୍କାରିତା ଅଛି ତାର ଗତିରେ, କିନ୍ତୁ ସ୍ଥିତିରେ ନୁହେଁ । '' (ସାହିତ୍ୟ ଓ ସାହିତ୍ୟିକ - ପୃ-୫୮-୫୯) । ଗତିଶୀଳତା ସାହିତ୍ୟର ସୌନ୍ଦର୍ଯ୍ୟ ବୃଦ୍ଧିକରେ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ବିକାଶ ଧାରାର ସୂଚନା ପ୍ରଦାନ କରି ସଂସ୍କୃତ ସାହିତ୍ୟରେ କାଳିଦାସ, ମାଘ, ଭାରବୀ, ଶ୍ରୀହର୍ଷ ଓ ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର, ଯଦୁମଣି, କବିସୂର୍ଯ୍ୟ, ରାଧାନାଥ, ଫକୀରମୋହନ, ନନ୍ଦକିଶୋର, ଗୋଦାବରୀଶ, ଅନ୍ନଦାଶଙ୍କର, ମାନସିଂ, ଗଡନାୟକ, ସଚ୍ଚିଦାନନ୍ଦ ଆଦି ଗତିଶୀଳ ସାହିତ୍ୟ ସୃଷ୍ଟି କରିଥିବାରୁ ସ୍ମରଣୀୟ ହୋଇପାରିଛନ୍ତି ବୋଲି ଯେଉଁ ମତପ୍ରଦାନ କରିଛନ୍ତି, ତାହା ଯଥାର୍ଥ । 'ବାଣୀକୁଞ୍ଜ ମଞ୍ଜୁଷା' ପ୍ରବନ୍ଧରେ ମଞ୍ଜୁଷାର ସୃଷ୍ଟି ଇତିହାସ ଏବଂ ମଞ୍ଜୁଷାଧିପତି ମାନଙ୍କର ଶାସ୍ତ୍ରଚର୍ଚ୍ଚା ଓ ରଚନାର ପରଂପରା ଆଲୋଚନା ପୂର୍ବକ ଓଡ଼ିଆ ସାହିତ୍ୟକୁ ସେମାନଙ୍କର ଅବଦାନ ସଂପର୍କରେ ସୂଚନା ଦେଇଛନ୍ତି । 'ପରିସ୍ଥିତିର ପର୍ଯ୍ୟାଲୋଚନା' ପ୍ରବନ୍ଧରେ ମୁଖ୍ୟତଃ ସାହିତ୍ୟ ଲେଖକ, ପାଠକ ଓ ପ୍ରକାଶକଙ୍କ କେତେକ ସମସ୍ୟା ସମ୍ବନ୍ଧରେ ଯାହା ସୂଚିତ ହୋଇଛି ସାଂପ୍ରତିକ ପରିପ୍ରେକ୍ଷୀରେ ତାର ଉପାଦେୟତା ଅତ୍ୟନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ଓଡ଼ିଆ କ୍ଷୁଦ୍ରଗଳ୍ପ ସାହିତ୍ୟର ଗତି ପ୍ରକୃତି, ପ୍ରାଚୀନ ଓଡ଼ିଆ କାବ୍ୟ ପରିକ୍ରମା ଏବଂ ଓଡ଼ିଆ ଚଂପୂ ପରିକ୍ରମା- ପ୍ରବନ୍ଧ ତ୍ରୟରେ ଡଃ. ଆଚାର୍ଯ୍ୟ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ମୂଲ୍ୟାୟନ କରି ଏହାର ସୃଷ୍ଟି ଉତ୍ସ, କ୍ରମବିକାଶର ସୂତ୍ର ସଂପର୍କରେ ସୂଚିତ କରିଛନ୍ତି ।

ସାହିତ୍ୟିକ ପର୍ଯ୍ୟାୟର ପ୍ରଥମ ପ୍ରବନ୍ଧ କବି ହରିହର ନରେନ୍ଦ୍ର ମାର୍କଣ୍ଡଙ୍କ 'ମଦାଳସା' କାବ୍ୟର ବିଚାର । ଏଥିରେ କବିଙ୍କ ସମୟ, କାବ୍ୟର ବିଷୟବସ୍ତୁ , ବିଭିନ୍ନ ସଂସ୍କୃତ ସାହିତ୍ୟ ଓ ପୁରାଣର ପ୍ରଭାବ ତଥା କାବ୍ୟର ମୌଳିକତା ସମ୍ବନ୍ଧରେ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ରହିଛି । ସେହିପରି ଦ୍ୱିତୀୟ ପ୍ରବନ୍ଧ 'ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ ' ଆଲୋଚକଙ୍କର ପ୍ରଥମ ପ୍ରବନ୍ଧ ହୋଇଥିଲେ ହେଁ, ଲୋକଲୋଚନର ଆଗୋଚରରେ ରହିଯାଇଥିବା ଏହି କାବ୍ୟଟି ସମ୍ବନ୍ଧରେ ଆଲୋଚନା କରି ସେ ଏକ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଛନ୍ତି । ଉକ୍ତ କାବ୍ୟର ବିଷୟବସ୍ତୁଏକ ତୈଲଙ୍ଗ୍ୟ ଗ୍ରନ୍ଥରୁ ଗୃହୀତ ହୋଇଥିଲେହେଁ , ଡଃ ଆଚାର୍ଯ୍ୟ କବିଙ୍କ ସମୟ ନିରୂପଣ, କଳ୍ପନାରେ ମୌଳିକତା, ଯୁଗୀୟ ପ୍ରଭାବ ସଂପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି । ଅନ୍ୟତମ ପ୍ରବନ୍ଧ 'ଜ' ଆଦ୍ୟରେ ରଖି ରଚିତ ହୋଇଥିବା 'ଜାନକୀଶ ବିଳାସ ରାମାୟଣ' ଆଲୋଚନାରେ ଉକ୍ତ ଗ୍ରନ୍ଥଟି ଭକ୍ତରାମଙ୍କ ନାମରେ ଭଣିତା ହୋଇଥିଲେହେଁ ବିଭିନ୍ନ

ପ୍ରମାଣ ମାଧ୍ୟମରେ ଆଲୋଚକ ଗ୍ରନ୍ଥର ପ୍ରକୃତ ରଚୟିତା ସୀତାଚରଣ ଦାସ ବୋଲି ପ୍ରମାଣ କରିଛନ୍ତି । ବୈଦେହୀଶବିଳାସ, ଅଧ୍ୟାତ୍ମ ରାମାୟଣ ଆଦିର ପ୍ରଭାବ ଗ୍ରନ୍ଥର କେଉଁ ସ୍ଥଳରେ ପରିଦୃଷ୍ଟ ହୋଇଥାଏ, ତୁଳନାତ୍ମକ ଆଲୋଚନା ମାଧ୍ୟମରେ ତାହା ପ୍ରତିପାଦିତ ହୋଇଛି । ସେହିପରି ଶ୍ରୀକୃଷ୍ଣକେଶରୀପୁରାଣ ପରି ଏକ ଅନାଲୋଚିତ ଗ୍ରନ୍ଥକୁ ଆଲୋଚକ ଲୋକଲୋଚନକୁ ଆଣିବା ସଂଗେ ସଂଗେ ରଚୟିତା ନାରାୟଣ ରାୟଗୁରୁଙ୍କ ପ୍ରତିଭା, ପାଣ୍ଡିତ୍ୟ, ବହୁଶାସ୍ତ୍ର ଦର୍ଶିତା, କଳ୍ପନାବିଳାସ, ଆହରଣ ଓ ସମୀକରଣ ସମ୍ବନ୍ଧରେ ଚମତ୍କାର ଆଲୋଚନା କରିଛନ୍ତି । କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ 'ଯମକ ଭାଗବତ ମହାକାବ୍ୟ' ଓ 'ନୀଳାଦ୍ରିନାଥ ଶତକମ୍' ଦୁଇଟି ଅପ୍ରକାଶିତ ସଂସ୍କୃତ ଗ୍ରନ୍ଥର ଆଲୋଚନା କରି ଡଃ. ଆଚାର୍ଯ୍ୟ ସ୍ୱୀୟ ସଂସ୍କୃତ ଜ୍ଞାନର ପରିଚୟ ଦେବା ସହିତ ରଚିୟତାଙ୍କ ସମୟ ନିରୂପଣ, ଗ୍ରନ୍ଥର ବୈଶିଷ୍ଟ୍ୟପ୍ରତିପାଦନ, ଓ ତାର ଆଙ୍ଗିକ-ଆତ୍ମିକ ବିଭବ ଆଲୋଚନାରେ ସ୍ୱକୀୟ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଛନ୍ତି । ଶ୍ରୀରାମଭକ୍ତି ରତ୍ନାବଳୀ ଗ୍ରନ୍ଥର ଚମତ୍କାର ଓଡିଆ ଅନୁବାଦ ରହିଥିଲେହେଁ, ତାହା ବହୁଦିନ ପର୍ଯ୍ୟନ୍ତ ଅଜ୍ଞାତ ଅନ୍ଧକାରରେ ଲୁକ୍କାୟିତ ଥିଲା । ଏହାର ରଚୟିତା ଭକ୍ତରାମଦାସ ଅଧ୍ୟାତ୍ମରାମାୟଣର ମୂଲ୍ୟବାନ ଶ୍ଳୋକ ଗୁଡିକୁ ସଂସ୍କୃତ ଭାଷାରେ ବିଷୟାନୁସାରେ ସଂଯୋଜିତ କରିଥିଲେ । ଏହାର ଓଡିଆ ଅନୁବାଦ କରିଛନ୍ତି ମହନ୍ତ ଶ୍ରୀ ବାଳକରାମ ଦାସ । ଏହା ଏକ ଚମତ୍କାର ଅନୁବାଦ ହୋଇଥିଲେ ହେଁ, ଆଲୋଚନା ଅଭାବରୁ ଏହାର ମହତ୍ତ୍ୱ ଉପଲବ୍ଧି ହୋଇପାରିନଥିଲା । ସମୀକ୍ଷକ ଡଃ ଆଚାର୍ଯ୍ୟ ଏ କ୍ଷେତ୍ରରେ ପ୍ରଥମ ପଦକ୍ଷେପ ଗ୍ରହଣ କରି ଲୁପ୍ତ ମୂଲ୍ୟବାନ ସଂପଦର ଉଦ୍ଧାର କରି ସ୍ୱକୀୟ ମହତ୍ତ୍ୱ ପ୍ରତିପାଦନ କରିପାରିଛନ୍ତି ।

''ସାହିତ୍ୟ ଓ ସାହିତ୍ୟିକ'ରେ ଡଃ ଅଚାର୍ଯ୍ୟଙ୍କ ମୌଳିକ ଆଲୋଚନା ଧାରାଟି ବେଶ୍ ସ୍ପଷ୍ଟ । ଯାହା ଅତୀତରେ ଆଲୋଚନା ହୋଇଛି, ତାର ଆଲୋଚନା ନକରି ବରଂ ଯାହା ଆଦୌ ଆଲୋଚିତ ନହୋଇଛି, ସେଥିପ୍ରତି ସେ ଅଧିକ ଦୃଷ୍ଟି ଦେଇଛନ୍ତି । ବିଷୟ ବିଶ୍ଳେଷଣରେ ଚମତ୍କାରିତା ରହିଛି । ଉକ୍ତ ପୁସ୍ତକର ଅଧିକାଂଶ ପ୍ରବନ୍ଧ ପ୍ରଥମ ଆଲୋଚନା ହୋଇଥିବାରୁ କେତେକ କ୍ଷେତ୍ରରେ ଆଲୋଚନା ଗୁଡିକ ପାରଂପରିକତାକୁ ଅନୁସରଣ କରିଛି । ଏହା ସତ୍ତ୍ୱେ ପ୍ରବନ୍ଧ ଗୁଡିକ ବେଶ ମନନଧର୍ମୀ ଓ ବ୍ୟାପକ ଅଧ୍ୟୟନର ଫଳଶ୍ରୁତି ।

'ସ୍ରଷ୍ଟା ଓ ସୃଷ୍ଟି' ଡଃ. ଆଚାର୍ଯ୍ୟଙ୍କର ଦ୍ୱିତୀୟ ପ୍ରକାଶିତ ଆଲୋଚନା ପୁସ୍ତକ । ଏଥିରୁ ଆଲୋଚକଙ୍କର ଗଭୀର ଅଧ୍ୟୟନ ଓ ଦୃଷ୍ଟିଭଙ୍ଗୀର ତୀକ୍ଷଣତା ସହଜରେ ବାରିହୋଇ ପଡେ । ବ୍ୟାପକ ଅଧ୍ୟୟନ ଏବଂ ବିଚାରବୋଧର ପରିପକ୍ୱତା ଉକ୍ତ ସଂକଳନଟିର ପ୍ରତ୍ୟେକ ପ୍ରବନ୍ଧରେ ଦୃଷ୍ଟି ଗୋଚର ହୋଇଥାଏ । ସାହିତ୍ୟ ଓ ସାହିତ୍ୟିକରେ ଯେଉଁ ସାମାନ୍ୟ ଅଭାବବୋଧ ରହିଯାଇଥିଲା, ଏଥିରେ ତାହା ଦୂରୀଭୂତ ହୋଇଛି ଏବଂ ଉଭର ସତୁରୀ କାଳରେ ଡଃ ଆଚାର୍ଯ୍ୟଙ୍କୁ ଜଣେ ବିଶିଷ୍ଟ ଆଲୋଚକର ମର୍ଯ୍ୟାଦା ପ୍ରଦାନ କରିଛି । ଏହି ଆଲୋଚନା ଗୁଡିକ ବହୁ କ୍ଷେତ୍ରରେ ପ୍ରମାଣିକ, ଯୁକ୍ତିନିଷ୍ଠ ଓ ତଥ୍ୟଭିତ୍ତିକ । 'ସ୍ରଷ୍ଟା ଓ ସୃଷ୍ଟି'ର ପ୍ରଥମ ପ୍ରବନ୍ଧ 'ସନ୍ଥକ' ।

ଏଥିରେ ସେ ଭରତଙ୍କ ଠାରୁ ଆରମ୍ଭ କରି ବିଶ୍ୱନାଥ କବିରାଜଙ୍କ ପର୍ଯ୍ୟନ୍ତ ଆଳଂକାରିକମାନଙ୍କର ଅଳଂକାର ଶାସ୍ତ୍ର ପର୍ଯ୍ୟାଲୋଚନା ସହିତ ବିଭିନ୍ନ ପ୍ରାକୃତ ସାହିତ୍ୟ ଆଧାରରେ ସଟ୍ଟକର ସଂଜ୍ଞା ନିର୍ଦ୍ଧାରଣ ଓ ବିଶେଷତ୍ୱ ପାଣ୍ଡିତ୍ୟପୂର୍ଣ୍ଣ ରୀତିରେ ପ୍ରତିପାଦନ କରିଛନ୍ତି । ଏତଦ୍ ବ୍ୟତୀତ ବିଭିନ୍ନ ସଟ୍ଟକମାନଙ୍କର ତୁଳନାତ୍ମକ ବିଶ୍ଳେଷଣ କରି ଏହାର ବୈଶିଷ୍ଟ୍ୟ ଓ କଳାଗତ ମୂଲ୍ୟ ନିର୍ଦ୍ଧାରଣ କରିଛନ୍ତି । 'ମେଘଦୂତମ୍‌ର ଉତ୍କଳ ଭ୍ରମଣ' ଆଲୋଚନାରେ ଡକ୍ଟର ଆଚାର୍ଯ୍ୟ ଚତୁର୍ଥ ଶତକ ଠାରୁ ଭାରତ ତଥା ଭାରତ ବାହାର କବିଙ୍କୁ 'ମେଘଦୂତ' କିପରି ସ୍ଥାନ ଓ କାଳର ବ୍ୟବଧାନକୁ ଛିନ୍ନକରି ପ୍ରେରଣା ଯୋଗାଇ ଆସିଛି, ତାର ବିସ୍ତୃତ ବିବରଣୀ ପ୍ରଦାନ କରିବା ସଂଗେ ସଂଗେ ଓଡିଶାରେ ଉପଲବ୍ଧ ହେଉଥିବା ଏହାର ଟୀକା ତଥା ଅନୁବାଦ ସମ୍ବନ୍ଧରେ ଚମତ୍କାର ବିଶ୍ଳେଷଣ କରିଛନ୍ତି । ଏତଦ୍‌ବ୍ୟତୀତ 'ମେଘଦୂତମ' ଓଡିଆ କାବ୍ୟକାରମାନଙ୍କୁ କିପରି ପ୍ରଭାବିତ କରିଥିଲା ତୁଳନାତ୍ମକ ଆଲୋଚନା ଦ୍ୱାରା ତାର ପ୍ରତିପାଦନ କରିଛନ୍ତି । 'ଗଂଜାମରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ପରଂପରା' ଏକ ଅଭିନବ ପ୍ରବନ୍ଧ । ଏଥିରୁ ଆଲୋଚକଙ୍କର ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ ଏବଂ ଉପାଦାନ ସଂଗ୍ରହର ଅଭିନିବେଶତା ସହଜରେ ବାରିହୋଇ ପଡେ । ସେ ବିଭିନ୍ନ ଉତ୍ସରୁ ୨୬ ଜଣ ସଂସ୍କୃତ ଗ୍ରନ୍ଥ ରଚୟିତାଙ୍କ ପରିଚୟ ଓ ରଚନାବଳୀ ସଂଗ୍ରହ କରି ଆଲୋଚନା କରିଛନ୍ତି । 'ରାମବିଭା ଏକ ଅଧ୍ୟୟନ' ଆଲୋଚନାରୁ ଡଃ ଆଚାର୍ଯ୍ୟଙ୍କ ଉପାଦାନ ସଂଗ୍ରହରେ ଏକନିଷ୍ଠତା, ବିଶ୍ଳେଷଣରେ ମୌଳିକତା ଓ ବିଚାର ପଦ୍ଧତିରେ ଯୁକ୍ତିଯୁକ୍ତତା ଲକ୍ଷ୍ୟ କରାଯାଇଥାଏ । କବିଙ୍କ ସମୟ ନିରୂପଣ, ଗ୍ରନ୍ଥର ରଚନା ସମୟ, ଓଡିଶାରେ ରାମ କଥାର ପରଂପରା ତଥା ରାମବିଭା କାବ୍ୟର ଆଙ୍ଗିକ ଓ ଆତ୍ମିକ ବିଶ୍ଳେଷଣରେ ଆଲୋଚକଙ୍କ ସ୍ୱକୀୟ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ଭଞ୍ଜୀୟ କାବ୍ୟ ସୃଷ୍ଟିରେ କବି ମାନସ ଆଲୋଚନା ପର୍ଯ୍ୟାୟରେ ଡଃ. ଆଚାର୍ଯ୍ୟ ଉପେନ୍ଦ୍ରଙ୍କ ତିନୋଟି ମାନସିକ ପୃଷ୍ଠଭୂମି ଯଥା-ପ୍ରୀତି, ଭକ୍ତି ଓ ପ୍ରଦର୍ଶନ ସମ୍ବନ୍ଧରେ ଆଲୋକପାତ କରିଛନ୍ତି । ଉପେନ୍ଦ୍ର ସାହିତ୍ୟ କ୍ଷେତ୍ରରେ ଏହା ଅତ୍ୟନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ଉପେନ୍ଦ୍ର କାବ୍ୟ ମାନସର ପରିଚୟ ଅନୁସନ୍ଧାନରେ ଏହି ତିନୋଟି ଉପାଦାନ ଆଲୋଚକଙ୍କ ନିଜସ୍ୱ ଦୃଷ୍ଟିଭଙ୍ଗୀର ପରିଚାୟକ ହେଲେହେଁ, ଏହା ଅତ୍ୟନ୍ତ ସମୟୋଚିତ ଓ ଯଥାର୍ଥ । ଉପେନ୍ଦ୍ରଙ୍କ କାବ୍ୟ ସମୂହକୁ ମୁଖ୍ୟତଃ ଆସ୍ପର୍ଦ୍ଧା ପ୍ରସୂତ, ଅନୁଭୂତି ପ୍ରସୂତ ଓ ଭକ୍ତି ପ୍ରଧାନ - ଏହିପରି ତିନି ଭାଗରେ ବିଭକ୍ତ କରିଛନ୍ତି । କବିଙ୍କ ଜୀବନ ଓ ପରିବେଶ ଆଲୋଚନା ପରିପ୍ରେକ୍ଷୀରେ ଡଃ. ଆଚାର୍ଯ୍ୟଙ୍କର ଏହି ଆଲୋଚନା ଅଭିନବ । ସଂକଳନର ଅନ୍ୟତମ ଆଲୋଚନା 'ଘେନ ନୈଷଧ ପରାୟେ' ଆଲୋଚକଙ୍କ ପାଣ୍ଡିତ୍ୟ ଓ ବିଶ୍ଳେଷଣ ଭଙ୍ଗୀକୁ ଅପେକ୍ଷା ରଖେ । ସଂସ୍କୃତ ସାହିତ୍ୟର 'ନୈଷଧ' ପରି ଓଡିଆ ସାହିତ୍ୟର 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ପାଣ୍ଡିତ୍ୟ ପୂର୍ଣ୍ଣ କାବ୍ୟ । ଉପେନ୍ଦ୍ରଙ୍କ ଘୋଷଣା 'ଘେନ ନୈଷଧ ପରାୟେ' ଉକ୍ତିରୁ ଆଲୋଚକ କବିଙ୍କ ବିନମ୍ରତା ଅପେକ୍ଷା ତାଙ୍କର ଆତ୍ମପ୍ରତ୍ୟୟଶୀଳ ମାନସର ଦାମ୍ଭିକ ଉଦ୍‌ଘୋଷଣା ବୋଲି ମତବ୍ୟକ୍ତ କରିଛନ୍ତି । ନୈଷଧ ଏବଂ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ତୁଳନାତ୍ମକ ଆଲୋଚନା ପରିପ୍ରେକ୍ଷୀରେ ସେ ଉପେନ୍ଦ୍ରଙ୍କ ବହୁଶାସ୍ତ୍ର ଦର୍ଶିତା, ପାଣ୍ଡିତ୍ୟ, ଆହରଣରେ ମୌଳିକତା ଓ ବିଶେଷତ୍ୱ ସମ୍ବନ୍ଧରେ ସୂଚନା ପ୍ରଦାନ କରିଛନ୍ତି । ନୈଷଧ ଅନୁସରଣରେ କାବ୍ୟରଚନା କରିବା ତତ୍‌କାଳୀନ ଭାରତର ଆଞ୍ଚଳିକ ଭାଷାମାନଙ୍କର ଏକ ପରଂପରାରେ ପରିଣତ ହୋଇ ଥିଲେହେଁ, ଉପେନ୍ଦ୍ର ଥିଲେ ଏ କ୍ଷେତ୍ରରେ ସ୍ୱତନ୍ତ୍ର । ସେଥିପାଇଁ

ଡଃ. ଆଚାର୍ଯ୍ୟ ଯଥାର୍ଥରେ କହିଛନ୍ତି ''କିନ୍ତୁ ପାର୍ଥକ୍ୟ ଏତିକିଯେ ଅନ୍ୟମାନେ ନୈଷଧରୁ ଅନୁସରଣକୁ ଲକ୍ଷ୍ୟରୂପେ ଗ୍ରହଣ କରିଥିଲାବେଳେ ଉପେନ୍ଦ୍ର ଭଞ୍ଜ ତାହକୁ ଲକ୍ଷ୍ୟ ସିଦ୍ଧି ନିମିତ୍ତ ଏକ ସାଧନ ରୂପେହିଁ ଗ୍ରହଣ କରିଛନ୍ତି । ''(ସ୍ରଷ୍ଟା ଓ ସୃଷ୍ଟି - ପୃ - ୭୦ ୧ମ ପ୍ର-୧୯୭୨) । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରଚନା ପାଇଁ ଉପେନ୍ଦ୍ର ଯେଉଁ ସବୁ ସ୍ମୃତି, ଇତିହାସ, ପୁରାଣ, ପ୍ରମାଣ ଓ ସମୟ ବିଦ୍ୟା, ରାଜସିଦ୍ଧାନ୍ତ ତ୍ରୟୀ, ଜ୍ୟୋତିଷ ଆଦି ଶାସ୍ତ୍ରର ଉପଯୋଗ କରିଛନ୍ତି, ତାର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଉକ୍ତ ପ୍ରବନ୍ଧରେ ରହିଛି । ''ଚତୁରବିନୋଦର ଗଳ୍ପ ଗଠନ-କୌଶଳ'' ପ୍ରବନ୍ଧରୁ ଡଃ. ଆଚାର୍ଯ୍ୟଙ୍କ ସୂକ୍ଷ୍ମ ଅନୁସନ୍ଧିତ୍ସା ଏବଂ ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପଦ୍ଧତିରେ ଏହାର ଗଠନ କୌଶଳ ଆଲୋଚନା କରିବା ସଂଗେ ସଂଗେ ଲୋକସାହିତ୍ୟ ମୋଟିଫ୍ ଏଥିରେ କିପରି କାର୍ଯ୍ୟ କରିଛି ତାର ସୂକ୍ଷ୍ମାତି ସୂକ୍ଷ୍ମ ବିଶ୍ଳେଷଣ ଏଥିରେ ରହିଛି । ମୂଳ ଗଳ୍ପ ସହିତ ଶାଖାଗଳ୍ପ, ଉପଗଳ୍ପ ଗୁଡିକର ସାମଞ୍ଜସ୍ୟ କିପରି ମନସ୍ତାତ୍ତ୍ୱିକ ଓ ସାମାଜିକ ଦୃଷ୍ଟିକୋଣରୁ କରାଯାଇଛି, ଲେଖକଙ୍କର ମାନସିକତା ଏଥିରେ କେତେଦୂର ଗୁରୁତ୍ୱପୂର୍ଣ୍ଣ, ସଜ୍ଜୀକରଣରେ କେଉଁ କୌଶଳ ଓ ଯୁକ୍ତି ଅବଲମ୍ବିତ, ତାର ଚମତ୍କାର ବିଶ୍ଳେଷଣ ଉକ୍ତ ପ୍ରବନ୍ଧରେ ପରିଲକ୍ଷିତ ହୋଇଥାଏ । ପୁଣି ପ୍ରସଙ୍ଗକ୍ରମେ ସଂସ୍କୃତ କଥାଗ୍ରନ୍ଥର ଗଳ୍ପ ଗଠନ କୌଶଳ ଓ କଥକର କଥାକଥନ କୌଶଳ ସେପରି ଚତୁର ବିନୋଦରେ ବର୍ତ୍ତମାନ, ତାର ସୂଚନା ଦିଆଯାଇଛି । ଡଃ. ଆଚାର୍ଯ୍ୟଙ୍କର ବହୁଶାସ୍ତ୍ର ଦର୍ଶିତା ଏବଂ ବିଷୟ ବିଶ୍ଳେଷଣରେ ବୈଜ୍ଞାନିକ ପଦ୍ଧତିର ପରିଚୟ ଉକ୍ତ ଆଲୋଚନାଟିରେ ଦେଖିବାକୁ ମିଳେ । 'ପଣ୍ଡିତ ଗୋପୀନାଥ ନନ୍ଦଙ୍କ ରଚନାବଳୀ' ଏବଂ 'ପଣ୍ଡିତ ଗୋପିନାଥ ନନ୍ଦଙ୍କ କ୍ଲାସନୋଟ' ପ୍ରବନ୍ଧ ଦ୍ୱୟରେ ଶ୍ରୀଯୁକ୍ତ ନନ୍ଦଙ୍କ ପ୍ରକାଶିତ ଓ ଅପ୍ରକାଶିତ ରଚନାବଳୀର ପରିଚୟ ପ୍ରଦାନ ସଙ୍ଗେ ସଙ୍ଗେ ତାଙ୍କର ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ତଥା ଅଧ୍ୟାପନା ପଦ୍ଧତିର ଯଥାର୍ଥ ବିଚାର ପ୍ରଦତ୍ତ । 'ସ୍ରଷ୍ଟା ଓ ସୃଷ୍ଟି'ର ଅଧିକାଂଶ ପ୍ରବନ୍ଧ ପରିପକ୍ୱ ମସ୍ତିଷ୍କର ଯଥାର୍ଥ ପରିପ୍ରକାଶ କହିଲେ ଭୁଲ ହେବନାହିଁ ।

ଡଃ. ଆଚାର୍ଯ୍ୟଙ୍କ ଆଲୋଚନାର ସଂପୂର୍ଣ୍ଣ ପରିପକ୍ୱତା, ବିଚାରନିଷ୍ଠତା, ବହୁଶାସ୍ତ୍ରଦର୍ଶିତା, ନିରପେକ୍ଷତା, ସର୍ବୋପରି ବିଷୟ ବିଶ୍ଳେଷଣରେ ତଥ୍ୟଧର୍ମିତା ଏବଂ ବୈଜ୍ଞାନିକ ବିଚାର ବୋଧର ପରିଚୟ ମିଳେ ତାଙ୍କର ଗବେଷଣାତ୍ମକ ନିବନ୍ଧ 'ଓଡିଆ କାବ୍ୟ କୌଶଳ' ଗ୍ରନ୍ଥରେ । ମଧ୍ୟଯୁଗୀୟ ଓଡିଆ ସାହିତ୍ୟ ଆଲୋଚନା କ୍ଷେତ୍ରରେ ଉକ୍ତ ଗ୍ରନ୍ଥଟିଯେ ଏକ ମାଇଲଷ୍ଟମ୍ଭ ଅକୁଣ୍ଠିତ ଚିତ୍ତରେ ତାହା ସ୍ୱୀକାର କରାଯାଇପାରେ । ଦୀର୍ଘଦିନ ଗବେଷଣାର ଅମୃତମୟ ଫଳ 'ଓଡିଆ କାବ୍ୟ କୌଶଳ' ନିବନ୍ଧଟି । ଡଃ. ଆଚାର୍ଯ୍ୟଙ୍କ ପୂର୍ବରୁ ଓଡିଆ ସାହିତ୍ୟରେ ଅନ୍ୟ କୌଣସି ଆଲୋଚକ ମଧ୍ୟଯୁଗୀୟ ଓଡିଆ କାବ୍ୟର ଏପରି ସୁବିନ୍ୟସ୍ତ ତଥା ଗଠନଗତ ବୈଚିତ୍ର୍ୟ ପ୍ରତି ସୂକ୍ଷ୍ମ ଦୃଷ୍ଟିପାତ କରି ନଥିଲେ । ମଧ୍ୟଯୁଗୀୟ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ବିଭବରେ ସ୍ରଷ୍ଟା ହୃଦୟର ମାନସିକତା କିପରି କାର୍ଯ୍ୟକାରୀ ହୋଇଛି , ଏ କ୍ଷେତ୍ରରେ କେଉଁ ଉପାଦାନ ଗୁଡିକ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ପ୍ରଭାବ ବିସ୍ତାର କରିଛି, ତାର ବିସ୍ତୃତ ଯୁକ୍ତିଯୁକ୍ତ ପ୍ରମାଣ ଡଃ. ଆଚାର୍ଯ୍ୟ ଏଥିରେ ଉପସ୍ଥାପନ କରିଛନ୍ତି ।

''ଓଡ଼ିଆ କାବ୍ୟକୌଶଳ''ର ପରିଚ୍ଛେଦ ପରିକଳ୍ପନାରେ ମଧ ଡଃ. ଆଚାର୍ଯ୍ୟଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରକାଶ ଲାଭ କରିଛି । ଯେ କୌଣସି ସାହିତ୍ୟ ସୃଷ୍ଟି ପଶ୍ଚାତରେ ପରିବେଶ ଏବଂ ପରିସ୍ଥିତିର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ପ୍ରଭାବ କାର୍ଯ୍ୟ କରିଥାଏ । ୧୫୦୦-୧୮୫୦ ପ୍ରାୟ ତିନିଶତ ପଚାଶ ବର୍ଷ ଓଡିଶାର କାବ୍ୟ ପରଂପରା ଓ ପ୍ରତିଶ୍ରୁତି ସଂପର୍କରେ ଆଲୋଚନା କରିବା ସମୟରେ ତତ୍କାଳୀନ ସମାଜ ତଥା ସମୟକୁ ଅତି ସଚେତନତାର ସହିତ ସେ ବିଚରାଲୋଚନା କରିଛନ୍ତି । ଡଃ. ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ମଧ୍ୟଯୁଗୀୟ କାବ୍ୟ ସଂପର୍କରେ ଯେଉଁମାନେ ଆଲୋଚନା କରିଛନ୍ତି, ସେମାନେ ମୁଖ୍ୟତଃ ତାର ବସ୍ତୁ ଧର୍ମ ଉପରେହିଁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ବିଷୟଗତ ଆଲୋଚନା କୌଣସି ସୃଷ୍ଟିର ଯେ ଯଥାର୍ଥ ମୂଲ୍ୟାଙ୍କନ ନୁହେଁ, ତାହା ଡଃ. ଆଚାର୍ଯ୍ୟ ଅନୁଭବ କରିଛନ୍ତି ଓ ସେହି ଦୃଷ୍ଟିରୁ ତାର ଭାବଧର୍ମ ଏବଂ ଗଠନଗତ କଳା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । କବି କାବ୍ୟ ମଧ୍ୟର କ'ଣ ଲେଖିଛନ୍ତି - ଏ ସଂପର୍କରେ ବହୁ ଆଲୋଚନା ପ୍ରସ୍ତୁତ ହୋଇଛି । ମାତ୍ର ''କ'ଣକୁ କିପରି' ରୂପାୟିତ କରିଛନ୍ତି, ସେ ସମ୍ପର୍କରେ ଅଧିକାଂଶ ଆଲୋଚକ ନୀରବ । ଡଃ. ଆଚାର୍ଯ୍ୟଙ୍କ ମତରେ ''ଇଟା, ଚୂନ, ପଥର, ବାଲି, ସିମେଣ୍ଟ ପରି ଉପାଦାନ ଏକତ୍ର କରିଦେଲେ, ତାହାଯେପରି କୌଣସି ବାସଗୃହ ବା ଦେବମନ୍ଦିରରେ ସ୍ୱତଃ ପରିଣତ ହୋଇଯାଏ ନାହିଁ, ସେହିପରି କାବ୍ୟଗତ କେତେକ ଉପାଦାନ ହାତକୁ ନେଇଗଲେ କବି ଆପଣା ମନକୁ ଗୋଟିଏ କାବ୍ୟସୌଧ ନିର୍ମାଣ କରିଦେବା ସମ୍ଭବପର ନୁହେଁ । ଗୋଟିଏ ନିର୍ଦ୍ଦିଷ୍ଟ ପରିକଳ୍ପନା ଉପରେ ଗଢ଼ାଯାଏ ଗୃହ ବା ଦେବ ମନ୍ଦିର । ଏଇ ପରିକଳ୍ପନାକୁ କହନ୍ତି ପ୍ଲାନ ବା ଡିଜାଇନ୍ । ପ୍ଲାନ ଥାଏ କାଗଜରେ; ଏହି କାଗଜକୁ ଦେଖି ବିନ୍ଧାଣୀ ଭୂମି ଉପରେ ଗୃହ ବା ମନ୍ଦିର ଠିଆ କରାଏ । କାବ୍ୟର ଏହି ପ୍ଲାନ ବା ଡିଜାଇନିକୁ କହନ୍ତି ଟେକ୍‌ନିକ୍ ବା ଗଠନ କୌଶଳ । ଏପରି ଏକ ନିର୍ଦ୍ଦିଷ୍ଟ ଗଠନ କୌଶଳର ଅଭାବ ହେଲେ ସାର୍ଥକ କାବ୍ୟର ଆବିର୍ଭାବ ସମ୍ଭବ ନୁହେଁ । କବି କାବ୍ୟ ଶରୀରରେ କ'ଣ କ'ଣ ଅଙ୍ଗୀଭୂତ କରିଛନ୍ତି ସେଗୁଡ଼ିକର ସ୍ୱରୂପହିଁ ଆଜି ପର୍ଯ୍ୟନ୍ତ ଆଲୋଚକମାନେ ଦେଖାଇ ଆସିଛନ୍ତି; କିନ୍ତୁ ସେଇ ଅଙ୍ଗୀଭୂତ ଉପାଦାନ ''କିପରି'' କାବ୍ୟ-ଶରୀରରେ ସୁବିନ୍ୟସ୍ତ ହୋଇ ରହିଛନ୍ତି, ତାହା ଦେଖି ଦେଖାଇ ଦେବା ଦିଗରେ ଏମାନେ ଆଦୌ ସଚେତନ ହୋଇ ନାହାନ୍ତି । କାବ୍ୟର - ଗଠନ-କୌଶଳ ପର୍ଯ୍ୟାଲୋଚନାହିଁ ଏଇ 'କିପରି' ପ୍ରଶ୍ନ ସମାଧାନର ଦ୍ୟୋତକ ।'' (ଓଡ଼ିଆ କାବ୍ୟ କୌଶଳ - ପୃ - ୫, ୧ମ ପ୍ରକାଶ)

ଏଇ ''କିପରି'' ପ୍ରଶ୍ନର ସମାଧାନ ପାଇଁ ଡଃ. ଆଚାର୍ଯ୍ୟଙ୍କ ପରିକଳ୍ପନା ପ୍ରଥମରୁହିଁ ପରଚ୍ଛେଦ ସଜ୍ଜୀକରଣରୁ ପ୍ରମାଣିତ । କାବ୍ୟଗଠନ କୌଶଳର ପ୍ରତ୍ୟକ୍ଷ ଓ ପରୋକ୍ଷ ଭିତ୍ତିଭୂମିକୁ ସେ ପ୍ରଥମ ଚାରୋଟି ପରିଚ୍ଛେଦରେ ଆଲୋଚନା କରିଛନ୍ତି । ପରୋକ୍ଷ ପ୍ରଭାବ ରୂପେ ମୁଖ୍ୟତଃ ରାଜନୀତିକ, ସାମାଜିକ, ଆର୍ଥନୀତିକ ଓ ଧାର୍ମିକ ପ୍ରଭାବକୁ ସେ ଗ୍ରହଣ କରିଛନ୍ତି । ଏହାକୁ ପରୋକ୍ଷ ପ୍ରଭାବ କହିବାର ଉଦ୍ଦେଶ୍ୟ ହେଉଛି, ସାଧାରଣ ଭାବେ କାବ୍ୟଟି ପାଠକଲେ ଏହି ପ୍ରଭାବର ସୂଚନା କାବ୍ୟରେ ଦେଖିବାକୁ ମିଳେ ନାହିଁ । ଇତିହାସ ଦୃଷ୍ଟିରୁ ତନ୍ନ

ତନ୍ତ୍ର ଅଧ୍ୟୟନ କଲେ ଏପରି କେତେକ ବଳିଷ୍ଠ ପ୍ରଭାବ କାବ୍ୟ ମଧ୍ୟରେ ସ୍ୱତଃ ଉପଲବ୍‌ଧ ବା ଅନୁଭବ ହୋଇଥାଏ । ପ୍ରତ୍ୟକ୍ଷ ପ୍ରଭାବ ରୂପେ ସେ ସଂସ୍କୃତ, ପ୍ରାକୃତ, ଅପଭ୍ରଂଶ ଓ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗର ପ୍ରଭାବକୁ ଗ୍ରହଣ କରିନେଇଛନ୍ତି । କାରଣ ତତ୍କାଳୀନ ଓଡ଼ିଶାରେ ଉପରୋକ୍ତ ସାହିତ୍ୟ ଚର୍ଚ୍ଚାର ଏକ ଅଭିଜାତ ପରଂପରା ରହି ଆସିଥିଲା । ତେଣୁ ଏହି ପ୍ରଭାବ ମାଧ୍ୟମରେ ଓଡ଼ିଆ କାବ୍ୟର ଗଠନଗତ କୌଶଳ ଉଦ୍‌ଘାଟନ କରିବାକୁ ସେ ଚେଷ୍ଟା କରିଛନ୍ତି । ତୃତୀୟ ଓ ଚତୁର୍ଥ ପରଚ୍ଛେଦରେ କବିର ମାନସିକତା ଏବଂ ତାର ରୁଚିବୋଧର ଯଥାର୍ଥ ସ୍ୱରୂପ ସମ୍ବନ୍ଧରେ ବିଶ୍ଳେଷଣ କରାଯାଇଛି । ଅନେକ ସମୟରେ କବିର ବ୍ୟକ୍ତିତ୍ୱ ତାର ଅଜାଣତରେ ମଧ୍ୟ କାବ୍ୟରେ ପ୍ରକାଶ ଲାଭ କରିଯାଇଥାଏ । ଏ କ୍ଷେତ୍ରରେ ଶିକ୍ଷା, ସାମାଜିକ ପରଂପରା, ଧାର୍ମିକ ଭାବନା, ସର୍ବୋପରି କାବ୍ୟ ଗ୍ରହୀତାଙ୍କ ରୁଚିବୋଧ କବିଙ୍କୁ ପ୍ରତ୍ୟକ୍ଷ ଭାବେ ପ୍ରଭାବିତ କରିଥାଏ । ଚତୁର୍ଥ ପରିଚ୍ଛେଦରେ ସ୍ରଷ୍ଟା ରୁଚିବୋଧର ଆଲୋଚନା କରାଯାଇଛି । ସୃଷ୍ଟିବୋଧ ସହିତ ସ୍ରଷ୍ଟାର ବ୍ୟକ୍ତିତ୍ୱ ଓ ଶିକ୍ଷା ପ୍ରତ୍ୟକ୍ଷ ଭାବେ ସଂପୃକ୍ତ । ମଧ୍ୟଯୁଗର ପ୍ରାୟ ସମସ୍ତ କବି ସଂସ୍କୃତ କାବ୍ୟାଦର୍ଶ ଅବଲମ୍ବନରେ ନିଜର ସୃଷ୍ଟି ସର୍ଜନ ନିମିତ୍ତ ଉଦ୍ୟମ କରିଛନ୍ତି । ଓଡ଼ିଆ କାବ୍ୟଗଠନ ରୀତି ସହିତ ଏହାର ସଂପର୍କ କିପରି ନିଗୂଢ଼, ତାହା ଦର୍ଶାଇବାକୁ ଯାଇ ସଂସ୍କୃତ ସମାଲୋଚନା ପଦ୍ଧତି, ଅଳଂକାର ଶାସ୍ତ୍ରର ବିଭିନ୍ନବାଦ, କାବ୍ୟଉପାଦାନ ଓ ତାର ସ୍ୱରୂପ ସମ୍ବନ୍ଧରେ ପାଣ୍ଡିତ୍ୟପୂର୍ଣ୍ଣ ପ୍ରାମାଣିକ ଯୁକ୍ତି ଠିଆ କରାଇଛନ୍ତି । ତେଣୁ ପ୍ରଥମ ଚାରୋଟି ପରିଚ୍ଛେଦକୁ କାବ୍ୟଗଠନ ଶିଳ୍ପର ପୃଷ୍ଠଭୂମି ରୂପେ ଡଃ ଆଚାର୍ଯ୍ୟ ଗ୍ରହଣ କରିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ପ୍ରସ୍ତୁତି ଭୂମିରୁହିଁ ଓଡ଼ିଆ କାବ୍ୟର ଗଠନ କୌଶଳ ଜନ୍ମଲାଭ କରିଛି । ସଂକ୍ଷେପରେ କହିଲେ ଓଡ଼ିଆ କାବ୍ୟର ଗଠନ କୌଶଳକୁ ଯାହା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ନିୟନ୍ତ୍ରିତ କରିଛି, ତାହା ପ୍ରଥମ ଚାରୋଟି ପରିଚ୍ଛେଦରେ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରି ଦେଖାଇ ଦିଆଯାଇଛି ।

ପଞ୍ଚମ ପରିଚ୍ଛେଦରେ ଓଡ଼ିଆ କାବ୍ୟର ସ୍ୱରୂପ ନିରୂପଣ ପ୍ରସଙ୍ଗରେ କାବ୍ୟକାର ମାନଙ୍କର ମତ ତଥା ସଂସ୍କୃତ ଅଳଂକାର ଶାସ୍ତ୍ରାନୁଯାୟୀ ଏହାର ସ୍ୱରୂପ ନିର୍ଦ୍ଧାରଣ କରାଯିବାକୁ ଚେଷ୍ଟା ହୋଇଛି । ତୁଳନାତ୍ମକ ଆଲୋଚନା ଦ୍ୱାରା ଓଡ଼ିଆ କାବ୍ୟରେ ଅନୁସୃତ ଶାସ୍ତ୍ରନିୟମର ପର୍ଯ୍ୟାଲୋଚନା କରାଯାଇ ଏକ ନୂତନ ଦୃଷ୍ଟି କୋଣରୁ ଓଡ଼ିଆ କାବ୍ୟର ଗଠନ କୌଶଳ ରୀତି ପ୍ରସ୍ତୁତ କରିଛନ୍ତି ଡଃ. ଆଚାର୍ଯ୍ୟ । ପୁଣି ସମୟକ୍ରମେ କାବ୍ୟ ଶବ୍ଦର ଅର୍ଥଗତ ପରିବର୍ତ୍ତନ କିପରି ସାଧିତ ହୋଇଛି ଏବଂ ସେହି ଦୃଷ୍ଟିକୋଣରୁ ପୁରାଣ ଯୁଗରୁ କାବ୍ୟ ଶବ୍ଦାର୍ଥ ପରିବର୍ତ୍ତିତ ଧାରାରେ ଆଳଂକାରିକମାନଙ୍କ ସୃଷ୍ଟିରେ କିପରି ରୂପ ଧାରଣ କଲା, ଆଞ୍ଚଳିକ ସାହିତ୍ୟର ପ୍ରସାର ଦ୍ୱାରା ଏହାର ରୂପ ବିଭାବରେ କେଉଁ ଲକ୍ଷ୍ୟଣୀୟ ବ୍ୟତିକ୍ରମ ଆସିଲା, ସଂସ୍କୃତ ମହାକାବ୍ୟ ଦୃଷ୍ଟିରୁ ଓଡ଼ିଆ କାବ୍ୟରେ କେଉଁ କେଉଁ କ୍ଷେତ୍ରରେ ବ୍ୟତିକ୍ରମ କିପରି ସାଧିତ ହେଲା ଏବଂ ଏହାର ହେତୁ କ'ଣ - ତା'ର ବିସ୍ତୃତ ଏବଂ ତୁଳନାତ୍ମକ ବିଶ୍ଳେଷଣ ଏହି ପରିଚ୍ଛେଦରେ ପ୍ରଦତ୍ତ । ଓଡ଼ିଆ କାବ୍ୟ ଗଠନ କୌଶଳର ଯଥାର୍ଥ ସ୍ୱରୂପ ଏହି ଆଲୋଚନା ଦ୍ୱାରାଯେ ଉଦ୍‌ଘାଟିତ

ହୋଇପାରିଲା, ଏଥିରେ ଦ୍ୱିମତ ହେବାର ନାହିଁ । ଷଷ୍ଠ ପରିଚ୍ଛେଦରେ ଓଡିଆ କାବ୍ୟ ସହିତ ଅନ୍ୟାନ୍ୟ ସାହିତ୍ୟିକ ବିଭାଗର ତୁଳନାତ୍ମକ ଆଲୋଚନା ପର୍ଯ୍ୟାୟରେ କାବ୍ୟ ଓ କାବ୍ୟେତର ରଚନାର ସ୍ୱରୂପ ନିର୍ଦ୍ଧାରଣ କରାଯାଇ କାବ୍ୟ ଗଠନ କୌଶଳକୁ ଏହା କିପରି ପ୍ରଭାବିତ କରିଛି ସେ ସଂପର୍କରେ ସବିଶେଷ ଆଲୋଚନା ହୋଇଛି । ଏତଦ୍‌ବ୍ୟତୀତ ଓଡିଆ କାବ୍ୟର ପ୍ରକାରଭେଦ ସଂପର୍କରେ ଡଃ. ଆଚାର୍ଯ୍ୟ ଯେଉଁ ନୂତନ ଦୃଷ୍ଟି ସଂପାତ କରିଛନ୍ତି ତାହା ତାଙ୍କ ମୌଳିକ ବିଚାରାଲୋଚନାର ଯଥାର୍ଥ ପ୍ରମାଣ ପ୍ରଦାନ କରିଥାଏ । ଏହାଛଡା ବହୁ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥର ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ଏକ ସାର୍ବଜନୀନ ମତକୁ ଆଧାର ରୂପେ ଗ୍ରହଣ କରାଯାଇଥିବାରୁ ଆଲୋଚନାଟି ଅଧିକ ତଥ୍ୟନିଷ୍ଠ ଓ ପ୍ରାମାଣିତ ହୋଇପାରିଛି ।

ପରବର୍ତ୍ତୀ ପରିଚ୍ଛେଦ ଗୁଡିକରେ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଆଲୋଚିତ କାବ୍ୟଗଠନ ଗତ କୌଶଳ ଉପରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରାଯାଇ ବିଶ୍ଲେଷଣାତ୍ମକ ବିଚାର ପଦ୍ଧତି ଉପରେ ଗୁରୁତ୍ୱ ଆରୋପ କରାଯାଇଛି । କାବ୍ୟର ନାମକରଣ କୌଶଳ ପ୍ରସଙ୍ଗରେ ବିଭିନ୍ନ ଆଳଂକାରିକ ମାନଙ୍କର ମତୋଦ୍ଧାର କରାଯାଇ ବିଭିନ୍ନ ଦୃଷ୍ଟିକୋଣରୁ, ଯଥା- କଥାବସ୍ତୁ, ଘଟଣା, ପାତ୍ରପାତ୍ରୀ, ନାୟକ, ନାୟିକା, ସେମାନଙ୍କର କ୍ରିୟା କଳାପ, ବିଷୟବସ୍ତୁ, ଆଙ୍ଗିକ ତଥା ଆତ୍ମିକ ବିଶେଷତ୍ୱ, ଭକ୍ତି , ପ୍ରଣୟ ଓ ମିଶ୍ର କୌଶଳ ଦୃଷ୍ଟିରୁ ଓଡିଆ କାବ୍ୟ ମାନଙ୍କ ନାମକରଣ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି, ତାର ଆଲୋଚନା ରହିଛି ସପ୍ତମ ପରିଚ୍ଛେଦରେ । ସେହିପରି ଅଷ୍ଟମ ପରିଚ୍ଛେଦରେ ଓଡିଆ କାବ୍ୟର ଛାନ୍ଦ ବିଭାଜନ କୌଶଳର ସ୍ୱରୂପ, ଆକଳନ କରାଯିବା ପ୍ରସଂଗରେ କେଉଁଠାରେ ସଂସ୍କୃତ କାବ୍ୟରୀତିର ଅନୁସରଣ ବା ବ୍ୟତିକ୍ରମ ରହିଛି, ତାର ସୂକ୍ଷ୍ମ ବିଶ୍ଲେଷଣ ହୋଇଛି । ଏହି ପରିପ୍ରେକ୍ଷୀରେ କାବ୍ୟବିଭାଜନର ସ୍ୱରୂପ, ଛାନ୍ଦସଂଖ୍ୟା, ଛାନ୍ଦଭିତ୍ତିକ ବିଭାଗିକରଣ, ଛାନ୍ଦର ପରିସର ଓ ସ୍ୱରୂପ ବ୍ୟତିକ୍ରମାଦିର ଆଲୋଚନା ରହିଛି । ନବମ ପରିଛେଦରେ ଓଡିଆ କାବ୍ୟାରମ୍ଭ ଓ ପରିସମାପ୍ତି କୌଶଳ ସମ୍ବନ୍ଧରେ ଆଲୋଚନା କରାଯିବା ପରିପ୍ରେକ୍ଷୀରେ ସଂସ୍କୃତ, ପ୍ରାକୃତ ଏବଂ ଅପଭ୍ରଂଶ କାବ୍ୟର ଗଠନ କୌଶଳ ଦ୍ୱାରା ଏହା କେତେ ଦୂର ପ୍ରଭାବିତ, ତାର ବ୍ୟାଖ୍ୟା ତୁଳନାତ୍ମକ ରୀତିରେ ପ୍ରଦତ୍ତ ହୋଇଛି । ମୁଖ୍ୟତଃ ସପ୍ତମ ପରିଛେଦରୁ ନବମ ପରିଚ୍ଛେଦ ମଧ୍ୟରେ ଓଡିଆ କାବ୍ୟର ଆଙ୍ଗିକ ଗଠନ କୌଶଳ ସଂପର୍କରେ ବିଶ୍ଲେଷଣ କରାଯାଇଛି । ଦଶମ ଏବଂ ଏକାଦଶ ପରିଚ୍ଛେଦରେ ବିଷୟ ବସ୍ତୁର ବିନ୍ୟାସ କୌଶଳ ଓ ଆତ୍ମତ୍ୱ ସଂପର୍କରେ ବିଚାର କରାଯାଇଛି । କାବ୍ୟର କଥାବସ୍ତୁ କିପରି ଯୁଗୀୟ ଚେତନା, କାବ୍ୟଗ୍ରହୀତାର ମାନସିକ ଚେତନା, ଅଳଂକାର ଶାସ୍ତ୍ରର ନିୟମ, ପରଂପରା ଆଦି ଦ୍ୱାରା ନିୟନ୍ତ୍ରିତ ତାର ସମ୍ୟକ୍ ବିଚାର ପରେ ଓଡିଆ କାବ୍ୟ କଥାବସ୍ତୁର ଉପସ୍ଥାପନ କୌଶଳ ସଂପର୍କରେ ତିନୋଟି ରେଖା ଚିତ୍ର ଦ୍ୱାରା ସୂଚିତ କରାଯାଇଛି । ଡଃ. ଆଚାର୍ଯ୍ୟ ଏହି ପରିଚ୍ଛେଦଟିକୁ କାବ୍ୟନାୟିକାର ଅଙ୍ଗାଭରଣ ବୋଲି ମତ ପ୍ରଦାନ କରିଛନ୍ତି । ଏକାଦଶ ପରିଛେଦରେ କାବ୍ୟର ଆତ୍ମିକ ସୌନ୍ଦର୍ଯ୍ୟ ବା କାବ୍ୟାତ୍ମା ସମ୍ବନ୍ଧରେ ଆଲୋଚନ ରହିଛି । ଡଃ. ଆଚାର୍ଯ୍ୟଙ୍କ ମତରେ ଓଡିଆ କାବ୍ୟର ଆତ୍ମାହେଉଛି 'ଚମତ୍କୃତି' । 'କାବ୍ୟସ୍ୟାତ୍ମ

ଚମତ୍କୃତିଃ' ପ୍ରସଙ୍ଗରେ ସେ କୁନ୍ତକ, କ୍ଷେମେନ୍ଦ୍ର, ନାରାୟଣ, ବିଶ୍ୱେଶ୍ୱର, କବିକର୍ଣ୍ଣପୁର, ଜଗନ୍ନାଥ ଆଦିଙ୍କ ମତୋଦ୍ଧାର ପୂର୍ବକ ଓଡ଼ିଆ କବିମାନେ ପଦଗତ, ଛାନ୍ଦଗତ, ବିଷୟ ବସ୍ତୁଗତ, ବର୍ଣ୍ଣନାଗତ, ଧ୍ୱନିଗତ, ରସଗତ, ଅଳଙ୍କାରଗତ ଚମତ୍କୃତି କିପରି ସାଧନ କରିଛନ୍ତି, ତାର ଚମତ୍କାର ଆଲୋଚନା କରିଛନ୍ତି । ଡଃ. ଆଚାର୍ଯ୍ୟଙ୍କ ଅନୁଯାୟୀ ଓଡ଼ିଆ କାବ୍ୟକାରଗଣ କାବ୍ୟରେ ଚମତ୍କୃତି ଆନୟନ ନିମିତ୍ତ ରସ, ଧ୍ୱନି, ଅଳଂକାର ଆଦିକୁ ଗ୍ରହଣ କରିନେଇଛନ୍ତି । ତେଣୁ ଓଡ଼ିଆ କାବ୍ୟର ଆତ୍ମା ରସ,ଧ୍ୱନି, ଅଳଂକାର ବା ଅନ୍ୟକିଛି ନୁହେଁ, ଚମତ୍କାର ମାତ୍ର । ଏହି ଉଦ୍ଦେଶ୍ୟ ସାଧନ ନିମିତ୍ତ କବିମାନେ ସଂସ୍କୃତ ଅଳଂକାର ଶାସ୍ତ୍ରରେ ପ୍ରତିଷ୍ଠିତ ବିଭିନ୍ନ ମତ ବାଦର କେବଳ ସହାୟତା ନେଇଛନ୍ତି । ସୁତରାଂ ମଧ୍ୟଯୁଗୀୟ କାବ୍ୟ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଯେତେ ଆଲୋଚନା ହୋଇଛି, ଡଃ. ଆଚାର୍ଯ୍ୟଙ୍କ ଆଲୋଚନା ସେହି ଦୃଷ୍ଟିରୁ ସ୍ୱତଂତ୍ର ଓ ନୂତନ ଦିଗର ସନ୍ଧାନୀ । କାବ୍ୟଗଠନ ଗତ କୌଶଳ ସମ୍ବନ୍ଧରେ ତାଙ୍କର ଆଲୋଚନା ସଂପୂର୍ଣ୍ଣ ନୂତନ । ଭାବ ପ୍ରବଣତାର ବଶବର୍ତ୍ତୀ ହୋଇ ନୁହେଁ, ପରନ୍ତୁ ନିଷ୍ଠାର ସହିତ ଦୀର୍ଘ ତିନିଶତ ପଚାଶ ବର୍ଷର କାବ୍ୟ ପରଂପରାକୁ ବୈଜ୍ଞାନିକ ଉପାୟରେ ବିଶ୍ଳେଷଣ କରି ସେ ଯେଉଁ ତଥ୍ୟ ଓ ପ୍ରମାଣ ପ୍ରଦାନ କରିଗଲେ, ଓଡ଼ିଆ ସାହିତ୍ୟ ସମାଲୋଚନାର ବିକାଶଧାରାରେ ତାହା ନିଶ୍ଚିତ ଭାବରେ ଏକ ନୂତନ ଦିଗ୍‌ବଳୟର ଯେ ସୂଚନାଦେଇଛି, ଅସ୍ୱୀକାର କରାଯାଇନପାରେ ।

**ସଂପାଦନାରେ ସମାଲୋଚନାର ସ୍ୱରୂପ :-**

ଡଃ. ଆଚାର୍ଯ୍ୟଙ୍କ ସଂପାଦନାରେ ପ୍ରକାଶ ଲାଭ କରିଥିବା ଗ୍ରନ୍ଥାବଳୀର ମୁଖବନ୍ଧ ବେଶ୍ ପାଣ୍ଡିତ୍ୟପୂର୍ଣ୍ଣ ଓ ଉତ୍କୃଷ୍ଟ ସମାଲୋଚନାର ପର୍ଯ୍ୟାୟଭୁକ୍ତ । ଅନେକ ବିସ୍ମୃତ ଓ ଦୁଷ୍ପ୍ରାପ୍ୟ ଗ୍ରନ୍ଥର ପୁନରୁଦ୍ଧାର କରି ସେ ଯେପରି ଏକ ଜାତୀୟ କର୍ତ୍ତବ୍ୟ ସାଧନ କରିଛନ୍ତି, ସେହିପରି ତାର ଯଥାର୍ଥ ମୂଲ୍ୟାୟନ କରି ଓଡ଼ିଆ ସମାଲୋଚନା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ବିସ୍ମୃତ ପ୍ରାୟ ଫକୀରମୋହନଙ୍କ 'ଜୀବନ ଚରିତ' ଓ 'ରାମାୟଣ' ସଂପାଦନ ପାଇଁ ସେ କମ ଶାରୀରିକ ଶ୍ରମ ଦାନ କରିନାହାନ୍ତି । ଫକୀରମୋହନଙ୍କ 'ଜୀବନ ଚରିତ' ଈଶ୍ୱର ଚନ୍ଦ୍ରଙ୍କ 'ଜୀବନ ଚରିତ'ର ଓଡ଼ିଆ ଅନୁବାଦ । ସେତେବେଳେ ଇଂରାଜୀ ବା ବଙ୍ଗଳାରୁ ଯେଉଁ ପୁସ୍ତକମାନ ଓଡ଼ିଆରେ ଅନୂଦିତ ହେଉଥିଲା, ତାହାଥିଲା ସଂପୂର୍ଣ୍ଣ ବିକୃତ । ସେହି ଅଭାବର ପରିପୂରଣ ନିମିତ୍ତ ଫକୀରମୋହନ ଅନୁବାଦରେ ହାତ ଦେଇଥିଲେ । ଭାଷାକୁ ସମୃଦ୍ଧ କରିବାଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ । ଏହି ଅଙ୍ଗୀକାରବଦ୍ଧତା ତାଙ୍କୁ ରାଶି ରାଶି ପୁସ୍ତକ ପ୍ରଣୟନ ନିମିତ୍ତ ପ୍ରୋତ୍ସାହନ ଦେଇଥିଲା । ଡଃ. ଆଚାର୍ଯ୍ୟ ତେଣୁ ମୁଖବନ୍ଧର ପ୍ରାରମ୍ଭରେ ଫକୀର ମୋହନଙ୍କ ସଂପର୍କରେ ଲେଖିଛନ୍ତି - ''ଅଙ୍ଗୀକାରବଦ୍ଧତା ଯେ କୌଣସି ସଫଳ ସାହିତ୍ୟ ସୃଷ୍ଟିର ମୂଳତତ୍ତ୍ୱ । ଲେଖକ ଏକ ନିର୍ଦ୍ଦିଷ୍ଟ ଦେଶ, ଜାତି, ଭାଷା, ସାହିତ୍ୟ, ବ୍ୟକ୍ତି, ସଂସ୍କୃତି କିମ୍ବା ଆଦର୍ଶ, ବାଦପ୍ରତି ଅଙ୍ଗୀକାରବଦ୍ଧ ହେଲେ ତାର ରଚନା ସମ୍ଭାର କ୍ରମ ବିକଶିତ ହୋଇ ଯେପରି ଦେଶକାଳ ଅତିକ୍ରମ କରେ ସେହିପରି ତାର ସୃଷ୍ଟି ଆଭିମୁଖ୍ୟ ପାଠକମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଅଗ୍ରସର ହେବାପାଇଁ ସାହାଯ୍ୟ କରିଥାଏ'' । (ଜୀବନ ଚରିତ- ସଂ-ଡଃ.ଆଚାର୍ଯ୍ୟ-ମୁଖବନ୍ଧ (କ)) ।

କେଉଁ ପରିବେଶ, ପରିସ୍ଥିତି ଓ ମାନସିକତା ଫକୀରମୋହନଙ୍କୁ ଜୀବନଚରିତ ଅନୁବାଦ କରିବାକୁ ପ୍ରେରଣା ଯୋଗାଇଥିଲା, ତାର ସଫଳ ମୂଲ୍ୟାୟନ ଡଃ. ଆଚାର୍ଯ୍ୟ କରିଛନ୍ତି । ଆଲୋଚନା ପ୍ରସଙ୍ଗରେ ତତ୍କାଳୀନ ଅନୁବାଦର ସ୍ୱରୂପ ଏବଂ ଫକୀରମୋହନଙ୍କ ଅନୁବାଦର ବିଶେଷତ୍ୱ ତଥା ତ୍ରୁଟି ସଂପର୍କରେ ସୂଚନା ଦେଇଛନ୍ତି । ଏହା ବ୍ୟତୀତ ସେ ସମୟରେ ଶିକ୍ଷାର ଅବସ୍ଥା, ପାଠ୍ୟପୁସ୍ତକ ତଥା ଗଦ୍ୟର ସ୍ୱରୂପ ସମ୍ବନ୍ଧରେ ଚମତ୍କାର ବିଶ୍ଳେଷଣ କରିଛନ୍ତି । ଫକୀରମୋହନଙ୍କ ରାମାୟଣ (ବାଳକାଣ୍ଡ)ର ସଂପାଦନାରେ ଡଃ. ଆଚାର୍ଯ୍ୟ ଭୂମିକା ଅତୀବ ମହତ୍ୱପୂର୍ଣ୍ଣ । କେବଳ ଲୁପ୍ତପ୍ରାୟ ଗ୍ରନ୍ଥଟିର ସଂପାଦନ ପାଇଁ ନୁହେଁ, ପରନ୍ତୁ ମୁଖବନ୍ଧରେ ପ୍ରଦତ୍ତ ଆଲୋଚନାଟି ଓଡିଆ ସାହିତ୍ୟକୁ ତାଙ୍କର ଅମୂଲ୍ୟ ଅବଦାନ । ରାମାୟଣର ବିଶେଷତ୍ୱ, ଓଡିଆ କବିମାନଙ୍କ ଉପରେ ରାମାୟଣର ପ୍ରଭାବ, ରାମ କଥା ଅବଲମ୍ବନରେ ରଚିତ କାବ୍ୟ ନାଟକାଦିର ପରିଚୟ ପ୍ରଦାନ କରି ଓଡିଶାରେ ରାମ କଥାର ପରଂପରାକୁ ସୂଚିତ କରିଛନ୍ତି । ଫକୀରମୋହନଙ୍କ ବହୁମୁଖୀ ପ୍ରତିଭାର ମୂଲ୍ୟାୟନ କ୍ଷେତ୍ରରେ ଏହାର ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପାରଳାର ବିଶିଷ୍ଟ ରାଜା ଜଗନ୍ନାଥ ନାରାୟଣ ଦେବ ଉଭୟ ସୁଶାସକ ଓ ସୁକବି ଭାବରେ ଖ୍ୟାତି ଲାଭ କରିଥିଲେ । ପ୍ରଭାବତୀ ପରିଣୟ, ଦ୍ୱାରକାଲୀଳା, ରୁକ୍ମିଣୀ ବିଳାସ, ଶ୍ରୀ ଗୀତ ଗୋବିନ୍ଦ କାବ୍ୟ ଓ ବହୁ ଚଉତିଶା, ଚଉପଦୀ, ଝୁମ୍ପା, କୋଇଲି ଆଦି ସେ ରଚନା କରିଛନ୍ତି । ତାଙ୍କର ସର୍ବଶ୍ରେଷ୍ଠ କାବ୍ୟ 'ଶ୍ରୀ ବୃନ୍ଦାବନ ଚନ୍ଦ୍ର ବିହାର' । ଓଡିଆ ସାହିତ୍ୟକୁ ବହୁଦିଗରୁ ସେ ସମୃଦ୍ଧ କରିଥିଲେହେଁ, ଏଯାବତ୍ ତାଙ୍କ ସଂପର୍କରେ ବିଶେଷ ଗୁଣାତ୍ମକ ଆଲୋଚନା ହୋଇନଥିଲା । ଡଃ. ଆଚାର୍ଯ୍ୟ ଆଞ୍ଚଳିକ ଗବେଷଣା କେନ୍ଦ୍ର ତରଫରୁ ପ୍ରଥମ କରି ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ ସଂପାଦନା କରି ପ୍ରକାଶ କରିଛନ୍ତି । ଏଥିରେ ତାଙ୍କର ବିଶିଷ୍ଟ କାବ୍ୟ 'ଶ୍ରୀ ବୃନ୍ଦାବନ ଚନ୍ଦ୍ର ବିହାର' ସ୍ଥାନ ଲାଭ କରିଛି । କବିଙ୍କ ଜନ୍ମ ସମୟ, କାର୍ଯ୍ୟାବଳୀ, କବିତ୍ୱ ଓ ଜାତୀୟତା ବୋଧ ସଂପର୍କରେ ସେ ଏଥିରେ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା କରିଛନ୍ତି । ଆଲୋଚନାଟିକୁ ତଥ୍ୟନିଷ୍ଠ କରିବା ପାଇଁ ଡଃ. ଆଚାର୍ଯ୍ୟ ବହୁ ଇତିହାସ, ତାଳପତ୍ର ପୋଥି ବିଭିନ୍ନ ପୁସ୍ତକ ଆଦିର ସହାୟତା ଗ୍ରହଣ କରିଛନ୍ତି । ବିଶେଷକରି ଜଗନ୍ନାଥ ନାରାୟଣ ଦେବଙ୍କ ଜୀବନୀ ଆଲୋଚନା ପ୍ରସଙ୍ଗରେ ତାଙ୍କର ଧର୍ମମତ, ଶାସନପ୍ରଣାଳୀ, ଯୁଦ୍ଧଯାତ୍ରା, କବିତ୍ୱ ଓ ପାଣ୍ଡିତ୍ୟ ଆଦି ବିଷୟରେ ଯେଉଁ ତଥ୍ୟ ସମନ୍ୱିତ ଆଲୋଚନା ପ୍ରଦତ୍ତ କରିଛନ୍ତି, ତାହାଦ୍ୱାରା କବିଙ୍କ ସମ୍ପର୍କରେ ଯଥାର୍ଥ ଅନୁଶୀଳନ ହୋଇପାରିଛି ବୋଲି ମନେହୁଏ । ଯେଉଁଠାରେ ତାଙ୍କର ସନ୍ଦେହ ଆସିଛି, ସେଠାରେ ଇତିହାସର ପୁନର୍ମୂଲ୍ୟାୟନ କରିଛନ୍ତି । ତାଙ୍କର ଧର୍ମମତ ଆଲୋଚନା ପ୍ରସଙ୍ଗରେ ଓଡିଶାରେ ଶୁଦ୍ଧାଭକ୍ତି ଧର୍ମର ଏକ କ୍ରମବିକଶିତ ଚିତ୍ର ଏଥିରେ ଉପଲବ୍ଧ । ମୁଖବନ୍ଧରେ ଜଗନ୍ନାଥ ନାରାୟଣ ଦେବଙ୍କ ସଂପର୍କୀୟ ଆଲୋଚନା ଆଲୋଚକଙ୍କ ପାଣ୍ଡିତ୍ୟ, ଗଭୀର ଅଧ୍ୟୟନ, ତଥ୍ୟଧର୍ମିତା ଓ ଇତିହାସ ପ୍ରବଣତାକୁ ପ୍ରମାଣ କରିଥାଏ । ଶେଷରେ ତାଙ୍କର ମତ ହେଉଛି ''ଜଗନ୍ନାଥ ନାରାୟଣ ଦେବଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ, ଲଳିତ କବିତ୍ୱ,

ଅନମନୀୟ ବୀରତ୍ୱ, ପ୍ରଗାଢ଼ ଜାତି ଓ ଦେଶ ପ୍ରୀତି ଏବଂ ସର୍ବୋପରି ଐକାନ୍ତିକ ଭକ୍ତିମତ୍ତା ଓଡିଶାର ରାଜନୈତିକ, ସାଂସ୍କୃତିକ ତଥା ସାହିତ୍ୟିକ ଇତିହାସରେ ପାରଳାଖେମୁଣ୍ଡିକୁ ଏକ ସ୍ୱତନ୍ତ୍ର ଆସନରେ ପ୍ରତିଷ୍ଠିତ କରିବାରେ ସହାୟତା କରିଛି । '' ଡଃ ଆଚାର୍ଯ୍ୟଙ୍କ ଆଲୋଚନା ଜଗନ୍ନାଥ ନାରାୟଣ ଦେବଙ୍କ ପ୍ରତିଭା, ବିଦ୍‌ବତ୍ତା ଓ ବ୍ୟକ୍ତିତ୍ୱକୁ ପ୍ରକାଶ କରିବାରେ ବହୁପରିମାଣରେ ସଫଳ ହୋଇପାରିଛି ।

ଓଡିଆ ସାହିତ୍ୟକୁ ଡଃ. ଆଚାର୍ଯ୍ୟଙ୍କର ଅନ୍ୟତମ ମହାନ୍ ଅବଦାନ ହେଉଛି 'ରାମଚନ୍ଦ୍ର ଗ୍ରନ୍ଥାବଳୀର ତିନୋଟି ଭାଗର ସଂପାଦନା' । ବହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଏହା ପ୍ରକାଶ ଲାଭ କରିଛି । ଏହି ଗ୍ରନ୍ଥାବଳୀର ପ୍ରଥମ ଓ ତୃତୀୟ ଭାଗରେ ଡଃ. ଆଚାର୍ଯ୍ୟଙ୍କ ସଂପାଦକୀୟ ଅତୀବ ମହତ୍ୱପୂର୍ଣ୍ଣ । ଗ୍ରନ୍ଥାବଳୀ ପ୍ରଥମଭାଗରେ ସେ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଜୀବନୀ ଏବା ବିଂଶଶତକ ପ୍ରଥମ ପାଦ ଓଡିଶାର ସାମାଜିକ, ରାଜନୀତିକ ଓ ସାହିତ୍ୟିକ ଅବସ୍ଥା ସଂପର୍କରେ ଆଲୋଚନା କରିଛନ୍ତି । କେଉଁ ପରିପ୍ରେକ୍ଷୀରେ ସ୍ୱର୍ଗତ ରାମଚନ୍ଦ୍ର ଆଚାର୍ଯ୍ୟ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ, ସେ ଏଥିରେ ତାର ସୂଚନା ପ୍ରଦାନ କରିଛନ୍ତି । ରାମଚନ୍ଦ୍ର ଏକଧାରାରେ ଥିଲେ ପାଠ୍ୟପୁସ୍ତକ ରଚୟିତା, ଶିଶୁସାହିତ୍ୟିକ, ପ୍ରାବନ୍ଧିକ, କବି, ଔପନ୍ୟାସିକ, ଗାଳ୍ପିକ, ଓ ନାଟ୍ୟକାର । ସର୍ବୋପରି ତାଙ୍କର ଜାତୀୟତା ବୋଧ ଥିଲା ଅତ୍ୟନ୍ତ ପ୍ରବଳ । ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସେଥିଲେ ଗଭୀର ଆଶାବାଦୀ ଓ ମାନସିକ ସ୍ତରରେ ଅତ୍ୟନ୍ତ ଦୃଢ଼ । ଗ୍ରନ୍ଥାବଳୀର ପ୍ରଥମଭାଗରେ ଡଃ ଆଚାର୍ଯ୍ୟ ତାଙ୍କର କେତୋଟି ପ୍ରବନ୍ଧ, ପାଠ୍ୟପୁସ୍ତକ, ଉପନ୍ୟାସ ଓ କବିତାର ଆଲୋଚନା କରି ରାମଚନ୍ଦ୍ର ଦେବଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ କରିଛନ୍ତି । ତାଙ୍କର ଜୀବନୀ ସହିତ ସୃଷ୍ଟିର ତୁଳନାତ୍ମକ ଆଲୋଚନା ଅତୀବ ପ୍ରଶଂସନୀୟ । ରାମଚନ୍ଦ୍ର ଙ୍କ ମାନସିକ ଅବସନ୍ନତା ସଂପର୍କରେ ଡଃ ଆଚାର୍ଯ୍ୟ ଲେଖିଛନ୍ତି ''ଏକ ଦିଗରେ ଆଦର୍ଶ ଶିକ୍ଷକ, ପ୍ରତିଷ୍ଠିତ ସାହିତ୍ୟିକ ତଥା ସୁବକ୍ତା ରୂପେ ସୁଖ୍ୟାତି ଓ ତଜ୍ଜନିତ ସମ୍ମାନ ବୋଧ, ପାରିବାରିକ, ପରଂପରା ଓ ପରିବେଶର ତାଡନା, ଶାସ୍ତ୍ରାନୁଶୀଳନ ଲବ୍ଧ ଆତ୍ମବୋଧ ବ୍ୟକ୍ତିଗତ ତଥା ସାମାଜିକ ସ୍ୱାସ୍ଥ୍ୟରକ୍ଷା ପ୍ରତି ସମଧିକ ସଚେତନତା ଏବଂ ଅନ୍ୟଦିଗରେ ଚାରିତ୍ରିକ ସ୍ଖଳନ ପାଇଁ ସ୍ୱାର୍ଥାନ୍ୱେଷୀ ବନ୍ଧୁମାନଙ୍କର ପ୍ରରୋଚନା, ଆର୍ଥିକ ଅସ୍ୱଚ୍ଛଳତା ଯୋଗୁଁ ବିବେକର ଶତଦଂଶନ ସତ୍ତ୍ୱେ ସେମାନଙ୍କ ସହିତ ସୁସଂପର୍କ ରକ୍ଷାକରିବାର ଆବଶ୍ୟକତା ଏବଂ ସର୍ବୋପରି ସାହିତ୍ୟିକ ପ୍ରତିଭାର ବ୍ୟବସାୟିକ ବିନିଯୋଗ, ରାମଚନ୍ଦ୍ରଙ୍କ ଚିତ୍ତବୃତ୍ତିରେ ଏକ ପ୍ରବଳ ଗ୍ଲାନିବୋଧ ସୃଷ୍ଟିକରିଥିଲା ।' ଏହି ଗ୍ଲାନିବୋଧ ଯୋଗୁଁ ତାଙ୍କ ଲେଖନୀ ହୋଇପଡିଥିଲା ଅବସନ୍ନ । ରାମଚନ୍ଦ୍ର ଗ୍ରନ୍ଥାବଳୀର ତୃତୀୟ ଭାଗରେ ଶିଶୁ ସାହିତ୍ୟିକ ରାମଚନ୍ଦ୍ର 'ଶିରୋନାମାରେ ଡଃ ଆଚାର୍ଯ୍ୟଙ୍କ ଆଲୋଚନା ଅତୀବ ମହତ୍ତ୍ୱପୂର୍ଣ୍ଣ । ଏଥିରେ ସେ ରାମଚନ୍ଦ୍ରଙ୍କ ପାଠ୍ୟପୁସ୍ତକ ଏବଂ ଶିଶୁ ସାହିତ୍ୟର ମୂଲ୍ୟାୟନ କରିଛନ୍ତି । ବିଂଶଶତକ ଆରମ୍ଭରେ ଗଞ୍ଜାମର ଲୋକ ସଂଖ୍ୟା, ସାକ୍ଷର ସଂଖ୍ୟା, ଶିକ୍ଷାନୁଷ୍ଠାନ ଏବଂ ଛାତ୍ରମାନଙ୍କର ସଂଖ୍ୟା ସମ୍ବନ୍ଧରେ ବିଭିନ୍ନ କ୍ଷେତ୍ରରୁ ତଥ୍ୟ ସଂଗ୍ରହ କରିସେ ସମୟର ଶିକ୍ଷାଗତ ଅବସ୍ଥା ସଂପର୍କରେ ସୁଚିନ୍ତିତ ଆଲୋଚନା କରିଛନ୍ତି । ଏତଦ୍‌ବ୍ୟତୀତ ବିଭିନ୍ନ

ପାଠ୍ୟପୁସ୍ତକ, ତାର ରଚୟିତା, ପାଠ୍ୟପୁସ୍ତକର ଭାବ ଓ ଭାଷା ଆଦି ସମ୍ବନ୍ଧରେ ମଧ୍ୟ ତୁଳନାତ୍ମକ ଆଲୋଚନା କରିଛନ୍ତି । ଶିଶୁମାନେ ଦେଶର ଭବିଷ୍ୟତ ନାଗରିକ । ସେମାନଙ୍କର ମାନସିକ ଓ ବୌଦ୍ଧିକ ବିକାଶ ଦ୍ୱାରା ଦେଶ ହୋଇଥାଏ ସମୃଦ୍ଧିଶାଳୀ । ଏଣୁ ପ୍ରତ୍ୟେକ ଦେଶର ଶିଶୁ ମାନଙ୍କୁ ଉପଯୁକ୍ତ କରି ଗଢ଼ିବା ପ୍ରତ୍ୟେକ ଦେଶର ବୁଦ୍ଧିଜୀବୀଙ୍କ କର୍ତ୍ତବ୍ୟ । ଏଥିପାଇଁ ଆବଶ୍ୟକ ଉପଯୁକ୍ତ ଶିଶୁ ସାହିତ୍ୟ ଓ ପାଠ୍ୟପୁସ୍ତକ । ତେଣୁ ଶିଶୁ ସାହିତ୍ୟର ଲକ୍ଷ୍ୟ ସଂପର୍କରେ ଡଃ. ଆଚାର୍ଯ୍ୟ କହିଛନ୍ତି - ''କେବଳ ଶିଶୁର ଅକ୍ଷର ପରିଚୟ କରାଇଦେଲେ କିମ୍ୱା ଅକ୍ଷର ଚିହ୍ନି ପୁସ୍ତକଟିଏ ପଢ଼ାଇନେଲେ ଶିଶୁ ସାହିତ୍ୟିକର କାର୍ଯ୍ୟ ଶେଷ ହୋଇଗଲା ବୋଲି କୁହାଯାଇ ପାରିବ ନାହିଁ । ଶିଶୁ ଚିତ୍ତରେ ଜିଜ୍ଞାସା ଓ ପଠନ ପ୍ରବୃତ୍ତି ଜାଗ୍ରତ କରାଇବା ତାର ପ୍ରଧାନ ଆଭିମୁଖ୍ୟ ହେବା ଉଚିତ୍ ।'' ରାମଚନ୍ଦ୍ରଙ୍କ ପାଠ୍ୟପୁସ୍ତକ ଓ ଶିଶୁ ସାହିତ୍ୟ ଆଲୋଚନା ସମୟରେ କିପରି ବୈଜ୍ଞାନିକ ପଦ୍ଧତିରେ ସେ ପିଲା ମାନଙ୍କ ନିମିତ୍ତ ପୁସ୍ତକ ପ୍ରଣୟନ କରିଥିଲେ, ବିଭିନ୍ନ ଉଦାହରଣ ଦ୍ୱାରା ତାହା ଦେଖାଇ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ଡଃ. ଆଚାର୍ଯ୍ୟ ଲେସି, ସଟନ, କେରି, ରାଧାନାଥ, ମଧୁସୂଦନ, ଚତୁର୍ଭୁଜ ପଟ୍ଟନାୟକ, ଗୋଦାବରୀଶ ମିଶ୍ର, ବାସୁଦେବ ତ୍ରିପାଠୀ, ମୃତ୍ୟୁଞ୍ଜୟ ରଥ, ଉପେନ୍ଦ୍ର ନାଥ ଦାଶ, ଚନ୍ଦ୍ରମଣି ମହାପାତ୍ର, ଜଗବନ୍ଧୁ ସିଂହ ଆଦିଙ୍କ ପାଠ୍ୟ ପୁସ୍ତକ ବିଷୟରେ ଉଲ୍ଲେଖ କରି ଓଡିଆ ପାଠ୍ୟପୁସ୍ତକର ରଚନାର ଇତିହାସ ଓ ତାର ବୈଶିଷ୍ଟ୍ୟ ସମ୍ବନ୍ଧରେ ଆଲୋକପାତ କରିଛନ୍ତି । ପାଠ୍ୟ ପୁସ୍ତକ ପାଇଁ ବିଷୟ ନିର୍ବାଚନ ବିଶେଷ ଭାବରେ ମୁଖ୍ୟ । ରାମଚନ୍ଦ୍ର କିପରି ପୁରୋଦୃଷ୍ଟି ବଳରେ ବିଷୟ ନିର୍ବାଚନ କରୁଥିଲେ ଏବଂ ଶ୍ରେଣୀ ଅନୁଯାୟୀ ପାଠ୍ୟ ପୁସ୍ତକ ରଚନା କରୁଥିଲେ ତାର ଆଲୋଚନା କରି ତାଙ୍କ ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟର ବିଶେଷତ୍ୱ ପ୍ରତିପାଦନ କରିଛନ୍ତି । ଉକ୍ତ ଆଲୋଚନାରୁ ଆଲୋଚକଙ୍କ ଗଭୀର ବିଶ୍ଳେଷଣ, ସୂକ୍ଷ୍ମ ପର୍ଯ୍ୟବେକ୍ଷଣ, ତୀକ୍ଷ୍ଣ ଅନୁସନ୍ଧାନ ଓ ସର୍ବୋପରି ବିଚାର ବିଶ୍ଳେଷଣରେ ଯଥାର୍ଥତା ଅନୁଭବ କରିହୁଏ । ତେଣୁ ମୁଖବନ୍ଧଟି କେବଳ ରାମଚନ୍ଦ୍ରଙ୍କ ବିଷୟରେ ନହୋଇ ବରଂ ତତ୍କାଳୀନ ଓଡିଶାର ଶିକ୍ଷା ବ୍ୟବସ୍ଥା, ଶିକ୍ଷାନୁଷ୍ଠାନ, ପାଠ୍ୟପୁସ୍ତକ, ଶିଶୁ ସାହିତ୍ୟ ଆଦି ସଂପର୍କୀୟ ଏକ ପ୍ରାମାଣିକ ଇତିହାସ କହିଲେ ଭୁଲହେବ ନାହିଁ ।

ଡଃ. ଆଚାର୍ଯ୍ୟଙ୍କର ଅନ୍ୟତମ ଶ୍ରେଷ୍ଠକୃତି ବିସ୍ମୃତ ଏବଂ ଲୁପ୍ତ ପ୍ରାୟ 'ଇନ୍ଦ୍ରଧନୁ' ପତ୍ରିକାର ସଂପାଦନା । ୧୮୯୩ ମ ସିହାରେ ପ୍ରଥମେ ଏହି ପତ୍ରିକାଟି ଆତ୍ମପ୍ରକାଶ କରିଥିଲା । ଊନବିଂଶ ଶତକର ଶେଷ ଦଶକରେ 'ଇନ୍ଦ୍ରଧନୁ' ଏବଂ 'ବିଜୁଳି'ର କଳି ତତ୍କାଳୀନ ସାହିତ୍ୟିକ ପରିବେଶକୁ ବେଶ କିଛି ବର୍ଷଧରି ସରଗରମ କରି ରଖିଥିଲା । ମୁଖ୍ୟତଃ ଉପେନ୍ଦ୍ର ଓ ରାଧାନାଥକୁ କେନ୍ଦ୍ରକରି ପତ୍ରିକାଦ୍ୱୟର ଆତ୍ମପ୍ରକାଶ । ଡଃ ଆଚାର୍ଯ୍ୟ ଏହି ବିସ୍ମୃତ ପତ୍ରିକାର ପନ୍ଦରଟି ସଂଖ୍ୟା ଉଦ୍ଧାର ପୂର୍ବକ ପ୍ରକାଶ କରି ନିଶ୍ଚିତ ଭାବରେ ଏକ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଛନ୍ତି । ଓଡିଆ ସମାଲୋଚନା ସାହିତ୍ୟର ବିକାଶରେ ଉକ୍ତ ପତ୍ରିକାଟିର ଭୂମିକା ସର୍ବୋପରି ଗୁରୁତ୍ୱପୂର୍ଣ୍ଣ । ଡଃ ଆଚାର୍ଯ୍ୟ କେବଳ କଠୋର ପରିଶ୍ରମ କରି ଏହି ବିସ୍ମୃତ ପତ୍ରିକାଟିର ପନ୍ଦରଟି ସଂଖ୍ୟା ଉଦ୍ଧାର କରିନାହାନ୍ତି, ପରନ୍ତୁ ଏହାର ମୁଖବନ୍ଧରେ ଯେଉଁ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା କରିଛନ୍ତି,

ତାହା ଅତ୍ୟନ୍ତ ଉପାଦେୟ ଓ ମୂଲ୍ୟବାନ । ଇନ୍ଦ୍ରଧନୁର ଜନ୍ମଲଗ୍ନଠାରୁ ପତ୍ରିକାଟିର ପ୍ରକାଶନ ବନ୍ଦହେବା ପର୍ଯ୍ୟନ୍ତ ଯେଉଁ ସମସ୍ତ ଘଟଣା ଘଟିଯାଇଛି, ତାର ଏକ ଧାରାବାହିକ ବିଶ୍ଳେଷଣ ଏଥିରେ ପ୍ରଦତ୍ତ । କେବଳ ଇନ୍ଦ୍ରଧନୁ ନୁହେଁ, ସେ ସମୟରେ ପ୍ରକାଶ ଲାଭ କରିଥିବା ବିଭିନ୍ନ ପତ୍ରିକା ଗୁଡ଼ିକର ଧାରାବାହିକ ଇତିହାସ ତଥା ବିଷୟ ବସ୍ତୁ ସଂପର୍କରେ ଆଲୋଚନା କରି ଓଡ଼ିଆ ସାହିତ୍ୟର ବିକାଶରେ ପତ୍ରିକାମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ବନ୍ଧରେ ସୂଚନା ପ୍ରଦାନ କରିଛନ୍ତି । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି 'ଇନ୍ଦ୍ରଧନୁ' ରେ ଯେଉଁମାନେ ଲେଖାଲେଖି କରୁଥିଲେ, ସେମାନେ ମୁଖ୍ୟତଃ ବିଭିନ୍ନ ଛଦ୍ମନାମରେ ନିଜକୁ ପରିଚିତ କରିଥିଲେ । ଡଃ ଆଚାର୍ଯ୍ୟ ଏହି ଛଦ୍ମନାମରୁ କେତେକ ଲେଖକଙ୍କର ପ୍ରକୃତ ନାମ ଅନୁସନ୍ଧାନ କରିବାରେ ଯେପରି ସଫଳକାମ ହୋଇଛନ୍ତି, ବାସ୍ତବରେ ତାହା ପ୍ରଶଂସନୀୟ । ଏତଦ୍‌ବ୍ୟତୀତ ତତ୍‌କାଳୀନ ସାମାଜିକ ପରିବେଶ, ସାହିତ୍ୟିକ ପାଣିପାଗ, ବ୍ୟକ୍ତିମାନସର ରୁଚିବୋଧ, ସମାଲୋଚନାର ସ୍ୱରୂପ, ପ୍ରାଚୀନ ଓ ଆଧୁନିକର ଦ୍ୱନ୍ଦ୍ୱ ଓ ତଦ୍‌ଜନିତ ସଂକଟବୋଧ, ପତ୍ରିକା ସାହିତ୍ୟର ଭୂମିକା, ବିଭିନ୍ନ ପତ୍ରିକାରେ ପ୍ରକାଶ ଲାଭ କରିଥିବା ବିଶିଷ୍ଟ ଲେଖକମାନଙ୍କର ସାହିତ୍ୟିକ କୃତି, ସମସାମୟିକ ଯୁବମାନସ ଓ ବୁଦ୍ଧିଜୀବୀଙ୍କ ପ୍ରତିକ୍ରିୟାକୁ ଡଃ. ଆଚାର୍ଯ୍ୟ ଚମତ୍କାର ଭାବରେ ବିଶ୍ଳେଷଣ କରି ସ୍ୱୀୟ ବୁଦ୍ଧିମତା, ସୂକ୍ଷ୍ମ ଅନୁସନ୍ଧିତ୍ସା, ତଥ୍ୟଗତ ପ୍ରାମାଣିକତା, ଓ ଆଲୋଚନାରେ ମୌଳିକତାକୁ ପ୍ରତିପାଦନ କରିପାରିଛନ୍ତି । ଇନ୍ଦ୍ରଧନୁ ସଂପର୍କରେ ଶେଷ ମନ୍ତବ୍ୟ ଦେଇ ସେ ଲେଖିଛନ୍ତି ''ଇନ୍ଦ୍ରଧନୁ ମାତ୍ର ଚାରୋଟି ବର୍ଷପାଇଁ ଅନିୟମିତ ଭାବେ ଓଡ଼ିଆ ସାହିତ୍ୟ ଗଗନରେ ଦେଖାଦେଇ ଅନ୍ତର୍ହିତ ହୋଇ ଯାଇଥିଲେ ସୁଦ୍ଧା ଆଧୁନିକ ସାହିତ୍ୟର ବିକାଶ ପାଇଁ ଏହାର ଅବଦାନ ଆଦୌ ନଗଣ୍ୟ ନୁହେଁ । ଏହା ଓଡ଼ିଶାର ବହୁ ଶିକ୍ଷିତ ଯୁବକଙ୍କୁ ସାହିତ୍ୟ ପ୍ରତିଯେ କେବଳ ଆକୃଷ୍ଟ କରିଥିଲା ତାହା ନୁହେଁ, ସେମାନଙ୍କର ହାତରେ ଲେଖନୀ ଧରାଇବାରେ ମଧ ସାହାଯ୍ୟ କରିଥିଲା । ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର ଏବଂ ସେ ସଂପର୍କରେ ବିଧିବଦ୍ଧ ଆଲୋଚନା କରିବା ପାଇଁ ଏହା ଲେଖକ ମାନଙ୍କୁ ପ୍ରଚୋଦିତ କରିଥିଲା । ଓଡ଼ିଆ ସମାଲୋଚନା ସାହିତ୍ୟକୁ ପ୍ରାଥମିକ ସ୍ତରରେ ଏକ ସୁସ୍ଥିର ରୂପ ଦେବାରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ ସାହିତ୍ୟ ଯେତେ ଉନ୍ନତ ହେଲେହେଁ ତାହାର ଅନୁସରଣ ଯେ ଆଧୁନିକ ଯୁଗ ପାଇଁ ଅନୁପଯୁକ୍ତ ଏବଂ ସମୟ ଓ ରୁଚିର ପରିବର୍ତ୍ତନ ସହ ଆଧୁନିକ ଲେଖକଙ୍କ ସାହିତ୍ୟର ଏହି ଅଭିନବ ରୂପ ସଂପଦକୁ ସ୍ୱାଗତ ଜଣାଇବା ଏକାନ୍ତ ଆବଶ୍ୟକ, ଏପରି ଏକ ମନୋବୃତ୍ତି ସୃଷ୍ଟି କରିବାରେ ପ୍ରାଚୀନ ସାହିତ୍ୟର ବଳିଷ୍ଠ ପୃଷ୍ଠପୋଷକ 'ଇନ୍ଦ୍ରଧନୁ'ର ଭୂମିକା ଅବିସ୍ମରଣୀୟ ।''

ଡଃ. ଆଚାର୍ଯ୍ୟଙ୍କ ଅନ୍ୟତମ ଅବଦାନ ସୋମଦେବଙ୍କ 'କଥାସରିତ ସାଗରର' ସଂପାଦନା । ଏହା ତିନୋଟି ଭାଗରେ ପ୍ରକାଶିତ । ପ୍ରଥମ ଭାଗରେ ଡଃ. ଆଚାର୍ଯ୍ୟ ଏହାର ମୁଖବନ୍ଧରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ପ୍ରଦାନ କରିଛନ୍ତି । ସଂସ୍କୃତ ସାହିତ୍ୟରେ କଥାସାଗରର ପରଂପରା, ଏହାର ପ୍ରଭାବରେ ବିଭିନ୍ନ ସାହିତ୍ୟରେ ଅନୁପ୍ରବେଶ, କଥା ଗୁଡ଼ିକର ସୁସଜ୍ଜୀକରଣ, କଥା ମଧ୍ୟରେ ରହିଥିବା ସଂହତି ଆଦିର ସୂକ୍ଷ୍ମ ବିଶ୍ଳେଷଣ କରିଛନ୍ତି ତାଙ୍କ

ଆଲୋଚନାରେ । ଏତଦ୍‌ବ୍ୟତୀତ ବିଭିନ୍ନ କଥା ମଧ୍ୟରେ ରହିଥିବା ସଂପର୍କ, କଥାକଥନକର ପରଂପରା ମଧ୍ୟରେ ସାଂସ୍କୃତିକ ଐକ୍ୟବୋଧ ଏବଂ ସର୍ବୋପରି ତାର କଳାଗତ ମୂଲ୍ୟ ସମ୍ବନ୍ଧରେ ସେ ବୈଜ୍ଞାନିକ ବିଚାର ବିଶ୍ଳେଷଣ କରିଛନ୍ତି ।

ଏତଦ୍‌ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ଡଃ. ଆଚାର୍ଯ୍ୟଙ୍କର ବହୁପ୍ରବନ୍ଧ ପ୍ରକାଶ ଲାଭ କରିଛି । ପ୍ରତ୍ୟେକଟି ପ୍ରବନ୍ଧରେ ତାଙ୍କର ମୌଳିକ ଚିନ୍ତାଧାରା ଏବଂ ପ୍ରକାଶ ଭଙ୍ଗୀରେ ନୂତନତା ସହଜରେ ବାରିହୋଇ ପଡେ । ନିନ୍ଦା ବା ପ୍ରଶଂସା ସମାଲୋଚନାର ଧର୍ମ ନୁହେଁ ; ଏହା ଜୀବନବ୍ୟାପି ଏକ ସାଧନା - ଡଃ. ଆଚାର୍ଯ୍ୟଙ୍କ ଯେ କୌଣସି ପ୍ରବନ୍ଧ ପାଠକଲେ ଏହି ସତ୍ୟର ପରିଚୟ ମିଳିଥାଏ । ନିରପକ୍ଷତା ସମାଲୋଚନାର ଶ୍ରେଷ୍ଠ ଧର୍ମ । ଚର୍ବିତଚର୍ବଣ ବା ଅନ୍ୟମତର ଅନୁସନ୍ଧାନ ଏହାର ମର୍ଯ୍ୟାଦା ହାନି କରିଥାଏ । ଡଃ. ଆଚାର୍ଯ୍ୟ ସମାଲୋଚନାର ଏହି ମୌଳିକଧର୍ମ ପ୍ରତି ସଂପୂର୍ଣ୍ଣ ସଚେତନ ଥିବାରୁ ତାଙ୍କର ପ୍ରତିଟି ଆଲୋଚନା ସୁଚିନ୍ତିତ, ତଥ୍ୟପୂର୍ଣ୍ଣ, ମୌଳିକ ଓ ଭାବଗମ୍ଭୀର ହୋଇ ପାରିଛି । ଓଡିଆ ସମାଲୋଚନା ସାହିତ୍ୟର ଏହି ଆଧୁନିକ ପର୍ବରେ ଡଃ ଆଚାର୍ଯ୍ୟ ଯେ ଜଣେ ବଳିଷ୍ଠ ପ୍ରତିଭା, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ।

*ଅଧ୍ୟାପକ, ସ୍ନାତକୋତ୍ତର ଓଡିଆ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର - ୭୬୦୦୦୭*

# ପ୍ରଫେସର ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନ କୌଶଳ

**ଡକ୍ଟର ଅଶୋକକୁମାର ପଟ୍ଟନାୟକ**

ଗବେଷଣା ଏକ ତପସ୍ୟା । ଗବେଷକ ଜଣେ ତପସ୍ୱୀ । ମନନଶୀଳତା, ଅନୁଧ୍ୟାନ ଓ ସତ୍ୟପ୍ରବଣ ମନନେଇ ଗବେଷକ ସଦା ବାସ୍ତବର ସଂଧାନରେ ବ୍ରତୀ ହୋଇଥାଏ । ସତ୍ୟାନ୍ୱେଷୀ ଗବେଷକର ମନରେ ଦୃଢ଼ ବିଶ୍ୱାସ ଭରିଦେଇ ଉପଯୁକ୍ତ ସିଦ୍ଧାନ୍ତରେ ପହଂଚାଇବା ପାଇଁ - ଗବେଷକ ଲାଗି ତତ୍ତ୍ୱାବଧାରକ ଜଣେ ମହାନ୍ ତପସ୍ୱୀ ବା ମହର୍ଷି । ଚିତ୍ତର ଏକାଗ୍ରତା ପୂର୍ବକ ଗଭୀର ତପସାଧନା ବଳରେ ଯେପରି ତପସ୍ୱୀ ପରମଜ୍ଞାନ ଲାଭ ପୂର୍ବକ ଚରମ ସତ୍ୟ ନିକଟରେ ଉପନୀତ ହୋଇଥାଏ - ସେହିପରି ଗବେଷକ ସ୍ୱ ଅଧ୍ୟୟନ, ଆନ୍ତରିକ ଓ ଅନୁଧ୍ୟାନ ତଥା ପ୍ରବଳ ଏକାଗ୍ରତା ସହ ନୂତନ ସତ୍ୟର ଉଦ୍‌ଘାଟନ ପୂର୍ବକ ସିଦ୍ଧାନ୍ତରେ ଉପନୀତ ହୁଏ ।

ସାହିତ୍ୟ ଗବେଷଣା ଏକ ଜଟିଳ କାର୍ଯ୍ୟ । ବିଜ୍ଞାନ ଗବେଷଣା ସହ ଏହା ସମାନ । ଏଥିରେ ମନୀଷା, ଧୈର୍ଯ୍ୟ ଓ ନିଷ୍ଠାର ଆବଶ୍ୟକତା ରହିଅଛି । ଅନୁଶୀଳନ, ବିଶ୍ଳେଷଣ ଓ ସିଦ୍ଧାନ୍ତର ଉପସ୍ଥାପନା ପାଇଁ ସୂକ୍ଷ୍ମ ଦୃଷ୍ଟିକୋଣର ଆବଶ୍ୟକତାକୁ ମଧ୍ୟ ଏଥିରେ ଏଡ଼ାଇ ଦିଆଯାଇନପାରେ । ପୂର୍ବାର୍ଜିତ ଜ୍ଞାନ ସାହାଯ୍ୟରେ ନୂତନ ଜ୍ଞାନର ଉଦ୍‌ଘାଟନ, ପୂର୍ବମତର ସଂଶୋଧନ, ନିରପେକ୍ଷ ଆଲୋଚନା ଓ ଅନୁସଂଧାନ, କଳ୍ପନା ବିଳାସ ଅପେକ୍ଷା ଯଥା ବିଚାର ତଥା ସତ୍ୟାନୁସଂଧାନ, ଅନୁମାନ ଓ କଳ୍ପନାକୁ ପୂର୍ଣ୍ଣ ବାଦ ନଦେଇ ପରିପାର୍ଶ୍ୱିକ ଘଟନା, ପରିବେଶ ଓ ତଥ୍ୟଭିତ୍ତିକ ମନୀଷାର ପ୍ରକାଶ : ପ୍ରାଚୀନ ସାହିତ୍ୟର ପାଠୋଦ୍ଧାର; ପ୍ରାଚୀନ ପାଣ୍ଡୁଲିପିରେ ଅନ୍ୱେଷଣ, ଉପାଦାନ ବା ତଥ୍ୟ ସଂକଳନ, ଏଥି ନିମନ୍ତେ ବହୁବିଧ - ଅନୁଷ୍ଠାନ, ବ୍ୟକ୍ତି ତଥା ସଂସ୍ଥା ସହ ସଂପର୍କ ରକ୍ଷା; ସର୍ବୋପରି ସାହିତ୍ୟ ଗବେଷଣାର ବିଷୟ ନିର୍ବାଚନ ପାଇଁ ଗବେଷକ ଅଭିଜ୍ଞ ଗବେଷକ ବା ନିର୍ଦ୍ଦେଶକଂକ ସାହାଯ୍ୟ ଲୋଡ଼ିଥାଏ । ଅତଏବ ସାହିତ୍ୟ ଗବେଷଣା ତ୍ରୟର ସମବାୟରେ ପରିଚାଳିତ ବୋଲି କୁହାଯାଇ ପାରେ । ଯଥା - ଗବେଷକ, ଗବେଷଣା ନିର୍ଦ୍ଦେଶକ ତଥା ଗବେଷଣୀୟ ଉପାଦାନ । ଏଠାରେ ଏକ ପ୍ରଶ୍ନ ଉଠିପାରେ ଯେ ବିନା ନିର୍ଦ୍ଦେଶକ ବା ତତ୍ତ୍ୱାବଧାରକରେ ଗବେଷକ ଉପରୋକ୍ତ ସମସ୍ତ କାର୍ଯ୍ୟ ସଂପାଦନ କରିପାରିବ କି ନାହିଁ ? ଏହାର ଉତ୍ତର ସଂପୂର୍ଣ୍ଣ ନାହିଁ ନୁହ, କାରଣ ସ୍ୱ ଅର୍ଜିତ ବୁଦ୍ଧି, ବିଦ୍ୟା ତଥା ଜ୍ଞାନବଳରେ ନିଜ ତତ୍ତ୍ୱାବଧାନରେ - ନିଜେ ଗବେଷକ ନିଜ ପ୍ରସ୍ତୁତ ନିବନ୍ଧ ଉପସ୍ଥାପନ କରିପାରିବାର ବ୍ୟବସ୍ଥା ରହିଛି । ଏହାକିନ୍ତୁ ଗବେଷକର ପବିତ୍ର ହୃଦୟ, ଆତ୍ମ ସଚେତନତା ତଥା ଆତ୍ମବିଶ୍ୱାସର ଅପେକ୍ଷା ରଖେ । ଅନ୍ୟଥା ସାହିତ୍ୟଗବେଷଣାରେ ଭୟଂକର ବିପଦ ସୃଷ୍ଟି ହୋଇଯାଇପାରେ । ଏବଂ ମୁରବୀର ଅନୁପସ୍ଥିତିରେ ପରିବାରର ଅବସ୍ଥା ଯାହା ହେବା କଥା ଗବେଷଣାର ଅବସ୍ଥା ସେୟା ହୋଇଯିବ । ଗବେଷଣା କ୍ଷେତ୍ରରେ ତତ୍ତ୍ୱାବଧାରକ ନଥିଲେ - ପ୍ରଥମତଃ ଗବେଷକ ନିର୍ଦ୍ଦିଷ୍ଟମାର୍ଗ ପାଇପାରିବ ନାହିଁ, ଦ୍ୱିତୀୟତଃ ଗବେଷଣା ସମୟ ସାପେକ୍ଷ ହୋଇପଡିବ । ବିଷୟ ନିର୍ବାଚନ ତଥା ଶିରୋନାମା ଯଥାର୍ଥ ହୋଇ ପାରିବ ନାହିଁ । ଓଡିଆ ସାହିତ୍ୟର ଜଣେ ନିର୍ଭୀକ ସମାଲୋଚକ ତଥା ସ୍ୱନାମଧନ୍ୟ ଗବେଷକ ଡକ୍ଟର ନଟବର

ସାମନ୍ତରାୟଂକ କ୍ଷେତ୍ରରେ ଠିକ୍ ଏହାହିଁ ଘଟିଥିବାର ଅନୁମାନ କରାଯାଇପାରେ । ପ୍ରାଚୀନ ସାହିତ୍ୟ ଓ ଅଳଂକାର ଶାସ୍ତ୍ର ସଂପର୍କରେ ଗଭୀର ଅଧ୍ୟୟନ ଓ ଅଧ୍ୟବସାୟ କରିବା ପରେ ଏ ମହାନ୍ ଗବେଷକ ପ୍ରାଚୀନ ସାହିତ୍ୟ ସଂପର୍କରେ ନିବନ୍ଧ ଉପସ୍ଥାପନା କରିବା ପରିବର୍ତ୍ତେ ନିଜର ମୋଡ ବଦଳାଇ ଶେଷରେ ଆସି ପହଂଚି ଗଲେ ଆଧୁନିକ ସାହିତ୍ୟ ନିକଟରେ । ଏଣୁ ତତ୍ତ୍ୱବଧାରକଂକୁ ଏଡାଇ ଦେଇ କାର୍ଯ୍ୟ କରିବା ବୁଦ୍ଧିମାନ ଗବେଷକର କାର୍ଯ୍ୟ ନୁହେଁ ।

ଏହି ଦୃଷ୍ଟିକୋଣରୁ ଓଡିଶାର ସ୍ୱନାମଧନ୍ୟ ସାହିତ୍ୟ ସାଧକ, ପ୍ରଖ୍ୟାତ ଗବେଷକ, ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଂକ କଥା ବିଚାରକୁ ନିଆଯାଇପାରେ । ଓଡିଶାରେ ଯେକେତେଜଣ ସାହିତ୍ୟ ଗବେଷଣାର ନିର୍ଦ୍ଦେଶକ ଅଛନ୍ତି ସେମାନଙ୍କ ମଧ୍ୟରୁ ଡକ୍ଟର ଆଚାର୍ଯ୍ୟ ସ୍ୱତନ୍ତ୍ର । ତାଂକର ଗବେଷଣା କୌଶଳ ଅନ୍ୟ ଗବେଷକଂକ ଠାରୁ ଭିନ୍ନ ।

ଡକ୍ଟର ଆଚାର୍ଯ୍ୟଂକ ମତରେ ଗବେଷଣା ଏକ ଦୃଷ୍ଟିଭଙ୍ଗୀ । ତଥ୍ୟ ଏଥିପାଇଁ ଏକାନ୍ତ ଅପରିହାର୍ଯ୍ୟ ନୁହେଁ , ପରନ୍ତୁ ଗବେଷଣା କେତେ ମୌଳିକ ହୋଇ ପାରୁଅଛି ସେଥିପ୍ରତି ଦୃଷ୍ଟି ଦେବାକଥା । ପ୍ରକୃତରେ କିପରି ବିଶ୍ଳେଷଣ କରି ମୌଳିକ ସିଦ୍ଧାନ୍ତରେ ପହଂଚିବା, ବଡ ଜିନିଷ । ଏଥିପାଇଁ କୌଣସି ଗବେଷଣା କାର୍ଯ୍ୟ ଆରମ୍ଭ କରିବା ବେଳେ ସେ ଗବେଷକ ସହ ଅତି ଅନ୍ତରଂଗ ସହକାରେ ଗୁରୁତ୍ୱପୂର୍ଣ୍ଣ ବିଚାର କରିବା ପରେ ହିଁ କୌଣସି ବିଷୟକୁ ଗବେଷଣା ନିମନ୍ତେ ନିର୍ବାଚିତ କରିଥାନ୍ତି ।

**ବିଷୟ ନିର୍ବାଚନ କୌଶଳ :**

ସାହିତ୍ୟ ଗବେଷଣାରେ ବିଷୟ ନିର୍ବାଚନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଗବେଷକର ରୁଚି ଅନୁଯାୟୀ ବିଷୟ ନିର୍ବାଚନ ହେବା ଉଚିତ । କାରଣ ବିଷୟ ନିର୍ବାଚନ କଲାବେଳେ ନିଜର ରୁଚିବୋଧ ଅଧ୍ୟୟନ ତଥା ଆହୃତ ଜ୍ଞାନକୁ ପରିକଳ୍ପିତ ଗବେଷଣାରେ କିପରି ବିନିଯୋଗ କରିପାରିବେ ତାହା ଗବେଷକ ପ୍ରାରମ୍ଭରୁ ହିଁ ମାନସିକ ସ୍ତରରେ ପ୍ରସ୍ତୁତି ନେଇ ସାରିଥାନ୍ତି । ସମୟ ସମୟରେ ଏପରି ଘଟିଥାଏ ଯେ ଗବେଷକ ଗବେଷଣାର ପରିସର ସ୍ଥିର କରିଥିଲେ ମଧ୍ୟ ବିଷୟ ନିର୍ବାଚନ କରିପାରୁ ନଥାଏ । ଏହି ଅବସରରେ ସେ ତତ୍ତ୍ୱବଧାରକଂକ ସାହାଯ୍ୟ ନିଏ । ଏହି କ୍ଷେତ୍ରରେ ଡକ୍ଟର ଆଚାର୍ଯ୍ୟ ଗବେଷକର ଆବେଗ ଓ ଆନ୍ତରିକ ଉତ୍ସାହକୁ ଅନୁଧ୍ୟାନ କରି ବିଷୟ ନିର୍ବାଚନରେ ସହାୟ ହୋଇଥାନ୍ତି । ଯଦି ଗବେଷକ ପରିସର ଠିକ୍ କରି ନଥାଏ ତେବେ ନିର୍ଦ୍ଦିଷ୍ଟ ବିଷୟ ଦେବାପାଇଁ ସେ ତା ଠାରୁ ଚାରିଗୋଟି ବା ପାଞ୍ଚଗୋଟି ବିଷୟ ଶିରୋନାମା ଆଣି ଗବେଷକର ଉତ୍ସାହକୁ ଦୃଷ୍ଟି ସମ୍ମୁଖରେ ରଖି ଗୋଟିକୁ ନିର୍ବାଚନ କରନ୍ତି । ଅପର ପକ୍ଷରେ ଏଥିରେ ସନ୍ତୁଷ୍ଟ ନହେଲେ ନିଜେ ପାଞ୍ଚ/ଛଅ ଗୋଟି ବିଷୟ ଦେଇ ଗୋଟିଏକୁ ନିର୍ବାଚନ କରିବା ପାଇଁ କହିଥାନ୍ତି । ଯଦି ଗବେଷକ ପରିସର ଠିକ୍ କରିସାରି ବିଷୟ ପାଉ ନଥାଏ ତେବେ ନିର୍ଦ୍ଦିଷ୍ଟ ବିଷୟ ତାଂକ ଦ୍ୱାରା ସୂଚିତ ହୋଇଥାଏ । ଉଦାହରଣ ସ୍ୱରୂପ- ଯଦି ଜଣେ କବି ସମ୍ରାଟ ଉପେନ୍ଦ୍ର ଭଂଜଂଙ୍କ ସଂପର୍କରେ ଗବେଷଣା ଲାଗି ଉତ୍ସାହିତ ତେବେ ଉପେନ୍ଦ୍ରଭଂଜଂକ କେଉଁ ବିଷୟରେ ସେ ଗବେଷଣା କରିବ ତାହା ସେ ନିର୍ଦ୍ଧାରିତ କରିଥାଆନ୍ତି । ଏହା ଦ୍ୱାରା ସାହିତ୍ୟର ଅନାଲୋଚିତ ଦିଗ ଉପରେ ଆଲୋକପାତ ହେବା ସମ୍ଭବ ହୋଇଥାଏ । ପ୍ରଥମରେ ଗବେଷକ

ସ୍ୱ ସଂଗୃହୀତ ଉପାଦାନକୁ ନେଇ କିପରି କାମ ଆରମ୍ଭ କରିବ ବୋଲି ଥଳକୂଳ ପାଉ ନଥିବା ବେଳେ - ଆବଶ୍ୟକ ଉପାଦାନ ସ୍ୱଳ୍ପ ହେଲେ ସୁଦ୍ଧା ତାହାର ସୁକଳତାକୁ ନେଇ ପ୍ରଥମେ ନିଜ ସନ୍ଦର୍ଭର ସଂକ୍ଷିପ୍ତ ରୂପରେଖ (Synopsis) ପ୍ରସ୍ତୁତ କରିବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି । ଫଳରେ ପର୍ଯ୍ୟାୟ କ୍ରମେ ଆସ୍ତେ ଆସ୍ତେ ଗବେଷକର ଅନୁରାଗ ବୃଦ୍ଧି ପାଇଥାଏ ।

**ଗବେଷକ ଓ ତତ୍ତ୍ୱବଧାରକଂକ ସଂପର୍କ :**

ଗବେଷଣା କାଳରେ ଗବେଷକ ସହ ତତ୍ତ୍ୱବଧାରକଂକ ସଂପର୍କ ଅତୀବ ମହତ୍ତ୍ୱ ପୂର୍ଣ୍ଣ । ଉଭୟଙ୍କ ମଧ୍ୟରେ ସଂପର୍କ ଅତି ନିର୍ମଳ ଓ ପବିତ୍ର ରହିବା ଉଚିତ । ଡକ୍ଟର ଆଚାର୍ଯ୍ୟଙ୍କ ମତରେ - ଏ ଦୁଇଜଣଂକର ସଂପର୍କ ପିତା ପୁତ୍ରର ସଂପର୍କ ଭଳି ଏକ ପାରିବାରିକ ସଂପର୍କ ହେବା ଆବଶ୍ୟକ । ତତ୍ତ୍ୱାବଧାରକ କେବଳ ଗବେଷକକୁ ନେଇଯାଇ ନିଶ୍ଚିନ୍ତ ରହିଗଲେ ହେବ ନାହିଁ । ଗବେଷକ ପାଇଁ ତାର ଯଥେଷ୍ଟ ଦାୟିତ୍ୱ ରହିଅଛି । ସେ ଦାୟାତ୍ୱ ସୁଚାରୁ ରୂପେ ସଂପାଦିତ ନହେଲେ ଆସନ୍ତା ପିଢ଼ି ପାଇଁ ଗବେଷଣା କିଛି ଭୁଲ ତଥ୍ୟ ଯୋଗାଇ ଦେବାର ସମ୍ଭାବନା ରହିଅଛି । ଗବେଷକ ଯେଉଁ ବିଷୟରେ ଗବେଷଣା କରିବ, ତତ୍ତ୍ୱାବଧାରକ ନିଜେ ସେ ସଂପର୍କରେ କିଛି ପଢ଼ିବା ଆବଶ୍ୟକ । ସର୍ବୋପରି ଗବେଷକ ମଧ୍ୟ ସମସ୍ତ ଭୟ ବର୍ଜନ ପୂର୍ବକ ନିଜର ସକଳ ଜିଜ୍ଞାସା ତତ୍ତ୍ୱାବଧାରକ ନିକଟରେ ପ୍ରକାଶ କରିବା ଉଚିତ । ଏ କ୍ଷେତ୍ରରେ ତତ୍ତ୍ୱାବଧାରକ ହିସାବରେ ଏ ମହାଶୟ ଅତ୍ୟନ୍ତ ଆଗ୍ରହ ସହକାରେ ଅନୁଦାର ନହୋଇ ଗବେଷକର ପ୍ରଶ୍ନବାଚୀ ଜିଜ୍ଞାସୁ ମନର ସନ୍ତୋଷ ବିଧାନ ଘଟାଇଥାନ୍ତି । ଅନ୍ୟ ପକ୍ଷରେ ଗବେଷକର ମତକୁ ବିଚାର କରି ସର୍ବଦା ସେ ଯୋଗ୍ୟ ମତକୁ ମାନ୍ୟତା ପ୍ରଦାନ କରିଥାନ୍ତି ।

**ତଥ୍ୟ ସଂଗ୍ରହ ତଥା ସଜ୍ଜୀକରଣରେ ଡକ୍ଟର ଆଚାର୍ଯ୍ୟଙ୍କ ଭୂମିକା :**

ଗବେଷଣା ପାଇଁ ତଥ୍ୟ ସଂଗ୍ରହ ଏକ ମୁଖ୍ୟକଥା । ସାଧାରଣତଃ ଗବେଷକ ତଥ୍ୟ ଉପରେ ଭିତ୍ତି କରି ହିଁ ସନ୍ଦର୍ଭରେ ନିଜର ମତାମତ ଉପସ୍ଥାପନ କରିଥାଏ । ତେଣୁ ତଥ୍ୟ ସଂଗ୍ରହକୁ ଗବେଷଣାର ମୁଖ୍ୟ ଅଂଶ ବୋଲି କୁହାଯାଇ ଥାଏ । ଏଠାରେ ଦେଖିବାକୁ ପଡିବ ଗବେଷକ କିପରି ଭାବେ ତଥ୍ୟ ସଂଗ୍ରହ କରି ତାର ଗବେଷଣାରେ ପ୍ରଯୁକ୍ତ ହେବ । ବହୁ ଗବେଷକଙ୍କ ଧାରଣା ଥାଏ ଭିନ୍ନ ଭିନ୍ନ ଉତ୍ସରୁ ସଂଗୃହୀତ ବହୁତଥ୍ୟ ପାଇପାରିଲେ ହିଁ ସେହି ତଥ୍ୟ ଉପରେ ନିର୍ଭର କରି ସ୍ୱ ଗବେଷଣା ସନ୍ଦର୍ଭ ତିଆରି କରିବେ । ଏଥି ପାଇଁ ତଥ୍ୟ ନପାଇଲେ ଥୋକେ ହତୋତ୍ସାହ ହୋଇପଡିଥାନ୍ତି । ସେମାନଂକ ଗବେଷଣା କାର୍ଯ୍ୟ ଅଟକି ପଡିଥାଏ ।

ମାତ୍ର ଡକ୍ଟର ଆଚାର୍ଯ୍ୟ ଏଥିପାଇଁ ଭିନ୍ନ କୌଶଳ ଅବଲମ୍ବନ କରିଥାନ୍ତି । ତତ୍ତ୍ୱାବଧାରକ ହିସାବରେ ଗବେଷକଙ୍କୁ ତାଂକର ନିର୍ଦ୍ଦେଶ ହେଉଛି Primary Souce ଉପରେ ପ୍ରାଧାନ୍ୟ ଦେବା । ଅଯଥା Reference ବହିର ଆବଶ୍ୟକତା ନାହିଁ, ପ୍ରଥମ ଗ୍ରନ୍ଥ ପଢି ତା ଉପରେ ସିଦ୍ଧାନ୍ତ ଦିଅ । Secondry reference ର ଆବଶ୍ୟକତା ନ୍ୟୁନ । ଅନ୍ୟମାନେ ଦେଇଥିବା ମତ ଉପରେ ସିଦ୍ଧାନ୍ତକୁ ହିଁ ସେ ବେଶୀ ପସନ୍ଦ କରନ୍ତି । ତାଂକ ଭାଷାରେ: ''ତଥ୍ୟ ବଡକଥା ନୁହେଁ, ଗବେଷଣା ଏକ ଦୃଷ୍ଟିଭଙ୍ଗୀ । ଦେଖିବା କଥା ଗବେଷଣା କେତେ ମୌଳିକ ହୋଇ ପାରୁଛି । କିପରି ଜଣେ ବିଶ୍ଳେଷଣ କରି ମୌଳିକ ସିଦ୍ଧାନ୍ତରେ ପହଂଚିବ

ତାହାହିଁ ବଡ ଜିନିଷ ।'' ଏଥି ପାଇଁ ସେ ଗବେଷକକୁ ଗବେଷଣା କ୍ଷେତ୍ରରେ ମୁକ୍ତ ଛାଡିଦେଇ ତାର ସ୍ୱାଧୀନ ମତର ଅପେକ୍ଷାରେ ଥାଆନ୍ତି ।

ବିଭିନ୍ନ ଉତ୍ସରୁ ତଥ୍ୟ ସଂଗ୍ରହ କରିଦେଲେ ଯେ ସନ୍ଦର୍ଭ ହୋଇଯିବ ଏକଥା ନୁହେଁ । ଏ ଗୁଡିକର ଯଥାଯଥ ସଜ୍ଜୀକରଣ କୌଶଳ ଏବଂ ତାକୁ ଭିତ୍ତିକରି ସ୍ୱୀୟ ନୂତନ ମତର ଉପସ୍ଥାପନ ବା ପ୍ରମାଣରେ ହିଁ ସନ୍ଦର୍ଭର ଏବଂ ଗବେଷଣାର ସାର୍ଥକତା ନିହିତ । ଏଥିପାଇଁ ଗବେଷକଂକ ପ୍ରଜ୍ଞା ଓ ଉନ୍ନତ କୌଶଳ ଆବଶ୍ୟକ । ପ୍ରତ୍ୟେକ ପରିଚ୍ଛେଦର ତଥ୍ୟ ଠିକ୍ ରୂପେ ସମୟାନୁସାରୀ ତଥା ବିଶ୍ଳେଷଣାନୁଯାୟୀ ନହେଲେ ଗବେଷକ ବିଶ୍ଳେଷଣ କରିବା ବେଳେ ଅନ୍ତରାୟ ସୃଷ୍ଟି ହେବ । ପୁନଶ୍ଚ ସନ୍ଦର୍ଭ ପାଠକ ତଥା ପରବର୍ତ୍ତୀ ଗବେଷକ ମାନଙ୍କ ପାଇଁ ବିରକ୍ତି ବୋଧକ ହୋଇ ପଡିବ ।

ଡକ୍ଟର ଆଚାର୍ଯ୍ୟଙ୍କ ମତରେ ଗବେଷଣା ଅର୍ଥ କେବଳ ଜଣେ ବା ଜଣଂକ ମତକୁ ନେଇ ଜୟଗାନ କରିବା ନୁହେଁ । ଗବେଷଣା ନିରପେକ୍ଷ ହେବା ଉଚିତ୍ । ଗବେଷିତ ବିଷୟବସ୍ତୁ ପାଇଁ ଯେତିକି ତଥ୍ୟ ଏବଂ ଯେତିକି ସମାଲୋଚକ କିମ୍ବା ପୂର୍ବ ଗବେଷକଂକ ମତାମତ ମିଳୁଛି - ସମସ୍ତକୁ ନେଇ ତର୍କାତ୍ମକ ଭାବେ ନିଜ ଅନୁଧ୍ୟାନରୁ ଉଦ୍ଭବ ସତ୍ୟକୁ ନିରପେକ୍ଷ ଭାବେ ପ୍ରତିପାଦନ କରିବା ଉଚିତ । ଅବଶ୍ୟ ସମସ୍ତ ମତକୁ ଗୁରୁତ୍ୱ ଦେଇ ଗବେଷକ ସ୍ୱମତ ଉପସ୍ଥାପନା କରିବ ।

**ଗବେଷିତ ମତ ପ୍ରକାଶନ କୌଶଳ :**

ଗବେଷକ ପାଇଁ ତତ୍ତ୍ୱବଧାରକ ପଥ ପ୍ରଦର୍ଶକ, ନିର୍ଦ୍ଦେଶକ, ନିୟନ୍ତ୍ରକ ସବୁକିଛି । ମାତ୍ର ତା ବୋଲି ତତ୍ତ୍ୱାବଧାରକଙ୍କ ସମସ୍ତ ନିର୍ଦ୍ଦେଶ ମାନିନେଇ କାମକଲେ ଗବେଷଣାରେ ଗବେଷକର ନିଜସ୍ୱ ସତ୍ତ୍ୱ ନରହିବାର ସମ୍ଭାବନା ରହିଅଛି । ଏଣୁ ଡକ୍ଟର ଆଚାର୍ଯ୍ୟ ଗବେଷକକୁ ଛାଡି କେବଳ ଆବଶ୍ୟକୀୟ ନିର୍ଦ୍ଦେଶ ଦେଇଥାନ୍ତି । ଧରି ନିଆଯାଉ ଗବେଷକ ତଥ୍ୟ ଅନ୍ୱେଷଣ ସମୟରେ ଅଧ୍ୟୟନ କାଳରେ ନିର୍ବାଚିତ ବିଷୟ ବସ୍ତୁ ତ୍ୟାଗ କରି ଅନ୍ୟ ବିଷୟ ବସ୍ତୁ ପ୍ରତି ଆଗ୍ରହାନ୍ୱିତ ହୋଇପଡିଲା । ଏହା ନିଶ୍ଚିତ ରୂପେ ଏକ ବିପଦ ଜନକ ବ୍ୟାପାର । ଏହି ସମୟରେ ସେ ଗବେଷକକୁ ଲକ୍ଷ୍ୟଭ୍ରଷ୍ଟ ପାଇଁ ସଚେତନ କରାଇ, ଆଗ୍ରହାନ୍ୱିତ ତଥ୍ୟ ସବୁକୁ ଅଲଗା ରଖିବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି । ଆବଶ୍ୟକ ହେଲେ ତାହା ଭବିଷ୍ୟତରେ ଦରକାରରେ ଆସିବ । ଗବେଷକର ମୁକ୍ତ ମତ ଉପରେ ହିଁ ସେ ବେଶୀ ସ୍ୱାଧୀନତା ଦେଇ ଥାଆନ୍ତି । ଅବଶ୍ୟ ଗବେଷକର ସ୍ୱାଧୀନ ମତଟି କେତେଦୂର ପ୍ରାମାଣିକ ତଥା ପ୍ରାସଂଗିକ ତାହା ସେ ସୂକ୍ଷ୍ମ ଭାବରେ ପରଖି ଥାଆନ୍ତି । ତାଂକ ମତରେ ଏହାଦ୍ୱାରା ଗବେଷଣା ଉନ୍ନତ ଧରଣର ହୋଇଥାଏ , ତତ୍ତ୍ୱବଧାରକ ଯଦି ନିଜମତ ଗବେଷକ ଉପରେ ଲଦିଦିଏ ତେବେ ଗବେଷଣାର ବିକାଶ ଘଟିବ ନାହିଁ ।

ବେଳେ ବେଳେ ଏପରି ହୋଇଥାଏ - ଗବେଷିତ ବିଷୟ ସମ୍ବନ୍ଧରେ ଗବେଷକର ତାଂକ ସହ ମତ ପାର୍ଥକ୍ୟ ଘଟେ । ଏହି ଅବସରରେ ନିଜ ମତକୁ ଜାହିର୍ ନକରି - ଗବେଷକକୁ ତଥ୍ୟଭିତ୍ତିକ ପ୍ରତିପାଦନ ପାଇଁ ସହାୟନିର୍ଦ୍ଦେଶ ଦେଇ ଥାଆନ୍ତି । ଏ କ୍ଷେତ୍ରରେ ତତ୍ତ୍ୱାବଧାରକ ତଥା ଗବେଷକ ଉଭୟେ Open Mind ହେବା ଆବଶ୍ୟକ ବୋଲି ତାଂକର ମତ । ଗାଇଡ

Close Mind ହୋଇ, ମୋ ମତ ସତ ବୋଲି କହିବା ଅନୁଚିତ । ଗବେଷକ ମଧ୍ୟ ମୋ ମତ କାହିଁକି ଗ୍ରହଣ ଯୋଗ୍ୟ ହୋଇପାରିଲା ନାହିଁ ବୋଲି ସ୍ୱଭିମାନରେ ଭାଂଗି ପଡିବାଟା ପସନ୍ଦ ଯୋଗ୍ୟ ନୁହେଁ ।

ଗବେଷକ ତଥ୍ୟାଦି ସଂଗ୍ରହ ପୂର୍ବକ ପ୍ରଥମେ ଲେଖି ଏ ସାହିତ୍ୟ ସାଧକଂକ ନିକଟରେ ସନ୍ଦର୍ଭ ପହଂଚାଇବା ପରେ - ଗବେଷକ କେତେକାଂଶରେ ନିଶ୍ଚନ୍ତ ହୋଇଯାଇପାରେ ମାତ୍ର ସେ ନୁହ । ପରନ୍ତୁ ତାଂକର ଚିନ୍ତା ଦାୟିତ୍ୱ ଦୃଷ୍ଟିରୁ ବଢ଼ି ଯାଇଥାଏ । ସେ ତାହାର ଆରମ୍ଭରୁ ଶେଷ ପ୍ରତ୍ୟେକ ଧାଡି ଓ ପ୍ରତ୍ୟେକ ଶବ୍ଦକୁ ତନ୍ନତନ୍ନ କରି ଦେଖନ୍ତି । ଆବଶ୍ୟକୀୟ ପରିବର୍ତ୍ତନ ପାଇଁ ତଥା ଯଥାଯଥ ସଂଯୋଜନା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି । ସ୍ଥଳ ବିଶେଷରେ ସନ୍ଦର୍ଭର କେତେକ ସଂପୂର୍ଣ୍ଣ ପରିଚ୍ଛେଦ ବା କିଛି ଅଂଶକୁ ପୂରା କାଟିଦେଇ ପୁଣି ଲେଖିବା ପାଇଁ ପରାମର୍ଶ ଦିଅନ୍ତି । ଆବଶ୍ୟକୀୟ ତଥ୍ୟର ଅଭାବଥିଲେ - ପୁନଃ ପଠନ ତଥା ଅନୁଧ୍ୟାନ ପାଇଁ ମଧ୍ୟ ତାଗିଦ୍ କରନ୍ତି । ଦ୍ୱିତୀୟ ବାର ଯେତେବେଳେ ଗବେଷକ ପୁଣି ପୁନଃ ଲିଖନ କରି ଆଣିରଖେ - ସେତେବେଳେ ମଧ୍ୟ ଗୋଟି ଗୋଟି ଧାଡି ପଢ଼ି ଯଦି ଆବଶ୍ୟକ ମନେ କରନ୍ତି ତେବେ ପୁଣି ଭ୍ରମତଥ୍ୟ ତଥା ଅନୁଚିତ ବର୍ଣ୍ଣନାକୁ କାଟି ବସନ୍ତି । ଏ ସମୟରେ ଗବେଷକ ତାଂକ ନିକଟରେ ଦଣ୍ଡାୟମାନ ଥିଲେ - ଏକାଧିକ ରାତ୍ରୀ ଜାଗରଣ ରହି ବହୁ କଷ୍ଟ ସ୍ୱୀକାର ପୂର୍ବକ ସୃଷ୍ଟ ରଚନା ଉପରେ ଧାରାବାହିକ ନାଲି ଗାର ପଡୁଥିବାର ଦେଖି ହତୋତ୍ସାହିତ ହୋଇ ଭାବୁଥିବ ସତେ ଯେମିତି ନାଲି ଗାର ନୁହ, ତା ନିଜ ଛାତିରେ ଛୁରୀଟେ ବୁଲୁଛି । ଆଉ ଏ କାମ ତାଦ୍ୱାରା ହେବ ନାହିଁ । ସାମାନ୍ୟ ହସି ଦେଇଥାନ୍ତି ସେ - ଏଠି ହିଁ ଗବେଷକର ଧୈର୍ଯ୍ୟ ପରୀକ୍ଷା । ସନ୍ଦର୍ଭଟି ପୂରା ପକ୍ୱ ଓ ସିଦ୍ଧ ଅବସ୍ଥାକୁ ଆସିବା ପର୍ଯ୍ୟନ୍ତ ସେ ଗବେଷକ ଦ୍ୱାରା ବାରମ୍ବାର ତାକୁ ରୂପଦେଇ ନିଜେ ଅଧ୍ୟୟନ ପୂର୍ବକ ପରୀକ୍ଷା କରୁଥାନ୍ତି । ସାମାନ୍ୟ ବିରକ୍ତି ବୋଧ ନାହିଁ କି ଆଳସ୍ୟ ନାହିଁ, ଖଟୁଥିବେ ପରିଣତିରେ ପହଂଚିବା ପର୍ଯ୍ୟନ୍ତ । ସାଧାରଣ ତ୍ରୁଟୀ ଯେପରି ନରହେ ସେଥିପ୍ରତି ସେ ନିଜେ ଯଥେଷ୍ଟ ସଚେତନ । ଏ ଦିଗରୁ ସେ ଆଦୌ ଢ଼ିଲା ହୋଇପାରନ୍ତି ନାହିଁ । ତତ୍ତ୍ୱାବଧାରକ ଢ଼ିଲା ହୋଇଗଲେ ଗବେଷଣା ଏକ ନିଷ୍ଫଳସ୍ଥିତିରେ ପହଂଚି ଯିବ ବୋଲି ତାଂକର ବିଶ୍ୱାସ । ବାରମ୍ବାର ସଂଶୋଧନ ପୂର୍ବକ ଲେଖି ଉପସ୍ଥାପନ କରୁଥିବାରୁ ଆସ୍ତେ ଆସ୍ତେ ଗବେଷକର ଏକ ଗଭୀର ଆତ୍ମବିଶ୍ୱାସ ବୋଧ ମଧ୍ୟ ଗଢ଼ିଉଠେ । ଗବେଷଣାର ଶେଷ ପର୍ଯ୍ୟାୟ ବେଳକୁ ଗବେଷକ ସହ ସେ ସମାନ ପରିଶ୍ରମ କରିଥାନ୍ତି । ଏହି ସମୟରେ ସେ ପ୍ରାୟଶଃ ପରିବାରର ସମସ୍ତ ଝଞ୍ଜାଳ ଓ ସୁଖକୁ ତ୍ୟାଗ କରି ସହଯୋଗ କରିଥାନ୍ତି ଗବେଷକକୁ । ଗବେଷକର ସନ୍ଦର୍ଭ ପାଇଁ ସେ କ'ଣ କରିବେ ? ସନ୍ଦର୍ଭର ପ୍ରତ୍ୟେକ ପରିଚ୍ଛେଦ ତଥା ତର୍କଣା ବିଷୟବସ୍ତୁକୁ ନିଜ ମାନସିକ ସ୍ତରରେ ଉଜ୍ଜୀବିତ ରଖି ସେ ଗବେଷକକୁ ସହଯୋଗ ଦିଅନ୍ତି ।

ଅନେକ ସମୟରେ ଲକ୍ଷ୍ୟକରାଯାଇଛି - ଏହି ବରିଷ୍ଠ ଗବେଷକଂକ ତତ୍ତ୍ୱାବଧାନରେ ଗବେଷଣାରତ ଥିବା ଗବେଷକମାନେ ବେଳେ ବେଳେ ସମୟ ଦୃଷ୍ଟିରୁ ହତୋତ୍ସାହିତ ହୋଇ ପଡ଼ନ୍ତି । ବିଶ୍ୱବିଦ୍ୟାଳୟର ନିର୍ଦ୍ଧାରିତ ସମୟ ସୀମା କିମ୍ବା ସ୍ୱନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସରିବ ନାହିଁ ବୋଲି ଭଂାଗି ପଡିଥାଆନ୍ତି । କିଂତୁ ଏ ମହାନ୍ ସାହିତ୍ୟ ସାଧକ ଏହାର ସଂପୂର୍ଣ୍ଣ ବିପକ୍ଷରେ । ତାଂକମତରେ -''ଗବେଷଣାକାରୀ ନିଜେ ସମୟ ନିର୍ଦ୍ଦିଷ୍ଟ

କରି ଗବେଷଣା କରିବା ସମ୍ଭବ ନୁହେ । ଅର୍ଥାତ୍ ଗବେଷଣା କରୁ କରୁ ସେ ପରିଣତ ସମୟ ଆସିବ ।'' ନିର୍ଦ୍ଦିଷ୍ଟ ସମୟକୁ ଦୃଷ୍ଟି ସମ୍ମୁଖରେ ନରଖି କାର୍ଯ୍ୟ କରୁଥିବା ଯୋଗୁଁ ସ୍ନାତକୋତ୍ତର କିମ୍ବା ଏମ୍.ଫିଲ୍ ପାଠ୍ୟକ୍ରମ ପରେ ସାଧାରଣତଃ ଡିଗ୍ରୀ କାମୀ ଛାତ୍ରମାନେ ଏ ସାଧକଂକ ତତ୍ତ୍ୱାବଧାନରେ ଗବେଷଣାପାଇଁ ଆଶଙ୍କା ପ୍ରକାଶ କରିଥାନ୍ତି । ବିଶେଷ କରି ଯେଉଁ ମାନେ ଚାକିରୀ ପାଇଁ ପିଏଚ୍.ଡି. କୁ ଦୃଷ୍ଟି ସମ୍ମୁଖରେ ରଖିଥାଆନ୍ତି, ସେମାନେ ଏ ମହାଶୟଂକ ତତ୍ତ୍ୱାବଧାନକୁ ସଭୟେ ଉପେକ୍ଷା କରି ଥାଆନ୍ତି । କାରଣ ଡକ୍ଟର ଆଚାର୍ଯ୍ୟଂକ ମତରେ ଚାକିରୀ ଅନ୍ୱେଷଣ ପରି ଏକ ବ୍ୟତିବ୍ୟସ୍ତ ଏବଂ ଚିନ୍ତିତ ମନନେଇ ଗବେଷଣା ସମ୍ଭବ ନୁହେ । ଗବେଷଣା ପାଇଁ ଆବଶ୍ୟକ ଏକ ସ୍ଥିର ଚିତ୍ତ । ଯେଉଁଥିରେ ଗଭୀର ଆତ୍ମ ସନ୍ତୋଷ ଭରି ରହିଥିବା ।

ସନ୍ଦର୍ଭ ଉପସ୍ଥାପନା ପରେ, ପରୀକ୍ଷା ନିମନ୍ତେ ବାହାରକୁ ଯାଏ, ବାହାର ପରୀକ୍ଷକ ସ୍ୱ ମତାମତ ଉପସ୍ଥାପନ ସହ ଗବେଷକକୁ ମୌଖିକ ଭାବେ ସାକ୍ଷାତକାର କରାନ୍ତି - ଏବଂ ଅନ୍ତଃ ପରିକ୍ଷକ (ତତ୍ତ୍ୱାବଧାରକ) ଓ ବାହ୍ୟ ପରୀକ୍ଷକଂକ ରିପୋର୍ଟ ଉପରେ ନିର୍ଭର କରି ବିଶ୍ୱବିଦ୍ୟାଳୟ ଗବେଷକକୁ ମାନ୍ୟତା ପ୍ରଦାନ କରିଥାନ୍ତି । ଏହି ଅବସରରେ ହୁଏତ ସମସ୍ତଂକର ଧାରଣା ଥାଏ ଶିକ୍ଷାର ସର୍ବୋଚ୍ଚ ସ୍ଥାନରେ ତ ପହଂଚିଗଲୁ ଆଉ କ'ଣ ପାଠ ପଢା ? ମାତ୍ର ଏ ସାହିତ୍ୟ ସାଧକ ଗବେଷକଂକୁ କହିଥାନ୍ତି ପ୍ରକୃତରେ ତୁମର ପଢା ଏବଠାରୁ ଆରମ୍ଭ ହେଲା । ସୁସମାଲୋଚକର ଦୃଷ୍ଟିରେ ତଥା ଗବେଷଣାତ୍ମକ ମନୋବୃତ୍ତି ନେଇ ଓଡିଆ ଭାଷା ଓ ସାହିତ୍ୟକୁ ଅନୁଧ୍ୟାନ କରିବା ଉଚିତ । ଏହା ଫଳରେ ଓଡିଆ ଭାଷା ଓ ସାହିତ୍ୟର ମୌଳିକତା ପ୍ରତିପାଦିତ ହେବା ସାଂଗକୁ ନିର୍ଦ୍ଦିଷ୍ଟ ଶୈଳୀ ଓ ମୌଳିକ ଚିନ୍ତା ଧାରାର ପ୍ରକାଶ ହୋଇ ପାରିବ ।

ବର୍ତ୍ତମାନ ଓଡିଶାରେ ଏ ସାହିତ୍ୟ ସାଧକଂକ ଅଗଣିତ ଛାତ୍ର ଅଛନ୍ତି । କେତେକ ଅଧ୍ୟାପନା ଦିଗରେ ତ ଆଉ କେତେକ ଅନ୍ୟ ବିଭାଗରେ । ଯେଉଁମାନେ ଅଧ୍ୟାପନା ଦିଗରେ ଯାଇଛନ୍ତି ସେମାନେ ତ ଊଣା ଅଧିକେ ସାହଚର୍ଯ୍ୟ ପାଇ ସମାଲୋଚନା କିମ୍ବା ଗବେଷଣାଦି କାର୍ଯ୍ୟରେ ଲିପ୍ତ । ଯେଉଁମାନେ ଅନ୍ୟ ଦିଗରେ ଯାଇଛନ୍ତି ସେମାନେ ମଧ୍ୟ ସାହିତ୍ୟ ଗବେଷଣା କରିବା ଦୃଷ୍ଟି ଗୋଚର ହେଉଅଛି । ଏହା ଯେ ନିଶ୍ଚିତ ଭାବରେ ଡକ୍ଟର ଆଚାର୍ଯ୍ୟଂକ ପ୍ରେରଣା କଥା ଦିଗଦର୍ଶନର ଫଳ ଏହା ନିଃସନ୍ଦେହ । ସେ ତତ୍ତ୍ୱାବଧାରକ ଭାବେ ରହିଥାନ୍ତି ଗବେଷକର- କାରଣ ଗବେଷକର ଧାରଣା ହେବ, ସେ ଯେଉଁ କାମ କରୁଛି ତାର ପଛରେ କେହି ନହିଁ । ସେ ଠିକ୍ କରୁଛି କିଏ କହିବ ? ଏଥିପାଇଁ, ତାର ଗତିକୁ ସୁ ନିୟଂତ୍ରିତ କରିବାପାଇଁ ଟ୍ରେନିଂ ଦେଇଥାନ୍ତି ତତ୍ତ୍ୱାବଧାରକର ଭୂମିକାରେ ଏକ ଟ୍ରେନର ଭାବେ ଗବେଷଣାର ଆସନ୍ତା ପୀଢି ତଥା ଭବିଷ୍ୟତକୁ ଦୃଷ୍ଟି ସମ୍ମୁଖରେ ରଖି ।

*ମୁଖ୍ୟ ଅଧ୍ୟାପକ, ଓଡିଆ ବିଭାଗ,*
*ନ୍ୟାସନାଲ କଲେଜ, ନୂଆପଡା.*

# ପ୍ରଫେସର ଆଚାର୍ଯ୍ୟଙ୍କ ଅଧ୍ୟାପନା କୌଶଳ

**ଅଧ୍ୟାପକ ଧରଣୀଧର ପଣ୍ଡା**

ପରମ ପୂଜ୍ୟଗୁରୁ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ଷାଠିଏ ତମ ଜନ୍ମତିଥିରେ ତାଙ୍କୁ ଅଭିନନ୍ଦିତ କରିବା ପାଇଁ ଯେଉଁ ଉତ୍ସାହ ଓ ଉଦ୍ୟମ ହେଉଛି ତାହା ବାସ୍ତବିକ ପ୍ରଶଂସନୀୟ । ଏପରି ଏକ ପୁଣ୍ୟ ଅବସରରେ ଗୁରୁଙ୍କ ସଂସ୍ପର୍ଶଜନିତ ସ୍ମୃତିଚାରଣ ନିମନ୍ତେ ସୁଯୋଗ ଲାଭ କରିଥିବାରୁ ମୁଁ ସଂପାଦକଂକ ନିକଟରେ ଅନୁଗୃହୀତ । ପରମପୂଜ୍ୟ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ଯେକି ଓଡିଶାର ଗର୍ବ ଓ ଗୌରବ, ତାଙ୍କର ଅନନ୍ୟ ପ୍ରତିଭା ସଂପର୍କରେ ବିଶଦ ଆଲୋଚନା କରିବା ମୋ ପକ୍ଷରେ ସମ୍ଭବପର ନୁହେଁ । କେବଳ ମୋ ଜୀବନରେ ଗୁରୁଙ୍କ ସାନିଧ, ସଂଯୋଗ ଓ ସଂବଂଧକୁ ଭିତ୍ତିକରି ଯେଉଁ ମଧୁର ସ୍ମୃତି ମୋ ମନୋହୃଦୟରେ ଜାଗରୂକ ରହିଛି , ତାରି ଆଧାରରେ ଶ୍ରେଣୀ ଶିକ୍ଷକ ଭାବରେ ସାରଙ୍କର ଅନାବିଳ ଭାବ ମୂର୍ତ୍ତିକୁ ଅଭିବ୍ୟକ୍ତ କରିବା ପାଇଁ ପ୍ରୟାସ କରୁଛି ।

କହ୍ନେଇ ପାଇଁ ଗୋପ ଗାଆଁ ମଧୁର ହେଲା ଭଳି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କୁ ଅଧ୍ୟାପକ ରୂପେ ପାଇ ଗୌରବାନ୍ୱିତ । ଯେଉଁମାନେ ପତ୍ରପତ୍ରିକାରେ ପ୍ରକାଶିତ ଆଲୋଚନା ଅଥବା ଲେଖାକୁ ନେଇ ଓଡିଆ ଅଧ୍ୟାପକଙ୍କ ବୈଶିଷ୍ଟ୍ୟ ଖୋଜନ୍ତି , ସେମାନଙ୍କ ପାଇଁ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଅପରିଚିତ ହୋଇପାରନ୍ତି । କାରଣ, ଓଡିଶାର ପତ୍ର ପତ୍ରିକାରେ ତାଙ୍କର ଲେଖା ଏବେ କ୍ୱଚିତ ଦେଖିବାକୁ ମିଳେ । କିନ୍ତୁ ବ୍ରହ୍ମପୁର ବିଶ୍ୱବିଦ୍ୟଳୟର ଓଡିଆ ବିଭାଗରେ ଅଧ୍ୟୟନ କରିଥିବା ଏବଂ କରୁଥିବା ଛାତ୍ରଛାତ୍ରୀ କିମ୍ବା ତାଙ୍କରି ତତ୍ତ୍ୱାବଧାନରେ ଗବେଷଣାର ସୁଯୋଗ ଲାଭ କରିଥିବା ଗବେଷକ ଏବଂ ସୌଭାଗ୍ୟତଃ କୌଣସି ସଭାସଂପାନରେ ତାଙ୍କର ଭାବ - ଗମ୍ଭୀର ବକ୍ତବ୍ୟ ଶୁଣିଥିବା ଆଗ୍ରହୀ ଶ୍ରୋତାଙ୍କ ହୃଦୟରେ ପ୍ରଫେସର ଆଚାର୍ଯ୍ୟଙ୍କ ବ୍ୟକ୍ତିତ୍ୱ ଚିରଭାସ୍ୱର । ତାଙ୍କର ଶିକ୍ଷାଦାନ ସଂସ୍ପର୍ଶରେ ଯେଉଁ ମାନେ ଆସିଛନ୍ତି , ସେମାନ ଧନ୍ୟ । ସାର୍‌ଙ୍କ କ୍ଲାସର ସେଇ କେତୋଟି ମୁହୂର୍ତ୍ତ ସମସ୍ତଙ୍କର ଜୀବନରେ ଅବିସ୍ମରଣୀୟ ପାଲଟି ଯାଇଥାଏ । କେବଳ ମଧ୍ୟଯୁଗୀୟ ସାହିତ୍ୟ ନୁହେଁ, ବାସ୍ତବରେ ସାହିତ୍ୟର ସମସ୍ତ ବିଭାବରେ ସେ ଜଣେ ସମର୍ଥ ବିଦ୍ୱାନ ।

ବିଭାଗର ଜଣେ ଛାତ୍ର ହିସାବରେ ତାଙ୍କ ସହିତ ମୋର ପରିଚୟ ୧୯୮୧ ମସିହା ଠାରୁ, ସର୍ବଦା ଧଳା ହାଫସାର୍ଟ ପରିହିତ ଶାନ୍ତ ସୌମ୍ୟ ରୂପ, ସ୍ନେହ-ସଜଳ ବ୍ୟକ୍ତିତ୍ୱ ଆଜି ମଧ ମୋ ପାଇଁ ପ୍ରେରଣାର ଉତ୍ସ । ତାଙ୍କ ଜୀବନ ଶୈଳୀ ହେଉଛି ସରଳ ଓ ସାଧାରଣ, କୌଣସି ଆଡମ୍ବର ଅଥବା ଅହମିକାର ସେଠି ସ୍ଥାନ ନାହିଁ । ତାଙ୍କର ସରଳ ଅମାୟିକ ବ୍ୟବହାର ଦେଖିଲେ କେହି ହଠାତ୍ ମନେ କରିବ ନାହିଁ - ସେ ଏତେବଡ ଗୁଣି ଜ୍ଞାନୀ ବ୍ୟକ୍ତି , ପାରିବାରିକ

ସଂସ୍କାର ହେତୁ ସେ ସଂସ୍କୃତ ଭାଷାସାହିତ୍ୟରେ ଧୂରୀଣ, ପୁନଶ୍ଚ ନିଜ ଅଧ୍ୟବସାୟ ବଳରେ ପାଲି, ପ୍ରାକୃତ, ତେଲୁଗୁ, ବଂଗଳା, ହିନ୍ଦୀ, ଇଂରାଜୀ ଭାଷାରେ ଦକ୍ଷତା ଅର୍ଜନ କରିପାରିଛନ୍ତି । ଫଳରେ ତାଙ୍କର ବିସ୍ତୃତ ଜ୍ଞାନଦୀପ୍ତ ଧୀଷଣା ଆଗରେ ମସ୍ତକ ସ୍ୱତଃ ଅବନତ ହୋଇଯାଏ । ତାଙ୍କ ପ୍ରତି ସ୍ୱତଃ ଭକ୍ତିର ଉଦ୍ରେକ ହୋଇଯାଏ । ଭୟ ମଧ୍ୟ । ଭକ୍ତି - ସାରଙ୍କ ପ୍ରଚଣ୍ଡ ପ୍ରତିଭା ପାଇଁ ଏବଂ ଭୟ - ନିଜର ଅଜ୍ଞାନତା ଅଥବା ସ୍ୱଳ୍ପଜ୍ଞାନ ପାଇଁ ।

ଶ୍ରେଣୀକକ୍ଷରେ ଅଧ୍ୟାପନା କାଳରେ ତାଙ୍କ ଭାଷା ପ୍ରୟୋଗ ଅତ୍ୟନ୍ତ ସରଳ ଏବଂ କଥନ ଶୈଳୀ ଭଙ୍ଗୀଭିତ୍ତିକ । ଅଥଚ ତାଙ୍କ ମୁଖ ନିଃସୃତ ପ୍ରତିଟି ବାକ୍ୟ ଅତ୍ୟନ୍ତ ଶକ୍ତିଶାଳୀ । ଛୋଟ ଛୋଟ ବାକ୍ୟ ଭିତରେ ଅଧ୍ୟେତବ୍ୟ ବିଷୟର ମୌଳିକ ଯୁକ୍ତି ଗୁଡିକୁ ଉପସ୍ଥାପନ କରନ୍ତି । ସେଇ ଛୋଟ ବାକ୍ୟ ଭିତରେ ତାଙ୍କ ଚିନ୍ତାଧାରା ସୁନାପାତ ଭଳି ଝଟକୁଥାଏ । ସମଗ୍ର ଶ୍ରେଣୀକୁ ତାଙ୍କ ବ୍ୟକ୍ତିତ୍ୱ ଆଛନ୍ନ କରିଦିଏ । ତାଙ୍କ ପ୍ରଭାବ-ବଳୟ ଆଡକୁ ତାଙ୍କ ଶ୍ରେଣୀକକ୍ଷଟି ଆକର୍ଷିତ ହୋଇ ସଂପୂର୍ଣ୍ଣ ନିମଜ୍ଜିତ ହୋଇଯାଏ । କଥନ ଶୈଳୀରେ କେଉଁଠି ବି ଅନାବଶ୍ୟକ ବର୍ଣ୍ଣନା ବିସ୍ତାର ବା ଅବାନ୍ତର ପ୍ରଗଳ୍ଭତା ନାହିଁ । ଯୁକ୍ତିର ପରିଛନ୍ନତା ତାଙ୍କ ଅଧ୍ୟାପନା ଶୈଳୀର ଅନ୍ୟତମ ଉଲ୍ଲେଖ ଯୋଗ୍ୟ ବିଶେଷତ୍ୱ । ଯେକୌଣସି ଜଟିଳ ତତ୍ତ୍ୱ ସଂବନ୍ଧୀ ବିଷୟକୁ ସରଳୀକୃତ କରି ପରିବେଷଣ କରିବାରେ ସାର୍‌ଙ୍କ ନିଷ୍ଣାତ ପଟାନ୍ତର ନାହିଁ । ବହୁ ଜ୍ଞାନର ଅଧିକାରୀଙ୍କର ବକ୍ତବ୍ୟ ଯେଉଁଭଳି ପ୍ରଜ୍ଞାସୁଲଭ ହେବା କଥା ସାରଙ୍କ ଠାରେ ତାହାହିଁ ପରିଦୃଷ୍ଟ ହୋଇଥାଏ । ବକ୍ତବ୍ୟର ପ୍ରତ୍ୟେକ ବାକ୍ୟରେ ଏକ ଏକ ଭାବର କ୍ରମିକ ବିକାଶ ଲକ୍ଷଣୀୟ । ଭାବର ଏକମୁଖୀନତା ଓ ଯୁକ୍ତିର କେନ୍ଦ୍ରାଭିମୁଖୀନତା ପରସ୍ପର ପରିପୂରକ ଭାବେ ଗତି କରିଥାଆନ୍ତି । ସେ ଅତ୍ୟନ୍ତ ଯୁକ୍ତିପ୍ରବଣ, କିନ୍ତୁ ଭିନ୍ନ ମତ ପୋଷଣ କରୁଥିବା ଆଲୋଚକଙ୍କ ପ୍ରତି ବଡ ସହିଷ୍ଣୁ । ଉପସ୍ଥାପିତ ବିଷୟର ଯଥେଷ୍ଟ ଭାବଗତ ଜଟିଳତା ଥିଲେହେଁ କଥନ ଶୈଳୀ କେଉଁଠି ବି ତା'ର ନିରାଡମ୍ବର ଗୁଣ ହରାଏ ନାହିଁ । କଲେରିଜ୍‌ଙ୍କ Best word in best order ର ସାର୍ଥକତା ତାଙ୍କ ବକ୍ତବ୍ୟରେ ପୂର୍ଣ୍ଣ ପ୍ରତିଫଳିତ । ବର୍ଣ୍ଣନା ଅପେକ୍ଷା ତାଙ୍କର ବିଶ୍ଳେଷଣ ବେଶୀ ।

ଶ୍ରେଣୀରେ ପଢ଼ାଇଲାବେଳେ ପ୍ରଫେସର ଆଚାର୍ଯ୍ୟ ସତେଯେମିତି ପଢ଼ାଉଛନ୍ତି ବୋଲି ସଚେତନ ହୋଇ ନଥାନ୍ତି, ତେଣୁ ତାଙ୍କର ପଢ଼ାଇବା ଭଙ୍ଗୀଟି ସାଧାରଣ ଆଳାପ ଭଳି ମଧୁର ତଥା ମର୍ମ ସ୍ପର୍ଶୀ । ଉଚ୍ଛ୍ୱସିତ ହୋଇ ମନ୍ତବ୍ୟଦେବା ତାଙ୍କ ଶିକ୍ଷାଦାନ ପଦ୍ଧତିରେ ଏକାନ୍ତ ଦୁର୍ମିଳ । ବିଷୟାଲୋଚନାରେ ସେ ବିସ୍ତୃତ ସାଂସ୍କୃତିକ ଓ ଐତିହାସିକ ପୃଷ୍ଠଭୂମିର ଅବତାରଣା କରିନ୍ତି । ମାତ୍ର ପ୍ରତିପାଦନ ଗତ ଏକତ୍ୱ ସୂତ୍ର ବିଷୟରେ ଆଦୌ ବିସ୍ମୃତ ହୁଅନ୍ତି ନାହିଁ । ଅଥବା କେଉଁଠି ଏହା ଅସମ୍ବଦ୍ଧ ଓ ଦୁର୍ବଳ ନୁହେଁ ।ପଢ଼ାଇଲାବେଳେ ପ୍ରତ୍ୟେକ ବିଷୟର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ଏବଂ ଚରିତ୍ର ଓ ବିଷୟ ସଂପର୍କରେ ରୈଖିକ ଚିତ୍ର ମାଧ୍ୟମରେ ଏକ ଯୁକ୍ତିନିଷ୍ଠ ଧାରଣା ସୃଷ୍ଟି କରିବା ତାଙ୍କର ଲକ୍ଷ୍ୟ ।

ତାଙ୍କର ଅଧ୍ୟାପନା କୌଶଳ ଅଧ୍ୟୟନକାରୀର ରସଚେତନାକୁ ସଂକ୍ରମିତ କରିବା ଅପେକ୍ଷା ତାର ଚିନ୍ତାକୁ ଅଧିକ ପୁଷ୍ଟ କରିଥାଏ । ତାଙ୍କ ଭାଷା ଯଥାର୍ଥରେ ଏକ ଉଦ୍‌ବୋଧିତ ଚିତ୍ତର ଭାଷା । ସେଥିରେ ସେ ନିଜର ଚିନ୍ତା, ବିଶ୍ୱାସ ଓ ସାମଗ୍ରିକ ଭାବରେ

ନିଜର ବ୍ୟକ୍ତିତ୍ୱକୁ ପ୍ରତିବିମ୍ବିତ କରାଇପାରନ୍ତି । ''ଦକ୍ଷିଣବାର୍ତ୍ତା'' ପତ୍ରିକାରେ ନିଜର ''ଅଳଂକାର ଶାସ୍ତ୍ରଗୁରୁ ସ୍ୱର୍ଗତ ତ୍ରିପାଠୀ ଶର୍ମା'' ଙ୍କ ସଂପର୍କରେ କହିବାକୁ ଯାଇ ଲେଖିଛନ୍ତି - ''ଛାତ୍ର ମାନଙ୍କୁ ସେ ଯେଉଁ ବିଷୟରେ ଶିକ୍ଷା ଦେଉଥିଲେ ତାକୁ ସେ ଏପରି ପ୍ରାଞ୍ଜଳ ଭାବରେ ବୁଝାଇ ଦେଇ ପାରୁଥିଲେ ଯେ, ମନେ ହେଉଥିଲା, ସେହି ବିଦ୍ୟାରେ ସେ କେବଳ ଧୂରୀଣ'' ପ୍ରଫେସର ଆଚାର୍ଯ୍ୟଙ୍କ ଏହି ବକ୍ତବ୍ୟ ବାସ୍ତବ ପକ୍ଷେ ନିଜ ପାଇଁ ସର୍ବୋଚ୍ଚ ଭାବେ ପ୍ରଯୁଜ୍ୟ କହିଲେ ଅତ୍ୟୁକ୍ତି ହେବା ନାହିଁ ।

ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନର ଦ୍ୱିତୀୟ ବର୍ଷରେ ଭଞ୍ଜବିହାରର ନାଗାବଳୀ ଛାତ୍ରାବାସରୁ ଆମେ ଚାରି ପାଞ୍ଚ ଜଣ ଛୁଟିଦିନରେ ପୂର୍ବାହ୍ନରେ ଏବଂ ଅନ୍ୟ ଦିନରେ ଅପରାହ୍ନରେ ଅନେକଥର ଯାଇଛୁ ଅଶୋକ ନଗର ସ୍ଥିତ ସାରଙ୍କର ବାସଭବନ ''ଯତିରାଜ ନିକେତନ'' କୁ । ଆମ୍ଭମାନଙ୍କ ଅନୁରୋଧରେ ଯେ କୌଣସି ବିଷୟରେ ନିର୍ବିକାର ଚିତ୍ତରେ ସେ ଆମର ସନ୍ଦେହ ମୋଚନ କରୁଥିଲେ । ଦିନେ ସଂକୋଚରେ ପ୍ରବେଶ କଲୁ ତାଙ୍କ ବାସଭବନର ଦ୍ୱାର ମୁହଁରେ । ସେଦିନ ଥିଲା ପୌଷ ପୂର୍ଣ୍ଣିମା । ଆଲୋଚନାର ପରିସମାପ୍ତି ପରେ ସମୁଚିତ ସମାଦରରେ ଆମକୁ ପିଷ୍ଟକ ଆଦିରେ ଆପ୍ୟାୟିତ କରାଇଲେ ଗୁରୁ । ସହଜ ମଣିଷର ପ୍ରଚଳିତ ଆଚାର, ଆଚରଣ, ଆତିଥେୟତା, ଛାତ୍ର ବତ୍ସଳତା ଏବଂ ଅବାରିତ ସ୍ନେହ ଏଥିରୁ ପ୍ରତିପାଦିତ । ପ୍ରତ୍ୟେକଥର ଭବନରୁ ବିଦାୟ ବେଳକୁ ଦୁଆର ଆବୋରି ଠିଆହୋଇ ସେ ଆମକୁ ଆଶୀର୍ବାଦ ବୁଣି ଦେଉଥିଲେ ।

ପରିଶେଷରେ କହିରଖେ, ସାର୍‌ଙ୍କ ଅମାୟିକ ସ୍ନେହ ଓ ସଦିଚ୍ଛା ମୋ ଜୀବନର ପାଥେୟ । ମୋ ଜୀବନର ପ୍ରତିମୁହୂର୍ତ୍ତରେ ସାର୍ ମନେପଡନ୍ତି ନିତ୍ୟ ନୂତନ ଭାବରେ । ମୁଁ ଆଜି ବି ପାଠ ପଢୁଛି ସାର୍‌ଙ୍କୁ ମନେ ପକାଇ । ସେଇ ନୀରବ ତପସ୍ୱୀ ପୂଜ୍ୟଗୁରୁ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଂକର ପ୍ରତିଭା ପୂଜା ଅବସରରେ ତାଙ୍କର ପାଦ ପଦ୍ମରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*ଓଡ଼ିଆ ବିଭାଗ, ଇନ୍ଦିରା ସ୍ମୃତି ମହାବିଦ୍ୟାଳୟ*
*ଚାନ୍ଦିପୁଟ, ଗଜପତି ।*

# ପ୍ରଫେସର ଆଚାର୍ଯ୍ୟଙ୍କ ସଂଗ୍ରହ କୌଶଳ

## ଅଧ୍ୟାପକ କମ୍ବୁପାଣି ସାମନ୍ତ

ସେଦିନ ଥାଏ ଜୁନ୍ ମାସର ଏକ ରୌଦ୍ରଦଗ୍‌ଧ ମଧ୍ୟାହ୍ନ । କଲିକତା ମହାନଗରୀର ପିଚୁରାସ୍ତାରେ ପାଦରେ ଚାଲି ଚାଲି ଯାଉଥାଆନ୍ତି ପ୍ରଫେସର ଆଚାର୍ଯ୍ୟ । ଉପର ତାତି, ତଳତାତି । କିନ୍ତୁ ଏହା ପ୍ରତି ତାଙ୍କର ନିଘାନାହିଁ । ମନ ତାଙ୍କର ଚିନ୍ତାକୁଳ । ମୁହଁରେ ପ୍ରତିଫଳିତ ଆଶାନିରାଶାର ଦ୍ୱନ୍ଦ୍ୱ । ପଥଚାରୀ ତାଙ୍କୁ ଦେଖି ଭାବୁଥିବେ ଖରାରେ ସିଝି ଲୋକଟିର ମୁହଁ କଳାକାଠ ପଡିଲାଣି । ତଥାପି ଏମିତି ଚାଲିଛି, ପାଗଳଟେ ନା କ'ଣ ?

ହଁ ସେଦିନ ସତରେ ତାଙ୍କୁ ପାଗଳାମି ଘାରିଥିଲା - ତଥ୍ୟ ସଂଗ୍ରହର ପାଗଳାମି ।

ଆଧୁନିକ ଓଡିଆ ଗଦ୍ୟର ଆଦି ପ୍ରବର୍ତ୍ତକ ଫକୀର ମୋହନ ସେନାପତିଙ୍କ ରଚିତ 'ଜୀବନ ଚରିତ' ଗ୍ରନ୍ଥଟି ସେ ପାଇଥାଆନ୍ତି । ଏହି ଦୁଷ୍ପ୍ରାପ୍ୟ ଗ୍ରନ୍ଥର ସଂପାଦନା ଓ ପୁନଃ ପ୍ରକାଶ ଥାଏ ତାଙ୍କର ଲକ୍ଷ୍ୟ । ଗଦ୍ୟସମ୍ରାଟଙ୍କ ଗଦ୍ୟ ଭାଷାର ବିବର୍ତ୍ତନରେ ଏହି ଆଦ୍ୟ ଗ୍ରନ୍ଥର ଭୂମିକାକୁ ଓଡିଆ ପାଠକଙ୍କୁ ଦେଖାଇ ଦେବାଥିଲା ଏପରି କଳ୍ପନାର ଉଦ୍ଦେଶ୍ୟ । ଫକୀରମୋହନଙ୍କ 'ଜୀବନଚରିତ'' ପୁସ୍ତକ ୧୮୬୬ ମସିହାରେ ପ୍ରକାଶିତ । ସେତେବେଳକୁ ତାଙ୍କୁ ମାତ୍ର ୨୩ ବର୍ଷ ବୟସ । ଏହା ପୁଣି ୧୮୪୯ ମସିହାରେ ପ୍ରକାଷିତ ଏବଂ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରଣୀତ ବଙ୍ଗଳା ''ଜୀବନ ଚରିତ''ର ଅନୁବାଦ । ପୁସ୍ତକଟିର ପୁନଃପ୍ରକାଶରେ ଅସୁବିଧା ନଥିଲା । କିନ୍ତୁ ପ୍ରଫେସର ଆଚାର୍ଯ୍ୟଙ୍କ ଏକାନ୍ତ ଇଚ୍ଛା - ବିଦ୍ୟାସାଗରଙ୍କ ମୂଳ ବଂଗଳା ପୁସ୍ତକଟିକୁ ଦେଖିବେ । ବର୍ଷ ବର୍ଷ ଧରି ବିଭିନ୍ନସୂତ୍ରରୁ ଅନୁସନ୍ଧାନ କରିମଧ ମୂଳ ପୁସ୍ତକଟି ପାଇବା, ଏମିତିକି କେବଳ ଥରେ ଦେଖିବା ମଧ ସମ୍ଭବ ହୋଇନଥିଲା । କାରଣ, ବିଦ୍ୟାସାଗରଙ୍କ ଏ ପୁସ୍ତକ ତାଙ୍କ ଗ୍ରନ୍ଥାବଳୀ ଅଥବା କୌଣସି ଗ୍ରନ୍ଥାଗାରରୁ ମିଳିନଥିଲା । ଏପରିକି ବିଦ୍ୟାସାଗର ଏମିତି ଏକ ପୁସ୍ତକ ଲେଖିଛନ୍ତି ବୋଲି ମଧ ବିଦ୍ୟାସାଗରବିତ୍ ବଙ୍ଗଲେଖକ ମାନେ ଜାଣିନାହାନ୍ତି ! ସାମାନ୍ୟ ସୂତ୍ରକୁ ଆଧାର କରି ବିରାଟ ଅନୁସନ୍ଧାନରେ ସେ ବ୍ରତୀ ହୋଇଛନ୍ତି, କିନ୍ତୁ ପର୍ବତ ମୂଷିକଟିଏ ମଧ ପ୍ରସବ କଲାନାହିଁ ।

କଲିକତାର ନ୍ୟାସନାଲ ଲାଇବ୍ରେରୀରେ ମଧ ବହୁବାର ଅନୁସନ୍ଧାନ କରାଯାଇଛି । ପ୍ରତିଥର ଭବିଷ୍ୟତ ଅନୁସଂଧାନ ପାଇଁ କିଛି ଆଶା ଅବଶୋଷ ରଖୁଥିଲା । ଆଜି କିନ୍ତୁ ତାର ସମାପ୍ତି ଘଟଛି । ବିଦ୍ୟାସାଗରଙ୍କ ପୁସ୍ତକ ନିମନ୍ତେ ଆଉ ନ୍ୟାସନାଲ ଲାଇବ୍ରେରୀକୁ ଆସିବାକୁ ପଡିବ ନାହିଁ । ହତାଶ ମନରେ ବର୍ଷ ବର୍ଷ ଧରି ଅନୁସଂଧାନର ଅନ୍ତିମ ବିଫଳତାକୁ ବହନ କରି ଭାରି ହୃଦୟରେ ସେଦିନ ପ୍ରଫେସର ଆଚାର୍ଯ୍ୟ ଗ୍ରନ୍ଥାଗାରରୁ ଆଗକୁ ଚାଲିଥାଆନ୍ତି । ଲକ୍ଷ୍ୟହୀନ ଭାବରେ ।

ମହାନଗରୀକୁ ସେ ବହୁବାର ଆସିଥିଲେ ମଧ ଏ ଅଞ୍ଚଳକୁ କେବେ ଆସିବା ଆବଶ୍ୟକ ପଡିନି । ସଦୁଦ୍ୟମ ପ୍ରତି ଈଶ୍ୱର ଆଶୀର୍ବାଦ ଭଳି ହଠାତ୍ ରାସ୍ତାର ବାମ ପାର୍ଶ୍ୱରେ ଗୋଟିଏ ଦୀର୍ଘ ଫଳକ ତାଙ୍କ ଦୃଷ୍ଟିକୁ ଆସିଲା - ''ବିଦ୍ୟାସାଗର କଲେଜ''। ନିର୍ବାଣମୁଖୀ ଆଶାପ୍ରଦୀପଟି ପୁଣି ଜଳିଉଠିଲା - ଏଇଠି ହୁଏତ କିଛି ସନ୍ଧାନ ମିଳିପାରେ । ରାସ୍ତାପାର ହୋଇ ବାମ ପାଖକୁ ଓହ୍ଲାଇଲେ । ମୁଖ୍ୟରାସ୍ତାରୁ କିଛି ଦୂରରେ ବିଦ୍ୟସାଗର କଲେଜ । ଅଳ୍ପ କେତେଜଣ କର୍ମଚାରୀ କଲେଜରେ ଉପସ୍ଥିତ ଥାଆନ୍ତି । ଗ୍ରନ୍ଥାଗାରିକ ଅନୁପସ୍ଥିତି । ଏଣୁ ଏମାନେ ବିଶେଷ କିଛି କହିପାରିଲେ ନାହିଁ । ବିଦ୍ୟାସାଗରଙ୍କ ''ଜୀବନ ଚରିତ '' ପୁସ୍ତକର ନାମ ସେମାନେ ସାର୍‌ଙ୍କ ଠାରୁ ପ୍ରଥମ କରି ଶୁଣିଲେ । ବିସ୍ମୟ ଓ କୌତୁକହଳ ଜାତହେଲା ସେମାନଙ୍କର । ପ୍ରଫେସର ଆଚାର୍ଯ୍ୟ ଓଡିଶାରୁ ଆସିଥିବା ଏବଂ ସେମାନଙ୍କ ପ୍ରିୟ ବିଦ୍ୟାସାଗରଙ୍କ ଦୁଷ୍ପ୍ରାପ୍ୟ ପୁସ୍ତକଟିଏ ବର୍ଷ ବର୍ଷ ଧରି ଖୋଜୁଥିବା ଶୁଣି ଟିକିଏ ପ୍ରଭାବିତ ହେଲେ । ଗ୍ରନ୍ଥାଗାରିକଙ୍କୁ ଆସିବା ପାଇଁ ସମ୍ବାଦ ପଠାଇଲେ । କେତେଘଣ୍ଟା ବ୍ୟବଧାନରେ ସେ ଆସିବାର ପ୍ରତିଶ୍ରୁତି ଦେଲେ । ଆସିଲେ ମଧ । ପ୍ରଫେସର ଆଚାର୍ଯ୍ୟ ସେମିତି ଅପେକ୍ଷା କରିଥାଆନ୍ତି । କିନ୍ତୁ ହାୟ । ପୁଣିଥରେ ସେଇ ପୁରୁଣା କଥାର ପୁନରାବୃତ୍ତି । କଲେଜର ଚଳନ୍ତି ଗ୍ରନ୍ଥଭଣ୍ଡାରରେ ବିଦ୍ୟାସାଗରଙ୍କ ସେ ପୁସ୍ତକ ନାହିଁ ! ତେବେ ଗ୍ରନ୍ଥାଗାର ସଂଲଗ୍ନ ଅନ୍ୟଏକ ପ୍ରକୋଷ୍ଠରେ ଠୁଙ୍ଗାବାଲା ଓ ଅନ୍ୟ ସୂତ୍ରରୁ ସଂଗ୍ରହ କରାଯାଇ ରଦ୍ଦିପୁସ୍ତକର ଏକ ଭଣ୍ଡାର ଅଛି, ବହୁ ବର୍ଷଧରି ଏ ସଂଗ୍ରହ କରାଯାଉଛି ଏବଂ ଅସଜଡା ଭାବରେ ସବୁ ସେମିତି ଗଦା ହୋଇଛି । ''ସେଇଠି କେଜାଣି ଥାଇପାରେ '' - ଗ୍ରନ୍ଥାଗାରିକଙ୍କ ଏଇ ସୂଚନାରେ ଆଶାନ୍ୱିତ ହେଲାଭଳି ସେମିତି କିଛି ନଥିଲେ ହେଁ ପ୍ରଫେସର ଆଚାର୍ଯ୍ୟ ଅନୁରୋଧ କଲେ ସେ ଗ୍ରନ୍ଥ - ଗଦାକୁ ଖୋଜିବା ପାଇଁ । କିନ୍ତୁ ଗ୍ରନ୍ଥାଗାରିକ ଏ ବାବଦରେ ସାହାଯ୍ୟ କରିବାକୁ ଅସାମର୍ଥ୍ୟ ପ୍ରକାଶ କଲେ । କାରଣ, ଛୁଟି ହେତୁ କର୍ମଚାରୀ ନାହାନ୍ତି । ପୁଣି ସେ ଘରଟିରେ ବିଜୁଳି ବ୍ୟବସ୍ଥା ନଥିବା ହେତୁ ଅନ୍ଧାର ଓ ଗୁଳୁଗୁଳି । ଏତିକିରେ ପ୍ରଫେସର ଅଚାର୍ଯ୍ୟଙ୍କ ଜିଦ୍ ବଢ଼ିଲା । କ୍ୟାଣ୍ଡାଲ୍ ମଗାଇ ନିଜେ ସେହି ମହମ ଆଲୁଅ ହାତରେ ଧରି ଭିତରେ ପଶିଲେ, ବିଶାଳ ପ୍ରକୋଷ୍ଠ, ସବୁଆଡେ ବହିର ସ୍ତୂପ । ଯେବେ ଯାହା ସଂଗୃହୀତ ହୋଇଛି ଗଦାରେ ଅଳିଆ ଫିଙ୍ଗିଲା ପରି ସାଇତା (?) ହୋଇଛି । ମହମବତୀର ସ୍ତିମିତ ଆଲୋକରେ ଅସହ୍ୟ ଗରମକୁ ଖାତିରି ନ କରି ଖୋଜା ଚାଲିଲା । ଅସଂଖ୍ୟ ରଦ୍ଦି ପୁସ୍ତକକୁ ଆଡେଇ ଗୋଟିଏ ନିର୍ଦ୍ଦିଷ୍ଟ ପୁସ୍ତକ ଖୋଜିବା ପାଗଳାମି ଛଡା ଅନ୍ୟ କିଛି ନୁହେଁ ।

ୟୁରେକା ! ବେଶ୍ କିଛି ଘଣ୍ଟାର ପରିଶ୍ରମ ପରେ ପୁସ୍ତକଟି ସେପାଇଲେ । ତାଙ୍କର ସେତିକି ବେଳର ପ୍ରସନ୍ନତା ଅବର୍ଣ୍ଣନୀୟ । ଗ୍ରନ୍ଥାଗାରିକ ଓ ଉପସ୍ଥିତ ଅନ୍ୟମାନେ ବି ବିସ୍ମୟ - ବିଭୋର ହେଲେ ।

ପୁଣି ଆସିଲା ବିଘ୍ନ । ଅଧକ୍ଷ ନାହାନ୍ତି । ଆମେ ଏଠାରୁ କୌଣସି ଗ୍ରନ୍ଥ ବାହାର ଲୋକଙ୍କୁ ଦେଇ ପାରିବୁନି, ରଦ୍ଦି ପୁସ୍ତକ ହେଲେବି ! ବହୁ ଅନୁରୋଧ ଓ ନିବେଦନ ସତ୍ତ୍ୱେ ସେମାନେ ନିଜ ଉକ୍ତିରେ ଅଟଳ ରହିଲେ । କିନ୍ତୁ ନିଜ ଲକ୍ଷ୍ୟରୁ ପ୍ରଫେସର ଆଚାର୍ଯ୍ୟଙ୍କୁ ଟଳେଇବା କେତେ ଦୁଷ୍କର, ତା' ସେମାନେ ଜାଣିନଥିଲେ । ପ୍ରଫେସର ଆଚାର୍ଯ୍ୟ ଚରମବାଣୀ ଶୁଣାଇ

ଦେଲେ - ''ଆପଣ ଅଧ୍ୟକ୍ଷଙ୍କୁ ଡକାନ୍ତୁ ବା କାହାର ଅନୁମତି ଆଣିବେ ଆଣନ୍ତୁ ବା ଯାହା କରନ୍ତୁ, ପୁସ୍ତକ ନନେଇ ମୁଁ ଏଠାରୁ ଯାଉନି । ଏଇ ମୁଁ ବସିଲି । ''

କିଂକର୍ତ୍ତବ୍ୟ ବିମୂଢ଼ କର୍ମଚାରୀମାନେ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କୁ ଏକଜିଦ୍‌ରୁ ନିବୃତ କରାଇବା ପାଇଁ ବହୁ ଉଦ୍ୟମ କରି ନିଷ୍ଫଳ ହେଲେ । ଶେଷରେ ବିଚାର ବିମର୍ଶ କରି କଥାତୁଟିଲା- ସାର୍‌ଙ୍କ ସାଙ୍ଗରେଜଣେ କର୍ମଚାରୀ ଯିବେ ଏବଂ ପୁସ୍ତକଟି ବାହାରେ ଜେରକ୍ସ କରାଯିବ । ଜେରକ୍ସ କପି ସେ ଆଣିବେ ଏବଂ ମୂଳପୁସ୍ତକ ରଦ୍ଦି-ପ୍ରକୋଷ୍ଠରେ ପୁଣି ସାଇତା ହେବ ।

ଉତ୍ତୀର୍ଣ୍ଣ ସଂଧ୍ୟାସୁଦ୍ଧା ଏ କାର୍ଯ୍ୟ ସମାପନ କରି ପ୍ରଫେସର ଆଚାର୍ଯ୍ୟ ଫେରିଲେ ହୋଟେଲରେ ନିଜର କୋଠରୀ ଅଭିମୁଖେ, ପରଦିନ ଓଡିଶା ।

ପ୍ରକାଶିତ, ଅଥଚ ଦୁର୍ଲ୍ଲଭ ପୁସ୍ତକ ଅଥବା ତତ୍ ସଂପର୍କିତ ଉପାଦାନ, ପୋଥି, ପାଣ୍ଡୁଲିପି ଓ ସାଂସ୍କୃତିକ ଉପାଦାନ କେତେ ଯେ ସେ ସଂଗ୍ରହ କରିଛନ୍ତି, କଳନା ନାହିଁ । ବ୍ରହ୍ମପୁର ବିଶ୍ବବିଦ୍ୟାଳୟର ମ୍ୟୁଜିୟମ, ଆଞ୍ଚଳିକ ଗବେଷଣା କେନ୍ଦ୍ର ତାଙ୍କରି ସଂଗ୍ରହରେ ସମୃଦ୍ଧ । ଏସବୁ ସଂଗ୍ରହର ଅନ୍ତରାଳରେ କଲିକତା ଭଳି କେତେ ଯେ ତିକ୍ତ ମଧୁର ଅନୁଭୂତି ଜଡିତ, ତାର ବିବରଣୀ ଏଇ ଆତ୍ମପ୍ରଚାର ବିମୁଖ, ମିତଭାଷୀ ପ୍ରଫେସରଙ୍କ ଠାରୁ ପାଇବା କଷ୍ଟ । ବେଳେ ବେଳେ କୌଣସି ବିଶେଷ ପ୍ରସଙ୍ଗରେ କିଛି କିଛି ସେ ପ୍ରକାଶ କରିଦିଅନ୍ତି । ଯେକୌଣସି ଉପାଦାନଟିଏ ସଂଗ୍ରହଯୋଗ୍ୟ ବୋଲି ତାଙ୍କର ହୃଦବୋଧ ହେଲେ ସେଥିନିମନ୍ତେ କୌଣସି ଉଦ୍ୟମକୁ ବାକିରଖନ୍ତି ନାହିଁ । ସୂତ୍ର-ଅନୁସୂତ୍ର-ପ୍ରତିସୂତ୍ରାଦିକୁ ଆଧାର କରି ପରିଣତି ପର୍ଯ୍ୟନ୍ତ ଅଗ୍ରସର ହୁଅନ୍ତି । ସଂଗ୍ରହ ତାଙ୍କ ଜୀବନର ଅଂଶବିଶେଷ ପାଲଟି ଯାଇଛି ।

ପ୍ରଫେସର ଆଚାର୍ଯ୍ୟଙ୍କ ସଂଗ୍ରହଶୀଳ ଅନୁସନ୍ଧିତ୍ସା ହେତୁ ବହୁ ଉପାଦାନ କାଳକବଳିତ ହେବା ପୂର୍ବରୁ ସଂଗୃହୀତ ହୋଇ ପାରିଛି । ଏଇ ଉପାଦାନ ସକଳ ପ୍ରଫେସର ଆଚାର୍ଯ୍ୟଙ୍କ ନିକଟରେ କୃତଜ୍ଞ ରହିବେ ଚିରକାଳ ।

*ଓଡିଆ ବିଭାଗ, ଋଷିକୁଲ୍ୟା ମହାବିଦ୍ୟାଳୟ*
*ସୋରଡା, ଗଂଜାମ*

# ପ୍ରଫେସର ଆଚାର୍ଯ୍ୟଙ୍କ ପୋଥିପ୍ରୀତି

**ଅଶୋକ କୁମାର ପଣ୍ଡା**

ଭାରତ ବର୍ଷରେ ଦର୍ଶନ ଓ ସାହିତ୍ୟର ବିକାଶ ବହୁ ପ୍ରାଚୀନ କାଳରୁ ହୋଇଅଛି । ଭାରତର ପ୍ରାନ୍ତୀୟ ଭାଷାମାନଙ୍କରେ ମଧ ସାହିତ୍ୟିକ ସୃଷ୍ଟି ସମ୍ଭାର କିଛି କମ ନୁହେଁ, ଏ ସମସ୍ତ ବିଷୟ ମୁଖ୍ୟତଃ ତାଳପତ୍ର ପୋଥିରେ ଲେଖାଯାଉଥିଲା, ଓଡିଶାରେ ମଧ ମୁଦ୍ରାଯନ୍ତର ପ୍ରସାର ପର୍ଯ୍ୟନ୍ତ ଲେଖାଯାଇଛି ଅସଂଖ୍ୟ ତାଳପତ୍ର ପୋଥି । ଏହି ପୋଥିମାନଙ୍କ ଭିତରେ ପ୍ରାଚୀନ ଓଡିଶାର କେତେ ଯେ କାବ୍ୟ , ମହାକାବ୍ୟ, ନାଟକ, ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ର ସାଇତା ହୋଇ ରହିଛି । ସେ ଭିତରୁ କେତେକ କାଳ କବଳିତ ହେଇସାରିଛି, ଅନ୍ୟ କେତେକ ବିଭିନ୍ନ ଆନୁଷ୍ଠାନିକ ଓ ବ୍ୟକ୍ତିଗତ ଉଦ୍ୟମରେ ସଂଗୃହୀତ ହୋଇଛି, ତଥାପି ବହୁ ସଂଖ୍ୟକ ପୋଥି ଏବେ ମଧ ଓଡିଶାର ଘରେ ଘରେ ପଡିରହିଛି । ଓଡିଶାର କେତେକ ଅଞ୍ଚଳରୁ ପୋଥିସଂଗ୍ରହ ପାଇଁ ଚେଷ୍ଟା କରାଯାଇ ନାହିଁ । ବନ୍ୟା, ଅଗ୍ନ୍ୟୁତ୍ପାତ ଓ କୀଟ କବଳିତ ହୋଇ ଏ ଗୁଡିକ କ୍ରମଶଃ ବିଲୁପ୍ତ ହେବାରେ ଲାଗିଛି । ଓଡିଶାରେ ପୋଥିପାଣ୍ଡୁଲିପି ସଂଗ୍ରହ କରିବାରେ ଯେଉଁ ଉଦ୍ୟମ କରାଯାଇଛି, ସେଥିପ୍ରତି ମୋର ପରମ ପୂଜ୍ୟ ଗୁରୁଦେବ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ଅବଦାନ ଅତୁଳନୀୟ ।

ପ୍ରଫେସର ଆଚାର୍ଯ୍ୟଙ୍କ ପୋଥି ସହିତ ସଂବଂଧ ବାଲ୍ୟକାଳରୁ ହିଁ ପରିଲକ୍ଷିତ । ତାଙ୍କ ଘରେ ପୁରୁଷାନୁକ୍ରମେ ସଞ୍ଚିତ ଅନେକ ପୋଥିର ବିଶାଳ ଭଣ୍ଡାର । ତାଙ୍କର ପାଠପଢା ଆରମ୍ଭ ହୋଇଥିଲା ତାଳପତ୍ର ପୋଥିରେ ଲିଖିତ ଅମରକୋଷ ଓ ବ୍ୟାକରଣ ଶିକ୍ଷାରୁ । ଖଲ୍ଲିକୋଟ କଲେଜରେ ସ୍ନାତକ ଶ୍ରେଣୀରେ ଅଧୟନ ବେଳୁ ହିଁ ସେ ପୋଥି ସଂଗ୍ରହରେ ମନୋନିବେଶ କରିଥିଲେ । କର୍ମ ଜୀବନରେ ମଧ ପୋଥିପ୍ରୀତି ହେତୁ ସେ ଯେଉଁଠିକି ଯାଆନ୍ତି, ପୋଥି ସଂପର୍କରେ ଅନୁସନ୍ଧାନ କରିଥାଆନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମ୍ୟୁଜିୟମରେ ଗଚ୍ଛିତ ଅଧିକାଂଶ ପୋଥି ପ୍ରଫେସର ଆଚାର୍ଯ୍ୟଙ୍କ ଦ୍ୱାରା ସଂଗୃହୀତ । ପୋଥି ସଂପର୍କରେ କିଛି ସନ୍ଧାନ ପାଇଲାମାତ୍ରେ ସେ ଉତ୍‌ଫୁଲ୍ଲିତ ହୋଇଉଠନ୍ତି । ପୋଥି ଖଣ୍ଡିଏ କେଉଁଠୁ ପାଇଲେ ଭୋକ ଶୋଷ ଭୁଲିତାକୁ ଝଡାଝଡି କରି ଫିଟାଇ ପଢି ବସନ୍ତି । ପୋଥିଟିର ନାମ, ଲେଖକ, ନକଲକାର, ବିଷୟ, କେବେ ଲେଖାଯାଇଛି ଇତ୍ୟାଦି ବିଷୟରେ ସଙ୍ଗେ ସଙ୍ଗେ ସ୍ଥିର କରି ନିଅନ୍ତି । ମୋର ଅଧୟନ ସମୟରେ ମୁଁ ଯେତେଥର ସାର୍‌ଙ୍କୁ ଭେଟିଛି , ସେ ପୋଥି ସଂପର୍କରେ ମୋତେ ପଚାରିଥାଆନ୍ତି । ପୋଥିର ଭୌଗୋଳିକ ସ୍ଥିତି ଏବଂ ଏହାର ଅକ୍ଷର, କେମିତି ପଢିବାକୁ ହେବ, କେମିତି ବନ୍ଧାଯିବ, ପୋଥିର ନାମ କେଉଁଠି ଲେଖାଥାଏ, ଲେଖକର ନାମ କେଉଁଠି ଥାଏ ଏବଂ

ପୃଷ୍ଠିକାରେ କ'ଣ ଥାଏ, ପୋଥିକୁ ପଢି କେମିତି ନକଲ କରାଯିବ ଇତ୍ୟାଦି ବିଷୟରେ ସେ ମୋତେ ଟିକିନିଖି ବୁଝାଇଛନ୍ତି, ପୋଥି ସଂପର୍କରେ ତାଙ୍କର ବିପୁଳ ଅଭିଜ୍ଞତା ଦେଖି ମୁଁ ଅଭିଭୂତ ହୋଇପଡେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସାରଙ୍କ ପ୍ରଚେଷ୍ଟାରେ ଆଞ୍ଚଳିକ ଗବେଷଣା କେନ୍ଦ୍ର ଖୋଲାଯାଇଛି. ସେଏହାର ନିର୍ଦ୍ଦେଶକ, ଓଡିଶାର ବିଭିନ୍ନ ସ୍ଥାନ, ବିଶେଷକରି ଉପାନ୍ତ ଓ ବିଚ୍ଛିନ୍ନାଞ୍ଚଳରୁ ବହୁ ପୋଥି ତାଙ୍କରି ଉଦ୍ୟମରେ ସଂଗୃହୀତ ହୋଇ ଗବେଷଣା କେନ୍ଦ୍ରରେ ସାଇତା ହୋଇଛି । ଏଠାରେ କେତେକ ପୋଥିର ସଂପାଦନା କାର୍ଯ୍ୟ ମଧ ଚାଲିଛି । ବିଭିନ୍ନ ସ୍ଥାନରୁ ଗବେଷକମାନେ ଆସି ଆଞ୍ଚଳିକ ଗବେଷଣାକେନ୍ଦ୍ର ଓ ମ୍ୟୁଜିୟମରେ ଥିବା ପୋଥିମାନଙ୍କ ସହାୟତା ନେଇ ଉପକୃତ ହେଉଛନ୍ତି ।

ପ୍ରାଚୀନ ପୋଥି ଓ ଗ୍ରନ୍ଥ ସଂଗ୍ରହ କାର୍ଯ୍ୟରେ ମୋର ଅଗ୍ରଜପ୍ରତିମ ପୂଜ୍ୟ ଗୁରୁ ଡଃ. ଅଶ୍ୱିନୀ କୁମାର ପଣ୍ଡା, ଡଃ.ଦେବୀପ୍ରସନ୍ନ ପଟ୍ଟନାୟକ, କ୍ୟୁରେଟର ଅଗ୍ରଜତୁଲ୍ୟ ଶ୍ରୀ ରାଧାଗୋବିନ୍ଦ ପାଢ଼ୀ ଓ ହୃଷୀକେଶ ପଣ୍ଡା ପ୍ରମୁଖ ସାର୍‌ଙ୍କ ଠାରୁ ସଂଗ୍ରହ ଓ ସଂପାଦନା ବିଷୟରେ ବହୁ ତଥ୍ୟ ଶିକ୍ଷା ଲାଭ କରିଛନ୍ତି । ସାର୍‌ଙ୍କ ସହିତ ଅନେକ ଗ୍ରାମକୁ ଯାଇ, ପରିବହନର ସୁବିଧା ନଥିବା ଜାଗାକୁ ସାଇକେଲ ବା ପାଦରେ ଚାଲି, ଆବଶ୍ୟକ ସ୍ଥଳେ ରାତ୍ରିଯାପନ କରି ଅନେକ ଦୁର୍ଲ୍ଲଭ ପୋଥି ସଂଗ୍ରହ କରିଛନ୍ତି ।

ପ୍ରଫେସରଆଚାର୍ଯ୍ୟ ଏହି ଗବେଷଣା କେନ୍ଦ୍ର ନିମନ୍ତେ ପାଇଥିବା ୟୁଜିସି ପ୍ରକଳ୍ପରେ ମୁଁ ସହଯୋଗୀ କର୍ମକର୍ତ୍ତା ଭାବେ ଯୋଗ ଦେଇଛି । ଏହି ପ୍ରକଳ୍ପର ଆଭିମୁଖ୍ୟ ହେଉଛି - ଓଡିଆରେ ଯେତେ ତାଳପତ୍ର ପୋଥି ଅଛି ତାର ସୂଚନାତ୍ମକ ତାଲିକା ପ୍ରସ୍ତୁତ କରିବା, ଏସବୁକୁ ଏକାଠି କରି ତାଳପତ୍ର ଗ୍ରନ୍ଥସୂଚୀ ପ୍ରକାଶର ଲକ୍ଷ୍ୟ ରହିଛି । ପୋଥି କେଉଁଠି ଅଛି ସୂଚନା ପାଇବା ମାତ୍ରେ ସାର୍ ଏବଂ ମୁଁ ସେଠାରେ ପହଞ୍ଚୁ । ପୋଥି ରଖିଥିବା ବ୍ୟକ୍ତିଙ୍କୁ ସାକ୍ଷାତ କରୁ ତାଙ୍କର ଇଚ୍ଛା ହେଲେ ସେ ପୋଥି ଦେଖାନ୍ତି, ଅନ୍ୟଥା ସେ ପ୍ରସଙ୍ଗ ଏଡାଇ ଯାଆନ୍ତି । ପୋଥି ନାହିଁ/ନଷ୍ଟ ହୋଇଗଲା/ଆଗରୁ ଲୋକେ ସବୁ ନେଇସାରିଲେଣି ।ଗୁରୁବାର, ସଂକ୍ରାନ୍ତି / ପରେ କେବେ ଆସନ୍ତୁ, ମୁଁ ବ୍ୟସ୍ତଅଛି - ଇତ୍ୟାଦି ନାନା ଭାବରେ ଲୋକେ ପୋଥି ଦେଖାଇବା ଅନୁରୋଧକୁ ଟାଳି ଦିଅନ୍ତି । ପ୍ରଫେସର ଆଚାର୍ଯ୍ୟ କିନ୍ତୁ ଧୈର୍ଯ୍ୟ ହରାନ୍ତିନି କି ଆଶାଛାଡନ୍ତିନି। ବଡ ଆକର୍ଷକ ଭଙ୍ଗୀରେ ସେ ଲୋକଙ୍କୁ ପୋଥି ସଂପର୍କରେ ବୁଝାଇ ଥାଆନ୍ତି । ଦେଖାଯାଇଛି ଯେ ସାର୍‌ଙ୍କ ବୁଝାଇବା ଦ୍ୱାରା ପ୍ରଭାବିତ ହୋଇ ଅନେକ ଅନିଚ୍ଛୁକ ବ୍ୟକ୍ତି ପୋଥି-ପେଡି ଖୋଲି ଦେଇଛନ୍ତି ! ଯଦି କେହି ସ୍ୱେଚ୍ଛାରେ ଦାନ କରନ୍ତି, ସେ ପୋଥି ସାର ଦାତାଙ୍କ ନାମୋଲ୍ଲେଖ କରି ସଂଗ୍ରହ କରନ୍ତି । ବିକ୍ରି ସୂତ୍ରରେ କେହି ଦେବାକୁ ଚାହିଁଲେ ଉପଯୁକ୍ତ ମୂଲ୍ୟ ଦେଇ ତାକୁ ସାର୍ କ୍ରୟ କରିଥାଆନ୍ତି । ଦାନ ଅଥବା ବିକ୍ରୀ କୌଣସିରେ ସମ୍ମତ ନହୋଇ ପୋଥିକୁ ନିଜ ପାଖରେ ରଖିବାକୁ ମଧ କେତେକ ଇଚ୍ଛା କରିଥାଆନ୍ତି । ସେ କ୍ଷେତ୍ରରେ ସାର୍ କେବଳ ପୋଥି ଗୁଡିକ ଦେଖିବା ପାଇଁ ଅନୁରୋଧ କରିଥାଆନ୍ତି, ସେ ପୋଥି ସବୁର ତାଲିକା ପ୍ରସ୍ତୁତ ହୁଏ, ପୋଥିକୁ କେମିତି ସାଇତିବେ, ସେ ବିଷୟରେ ପରାମର୍ଶ ଦେଇ ତାଲିକାଟି ଧରି ସାର୍ ଫେରନ୍ତି ।

ଏଇ ତିନୋଟି ଆଭିମୁଖ୍ୟ- ଦାନ, କ୍ରୟ ଓ ତାଲିକା-ଉପରେ ପ୍ରଫେସର ଆଚାର୍ଯ୍ୟଙ୍କ ପୋଥି ସଂଗ୍ରହ ମୁଖ୍ୟତଃ ଆଧାରିତ ।

ଅନେକ ସଂସ୍କୃତ ଓ ଓଡିଆ ପୋଥି ସଂଗ୍ରହ ଦ୍ୱାରା ଓଡିଶାରେ ଜଣେ ବିଶିଷ୍ଟ ସଂଗ୍ରାହକ ଭାବରେ ସେ ସମ୍ମାନିତ କେବଳ ସେତିକି ନୁହେଁ, ଓଡିଶାର ପୋଥି ଦେଖିବା ପାଇଁ ଅଥବା କୌଣସି ପୋଥିର ପରିଚୟ ନିରୂପଣ ବେଳେ ଅନ୍ୟ ପୋଥିରୁ ତଥ୍ୟ ଗତ ସହାୟତା ନେବାପାଇଁ ସେ ମାଡ୍ରାଜ, ଦିଲ୍ଲୀ, କଲିକତା ବାଙ୍ଗାଲୋର, ପୁଣେ ପ୍ରଭୃତି ସଂଗ୍ରହାଳୟକୁ ବାରମ୍ବାର ଯାଇ ପୋଥି ଅନୁଶୀଳନ କରିଛନ୍ତି । ଡକ୍ଟର କରୁଣାକର କର, ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ , ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର କୃଷ୍ଣଚରଣ ସାହୁ, ପଣ୍ଡିତ ନୀଳମଣି ମିଶ୍ର, କେଦାର ନାଥ ମହାପାତ୍ର ପ୍ରଭୃତି ଓଡିଶାର ସ୍ୱନାମଧନ୍ୟ ସଂଗ୍ରାହକ ଓ ସଂପାଦକ ମାନେ ଓଡିଶାର ପୋଥି ସଂଗ୍ରହ ଓ ସଂପାଦନା କ୍ଷେତ୍ରରେ କରିଥିବା ଉଲ୍ଲେଖନୀୟ କାର୍ଯ୍ୟକୁ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ଅଧିକ ସମୃଦ୍ଧି ଆଣି ଦେଇଛନ୍ତି । ବିଶ୍ୱବିଦ୍ୟାଳୟ ଏବଂ ସରକାରଙ୍କ ତରଫରୁ ଆନୁସଙ୍ଗିକ ସାହାଯ୍ୟ ସହଯୋଗ ମିଳିଲେ ସାର୍‌ଙ୍କ ପରିକଳ୍ପନାରେ ଥିବା ଅନେକ ଯୋଜନା ସାକାର ହୋଇ ପାରିବ ।

*ପ୍ରୋଜେକ୍ଟ ଆସିଷ୍ଟାଣ୍ଟ, ଆଞ୍ଚଳିକ ଗବେଷଣାକେନ୍ଦ୍ର,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।*

# ପାଖୁଡାଏ ସ୍ମୃତି

ଶ୍ରୀମାନ୍ କମ୍ବୁପାଣି ସାମନ୍ତଙ୍କ ଠାରୁ କେତେ ମାସ ପୂର୍ବେ ପତ୍ରଟିଏ ପାଇଥିଲି। ଏହା ମତେ ବେଶ୍ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେହି ପତ୍ରରେ ସେ ଶ୍ରୀମାନ୍ ଅଧ୍ୟାପକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟଙ୍କ ଷଷ୍ଟି ପୂର୍ତ୍ତି ପାଳନ ବିଷୟ ମୋତେ ଜଣାଇଥିଲେ ଓ ଏହି ଉପଲକ୍ଷେ ସେ ମୋ ଠାରୁ ଲେଖାଟିଏ ଚାହିଁଥିଲେ । କାଲିପରି ଲାଗୁଛି, ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିବା ବେଳେ ଶ୍ରୀମାନ୍ ସୁଦର୍ଶନ ଥିଲେ ସେହି କଲେଜର ଓଡିଆ ବିଭାଗର ଏମ୍.ଏ. ଶ୍ରେଣୀର ଛାତ୍ର । ଯଥାର୍ଥତଃ ସେ ଥିଲେ ଶାନ୍ତ ଶିଷ୍ଟ, ସୁବୋଧ ଓ ସୁଦର୍ଶନ ଛାତ୍ରଟିଏ । ସେହି ସମୟରୁ ତାଙ୍କ ସହ ମୋର ହୃଦ୍ୟତା । ତାଙ୍କର ଅନ୍ୟାନ୍ୟ ପରିଚୟ ମଧ୍ୟ ସେହି ସମୟରେ ମୁଁ ତାଙ୍କ ଠାରୁ ଯତ୍‌ସାମାନ୍ୟ ଜାଣିବାକୁ ପାଇଥିଲି । ସେ ଥିଲେ ବିଶିଷ୍ଟ ସ୍ମୃତିକାର ପଣ୍ଡିତ ଯତିରାଜ ଆଚାର୍ଯ୍ୟଙ୍କର ସୁପୁତ୍ର । ପ୍ରାଚୀନ ଓଡିଆ ସାହିତ୍ୟ ପ୍ରତି ଶ୍ରୀମାନ ସୁଦର୍ଶନଙ୍କର ଅନୁରାଗ ସେହି ସମୟରୁ ପରିଲକ୍ଷିତ ହେଉଥିଲା ।

ଏମ୍.ଏ. ପାସ କଲାପରେ ଓଡିଶା ବାହାରେ ସେ କର୍ମଜୀବନ ଆରମ୍ଭ କରିଥିଲେ । ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ ନିଯୁକ୍ତ ହୋଇଥିଲେ । ମୋର ବଂଧୁ ତଥା ସହକର୍ମୀ ଶ୍ରୀ ନଟବର ସାମନ୍ତରାୟଙ୍କ ତତ୍ତ୍ୱାବଧାନରେ ପ୍ରସ୍ତୁତ କରିଥିଲେ ତାଙ୍କର ଗବେଷଣାତ୍ମକ ନିବନ୍ଧ ''ଓଡିଆ କାବ୍ୟ କୌଶଳ - ୧୫୦୦-୧୮୫୦ । ଏହି ଉପାଦେୟ ନିବନ୍ଧଟି ୧୯୮୩ ମସିହାରେ ମୁଦ୍ରିତ ହୋଇଥିଲା । ଶ୍ରୀମାନ ଆଚାର୍ଯ୍ୟ ଏହି ପୁସ୍ତକରୁ ଖଣ୍ଡିଏ ମୋତେ ଉପହାର ଦେଇଥିଲେ । ଉକ୍ତ ନିବନ୍ଧଟି ପାଠକରି ମୁଁ ବାସ୍ତବିକ ଚମତ୍କୃତ ହୋଇଥିଲି । ବହୁବର୍ଷର ଅଧ୍ୟବସାୟ ଓ ଅଧ୍ୟୟନର ଏହା ଏକ ମହନୀୟ ଫଳଶ୍ରୁତି । ପ୍ରାଚୀନ ଓ ମଧ୍ୟକାଳୀନ ଓଡିଆ କାବ୍ୟ ସଂପର୍କରେ ଏପରି ନିବନ୍ଧ ଏଯାବତ୍ ପ୍ରସ୍ତୁତ ହୋଇ ନାହିଁ ବୋଲି ମୋର ବିଶ୍ୱାସ ।

ଓଡିଆରେ ଅନେକ ପି.ଏଚ.ଡି . ଉପାଧି ପାଇଛନ୍ତି ମାତ୍ର ବିଡମ୍ବନାର ବିଷୟ, ଉପାଧି ପାଇବା ପରେ ବହୁ ଅଧ୍ୟାପକ ଗବେଷଣା କ୍ଷେତ୍ରରୁ ଅବ୍ୟାହତି ନେଇଥାଆନ୍ତି । ଏହାର ବ୍ୟତିକ୍ରମ ଥିଲେ ଶ୍ରୀମାନ ସୁଦର୍ଶନ । ତାଙ୍କର ସମସ୍ତ କର୍ମ ଜୀବନ ଗବେଷଣାତ୍ମକ କାର୍ଯ୍ୟରେ ହିଁ ବିନିଯୁକ୍ତ । ବହୁ ଦୁର୍ଲ୍ଲଭ ଗ୍ରନ୍ଥକୁ ସେ ସଂପାଦନା କରିବା ବ୍ୟତୀତ ବହୁ ଅଧ୍ୟାପକଙ୍କୁ ଗବେଷଣା ପ୍ରତି ଅନୁରକ୍ତ କରାଇଛନ୍ତି ଓ ସେମାନଙ୍କୁ ସମୁଚିତ ଦିଗ୍‌ଦର୍ଶନ ଦେଇଛନ୍ତି । ଏହି ପ୍ରୟାସ ଯେ ପ୍ରଶଂସନୀୟ ଏହା କହିବା ଅନାବଶ୍ୟକ । ଗଂଜାମ ଅଞ୍ଚଳର ବହୁ କୃତି ସନ୍ତାନଙ୍କ କୃତି ଓ କୃତିତ୍ୱକୁ ଲୋକ ଲୋଚନକୁ ଆଣିବାରେ ତାଙ୍କର ସଫଳତା ଅବଶ୍ୟ ସ୍ମରଣୀୟ ।

ଶ୍ରୀମାନ୍ ସୁଦର୍ଶନ ଯେପରି ବିଦ୍ୱାନ୍ ସେହିପରି ବହୁ ସଦ୍‌ଗୁଣସଂପନ୍ନ । ସେ ମିଷ୍ଟଭାଷୀ, ଉଦାର ଓ ନିରହଙ୍କାର । ତାଙ୍କପରି ଛାତ୍ରବତ୍ସଳ ଗୁରୁଜନଙ୍କ ପ୍ରତି ଭକ୍ତି ଭାବାପନ୍ନ, କୃତଜ୍ଞ ବ୍ୟକ୍ତି ଏ ଯୁଗରେ ବିରଳ । ବନ୍ଧୁ ଡକ୍ଟର ନଟବର ସାମନ୍ତରାୟଙ୍କ କେତେକ ଗ୍ରନ୍ଥକୁ ମୁଦ୍ରଣ କରାଇବାରେ ସେ ତାଙ୍କୁ ବହୁଭାବରେ ସାହାଯ୍ୟ କରିଅଛନ୍ତି । ମୋତେ ମଧ୍ୟ ସେହିପରି ସୁରଙ୍ଗୀର ଭୂତପୂର୍ବ ରାଜା ଜୀବନବନ୍ଧୁ ରାଜ ହରିଚନ୍ଦନଙ୍କ ସଂପର୍କରେ ଏକ ଆଲୋଚନାତ୍ମକ ପୁସ୍ତକ ରଚନା କରିବା ବିଷୟରେ ସେ ବହୁ ସାହାଯ୍ୟ କରିଛନ୍ତି । ମୋ ଅନୁରୋଧକ୍ରମେ ସେ ମୋତେ ନେଇ ସୁରଙ୍ଗିର ଭଗ୍ନରାଜପ୍ରାସାଦ ପ୍ରଭୃତି କେତେକ ସ୍ଥାନ ମଧ୍ୟ ଦେଖାଇ ଥିଲେ ।

ଚଳିତ ଶତାବ୍ଦୀର ୧ମ ଦଶକରେ କବି ଶେଖର ଚିନ୍ତାମଣି ମହାନ୍ତି ସୁରଙ୍ଗିର ତତ୍‌କାଳୀନ ରାଜା ଚନ୍ଦ୍ରଚୂଡାମଣି ହରିଚନ୍ଦନଙ୍କର ଥିଲେ ପ୍ରିୟପାତ୍ର ଓ ସୁରଙ୍ଗୀ ସଂପର୍କରେ ଏକ କାବ୍ୟ ରଚନା କରିଥିଲେ । ଏହା ୧୯୧୨ ମସିହାରେ ମୁଦ୍ରିତ ହୋଇଥିଲା । ଏହି କାବ୍ୟରେ ଚିନ୍ତାମଣି ସୁରଙ୍ଗୀର ରାଜକବି ଚୈତନ୍ୟଚନ୍ଦ୍ର ଓ ଦୀନବନ୍ଧୁଙ୍କ ବିଷୟରେ ବିଶଦଭାବେ ବର୍ଣ୍ଣନା କରିଅଛନ୍ତି । ତାଙ୍କ ଆତ୍ମଚରିତ ଜୀବନ ପଞ୍ଜିକାରେ ମଧ୍ୟ ସେ ରାଜକବି ଦୀନବଂଧୁଙ୍କ ଦ୍ୱାରା ମତ୍ସ୍ୟ ମଣ୍ଡପ, କୂର୍ମ ମଣ୍ଡପ, ଜଗଚିମଣ୍ଡପ ପ୍ରଭୃତି ଦେଖିଥିବା ବିଷୟ ଉଲ୍ଲେଖ କରିଅଛନ୍ତି । ଦୀନବନ୍ଧୁଙ୍କ ନିର୍ଦ୍ଦେଶରେ ନିର୍ମିତ ସେସବୁ ଦେଖିବାକୁ ମୁଁ ଥିଲି ଆଗ୍ରହୀ । ମାତ୍ର ଆମେ ସେଠାରେ ସେସବୁ ଦେଖିବାକୁ ପାଇନଥିଲୁ । କାଳକ୍ରମେ ସେସବୁ ବିନଷ୍ଟ ହୋଇଯାଇଥିଲା । ଚଳିତ ଶତାବ୍ଦୀର ପ୍ରଥମ ଦଶକରେ ସୁରଙ୍ଗୀର ରାଜା ଚନ୍ଦ୍ରଚୂଡାମଣି ସୁରଙ୍ଗୀ ପରିବର୍ତ୍ତେ ଇଚ୍ଛାପୁରମ୍‌ରେ ସ୍ଥାୟୀ ଭାବରେ ଯାଇ ରହିଥିଲେ । ସୁରଙ୍ଗୀର ପୂର୍ବତନ ରାଜଭବନ ପରିତ୍ୟକ୍ତ ହୋଇପଡିଲା; ସୁରଙ୍ଗୀର ବିଭବ କ୍ରମେ ବିନଷ୍ଟ ହୋଇଗଲା । ସେଇ ଭଗ୍ନ ରୂପହିଁ ଆମେ ସେଦିନ ଦେଖିବାକୁ ପାଇଥିଲୁ । ରାଜପ୍ରାସାଦ ପରିସରରେ ଏବେ ଏକ ବିଦ୍ୟାଳୟ ପରିଚାଳିତ ହେଉଛି । ସେଇଛୋଟ ଜନପଦରେ ଏବେ ମଧ୍ୟ କେତୋଟି ମଠ ଓ ମନ୍ଦିର ଅତୀତ ଗୌରବର ସାକ୍ଷ୍ୟ ପ୍ରଦାନ କରୁଛି । ରାଜା ଦୀନବନ୍ଧୁଙ୍କ ସଂପର୍କରେ, ଆମର ସ୍ୱଳ୍ପ ଅବସ୍ଥାନ ମଧ୍ୟରେ, ସେହି ସ୍ଥାନର କେତକଙ୍କ ସହ ଆଳାପ ହୋଇଥିଲା । ମାତ୍ର ତାଙ୍କ ସଂପର୍କରେ କୌଣସି କିମ୍ବଦନ୍ତୀ ବା ସେକାଳର କିଛି ପୁରାତନ ଉପକରଣ ବା ଉପାଦାନ ସଂଗ୍ରହ କରିବା ଆମପକ୍ଷରେ ସମ୍ଭବ ହୋଇନଥିଲା । କବିଶେଖର ତାଙ୍କ ଆତ୍ମଚରିତରେ ସେ ରାଜାଙ୍କ ଗନ୍ତାଘରୁ ୫୨ଟି ଅପ୍ରକାଶିତ କାବ୍ୟ ପୋଥି ସଂଗ୍ରହ କରିଥିବା ବିଷୟ ଲେଖି ଅଛନ୍ତି ।

ଯାହା ହେଉ, ସୁରଙ୍ଗୀକୁ ଯିବା ମୋ ପକ୍ଷେଥିଲା ଶିକ୍ଷାପ୍ରଦ ଓ ଆନନ୍ଦଦାୟକ । ସେଠାରୁ ଫେରିବା ବେଳେ ବାଟରେ ଗୋଟିଏ ସ୍ଥାନରେ ଅନୁଷ୍ଠିତ ହେଉଥିବା ଗଞ୍ଜାମ ଅଞ୍ଚଳର ବୈଶିଷ୍ଟ୍ୟ 'ପ୍ରହ୍ଲାଦ ନାଟକ' କିଛି ସମୟ ପାଇଁ ଆମେ ଦେଖିଥିଲୁ । ରାତି ହୋଇଯାଇଥିବାରୁ ସୁଦର୍ଶନଙ୍କ ଗ୍ରାମକୁ ଯିବା ସମ୍ଭବ ହେଲାନାହିଁ । ଆମର ଏଇ ସୁରଙ୍ଗୀ ଯାତ୍ରାର ସହଯାତ୍ରୀ ଥିଲେ ଅଧ୍ୟାପକ ଶ୍ରୀ ବ୍ରହ୍ମାନନ୍ଦ ସିଂହ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପାଇଁ ମୁଁ ଦୀନବନ୍ଧୁ ରାଜାଙ୍କ ସଂପର୍କରେ ପ୍ରସ୍ତୁତ କରିଥିବା ପାଣ୍ଡୁଲିପି ଏ ପର୍ଯ୍ୟନ୍ତ ଛାପା ହୋଇନଥିଲେ ହେଁ ଶ୍ରୀମାନ ସୁଦର୍ଶନଙ୍କ ଯୋଗୁଁ ସୁରଙ୍ଗୀ ଓ ପରେ ଏକ ଦେବୀପୀଠକୁ ଯିବା ମୋ ପକ୍ଷେ ସମ୍ଭବ ହୋଇଥିଲା । ଏବେ ମଧ୍ୟ ତାହା ସ୍ମରଣୀୟ ହୋଇ ରହିଛି । ଏହା ଏକ ସାମାନ୍ୟ ବିଷୟ ମନେ ହୋଇପାରେ । ମାତ୍ର ଏତିକି

ସାହାଯ୍ୟ ସହଯୋଗ ମଧ୍ୟ ଏବର ଛାତ୍ରଙ୍କଠାରୁ ଜଣେ ଶିକ୍ଷକ ପାଇବା ସମ୍ଭବ ନୁହେଁ ବୋଲି ମୋର ଅନୁମାନ ।

ଏବେ ପରିସ୍ଥିତି ବଦଳି ଯାଇଛି । ଶିକ୍ଷକ ଓ ଛାତ୍ର ସଂପର୍କରେ ଅବନତି ଦେଖାଦେଇଛି । ମାତୃଭାଷା ଓ ସାହିତ୍ୟପ୍ରତି ଯେଉଁ ସଂପ୍ରୀତି ଅତୀତରେ ପରିଲକ୍ଷିତ ହେଉଥିଲା, ତାହା ଆଜି ଶିଥିଳ । କାବ୍ୟ-କୌଶଳ ପରିବର୍ତ୍ତେ ବିଜ୍ଞାନ ଓ କାରିଗରୀ କୌଶଳ, ବିଦେଶୀ ଭାଷାଶିକ୍ଷାପ୍ରତି ଜନମାନସରେ ସୃଷ୍ଟି ହୋଇଛି ପ୍ରଚୁର ଆଗ୍ରହ । ବିଷୟ ଭୋଗ, ଅର୍ଥ ଉପାର୍ଜନ ଆଜି ଜୀବନର ଲକ୍ଷ୍ୟ ହୋଇପଡିଛି । କମି ଯାଇଛି ସାହିତ୍ୟ, କାରୁକଳା ଓ ରମ୍ୟବୋଧ ପ୍ରତି ମମତା । ଏପରି ଅବସ୍ଥାରେ ପ୍ରାଚୀନ ସଂସ୍କୃତି ଓ ସାଂସ୍କୃତିକ ମୂଲ୍ୟବୋଧକୁ ଜୀବନରେ ଗୁରୁତ୍ୱ ଦେଇ ଆସିଥିବା ଶ୍ରୀମାନ ସୁଦର୍ଶନଙ୍କ ଭଳି ବହୁବିଦ୍ୱାନ ଓ ସଜ୍ଜନଙ୍କ ମନରେ ଅବସାଦ ଜନ୍ମିବା ସ୍ୱାଭାବିକ । ନିଜ ଅନୁଭବରୁ ମୁଁ ଏହା ହୃଦୟଙ୍ଗମ କରି ପାରୁଛି । ତଥାପି ମୋର ବିଶ୍ୱାସ, ଏ ଅବସ୍ଥାର ପରିବର୍ତ୍ତନ ଘଟିବ ।

*ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)*
*ଗୀତିକା,*
*ଜୟଦେବନଗର, ଭୁବନେଶ୍ୱର ।*

# ବଂଧୁ ସୁଦର୍ଶନ, ସୁଦର୍ଶନ

ପ୍ରାୟ ଛଅ ଫୁଟ ଉଚ୍ଚତା ବିଶିଷ୍ଟ ସୌମ୍ୟ ସୁନ୍ଦର ମାର୍ଜିତ ରୁଚି, ପ୍ରଜ୍ଞାବିମଣ୍ଡିତ, ଶାନ୍ତଶିଷ୍ଟ ମିତଭାଷୀ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ ବିମଣ୍ଡିତ ସେହି ବ୍ୟକ୍ତିଟି ହଜାର, ହଜାର ଲୋକଙ୍କ ମଧ୍ୟରେ ସହଜରେ ବାରି ହୋଇଯାଏ । ପ୍ରାଜ୍ଞ, ସମନ୍ୱିତ ଏବଂ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ କହିଲେ ଯାହା ବୁଝାଏ ସେହିସବୁ ଗୁଣର ଅଧିକାରୀ ସେହି ବ୍ୟକ୍ତି ଜଣଙ୍କୁ ଅତି ନିକଟ ଦୂରତ୍ୱରୁ ପରଖି ନଦେଖିଲେ ତାଙ୍କୁ ଜାଣିବା ସହଜ ନୁହେଁ । ସମୁଦ୍ରର ଅଥଳ ସୁଗଭୀର ଜଳରାଶି ଭିତରେ ଲୁଚି ରହିଥିବା ମଗ୍ନମୈନାକ ଭଳି ଏହି ଅସାଧାରଣ ପ୍ରତିଭାବାନ ବ୍ୟକ୍ତିତ୍ୱ । ପ୍ରକୃତିର ସମସ୍ତ ଐଶ୍ୱର୍ଯ୍ୟ, ସୁଗୁଣ ଓ ପ୍ରଜ୍ଞାର ଅଧିକାରୀ ହୋଇଥିଲେ ସୁଦ୍ଧା ସଂଭ୍ରମ ଶାଳୀନତା, ଶିଷ୍ଟାଚାର, ଭଦ୍ରତା, ବିଶ୍ୱସନୀୟ ବଂଧୁତା, କର୍ତ୍ତବ୍ୟନିଷ୍ଠା ଓ ବଚନ ବଦ୍ଧତାର ଅସାଧାରଣ ଏବଂ ଅଲୌକିକ ସମନ୍ୱୟ ତାଙ୍କ ବ୍ୟକ୍ତିତ୍ୱକୁ ମହନୀୟ ଓ ଗାରିମାମୟ କରିବାରେ ସମର୍ଥ ହୋଇଛି । ବର୍ତ୍ତମାନର ମିଥ୍ୟାଚାର ଓ ଶଠତାପୂର୍ଣ୍ଣ ସମାଜରେ ସୁଦର୍ଶନ ପରି ଜଣେ ବଂଧୁ ପାଇବା ପରମ ସୌଭାଗ୍ୟର ବିଷୟ ବୋଲି ଦୃଢ଼ଭାବରେ କୁହାଯାଇପାରେ । ମୁଁ ନିଜକୁ ଗର୍ବିତ ଓ ଗୌରବାନ୍ୱିତ ମନେ କରୁଛି ଯେ ସେ ମୋର ବାଲ୍ୟବଂଧୁ ଏବଂ ସହପାଠୀ । ବହୁ ଏକାନ୍ତ ଏବଂ ଗୋପନୀୟ ମୁହୂର୍ତ୍ତର ପରମସାଖ୍ୟ ଏବଂ ନିବିଡ ଆତ୍ମୀୟତାର ଅନୁଭୂତି ଆମକୁ ମୁଗ୍ଧ ଚକିତ ଓ ବିମୋହିତ କରିଛି । ସେସବୁର ବର୍ଣ୍ଣନା ବା ବିଶ୍ଳେଷଣ ପାଇଁ ଏହି କ୍ଷୁଦ୍ର ଲେଖାଟି ଉପଯୁକ୍ତ ଆଧାର ନୁହେଁ । ବାରାନ୍ତରେ ତାହା ପ୍ରକାଶ କରାଯାଇ ପାରେ । ପରଶ ପଥରର ସଂସ୍ପର୍ଶରେ ଶୁଦ୍ଧ ସୁବର୍ଣ୍ଣ ଯେପରି ଉଦ୍‌ଭାସିତ ହୋଇଥାଏ, ଠିକ୍ ସେହିଭଳି ତାଙ୍କ ସାହଚର୍ଯ୍ୟ ଲାଭ କଲେ ଜଣେ ସାଧାରଣ ବ୍ୟକ୍ତିର ଚରିତ୍ରରେ ମଧ୍ୟ ଅଦ୍ଭୁତ ବିବରେନି ସଂଘଟିତ ହୋଇଥାଏ । ଏତିକି କହିଲେ ଯଥେଷ୍ଟ ହେବଯେ ତାଙ୍କର ଚରିତ୍ର ଏବଂ ବ୍ୟକ୍ତିତ୍ୱର ମହନୀୟତାକୁ ଏଭଳି ଗୋଟିଏ କ୍ଷୁଦ୍ର ଲେଖା ମାଧ୍ୟମରେ ପ୍ରକାଶ କରିବା ଅସମ୍ଭବ ।

ପୁରୁଷାନୁ କ୍ରମେ ସେ ଅଗାଧ ପାଣ୍ଡିତ୍ୟ ଓ ପ୍ରଜ୍ଞାର ଅଧିକାରୀ । ତାଙ୍କର ପିତା ଯତିରାଜ ଆଚାର୍ଯ୍ୟ ସଂସ୍କୃତ ସାହିତ୍ୟ, ଜ୍ୟୋତିର୍ବିଦ୍ୟା ଏବଂ ବ୍ୟାକରଣ କ୍ଷେତ୍ରରେ ଜଣେ କୃତବିଦ୍ୟ ପଣ୍ଡିତ, କବି ଏବଂ ଶାସ୍ତ୍ରଜ୍ଞ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କ ଦ୍ୱାରା ରଚିତ ଅଧିକାଂଶ ଗ୍ରନ୍ଥ ପ୍ରକାଶିତ ହୋଇପାରିନାହିଁ । ସେଗୁଡିକ ପ୍ରକାଶିତ ହେଲେ ସଂସ୍କୃତ ସାହିତ୍ୟର ଅନ୍ୟ ପ୍ରଖ୍ୟାତ କବି ମାନଙ୍କ ସମକକ୍ଷ ଆସନରେ ସେ ଅଧିଷ୍ଠିତ ହେବେ । ସୁଦର୍ଶନ ଆଚାର୍ଯ୍ୟ ତାଙ୍କ ପିତାଙ୍କର ଉପଯୁକ୍ତ ଦାୟାଦ । ପିତାଙ୍କର ପାଣ୍ଡିତ୍ୟ, ନିଷ୍ଠା, ଜ୍ଞାନ, ଉଦାରତା, ସାହିତ୍ୟାନୁରାଗ ଏବଂ ନୂତନ ଦିଗନ୍ତର ଆବିଷ୍କାର ଜନିତ ଉତ୍‌କଣ୍ଠା ତାଙ୍କ ଭିତରେ ଭରପୂର ହୋଇ ରହିଛି । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡିଆ ସାହିତ୍ୟ ବିଶେଷ କରି କାବ୍ୟଗୁଡିକର ପାଣ୍ଡୁଲିପିର ଶୁଦ୍ଧ ସଂସ୍କରଣ ପ୍ରସ୍ତୁତି, ସେ ଗୁଡିକର ଉଦ୍ଧାର, ଉଚ୍ଚକୋଟୀର ଟୀକା ପ୍ରସ୍ତୁତି ଏବଂ

ପ୍ରକାଶନ କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଭୂମିକା ଅବିସ୍ମରଣୀୟ । ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟଗୁଡିକୁ ଗଭୀର ଭାବେ ଅଧ୍ୟୟନ କରି ସେ ଯେପରି ଭାବରେ ତାହାର ସମୀକ୍ଷା ଓ ବିଶ୍ଳେଷଣ କରିଛନ୍ତି ତାହା ବାସ୍ତବରେ ଅନୁସରଣୀୟ । ଗଂଜାମର ପ୍ରାଚୀନ ଓ ମଧ୍ୟଯୁଗୀୟ କବି, ସାହିତ୍ୟିକ ଓ ନାଟ୍ୟକାର ମାନଙ୍କର ଅପ୍ରକାଶିତ ଲେଖାଗୁଡିକୁ ଲୋକଲୋଚନକୁ ଆଣିବା ଏବଂ ସେଗୁଡିକର ପ୍ରକାଶ କ୍ଷେତ୍ରରେ ତାଙ୍କର ଅବଦାନର ଭୂୟସୀ ପ୍ରଶଂସା କରାଯିବା ଉଚିତ । ରାମଚନ୍ଦ୍ର ଆଚାର୍ଯ୍ୟ ଗ୍ରନ୍ଥାବଳୀ ପ୍ରକାଶ କ୍ଷେତ୍ରରେ ସେ ପ୍ରଶଂସନୀୟ ଭୂମିକା ଗ୍ରହଣ କରିଛନ୍ତି । ତାଙ୍କର ନେତୃତ୍ୱ ଏବଂ ଆଦର୍ଶ ଦିଗ୍‌ଦର୍ଶନରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆର୍ଥିକ ଅନୁଦାନ ଲାଭ କରି ଗଠିତ ହୋଇଥିବା ଆଞ୍ଚଳିକ ଭାଷା ଓ ସାହିତ୍ୟ ଗବେଷଣା କେନ୍ଦ୍ର ଓଡିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିବାରେ ସମର୍ଥ ହୋଇପାରିଛି ।

ତାଙ୍କର ଉଚ୍ଚକୋଟୀର ଗବେଷଣାତ୍ମକ ଗ୍ରନ୍ଥ 'ଓଡିଆ କାବ୍ୟ କୌଶଳ' ତାଙ୍କର ଅଗାଧ ପାଣ୍ଡିତ୍ୟ, ବିବିଧ ଗ୍ରନ୍ଥ ଅଧ୍ୟୟନ, ନିଷ୍ଠା, ଆନ୍ତରିକତା, ଓଡିଆଭାଷାରେ ଅସାଧାରଣ ଦକ୍ଷତା ଏବଂ ସଂସ୍କୃତ କାବ୍ୟ ସାହିତ୍ୟରେ ଗଭୀର ଜ୍ଞାନର ସ୍ୱାକ୍ଷର ବହନ କରେ । ଏହା ବ୍ୟତୀତ ସେ ବହୁ ଉପନିଷଦୀୟ ଗଳ୍ପର ରୁଚିପୂର୍ଣ୍ଣ ଓଡିଆ ଅନୁବାଦ ପ୍ରକାଶ କରିଛନ୍ତି । କାବ୍ୟ ସାହିତ୍ୟ, ଓଡିଆ ଭାଷା ଓ ସାହିତ୍ୟର ଇତିହାସ ଏବଂ ସମୀକ୍ଷା ସଂପର୍କିତ ତାଙ୍କର ଲେଖାଗୁଡିକ ଉଚ୍ଚ ପ୍ରଶଂସିତ । ତାଙ୍କ ତତ୍ତ୍ୱାବଧାନରେ ବହୁ ଛାତ୍ର ପିଏଚ.ଡି ଏବଂ ଡି.ଲିଟ୍ ଡିଗ୍ରୀ ଲାଭ କରିଛନ୍ତି । ଗୁରୁଙ୍କ ପ୍ରଜ୍ଞା ଏବଂ ଜ୍ଞାନଗରିମାର ବାସ୍ତବ ସମୀକ୍ଷକ ଦେଉଛନ୍ତି ସେହି ଛାତ୍ର, ଛାତ୍ରୀ ଯେଉଁମାନେ ତାଙ୍କର ଆଧ୍ୟାତ୍ମିକ ଓ ବୌଦ୍ଧିକ ସାନିଧ ଲାଭ କରିବାର ସୁଯୋଗ ପ୍ରାପ୍ତ ହୋଇଛନ୍ତି । ଅତିକମ୍ ବୁଦ୍ଧିସଂପନ୍ନ ବ୍ୟକ୍ତି ବର୍ତ୍ତମାନ ସମାଜରେ ଦଲାଲୀ କରି ବା ପ୍ରଚାର ମାଧ୍ୟମର ଅନୁପଯୁକ୍ତ ପ୍ରୟୋଗ ସାହାଯ୍ୟରେ ନିଜକୁ ବହୁଧା ପ୍ରଚାରିତ, ପ୍ରସାରିତ କରି ଉଚ୍ଚ ଆସନ ଲାଭ କରନ୍ତି ବା ସମ୍ମାନ ଓ ପୁରସ୍କାରରେ ବିମଣ୍ଡିତ ହୋଇଥାନ୍ତି । କାଳରେ କରାଳ ବକ୍ଷରେ ବିଲୀନ ହେବା ସେମାନଙ୍କ ପକ୍ଷରେ ସ୍ୱୟଂସିଦ୍ଧ ଘଟଣା । ସୁଦର୍ଶନପରି ନିଷ୍ଠାବାନ, ନିରବ ସାଧନାରେ ଯେଉଁମାନେ ବ୍ରତୀ, ସେମାନେ ନିଜକୁ ପ୍ରଚାରିତ କରିବାରେ ବା ପୁରସ୍କାର ଏବଂ ଉପଢୌକନ ପାଇଁ ଦଲାଲୀ କରିବାରେ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ କାଳ ବକ୍ଷରେ ସେମାନଙ୍କର ପଦାଙ୍କ ଚିର ଭାସ୍ୱର ହୋଇରହେ ।

ବଂଧୁ ସୁଦର୍ଶନଙ୍କ ଷଷ୍ଠୀ ପୂର୍ତ୍ତି ଉତ୍ସବ ଅବସରରେ ମୁଁ ତାଙ୍କର ଦୀର୍ଘ ନିରାମୟ ଏବଂ ସାର୍ଥକ ଓ ସୃଜନଶୀଳ ଜୀବନର କାମନା କରୁଛି ।

*ପ୍ରଫେସର ହରିହର ଦାସ*
*ରାଜନୀତି ବିଜ୍ଞାନ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।*

# ଜ୍ଞାନ-ଦର୍ଶନରେ ସୁଦର୍ଶନୀୟ "ଡକ୍ଟର ସୁଦର୍ଶନ"।

ବୌଦ୍ଧିକ ପ୍ରାଣୀ ରୂପେ ମାନବ ଜୀବନର ସାର୍ଥକତାର ପରିଚାୟକ ହେଉଛି ଜ୍ଞାନ ଓ ଆଚାର । ଅନ୍ୟ ଭୌତିକ ପଦାର୍ଥ ତାର ସାର୍ଥକତାର ଅଳଙ୍କାର ନୁହେଁ । ଆର୍ଯ୍ୟନୀତି ପ୍ରକାରେ "ବାଣ୍ୟେକା ସମଳଂ କରୋତି ପୁରୁଷଂ ଯା ସଂସ୍କୃତା ଧାର୍ଯ୍ୟତେ" । ମନୁଷ୍ୟ ପାଇଁ ବାଣୀ ହିଁ ମାନବତାର ଏକ ମାତ୍ର ସମ୍ବଳ । ଏହିବାଣୀ, ସରସ୍ୱତୀ ବା ଜ୍ଞାନ ହିଁ ମନୁଷ୍ୟର ଶ୍ରେଷ୍ଠ ଓ ଶେଷ ପୁରୁଷାର୍ଥ ପ୍ରାପ୍ତିର ପାଥେୟ । ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିଜ ଗୀତା ମୁଖରେ କହିଛନ୍ତି ଯେ - "ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ -" ଗୀତା(୭-୧୯) । ଜନ୍ମାନ୍ତର ତତ୍ତ୍ୱ ସମ୍ବଳିତ ଆମର ଆର୍ଯ୍ୟ ଦର୍ଶନ, ଏହି ଜ୍ଞାନାଚାର ହିଁ ମନୁଷ୍ୟର ଜନ୍ମାନ୍ତର ଭିତ୍ତିଭୂମି ସୃଷ୍ଟି କରୁଥିବା ରହସ୍ୟ ଉଦ୍‌ଘାଟନ କରି ତାର ଅନିବାର୍ଯ୍ୟତାକୁ ବେଦ-ବେଦାନ୍ତରେ ପରିପ୍ରକାଶ କରିଛି ।

ତେଣୁ ଜ୍ଞାନ ହିଁ ଦର୍ଶନ ଏବଂ ଏହିଜ୍ଞାନକୁ କୌଶଳ ପୂର୍ଣ୍ଣ ଦୃଷ୍ଟିରେ ଦେଖିବା ହେଲା "ସୁଦର୍ଶନ" । ଜ୍ଞାନାର୍ଜନର ଚରମ ସୋପାନରେ ଉପନୀତ କରାଇବା ପ୍ରକୃତ ଓ ପ୍ରକୃଷ୍ଟ ମାଧ୍ୟମ ହେଉଛି ଜ୍ଞାନ ଆହରଣର ଉପଯୁକ୍ତ କୌଶଳ । କୌଶଳ ବିନା ଜ୍ଞାନରେ ସୃଜନଶୀଳତା ସୃଷ୍ଟି ହେବା ଏକାନ୍ତ ଅସମ୍ଭବ, ଏବଂ ସୃଜନ ଶୀଳତା ହେଲା ଜ୍ଞାନର ପରିପକ୍ୱ ପରିଣତି ।

ନିଜ ମାତୃଭାଷାର ଜ୍ଞାନ ହେଉଛି ଆମ ପାଇଁ ପ୍ରଥମ ଜ୍ଞାନ । ଆମ ଓଡିଶା ବାସୀଙ୍କ ମାତୃ ଭାଷା ଓଡିଆ ଏବଂ ତାର କୌଶଳ ପୂର୍ଣ୍ଣ ସମୁଚ୍ଚ ସ୍ଥିତି ହେଉଛି ଓଡିଆ ସାହିତ୍ୟ । "ହିତେନସହ ବର୍ତ୍ତମାନଃ ଯଃ ତସ୍ୟ ଭାବଂ ସାହିତ୍ୟଂ" ଏହି ବ୍ୟୁତ୍ପତ୍ତି ପ୍ରକାରେ ସାହିତ୍ୟ ହେଉଛି ହିତସାଧନର ଦିଗଦର୍ଶକ । ସାହିତ୍ୟରେ ସୃଜନଶୀଳତାର ଦିଗ୍‌ଦର୍ଶନ ଦେବା ଯୋଗ୍ୟତା ସମାଜରେ ସମାଦୃତ ଓ ସମ୍ମାନିତ ହୋଇଥାଏ । ଏହି ଯୋଗ୍ୟତା ସ୍ଥାୟୀ ଭାବନିଧି ରୂପେ ପୃଷ୍ଟପୋଷକତା ଯୋଗାଉ ଥିବା କୃତି ତାର ଆବଶ୍ୟକ କୌଶଳ ଓ ରଚନା ପାଟବ ଉପରେ ନିର୍ଭର କରେ ।

ସାହିତ୍ୟରେ ରଚନା ପାଟବ ଓ କୌଶଳ ଭିତ୍ତିକ ସୃଜନଶୀଳତା ହେଉଛି କାବ୍ୟରଚନା । କାବ୍ୟରଚନା ପ୍ରାଣବନ୍ତ ଓ ରୁଚିମନ୍ତ ରୂପେ ସମାଦୃତ ହୋଇଥାଏ, ଯଦି ସେ କାବ୍ୟର ସ୍ୱରୂପ ତାର ରଚନା କୌଶଳାଳଙ୍କାରରେ ବିଭାସିତ ହୁଏ । ଏହା ପୂର୍ବସୂରୀଗଣଙ୍କ କାବ୍ୟାଳଙ୍କାର ଗୁଡିକରୁ ଅନୁଭୂତ ।

କବି ତ ନିଶ୍ଚିତ ଭାବରେ ଜଣେ ସ୍ରଷ୍ଟା ଏହା ଏକ ଅନୁଭୂତ ସିଦ୍ଧ ତଥ୍ୟ । ସାହିତ୍ୟର ଏହି ସ୍ରଷ୍ଟାଗଣଙ୍କୁ କାବ୍ୟ ରଚନାର କୌଶଳ ରୂପୀ ସ୍ଥାୟୀ ରତ୍ନ ଭଣ୍ଡାର ଉନ୍ମୁକ୍ତ କରି ଦେଇଥିବା "ଓଡିଆ କାବ୍ୟ କୌଶଳ"ର ପ୍ରଣେତା ଡ. ସୁଦର୍ଶନ ଆଚାର୍ଯ୍ୟ ଜଣେ ମହତ୍ତର ସ୍ରଷ୍ଟାରୂପେ ଆମର ବରେଣ୍ୟ ଓ ଅଭିନନ୍ଦନୀୟ । ଓଡିଆ ସାହିତ୍ୟ ସୃଷ୍ଟିକୁ ରଚନା କୌଶଳରେ

ସଂଜୀବିତ କରି ଅମର ରୂପେ ପ୍ରତିଷ୍ଠିତ କରିବା ନିମିତ୍ତ ''ଓଡିଆ କାବ୍ୟ କୌଶଳ'' ଅମୃତ ନିସ୍ୟନ୍ଦନର ଏକ ଚିର ପ୍ରବହମାନ ସ୍ରୋତ । ଏହା ଅତ୍ୟୁକ୍ତି ନୁହେଁ ।

ଆଜିର ପରିପକ୍ୱ ସ୍ୱାଦିଷ୍ଟ ଫଳ ଯିଏ ସ୍ୱୟଂ ସୁଦର୍ଶନ ଆଚାର୍ଯ୍ୟ, ଦିନେ ଲୋକ ଲୋଚନର ଅଗୋଚରରେ ଥିବା ଏହି ସ୍ୱାଦିଷ୍ଟ ଫଳର ଚାରାଗଛ । କିଶୋର ବାଳକ, ଯିଏ କି ଘର ଓ ବାହାରେ ''ବାବୁ'' ନାମରେ ପରିଚିତ ଥିଲେ, ଏବଂ ସେହି ଚାରା ଗଛର ଛାୟା ଥିଲା ମୋ ପାଇଁ (ଏହି ଲେଖକର) ଏକ ଶୀତଳ ଆଶ୍ରୟର ସୁମହତ୍ ପୀଠ । ସିଏ ମୋ ଅତି ଆପଣାର ବରଂ ଚ ସେଥିଲେ ମୋ ନିରାଶ୍ରୟ ଜୀବନର ଆଲୋକ ଦିଗରେ ଉଠିବାର ତାତ୍କାଳିକ ପ୍ରଥମ ସୋପାନ ବା ମୋ ଜୀବନକୁ ବିକାଶ ଦିଗରେ ପଥ ପ୍ରଦର୍ଶନ କରୁଥିବା ପ୍ରଥମ ଆଲୋକ ବର୍ତ୍ତିକା । ବୟସରେ ସେ ମୋ ଠାରୁ ପ୍ରାୟ ଛଅ ବର୍ଷର କନିଷ୍ଠ ।

ଗୋଟିଏ ନିଃସ୍ୱ ପରିବାରର ପିତୃ ଛେଉଣ୍ଡଟିକୁ ଭରଣ ପୋଷଣ କରିବା ସଂଗେ ସଂଗେ ନିଜ ପୁତ୍ର ସୁଦର୍ଶନ ସହିତ ଉଚ୍ଚ ଇଂରେଜି ବିଦ୍ୟାଳୟରେ ପଢ଼ାଇବା ସଦିଚ୍ଛା ନେଇ ଏହାଙ୍କ ପିତା ସ୍ୱ. ଯତିରାଜାଚାର୍ଯ୍ୟ ପଣ୍ଡିତ ରାୟ ମୋ ପ୍ରତି ପୁତ୍ରବତ୍ ବାତ୍ସଲ୍ୟ ହୃଦୟର ଉଦାରତାରେ ମୋ ଜୀବନ ଶିକ୍ଷାଙ୍କୁରକୁ ଖାଦ୍ୟ ଓ ଜଳ ଦେଇ ସଫଳ ବୃକ୍ଷରେ ରୂପାୟିତ କରିଥିବା ତାଙ୍କ ହୃଦୟର ମହାନତା ଦୃଷ୍ଟିରୁ ସେ ମୋ ଧର୍ମର ପିତା । ସେହି ଧର୍ମ ପିତା ଓ ତାଙ୍କ ପୁତ୍ର ସୁଦର୍ଶନଙ୍କ ପାଇଁ ରୋଷେଇ କରି ଭୋଜନ ପରିବେଷଣ କରିବା ସହ ସ୍କୁଲରେ ସୁଦର୍ଶନଙ୍କ ସହିତ ପାଠ ପଢିବା ଥିଲା ମୋ ପଣ୍ଡିତଙ୍କର ମୋ ପ୍ରତି କର୍ତ୍ତବ୍ୟାଦେଶ । ସେ ଆଦେଶ ପାଳନ କରି ତାଙ୍କର ସେବା ସହିତ ପାଠ ପଢ଼ିବା ସମୟତକ ଥିଲା ମୋ ପାଇଁ ସୌଭାଗ୍ୟର ଏକ ମହନୀୟ ଆଶୀର୍ବାଦର ସମୟସ୍ରୋତ ।

ପଣ୍ଡିତଙ୍କ ବିମଳ ବାତ୍ସଲ୍ୟାଶୀର୍ବାଦ ପୁତ୍ର ସୁଦର୍ଶନ ଓ ମୋ ପ୍ରତି ସମାନୁପାତରେ ସଂଚରିତ ହେଉଥିଲା । ଫଳତଃ ସୁଦର୍ଶନ ନିଜ ଜ୍ଞାନ ଗବେଷଣାର ପ୍ରତିଭାରେ ଆଜି ସମାଜରେ ଡ.ଆଚାର୍ଯ୍ୟ ରୂପେ ପ୍ରତିଷ୍ଠିତ ଏବଂ ମୋ ପାତ୍ରଟି ସ୍ୱତଃ କ୍ଷୁଦ୍ର ଥିବାରୁ ମୁଁ ମଧ ସେ ଆଶୀର୍ବାଦର ନିର୍ଝର ଆଜି ମୋ କ୍ଷୁଦ୍ର ଲେଖନୀରେ ଓଡିଆ ଭାଷା ଅକ୍ଷରର କ୍ଷୁଦ୍ର ଝରଣା ସୃଷ୍ଟି କରିବା ସୌଭାଗ୍ୟ ଲାଭ କରିଛି । ମୋ ପଣ୍ଡିତଙ୍କ ପାଣ୍ଡିତ୍ୟ ପାଟବ ବର୍ଣ୍ଣନା କରିବା ମୋ ପରି ଅଧମ ଶିଷ୍ୟ-ପୁତ୍ର ପକ୍ଷେ ଏକାନ୍ତ ସାମର୍ଥ୍ୟାତୀତ ବିଷୟ । ତଥାପି ଏହା ବାହୁଲ୍ୟ ନୁହେଁ ଯେ ମୋ ପଣ୍ଡିତଙ୍କ ରଚିତ ''ମାଧବବିଳାସ'' ଓ ''କଳାକାରବିଳାସ'' ଦୁଇଟି ସଂସ୍କୃତ କାବ୍ୟ ଗ୍ରନ୍ଥ, ଆଜିର ପାଶ୍ଚାତ୍ୟ ବିଳାସ ଶୈଳୀରେ ଗଢ଼ି ଉଠୁଥିବା ପେଣ୍ଟ ପରିହିତ ଓ ଧୂମପାୟୀ ପଣ୍ଡିତ ଗଣଙ୍କର ଜ୍ଞାନ ପରିସର ମଧରେ ସହଜ ବୋଧଗମ୍ୟ ନୁହେଁ । ମୋ ପଣ୍ଡିତଙ୍କ ପରିବାର ପଣ୍ଡିତ ରାୟ ପରିବାର । ଜରଡା ସୁବର୍ଣ୍ଣପୁର ଗ୍ରାମର ଚାରିଗୋଟି ଆଚାର୍ଯ୍ୟ ପରିବାର ମଧରୁ ମୋ ପଣ୍ଡିତଙ୍କ ପରିବାରକୁ ହିଁ ''ପଣ୍ଡିତ୍ରିହର ଘର'' ବୋଲି ଗ୍ରାମୀଣ ଅଶିକ୍ଷିତ ଲୋକେକହୁଥିଲେ । ପିତା ପୁତ୍ର ପରମ୍ପରା କ୍ରମେ ଡ. ସୁଦର୍ଶନ ତାଙ୍କ ପଣ୍ଡିତ ପୂର୍ବପୁରୁଷଙ୍କ ସପ୍ତମ ପିଢିର ଶେଷ ପଣ୍ଡିତ ପୁତ୍ର ।

ବ୍ୟକ୍ତିଗତ ପ୍ରଚେଷ୍ଟାରେ ଡ. ଆଚାର୍ଯ୍ୟଙ୍କ ଦ୍ୱାରା ସଂଗୃହୀତ ତଥା ସଂସ୍ଥାପିତ ପାରିବାରିକ ସୁମହତ୍ ଓ ସୁବୃହତ୍ ଗ୍ରନ୍ଥାଗାର ଏକ ଗ୍ରନ୍ଥପଣ୍ଡିତ, ଯିଏ କି ଆଗାମୀ ବହୁଯୁଗ ପାଇଁ ବହୁ ତଥ୍ୟରେ ବହୁ ମଣିଷ ପଣ୍ଡିତ ସୃଷ୍ଟି କରିବାରେ ସମର୍ଥ । ମଣିଷ ପଣ୍ଡିତ ନିଜର ସୀମିତ ଆୟୁଷାଙ୍କ ମଧ୍ୟରେ ନିଜର ପାଣ୍ଡିତ୍ୟ ପ୍ରଭାବରେ କତିପୟ ମାତ୍ର ପଣ୍ଡିତ ସୃଷ୍ଟି କରିବା ସମ୍ଭବ, କିନ୍ତୁ ଡ.ଆଚାର୍ଯ୍ୟଙ୍କ ଦ୍ୱାରା ସୃଷ୍ଟି ଗ୍ରନ୍ଥପଣ୍ଡିତ ବହୁଯୁଗ ବ୍ୟାପୀ ଏକ ଅମର ପଣ୍ଡିତ ।

ସାହିତ୍ୟର ଅନ୍ତର୍ନିହିତ ଗୂଢ ତତ୍ତ୍ୱ ଉଦ୍‌ଘାଟନ କରି ବିଶ୍ଳେଷଣାତ୍ମକ ଅଧ୍ୟାପନାରେ ଡ.ଆଚାର୍ଯ୍ୟ ଯେପରି ଧୂରୀଣ ତଥା ସାହିତ୍ୟକୁ ଅନାସକ୍ତଭାବେ ସମୀକ୍ଷା ଓ ନିରୀକ୍ଷା କରିବାରେ ସେ ଜଣେ ନିର୍ଭୀକ ସମାଲୋଚକ । ମୋର ''ଭକ୍ତି ଭାରତୀ'' ବହିର ମନ୍ତବ୍ୟ ହାତ ଲେଖାକୁ ଦେଖି ମୁଁ ଆତ୍ମୀୟତାତିଶଯ୍ୟରେ ମନ୍ତବ୍ୟଟି କିଛି ମାତ୍ରାରେ ଅତିରଞ୍ଜିତ ହୋଇଥିବ ପରା ବୋଲି ତାଙ୍କ ଦୃଷ୍ଟିକୁ ଆଣିବାରେ ''ମୋ ମନ୍ତବ୍ୟରେ ଅତିରଞ୍ଜନର ପ୍ରଶ୍ନ ହିଁ ଉଠୁନାହିଁ ବୋଲି ସେ ଦୃଢ଼ କଣ୍ଠରେ କହିଥିଲେ । ଏବଂ ଏହା ଏକାନ୍ତ ଯଥାର୍ଥ । ଏଥିରୁ ସାହିତ୍ୟ ସମାଲୋଚନା ତଥା ଛାତ୍ରଙ୍କ ଖାତା ସମୀକ୍ଷାରେ ନିରପେକ୍ଷ ମନ୍ତବ୍ୟ ପ୍ରଦାନ କରିବା ତାଙ୍କ ଭାବମୂର୍ତ୍ତିର ସ୍ୱଭାବସୁଲଭ ନିର୍ଭୀକତା ପ୍ରମାଣିତ ହୁଏ । ବିଭାଗୀୟ କ୍ଷମତା ଆସନରେ ଅଧିରୂଢ଼ ଜଣେ ବ୍ୟକ୍ତି ଅନାସକ୍ତ ଭାବରେ ନିରପେକ୍ଷ ରହିବା ମାନବତାର ଏକ ଉଜ୍ଜ୍ୱଳ ଦିଗନ୍ତ, ଯାହା ଡ.ସୁଦର୍ଶନ ଆଚାର୍ଯ୍ୟଙ୍କ ସ୍ୱଭାବର ଏକ ନିଶ୍ଚିତ ନିଶ୍ଚଳ ଚରିତ୍ର ।

ତାଙ୍କ ତତ୍ତ୍ୱାବଧାନ, ପ୍ରେରଣା ଓ ସମୀକ୍ଷାରେ ଡକ୍ଟର ଉପାଧିପ୍ରାପ୍ତ ବ୍ୟକ୍ତିଗଣ ସାମାଜରେ ସମାଦୃତ ହୋଇ ଯଶସ୍ୱୀ ହେଉଥିବା ବିଷୟ, ତାଙ୍କ ଜ୍ଞାନ ଗବେଷଣାର କୀର୍ତ୍ତିସ୍ତମ୍ଭ ସଦୃଶ ଚିର ସ୍ମରଣୀୟ ।

ତାଙ୍କ ସାହିତ୍ୟ ଓ ଜ୍ଞାନ ଦର୍ଶନ, ଜୀବନ ସାହିତ୍ୟର ପଟ୍ଟଭୂମିରେ ଆଜୀବନ ସକ୍ରିୟ ରହିବ । ସେ ସୁସ୍ଥ ନିରାମୟ ଦୀର୍ଘ ଜୀବନ ଲାଭ କରନ୍ତୁ ଏବଂ ନିଜ ଜ୍ଞାନ ଦର୍ଶନର ଆଲୋକ ରଶ୍ମିରେ ସମାଜକୁ ତଥା ଆଲୋକିତ କରି ରଖନ୍ତୁ । ଏହା ହିଁ ଆଜିର ଅବସରରେ ତାଙ୍କ ପାଇଁ ବିଶ୍ୱନିୟନ୍ତା ପରମେଶ୍ୱରଙ୍କ ଶ୍ରୀଚରଣରେ ମୋର ସଭକ୍ତି ଜଣାଣ ।

ଅପରଂ ଚ ତାଙ୍କ ଦ୍ୱାରା ଗବେଷଣାପ୍ରସୂତ ଜ୍ଞାନଗ୍ରନ୍ଥ ଓ ତାଙ୍କ ଦ୍ୱାରା ସଂସ୍ଥାପିତ ଗ୍ରନ୍ଥାଗାର (ଗ୍ରନ୍ଥ ପଣ୍ଡିତ) ତାଙ୍କୁ ସଦୈବ ଅମର କରି ରଖିଥିବ । ଏହା ନିଶ୍ଚିତ ସତ୍ୟ ।

ଇତି

।। ହରିଃ ଓଁ ତତ୍‌ସତ୍ ।।

*ଜ୍ୟୋତିର୍ବିଦ ଶ୍ରୀ ନାରାୟଣ ପାଢୀ*
*ପାଲୁରୁବଙ୍ଗଳା, ବହ୍ମପୁର,*
*ଗଂଜାମ ।*

# ସୁନ୍ଦର ଶ୍ରୀ ସୁଦର୍ଶନ : ଗମ୍ଭୀର ଆଚାର୍ଯ୍ୟ

ଆଚାର୍ଯ୍ୟ ସାରଙ୍କ କଥା ପଡିଲେ, ଉକ୍ଳି ଉଠୁଥିଲା ଆମ ପିଲାମାନଙ୍କର ମୁହଁ । 'ଆଃ ! ଆଚାର୍ଯ୍ୟ ସାର : ଚେହେରା ଯେମିତି, ପଢ଼ାନ୍ତି ବି ସେମିତି । ମାତ୍ର ଟିକେ ଗମ୍ଭୀର । ଅଥଚ ସେ ମୁହଁରୁ କ୍ୱଚିତ୍ ହସ ଟିକକ ହାସଲ କରିବା ଥିଲା, ପିଲାମାନଙ୍କର ଦୁର୍ଲ୍ଲଭ ଭାଗ୍ୟ ଯେପରି ! ଭଂଜଭୂମି ଭଂଜନଗରରୁ ଯେଉଁ ଭ୍ରୁଣମାନେ ଭଂଜ ବିହାରରୁ ଦ୍ରୁମ ହୋଇଫେରୁଥିଲେ, ଏ ସବୁ ଥାଏ ସେଇ ପିଲାମାନଙ୍କର ଏକ ସାଧାରଣ ମନ୍ତବ୍ୟ । ଅଥଚ ୧୯୭୦ ରେ ଭଂଜନଗର କଲେଜରେ ଚାକିରୀକରି ବି, ୧୯୮୩ ପର୍ଯ୍ୟନ୍ତ ଆଚାର୍ଯ୍ୟ ସାର ଥିଲେ ମୋ' ପାଇଁ ଏମିତି ଜଣେ କିମ୍ବଦନ୍ତୀର ଚରିତ୍ର - ଯାହାଙ୍କୁ ସେ ଯାଏ ମୁଁ ଆଦୌ ଦେଖିନଥିଲି ।

ପ୍ରାୟ ଗୋଟାଏ ଯୁଗ ଅଧ୍ୟାପନା ପରେ ହଠାତ୍ ଦିନେ ଆଉ ଟିକେ ପଣ୍ଡିତ ହେବାକୁ ଇଚ୍ଛା ହେଲା । ଏଥିପାଇଁ ଜଣେ ଦିଗ୍‌ଦର୍ଶକ ଗୁରୁଙ୍କର ଅବଶ୍ୟ ଆବଶ୍ୟକତା; ବିଶ୍ୱବିଦ୍ୟାଳୟ ନିୟମର ଅନ୍ତର୍ଭୁକ୍ତ ହୋଇଥିବାରୁ ମୋ' ଦୃଷ୍ଟିରେ ଆଚାର୍ଯ୍ୟ ସାର ସେତେବେଳେ ଥିଲେ ସର୍ବୋତ୍ତମ ବ୍ୟକ୍ତି । ସେଦିନ ଥାଏ ୧୯୮୨ ଜୁଲାଇର ୧୧ ତାରିଖ । ଅଧ୍ୟାପକ ବଂଧୁ ଶ୍ରୀ ସୁବାସ ଜେନାଙ୍କ ସ୍କୁଟର ପଛରେ ଭଂଜବିହାରକୁ ଯାତ୍ରା ଏବଂ ସେଠାରେ ସୁଦର୍ଶନ ସାର୍‌ଙ୍କୁ ପ୍ରଥମ ଦର୍ଶନ - ମୋ ପାଇଁ ଥିଲା ଏକ ସ୍ୱପ୍ନାତୀତ ଅନୁଭବ । ସେଦିନ ମୋର ଦିଗ୍‌ଦର୍ଶକ ହେବା ନିମିତ୍ତ ଆଚାର୍ଯ୍ୟ ସାରଙ୍କର ତତ୍‌କ୍ଷଣାତ୍ ଅକୁଣ୍ଠ ସମ୍ମତି ବି ଥିଲା, ମୋ ଜୀବନରେ ସତେଯେପରି ଚରମ କୃତଜ୍ଞତାର ମୁହୂର୍ତ୍ତ । ସେଇ ବିଶାଳ ବ୍ୟକ୍ତିତ୍ୱର ପଦତଳେ ଅନ୍ତରର ସମସ୍ତ ଶ୍ରଦ୍ଧା ଓ ଭକ୍ତିକୁ ନିଃଶେଷ କରିଦେବାକୁ ଇଚ୍ଛା ହେଉଥିଲା ସେତେବେଳେ ।

ଗବେଷଣା ପାଇଁ ପ୍ରାରମ୍ଭିକ ପର୍ଯ୍ୟାୟ ଶେଷ ହୋଇଗଲା । ପଲ୍ଲୀକବି ନନ୍ଦକିଶୋର ଥିଲେ ମୋ ସନ୍ଦର୍ଭର ଈଶ୍ୱର । ମନ୍ଥର ଗତିରେ ତଥ୍ୟ ସଂଗ୍ରହ ଚାଲିଥାଏ ।,....... ଅକସ୍ମାତ ଏ ଭିତରେ ଭଂଜୀୟ ଗବେଷଣାତ୍ମକ ପତ୍ରିକା 'ବହିତ୍ର'ର ସଂପାଦନା ହେତୁ, ସେ କାର୍ଯ୍ୟ ପ୍ରାୟତଃ ପାଞ୍ଚ ବର୍ଷକାଳ ଭୁଲିହୋଇଗଲା । ହୁଏତ ସେଦିନ ଆଚାର୍ଯ୍ୟ ସାରଙ୍କ ତାଗିଦା ବିନା ମୋର ମୋହ ନିଦ୍ରା ଭାଂଗି ନଥାନ୍ତା ! ସୌଭାଗ୍ୟକୁ ୟୁ:ଜି:ସି:ର ଫେଲୋସିପ୍ ପାଇ ବ୍ରହ୍ମପୁରରେ ଯାଇ ଗୋଟାଏ ବର୍ଷ ଆତ୍ମଗୋପନ କରିବାକୁ ହେଲା । ଯାହା ଭଂଜନଗରରେ ଶେଷ ହେବା କଥା, ସେ କାମର ପୂର୍ଣ୍ଣଚ୍ଛେଦ ପଡିଲା ବ୍ରହ୍ମପୁରରେ । ଥେସିସ୍ ଲେଖାଟା ସରିଗଲା ।

ତା'ପରେ ବିପରୀତ ଦିଗନ୍ତର ଦୃଶ୍ୟ । ଭଂଜନଗରରେ ମୋ' ଜଞ୍ଜାଳ ଅପେକ୍ଷା ବ୍ରହ୍ମପୁରରେ ଆଚାର୍ଯ୍ୟସାରଙ୍କର ପ୍ରତ୍ୟେକ ମୁହୂର୍ତ୍ତ ଥିଲା ଅଧିକତର ଜଂଜାଳମୟ । ସ୍ଥିର ହେଲା, ବ୍ରହ୍ମପୁରରେ ଲେଖାଯାଉଥିବା ଏଇ ସନ୍ଦର୍ଭଟି ସଂଶୋଧନ କରାଯିବ ଭଂଜନଗରରେ । ସେହି ଗମ୍ଭୀର ଭାବମୂର୍ତ୍ତିର ଏଭଳି ସଦୟ ସହାନୁଭୂତି : ମୋ' ଜୀବନରେ ଏକ ଅବିସ୍ମରଣୀୟ ଅନୁଚ୍ଛେଦ । କବି ସମ୍ରାଟ ଉପେନ୍ଦ୍ର ଭଂଜ ମହାବିଦ୍ୟାଳୟ ସମ୍ମୁଖସ୍ଥ ଡାକବଂଗଳାକୁ ଦଶଦିନ ପାଇଁ ରିଜର୍ଭ କରାଗଲା । ଆଚାର୍ଯ୍ୟ ସାରଙ୍କର ଭଂଜନଗରରେ ସେହି ଦଶଦିନର ଅବସ୍ଥାନ, କେବଳ ମୋ ପାଇଁ କାହିଁକି, ଭଂଜଭୂମିର ସାରସ୍ୱତ ସାଧକ ଭଂଜପୁତ୍ର ମାନଙ୍କ ନିମନ୍ତେ ମଧ୍ୟ ଥିଲା ଗର୍ବ ଓ ଗୌରବର ପର୍ବଦିନ । ବଂଗଳାରେ ଅବସ୍ଥାନ କାଳରେ ତାଙ୍କର ଆଗମନ ସଂପର୍କରେ କାହାକୁ ଆଉ ଅଛପା ରହିଲା ନାହିଁ । ପ୍ରତ୍ୟହ ସାଂଧ୍ୟ ଭ୍ରମଣ ବେଳେ ବଂଗଳାରୁ ଗୋଟାଏ ଶୋଭାଯାତ୍ରା ବାହାରେ - କଲେଜ ପାଖରୁ ସେପଟେ ଶ୍ରୀରାମ ନଗର, ସୁରାଦେଇ, ଅଥବା ଏପଟେ ତିନିକିଲୋ ମିଟର୍ ଦୂର ଭଂଜନଗର ଟାଉନ୍, ରଘୁନାଥ ମନ୍ଦିର ବା ନଈକୂଳ ଠାକୁରାଣୀ ମନ୍ଦିର । ଦୀର୍ଘ ପଦଯାତ୍ରା କାଳରେ ରାସ୍ତାସାରା କେବଳ ସାରସ୍ୱତ ଚର୍ଚ୍ଚାରେ ଭୁଲି ଯୋଉଥାଏ ସମୟକୁ ଏବଂ ଯାବତୀୟ କ୍ଳାନ୍ତିକୁ । ଗମ୍ଭୀର ଆଚାର୍ଯ୍ୟ (ଗୁରୁ)ଙ୍କର ସେ ସବୁଦିନର ପ୍ରଗଲ୍ଭ ସ୍ୱରୂପ ଭିତରେ ଅଧିକତର ସୁନ୍ଦର ଦିଶନ୍ତି ଆମ ସମସ୍ତଙ୍କର ନମସ୍ୟ ଶ୍ରୀଯୁକ୍ତ ସୁଦର୍ଶନ ।

ମୋର କ୍ଷୁଦ୍ର ପରିବାର ସାର୍‌ଙ୍କର ଆତିଥ୍ୟ ପାଇଁ ତତ୍ପର ହୋଇଉଠିଲେ ସେଇ କେଇଦିନ । ମାଛ ମାଂସଠାରୁ ଶାଗ ପଖାଳ ପର୍ଯ୍ୟନ୍ତ ଘରୋଇ ରୋଷେଇରେ ସାର୍‌ଙ୍କର କୌଣସି ବାରଣ ନଥାଏ । ମନେ ପଡୁଛି ଗୋଟାଏ ଦିନର କଥା । ସାର କହିଲେ 'ନିଶାକର ! ଆଜି କିଛି ଭଲ ଲାଗୁନି, ପଖାଳ ଖାଇବା' । କଲ୍ୟାଣୀଙ୍କର କୁଶଳୀ ହାତରେ ପ୍ରସ୍ତୁତ ହେଲା ଦହି କାକୁଡି ଭେର୍ସୁଙ୍ଗ ପତ୍ର ଗୁଣ୍ଡର ଛୁଙ୍କ ଦିଆ ବାସି ତୋରାଣିର ପଖାଳ, ତା' ସାଙ୍ଗକୁ ଶାଗ ଭଜାଦି । ସାରଙ୍କର ଗମ୍ଭୀରତା ମଧ୍ୟରେ ଏଭଳି ସରଳ ଓଡିଆମି ଆମକୁ ବିମୁଗ୍ଧ କରିଥିଲା ସେଦିନ । ବିଶ୍ୱ ବିଦ୍ୟାଳୟର ପ୍ରଫେସର ହେଲେ ବି, ତାଙ୍କର ନିରହଙ୍କାର ଚରିତ୍ର ହିଁ ସୁଦର୍ଶନ ସାର୍‌ଙ୍କର ବିଶେଷତ୍ୱ । ଗୁରୁ, ପୁଣି ଜ୍ଞାନର ଗଭୀରତାରେ ସେ ଗମ୍ଭୀର ହେବା ସ୍ୱାଭାବିକ । ତଥାପି ସେହି ଗମ୍ଭୀର ସ୍ୱଭାବ ଭିତରୁ ସରଳ ତରଳ ମଣିଷଟିକୁ ଯେ ଆବିଷ୍କାର କରିପାରିଛି , ସତରେ ସେ ଭାଗ୍ୟବାନ୍ । ମୁଁ ସେମାନଙ୍କ ମଧ୍ୟରୁ ଜଣେ ।

*ପ୍ରାଧ୍ୟାପକ ଡକ୍ଟର ନିଶାକର ପାଣ୍ଡା*
*ବାଂକୀ କଲେଜ,*
*କଟକ ।*

# ସୁବର୍ଣ୍ଣ ପୁରର ଶୁଦ୍ଧ ସୁବର୍ଣ୍ଣ

ବିଶାଳ-କାୟ ପର୍ବତର ପାଦ ଦେଶରେ ଦଣ୍ଡାୟମାନ ହୋଇ ଏକ ନିଷ୍ପ୍ରଭ ନୟନରେ ପର୍ବତର ଉଚ୍ଚତା ମାପିବା ଯାହା ଏହି ପିତୃପ୍ରତିମ ପ୍ରଜ୍ଞାଶୀଳବ୍ୟକ୍ତିଙ୍କୁ ଆକଳନକରିବା ମୋ ପକ୍ଷରେ ତାହା । ତଥାପି ଗୁରୁ ଗୌରବ ଗାନକରିବାର ଆନନ୍ଦ ଓ ତାଙ୍କ ପ୍ରତ୍ୟକ୍ଷ ସଂପର୍କରେ ସୃଷ୍ଟ ଅନୁଭୂତି ହିଁ ମୋତେ 'ସୁବର୍ଣ୍ଣପୁର'ର ଏହି ଶୁଦ୍ଧସୁବର୍ଣ୍ଣ ବିଷୟରେ କିଛି କହିବାର ସୁଯୋଗ ଦେଇଛି । ଜଣେ ପରମ୍ପରା ପ୍ରଣୋଦିତ ପରିବାରର ସନ୍ତାନରୂପେ ମଦୀୟ ଗୁରୁଦେବ ପ୍ରଫେସର ଆଚାର୍ଯ୍ୟଙ୍କ ନାମ ଶୁଣିଥିଲି । ସେହି ଅଞ୍ଚଳର ଅଧିବାସୀଭାବେ କିନ୍ତୁ ପୂର୍ବରୁ ଦେଖିନଥିଲି । ୧୯୭୯ ମସିହାରେ ତାଙ୍କ ସହ ମୋର ପ୍ରଥମ ସାକ୍ଷାତ ହୁଏ ସ୍ନାତକୋତ୍ତର ଓଡ଼ିଆ ଶ୍ରେଣୀର ଛାତ୍ରଭାବେ । ଏକ ଶୁଭ୍ର ପୋଷାକ ଅନ୍ତରାଳରେ ଗୁରୁଗମ୍ଭୀର ବପୁଷ୍ମାନ ରୂପଦେଖି ପ୍ରଥମେ ମନ ଶଙ୍କିତ ଓ ସଂକୁଚିତ ହୋଇ ଯାଇଥିଲେ ହେଁ ତାଙ୍କ ମଧୁର ସମ୍ବୋଧନରୁ ମୋ ମାନସିକ ସଂଭ୍ରମ ଦୂରେଇ ଯାଇଥିଲା । ପରେ ଯେତେବେଳେ ଶ୍ରେଣୀ ପ୍ରକୋଷ୍ଠରେ ତାଙ୍କ ଅଧ୍ୟାପନାର ସୁଯୋଗ ପାଇଲି ତାଙ୍କ ବିଦ୍‌ବତ୍ତା ମୋତେ ବିସ୍ମିତ କରିଥିଲା । ବିଶେଷ କରି ପାଠର ତର୍ଜମା ଓ ସଯୌକ୍ତିକ ଉପସ୍ଥାପନା (ଯାହା ତାଙ୍କୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର କରି ଦେଉଥିଲା) ମୋତେ ବିଶେଷ ଆକୃଷ୍ଟ ଓ ଅନୁପ୍ରାଣିତ କରିଥିଲା । ଏପରିକି ଶେଷବର୍ଷ 'ଭଂଜ' ବିଷୟଟିକୁ ସ୍ୱତନ୍ତ୍ରପତ୍ର ଭାବେ ଅଙ୍ଗୀକାର କରିବା ଥିଲା ଏହି ଆକର୍ଷଣର ହେତୁ । ଏତିକିବେଳେ ସାର୍‌ଙ୍କ ମୌଳିକପ୍ରବୃତ୍ତି ପ୍ରାଚୀନ ଲୁପ୍ତ ଗ୍ରନ୍ଥୋଦ୍ଧାର ମୋତେ ପ୍ରେରଣାଦେଇଥିଲା । ଫଳରେ କିଛି ଅପ୍ରକାଶିତ ତାଳପତ୍ର ପୋଥି ମୁଁ ସଂଗ୍ରହ କରିଥିଲି । କିନ୍ତୁ ବୃତ୍ତିଗତ ଭାବେ ଅନ୍ୟବିଭାଗରେ ଚାକିରୀରେ ଅବସ୍ଥାପିତ ହେବାରୁ ସାର୍‌ଙ୍କ ସାନ୍ନିଧ୍ୟର ଆଉ ସୁଯୋଗ ନଥିଲା । ପ୍ରାୟ ବାରବର୍ଷ ପରେ ୧୯୯୨ ବେଳକୁ ଗବେଷଣା କରିବାର ଇଚ୍ଛା ବଢ଼ିଲା । ଏତିକିବେଳେ ତତ୍ତ୍ୱାବଧାରକ ଭାବେ ରହିବାର ସଦୟ ସ୍ୱୀକୃତି ପୁଣି ମୋତେ ତାଙ୍କ ନିକଟରେ ହେବାର ଦୁର୍ଲ୍ଲଭ ସୁଯୋଗ ଦେଇଥିଲା । ରିସର୍ଚ୍ଚ କାମରେ ରାଜ୍ୟ ସଂଗ୍ରହାଳୟ, ଆର୍କାଇଭ୍‌ସ୍ ଆଦି ସ୍ଥାନକୁ ଯିବାକୁ ହୁଏ । ସେଠାକୁ ଭିନ୍ନ ଭିନ୍ନ ସ୍ଥାନରୁ ଅନେକ ଗବେଷକ ଆସନ୍ତି । ବେଳେ ବେଳେ ସେମାନଙ୍କ ସହ ଟପିକ୍ ବା ଗାଇଡ୍‌ଙ୍କ ବିଷୟରେ ଆଲୋଚନା ହୁଏ । ସେମାନଙ୍କ ଠାରୁ ସାର୍‌ଙ୍କ ବିଷୟରେ 'ଯଥା ଯୋଗ୍ୟ ବ୍ୟକ୍ତି ନିର୍ବାଚନ'' ଶୁଣି କୃତ୍ୟ କୃତ୍ୟ ଲାଗେ । ପି.ଏଚ.ଡି. ପାଇଁ ମୋର ଯଦି କିଛି କୃତିତ୍ୱ ଥାଏ ତା' ମୂଳରେ ତାଙ୍କ ପ୍ରେରଣାଦାୟୀ ପରାମର୍ଶ ଓ ଶିକ୍ଷାପ୍ରଦ ଉପଦେଶ ଏବଂ ପରୋକ୍ଷ ଓ ପ୍ରତ୍ୟକ୍ଷ ଆଶୀର୍ବାଦ ହିଁ ନିହିତ ।

ସେ ଯେ କେବଳ ଜଣେ କୃତି ଗବେଷକ ବା ବିଦ୍ୟୋତ୍ସାହୀ ବ୍ୟକ୍ତି ନୁହନ୍ତି ବରଂ ଜଣେ ଗୁଣଗ୍ରାହୀ ଗୁରୁନିଷ୍ଠ ଛାତ୍ର ଓ ଛାତ୍ରବତ୍ସଳ ଅଧ୍ୟାପକ । ସେ ଯେତେବେଳେ ବିଭିନ୍ନ କାମରେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସନ୍ତି ସେତିକିବେଳେ ତାଙ୍କ ରୁମ୍‌ରେ ଅନ୍ୟାନ୍ୟ ଅଧ୍ୟାପକ ଓ ବିଦ୍ୱଜ୍ଜନମାନଙ୍କ ସମ୍ମିଳନ ଘଟେ । ଏପରିକି ସେ ଓଡ଼ିଆ ସାହିତ୍ୟର ଅଧ୍ୟାପକ ହେଲେହେଁ ସଂସ୍କୃତ

ସାହିତ୍ୟରେ ଗବେଷଣା କରୁଥିବା ବହୁ ଗବେଷକ ପରାମର୍ଶ ନେବା ପାଇଁ ସାରଙ୍କ ନିକଟକୁ ଆସନ୍ତି । ଏହା ମୋ ମନରେ ଅଧିକ କୌତୁହଳ ଜାଗ୍ରତ କରିବା ସହ ତାଙ୍କ ମୌଳିକ ପ୍ରତିଭା ପାଇଁ ମଥା ନଇଁଯାଏ । ଏଠାରେ ରହଣି କାଳରେ ଅବସର ଦେଖି ସାର୍ ଅନ୍ୟାନ୍ୟ ସାହିତ୍ୟିକ ମାନଙ୍କୁ ସାକ୍ଷାତ କରିବାକୁ ଯାଆନ୍ତି । ସେମାନଙ୍କ ମଧ୍ୟରେ ୰ ପଣ୍ଡିତ ନୀଳମଣି ମିଶ୍ର, ୰ ଡଃ. କୃଷ୍ଣ ଚରଣ ସାହୁ, ଅଧ୍ୟାପକ ଚିନ୍ତାମଣି ବେହେରା, ଡଃ.ଜାନକୀ ବଲ୍ଲଭ ମହାନ୍ତି ପ୍ରମୁଖ ପ୍ରଧାନ । କିନ୍ତୁ ଗୁରୁଗତପ୍ରାଣ ସାର୍ ତାଙ୍କ ଗୁରୁ ବିଶିଷ୍ଟସମାଲୋଚକ ଡଃ. ନଟବର ସାମନ୍ତରାଙ୍କୁ ନିଶ୍ଚୟ ଦେଖା କରନ୍ତି । ଯେତେବେଳେ ସମୟ ପାଆନ୍ତି ମ୍ୟୁଜିୟମ ବା ଆର୍କାଇଭ୍‌ସରୁ କିଛି ତଥ୍ୟ ସଂଗ୍ରହରେ ଲିପ୍ତ ରହନ୍ତି । ଏହା ତାଙ୍କ ଜ୍ଞାନଗାରିମା ଓ ଗୁରୁନିଷ୍ଠାର ମୁଁ ଦେଖିଥିବା ଏକ ସଂକ୍ଷିପ୍ତ ରୂପ । କିନ୍ତୁ ମୋତେ ବିଶେଷ ଆକର୍ଷିତ କରିଥିଲା ତାଙ୍କର ଛାତ୍ର ବତ୍ସଳତା ଓ ସ୍ନେହପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ।

ସାର୍ ଥିଲେ ଉଦାରଚେତା । ସେ ଆମ ଘରକୁ ଆସି ଯାଆନ୍ତି ପରିବାରର ଲୋକଭଳି । ନିଃସଂକୋଚରେଏକାକାର ହୋଇ ଯାଆନ୍ତି ଆମଘର ପରିବାର ଓ ପରିବେଶ ସହିତ । ତାଙ୍କ ବ୍ୟକ୍ତିତ୍ୱ ଓ ବିଜ୍ଞତା ଭିତରେ ସ୍ୱାଭାବିକ କଥୋପକଥନ ଓ ଚଳଣି ପରିବାରର ସମସ୍ତଙ୍କୁ ଆକର୍ଷଣ କରେ । ବିଦ୍ୟୋତ୍ସାହୀ କରୁଣା ଓ ସ୍ନେହର ମୂର୍ତ୍ତିମନ୍ତ ବିଗ୍ରହ ଭାବେ ପିଲାଙ୍କ ପାଇ ନିଜ ସାଇତା ଆଲମାରିରୁ ଶିଶୁ ଉପଯୋଗୀ ବହୁ ପୁସ୍ତକ ଆଣିଦିଅନ୍ତି । ଏପରିକି ମୋ ପୁଅର ବ୍ରତୋପନୟନ ବେଳେ ସପରିବାର ଯୋଗଦେଇଛନ୍ତି ଅତିଥିର ଭୂମିକା ନେଇନୁହେଁ; ଅବଳର ବଳ, ନିଃସ୍ୱର ସମ୍ପତ୍ତି ଓ ଧୈର୍ଯ୍ୟର ମାନଦଣ୍ଡ ଭାବେ । ବିଶେଷ କରି ଏତିକିବେଳେ ତାଙ୍କ ମା'ଙ୍କ ଦେହାନ୍ତ ହୋଇ ଯିବାର ଏକ ବର୍ଷ ପୂର୍ଣ୍ଣ ହୋଇନଥିବାରୁ ସେ ଅନ୍ୟର ପାକରୁ ଖାଉ ନଥାନ୍ତି । ବ୍ୟସ୍ତ ଭିତରେ ମୁଁ ଅନ୍ୟ ବ୍ୟବସ୍ଥା ମଧ୍ୟ କରିପାରି ନଥାଏ । ତଥାପି ଉଦାର ଚିତ୍ତରେ ପ୍ରାରମ୍ଭରୁ ପରିସମାପ୍ତି ପର୍ଯ୍ୟନ୍ତ ରହି ବ୍ରତୋପନୟନକୁ ନିଜେ ପରିଚାଳିତ କରି ଯେଉଁ ଅପୂର୍ବ ଆନ୍ତରିକତା, ମମତ୍ୱ ଓ ସ୍ନେହ ଦର୍ଶାଇ ଉତ୍ସାହିତ କରିଥିଲେ ସାରା ପରିବାର କାହିଁକି ଉପସ୍ଥିତ ପ୍ରତ୍ୟେକବଂଧୁଙ୍କୁ ତାହା ଅଭିଭୂତ କରିଥିଲା । ସେ ମଧୁର ଅନୁଭବ ଆମମାନଙ୍କ ସ୍ମୃତିରେ ଏବେବି ଜୀବନ୍ତ । ବାସ୍ତବିକ୍ ପିତୃପ୍ରତିମ ଛାତ୍ରବତ୍ସଳ ସାର୍ ଯେ କୌଳିକ 'ଆଚାର୍ଯ୍ୟ' ସଂଜ୍ଞାକୁ ସିଦ୍ଧ କରିଛନ୍ତି ।

ମୋ ଦୃଷ୍ଟିରେ ସେ ପିତୃପ୍ରତିମ, ଜିଜ୍ଞାସୁ, ଜ୍ଞାନସାଗର, କରୁଣା ବିଗ୍ରହ, ଅଭୟଆଶ୍ରୟ , ଗୁରୁନିଷ୍ଠ ଏବଂ ଛାତ୍ର ବତ୍ସଳ, ତାଙ୍କପରି ସ୍ନେହୀ ଏକାନ୍ତ ବିରଳ । ଗୋଟିଏ କଥାରେ ସୁବର୍ଣ୍ଣ ପୁରର ଶୁଦ୍ଧ ସୁବର୍ଣ୍ଣ ଓ ଯଥାର୍ଥତଃ 'ଆଚାର୍ଯ୍ୟ' ।

*ଡକ୍ଟର ପଦ୍ମନାଭ ସାହୁ*
*ଜନଗଣନା ନିର୍ଦ୍ଦେଶାଳୟ*
*ଭୁବନେଶ୍ୱର - ୭ ।*

# କହ୍ନାଇର ଗୋପଦାଣ୍ଡ

ମୋ ଗାଁ ନୂଆପଡା ତଥା ଆଖପାଖ ଅଂଚଳରେ ବଡ ବଡ ଯଜ୍ଞାନୁଷ୍ଠାନ ମାନଙ୍କରେ ଦେଖିବାକୁ ପାଇଛି ଜଣେ କ୍ଷୀଣ ଅଥଚ ଜ୍ୟୋତିର୍ମାନ ପଣ୍ଡିତଙ୍କୁ ଯିଏକି କତିପୟ ପଣ୍ଡିତଙ୍କ ସହ ସଂସ୍କୃତ ଭାଷାରେ କଥାବାର୍ତ୍ତା ହେଉଥାନ୍ତି । ସେ ଯେ ଏତେ ସମୟ ଯାଏଁ ସଂସ୍କୃତ ଭାଷାରେ କଥା ହୋଇପାରନ୍ତି ପୁଣି ସୁଦର୍ଶନ ଯଜ୍ଞପଦ୍ଧତି ନାମକ ଏକ ରଚିତ ବିଖ୍ୟାତ ଗ୍ରନ୍ଥର ପ୍ରଣେତା ପୁନଶ୍ଚ ସେ ଆମ ଗାଁ ହାଇସ୍କୁଲର ପୂର୍ବତନ ପଣ୍ଡିତ । ତାଙ୍କ ସୁଯୋଗ୍ୟ ପୁତ୍ର ଯେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗର ପ୍ରଫେସର । ଏଇ ଯଜ୍ଞ ପଦ୍ଧତି ଗ୍ରନ୍ଥଟି ଯେ ପିତା ପୁତ୍ରଙ୍କ ନାମରେ ନାମିତ କରିଛନ୍ତି ଏକଥା ଗୁଡିକ ଶୁଣି ସଂସ୍କୃତ ଭାଷା ପ୍ରତି ଥିବା ଗଭୀର ଶ୍ରଦ୍ଧା ଓ ଭକ୍ତି ସମବାୟରେ ମନ ସ୍ୱତଃ ଅତ୍ୟନ୍ତ ଆନନ୍ଦିତ ଓ ଶରୀର ପୁଲକିତ ହୁଏ । ହାଇସ୍କୁଲ ପଢ଼ା ସମୟରୁ ଉପର୍ଯ୍ୟୁକ୍ତ ଦୁଇ ମହାନ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଜାଣିବାପାଇଁ ଯେଉଁ ଉତ୍କଣ୍ଠା ଜନ୍ମିଥାଏ କିନ୍ତୁ ଜାଣିବାର ସୁଯୋଗ ମିଳିନଥାଏ । ତାହା ସାକାର ହୁଏ ବିଶ୍ୱବିଦ୍ୟାଳୟରେ ପାଠପଢ଼ିବା ସମୟରେ । ଆମର ଧୈର୍ଯ୍ୟଶୀଳତାକୁ ପରୀକ୍ଷା କରିବାକୁ ଅବା ଯେତେବେଳେ ନାମ ଲେଖାଇବା ପାଇଁ ଅନୁମତି ପତ୍ରଟି ସୁଦ୍ଧା ଠିକଣା ଭୁଲ ହୋଇଯାଇ ନୂଆପଡା ବଦଳରେ ନିମାପଡାକୁ ବୁଲିଯାଇ ଫେରିଆସେ ମୁଁ ହତାଶ ହୁଏ, ୟୁନିଭରସିଟିରେ ପଢ଼ିବା ବୋଧହୁଏ ଭାଗ୍ୟରେ ନାହିଁ ବୋଲି । ସେସମୟରେ ନନା କହନ୍ତି ତାଙ୍କର ବାଲ୍ୟବନ୍ଧୁ ଡଃ.ସୁଦର୍ଶନ ଆଚାର୍ଯ୍ୟ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଛନ୍ତି, ତାଙ୍କ ପାଖକୁ ଗଲେ ମୁଁ କିଛି ସହାୟତା ପାଇବି । ଏକଥା ଶୁଣି ମୁଁ ସେପରି କରନ୍ତେ ଠିକ୍ ଓଡିଆ ବିଭାଗ ଅଫିସ ଠାରେ ଦୀର୍ଘକାୟ ଗୌରବର୍ଣ୍ଣ ହୃଷ୍ଟପୁଷ୍ଟ ଜଣେ ବ୍ୟକ୍ତିଙ୍କୁ ଦେଖି ଡଃ. ଆଚାର୍ଯ୍ୟଙ୍କୁ ଚିହ୍ନାଇ ଦେବାକୁ କହେ ଓ ସେନିଜେ ଡଃ. ଆଚାର୍ଯ୍ୟ ବୋଲିଜାଣି ମୁଁ ଚମକିଯାଏ । ଇଣ୍ଟିମେସନ ପାଇ ନାମ ଲେଖାଏ । ଶ୍ରେଣୀମାନଙ୍କରେ ଶିକ୍ଷାଦାନବେଳେ ଡଃ. ଅଚାର୍ଯ୍ୟଙ୍କୁ ନିକଟରୁ ବୁଝିବାରେ ଚେଷ୍ଟାକରେ । ନିରାଡମ୍ବର କିନ୍ତୁ ସର୍ବଦା ତେଜୋମୟ, ନିରୁଦ୍‌ବିଗ୍ନ ଶାଳପ୍ରାଂଶୁ ଶରୀର ଧାରଣ କରିଥିବା ଆଚାର୍ଯ୍ୟସାର କ୍ଲାସ ମଧ୍ୟକୁ ଆସୁ ଆସୁ ସ୍ତବ୍ଧ ଛାତ୍ରଛାତ୍ରୀ ନିବିଷ୍ଟ ମନରେ ପାଠ ଶୁଣନ୍ତି । କାରଣ ତାଙ୍କର ପ୍ରତ୍ୟେକଟି ବଚନ ସ୍ୱତନ୍ତ୍ର ସ୍ୱାଦ ଜ୍ଞାନ ଗାରିମାର ପରିଚୟ ହିଁ ବହନ କରିଥାନ୍ତି । ଗୋଟିଏ କ୍ଲାସ ନଷ୍ଟ କରିବାକୁ କେବେବି ମନେ ହୁଏ ନାହିଁ । ଥରେ ମାତ୍ର ବିଶ୍ୱବିଦ୍ୟାଳୟ ପରିସରସ୍ଥ ଆମ୍ବତୋଟାରେ କଞ୍ଚା ବାଇଗଣପଲ୍ଲୀ ଆମ୍ବ ଖାଇବାର ଲୋଭ ସମ୍ବରଣ କରିନପାରି ରହିଯାଇଥିଲି । ଲୋକନାଥ ମହାନ୍ତି (ବର୍ତ୍ତମାନ ଜଗନ୍ନାଥ ପ୍ରସାଦ ମହାବିଦ୍ୟାଳୟର ଅଧ୍ୟାପକ) ସହ ତଥାପି କ୍ଲାସକୁ ଆସି ଦେଖୁ ଆଚାର୍ଯ୍ୟସାର କ୍ଲାସ ନେଉଛନ୍ତି । ଧିକ୍କାର କଲୁ ନିଜକୁ, ସାରଙ୍କ କ୍ଲାସ ଛାଡିଲୁ ଜୀବନର ଏକ ଗୁରୁତର ଅପରାଧ, କେଜାଣି କେତେ ମୂଲ୍ୟବାନ ଧାଡି ଆଉଆମେ ଦ୍ୱିତୀୟଥର ପାଇଁ ଶୁଣି ପାରିବୁନି । ଏଥିପାଇଁ ଗଭୀର ଲଜ୍ଜାଲାଗିଲା, ସାର ବୈଦେହୀଶ ବିଳାସ, ପ୍ରାଚ୍ୟସାହିତ୍ୟତତ୍ତ୍ୱ, କିଶୋରଚନ୍ଦ୍ରାନନ୍ଦ ଚମ୍ପୂ, ଓଡିଆ ସାହିତ୍ୟର ଇତିହାସ ପଢ଼ାଇଲା ବେଳେ ନିତ୍ୟନୂତନ

ତଥ୍ୟାବଳୀ ଉପସ୍ଥାପନ ଦ୍ୱାରା ଆମକୁ ମନ୍ତ୍ରମୁଗ୍ଧ କରିଦିଅନ୍ତି । ଗୁରୁଶିଷ୍ୟ ପରମ୍ପରା କ୍ରମେ ବୋଧହୁଏ ମୋ ପାଖରେ ପ୍ରାଚ୍ୟ ବା ପୁରାଣ ସାହିତ୍ୟ ପ୍ରତି ଥିବା ଆଗ୍ରହକୁ ସାର୍ ଠିକ୍ ଠଉରାଇ ଗବେଷଣାତ୍ମକ କାର୍ଯ୍ୟରେ ପୁରାଣ ସାହିତ୍ୟକୁ ବାଛିବା ପାଇଁ ପରାମର୍ଶ ଦିଅନ୍ତି । ସାରଙ୍କ ମୁହଁରୁ ବାହାରୁଥିବା ପ୍ରତ୍ୟେକଟି ବଚନ ମୁକ୍ତାକୁ ଗ୍ରହଣ କରିବାପାଇଁ ମୋର ଉତ୍କଣ୍ଠା ଦିନୁଦିନ ବଢ଼େ । ଏଣୁ ମୁଁ ସେଥିରେ ହେଳା କରେନାହିଁ । ଏହି କାର୍ଯ୍ୟରେ ହୁଏତ ସାର୍‌କୁ ଅଜ୍ଞାତସାରରେ ମୁଁ କେବେ ବିରକ୍ତ କରିଦେଇଥାଇପାରେ । ଅବଶ୍ୟ ସାର୍ ମଧ୍ୟ ମୃଦୁ ମଧୁର ଭର୍ତ୍ସନା ମାଧ୍ୟମରେ ଛାତ୍ର ମାନଙ୍କର ଭୁଲ ଭଟକାକୁ ସୁଧାରି ଥା'ନ୍ତି । କୌଣସି କାଳେ କର୍କଶ ଭାଷା ମଧ୍ୟ ଶୁଣିନାହୁଁ ।

ବିଶ୍ୱବିଦ୍ୟାଳୟ ପରିସରରେ ବୁଲୁଥିବା ସମୟରେ (ବୁଲିବା ନୁହେଁତ - କେବଳ ଓଡିଆ ବିଭାଗରୁ ନିଜ ରୁମକୁ ବା ପ୍ରଶାସନିକ ଭବନକୁ ଯିବା ଆସିବା କରିବା) ମୁଁ ଦେଖିଛି ପ୍ରାୟ ପ୍ରତ୍ୟେକ କର୍ମଚାରୀ ଅଧ୍ୟାପକ ପ୍ରାଧ୍ୟାପକ ସମସ୍ତେ ସାରଙ୍କୁ ଦେଖୁ ଦେଖୁ ନତମସ୍ତକ ହୋଇପଡନ୍ତି । ତାଙ୍କର କର୍ତ୍ତବ୍ୟନିଷ୍ଠା, ସଚ୍ଚୋଟତା, ନିରପେକ୍ଷ ଭାବରାଶି, ଛାତ୍ରବତ୍ସଳତା ସମସ୍ତଙ୍କ ହୃଦୟକୁ ଛୁଇଁଥାଏ । ଧୂର୍ତ୍ତ, ଦୁଷ୍ଟ, ବା ଟାଉଟରୀ ଧରଣର ଛାତ୍ରମାନେ ତ ସାରଙ୍କ ପାଖ ପଶିପାରନ୍ତିନି । ଯଦି ନିକଟତର ହୁଅନ୍ତି ତେବେ ମଧ୍ୟ ସାରଙ୍କଠାରୁ ପୁତ୍ରବତ୍ ସ୍ନେହପାଇ ଗଭୀର ସନ୍ତୋଷ ଲଭନ୍ତି । ଏଣୁ ସମଗ୍ର ବିଶ୍ୱବିଦ୍ୟାଳୟ ସାର୍‌ଙ୍କ ପ୍ରତିଭା କର୍ମତତ୍ପରତା ଓ ନ୍ୟାୟବରା ଲାଗି ସୁନ୍ଦର ଦିଶୁଥାଏ । ଯେମିତି କହ୍ନାଇର ଲୀଳାସ୍ପର୍ଶ ଲଭି ଧନ୍ୟ ହୋଇଛି ଗୋପ୍ରଦାଣ୍ଡ । ଗଭୀର ଏକାଗ୍ରତା, ନିଷ୍ଠା ଓ କଠୋର ବାସ୍ତବତା ମଧ୍ୟରେ ଗତିକରିବାକୁ ପରାମର୍ଶ ଦେଉଥିବାରୁ ଗବେଷକମାନେ ସାରଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବାକୁ ଯେତିକୁ ମର୍ଯ୍ୟାଦା ଜନକ ବୋଲି ସ୍ଥିର କରନ୍ତି ସେହି ପରିମାଣରେ ଚିନ୍ତିତ ହୋଇପଡନ୍ତି । ସାରଙ୍କ ନିକଟରେ ଆଳସ୍ୟ, ଅବହେଳା, ଠକାମି, ଛଳନା କଦାପି ଚଳେ ନାହିଁ । ପଦେ ପଦେ ଧରାପଡିବାକୁ ହୋଇଥାଏ । ଏଣୁ ସେ ଛାତ୍ର ବତ୍ସଳ ହେଲେହେଁ ଛାତ୍ରମାନଙ୍କର ଭିଡ ତାଙ୍କ ପାଖେ ଜମେ ନାହିଁ । ପିକନିକ୍ ବେଳେ, ସେମିନାର୍‌ରେ କ୍ଲାସରେ ବା ଓଡିଶା ଓ ଓଡିଶା ବାହାରର ଦର୍ଶନୀୟ ତଥା ଐତିହାସିକ ସ୍ଥାନ ଭ୍ରମଣ କାଳରେ ସାରଙ୍କର ନିକଟତର ହୋଇଛୁ । ଅନେକ ସରସ ରସିକତା ଶୁଣିଛୁ । ସାରଙ୍କ ସହ ଏହି ନିବିଡ ସମ୍ପର୍କଯେ ଆମ୍ଭ ମାନଙ୍କର ମାର୍ଗଦର୍ଶକ ହୋଇଛି ତେଣୁ ନିଜକୁ ଭାଗ୍ୟବାନ ମନେ କରୁଛି ।

*ଅଧ୍ୟାପକ ମନ୍ମଥ ରଣା*

*ଦ୍ରୌପଦୀ ମହାବିଦ୍ୟାଳୟ,*

*ଗୁମୁଡା, ରାୟଗଡା ।*

**Prof. Sudarsana Acharya**
**(A Visionary & Teacher par Excellence)**

Dr. Sudarsana Acharya (Padhai Doctor & my self Dabai Doctor as per his own coinage) is known to me before he was being awarded Doctorate in Literature, and the association grew stronger, as my wife Sarada Mahapatra enrolled herself in M.A., M.Phil and Ph.D and completed them successfully under his able guidance.

Though Prof. Acharaya leads a happy family life, he seems wedded to Oriya Literature, and I find his house converted into a Veritable Library with provision of more space for books than for family members. Appart from his innumerable contributions to enrich Oriya Literature he has guided many students for the award of M.Phil and Ph.D degrees. His singular attempt to streamline Oriya literature and bring into limelight the unsung literary wizards is praise worthy. His earnest desire to go to different places in search of rare manuscripts and Literary works; and his untiring efforts in their collection and preservation has earned him laurels and enriched Berhampur University for advanced study and research in this field. He stands tall (both physically and in literature) and dwarfs many in the literary field. His services for the cause of Oriya literature will be remembered for years to come and on completion of 60th year of his life. I pray God to bless him with a healthy productive long life.

Dr. Acharya has already attained success and I am proud to be associated with such a genius who lives true to his name :

**A visionary and teacher par excellence - Sudarsana Acharya.**

Dr. Subhas Chandra Patra, M.B.B.S., M.S., D.O.M.S.
EYE SPECIALIST,
GOPOBANDHU NAGAR, BERHAMPUR.

# ଗୌତମ ବଂଶ - ଦୁଗ୍ଧ - ଜଳଧେ-ଲୀଳାୟିତ ମୁଗ୍‌ଧେନ୍ଦୁ

ଗାଁ ଟିଏ.......

ଗାଁ ଟିଏ କହିଲେ ଦକ୍ଷିଣ ଓଡିଶାର ଶହଶହ ଗାଁର ଯେଉଁ ରୂପଚିତ୍ର ମନକୁ ଆସିଥାଏ, ତାହାଠାରୁ ଏହା କିଛି ଭିନ୍ନ ନୁହେଁ । ସେହି ଅଣଓସାରିଆ ଅଙ୍କାବଙ୍କା ଦାଣ୍ଡ, ଦାଣ୍ଡ ଦୁଇ ପାଖରେ ଦୁଇଧାଡି ଘର । ନଡାଛପର ଘର ଧାଡିର ମଝିରେ ମଝିରେ ଗୋଟିଏ ଗୋଟିଏ ଅପ୍ରଶସ୍ତ କୋଠାଘର । ବର୍ଷାଋତୁରେ ବଳାଗଣ୍ଠି ବୁଡିଯାଉଥିବା କାଦୁଅ । ଅନ୍ୟଋତୁରେ ଛେଳି ଲଣ୍ଡି ଓ ଗୋବର ମିଶ୍ରିତ ଧୂଳି । ମୋର ଏବଂ ମୋର ପିଲାଦିନର ଖେଳସାଥୀମାନଙ୍କର ବିଭୂତି । ପଶ୍ଚିମ ଦିଗରେ ଗାଁର ପ୍ରବେଶ ଦ୍ୱାର । ପ୍ରବେଶ ଦ୍ୱାର ନିକଟରେ ଦଳ ପଙ୍କ ବିଭୂଷିତ ଗାଁର ସ୍ନାନ ପୋଖରୀ -'ମହାଦେଇ ବନ୍ଧ' । ଏହାର ଆହୁରି ପଶ୍ଚିମକୁ ଗାଁର ସୁରକ୍ଷା-ପାଚେରୀ 'ଜରାସନ୍ଧ ପାହାଡ' । ପୂର୍ବ ଦିଗରେ ସୁବିସ୍ତୃତ ଆମ୍ବ ନାରିକେଳର ଏକ ସୁସଂଚ ଉପବନ । ମୋ ପିଲାଦିନର ଯାବତୀୟ ଭୂତ, ପ୍ରେତ ଡାହାଣୀ ଓ ବ୍ରହ୍ମରାକ୍ଷସଙ୍କ ଆବାସସ୍ଥଳୀ । ଉତ୍ତର ଓ ଦକ୍ଷିଣରେ ବିସ୍ତୀର୍ଣ୍ଣ ଶ୍ୟାମଳ ଶସ୍ୟ କେଦାର ଓ ମଝିରେ ମଝିରେ ତାଳେ ବାଟରେ ଗଛ ଗହଳିର ଅନ୍ତରାଳରେ ଗୋଟିଏ ଗୋଟିଏ ଗାଁ । ଏ ହେଲା ଗାଁ ଟିଏ ।

ନାଁ ଟିଏ ....., ସୁବର୍ଣ୍ଣପୁର । ଏହି ନାଁ ଟିକୁ ନେଇ ପିଲାଦିନରୁ ଏବେପର୍ଯ୍ୟନ୍ତ ଆମମନରେ ଯେତେକ ଅହଂକାର । ଏ ନାଁ କିଏ ଦେଇଥିଲା କେଜାଣି । କିନ୍ତୁ ସାର୍ଥକ । ଏହିଗାଁରେ କେହି ଭିକ ମାଗିବା ଆମେ ଜାଣିନାହୁଁ ଯଦିବା କେହି ଅନ୍ଧ ଅକର୍ମଣ୍ୟ ହାତପତାଇ ନୁହେଁ; ଛାନ୍ଦ, ଚଉପଦୀ, ଚମ୍ପୂଗାଇ ଅନ୍ୟର ମନୋହରଣ କରି ଯାଚନା ସଂଗ୍ରହ କରିଥାଏ । ଅବଶ୍ୟ ଏ ଗାଁର ସମସ୍ତେ ଧନୀ ମହାଜନ ନଥିଲେ - ଥିଲେ କିନ୍ତୁ ମନ ଓ ମାନରେ ସମ୍ରାଟ । ମାଟି ସ୍ୱର୍ଣ୍ଣ ପ୍ରସୂ । ଖଟିଲେ ହେଲା । ଖଟିଖିଆ ମଧ କେବେ ଉପବାସରେ ଶୋଇଥିବା ନଜିର ନାହିଁ ।

ମନେପଡେ ସ୍କୁଲ ପଢାଦିନର କଥା । ଗାଁରେ ମାତ୍ର ନିମ୍ନ ପ୍ରାଇମେରୀ ସ୍କୁଲ । ପରିବର୍ତ୍ତୀ ଶିକ୍ଷାପାଇଁ ଯିବାକୁ ହୁଏ ପାଖ ଜରଡାଗଡ ମଧ୍ୟଇଂରାଜୀ ବିଦ୍ୟାଳୟକୁ । ଆଖପାଖ ସବୁ ଗାଁର ପିଲାଙ୍କର ସେଠାରେ ସମାବେଶ । ଗାଁର ବଡିମାକୁ ନେଇ ଆମ ଭିତରେ ଅନେକ ବିବାଦ । ଗାଁର ତୋଟା, ପାଟ, ନଈନାଳ , ବିଲ-ପାହାଡକୁ ନେଇ ନିଜ ନିଜ ଗାଁର ବଡପଣକୁ ଦେଖାଇ ହେବାର ପ୍ରତିଯୋଗିତା, ଏହାତ ସବୁ ଗାଁରେ ପ୍ରାୟ ସମାନ, ଏଣୁ ଏଥିରେ ଜିତିବାର ଆଶା କମ୍ । ଠିକ୍ ପରାସ୍ତ ହେବା ମୁହୂର୍ତ୍ତରେ ଆମେ କହୁ ଆମ ଗାଁ ସୁବର୍ଣ୍ଣପୁର । ତୁମ ଗାଁ ନାଁ ଏତେ ସୁନ୍ଦର ନୁହଁ । ଏତେ ବିତ୍ତଶାଳୀ ନୁହଁ । ଏଥିରେ କେତୋଟି ଗାଁର ପିଲା ସଂକୁଚିତ ହୁଅନ୍ତି । କିନ୍ତୁ 'ସୁନାରେଡି' ଓ 'ସୁନାଖଳା'ର ପିଲାମାନେ ଚିହିଁକି ଉଠନ୍ତି । ସେମାନଙ୍କ ଯୁକ୍ତିର ରେଡିଥିବା ସୁନା ଓ ଖଳାର ସୁନା ପାଖରେ ଆମେ ହାରୁ । ଏହାପରେ ସଂଗ୍ରାମ ପାଇଁ ଆଗ୍ନେୟ ଅସ୍ତ୍ର ଖୋଜାଚାଲେ ଏବଂ ଆଖିରେ ପଡେ ଆମ ଗାଁ ମଠ । ବାସ୍ତବରେ ଆମଗାଁର

ସଂଭ୍ରମ ଓ ସୌଭାଗ୍ୟର ଏ ଏକ ଅନନ୍ୟ ପ୍ରତୀକ । ତଥାପି ମନ୍ଦିରରେ ଠାକୁରହିଁ ବଡ଼ । ଜରତାର ପ୍ରସିଦ୍ଧ ପାର୍ଥ ସାରଥିଙ୍କ ସହିତ ଆମ ଗାଁ ମନ୍ଦିରର ଠାକୁର ବଂଶୀଧାରୀ ରାମଚନ୍ଦ୍ରଙ୍କର ତୁଳନା କାହିଁ ? ତାଙ୍କଗି ସୁପ୍ରସିଦ୍ଧ ରଥଯାତ୍ରାର ସମାନତା ଏଠି କାହିଁ ? ତେଣୁ ଏଥିରେ ଜରତା ପିଲାଙ୍କ ସହିତ ପରାସ୍ତହେବା ଅନିବାର୍ଯ୍ୟ ହୋଇପଡେ । ଖୋଜାପଡେ ବ୍ରହ୍ମାସ୍ତ୍ର । ସେଥିପାଇଁ ବେଶୀବାଟ ଯିବାକୁ ପଡେ ନାହିଁ । ମନ୍ଦିରଠାରୁ ଠିକ୍ ଅଉକିଛି ବାଟ ତଳକୁ ଚାଲିଗଲେ ଆମକୁ ମିଳିଯାଏ ବ୍ରହ୍ମାସ୍ତ୍ର ।

ମନ୍ଦିର ଠାରୁ କିଛି ପାହୁଣ୍ଡ ଆଗରେ ଧାଡିଏ ପ୍ରାଚୀନ ପକ୍‌କା ଘର । ଏଇ ପ୍ରାଚୀନତାହିଁ ଗୃହାଧିକାରୀମାନଙ୍କର ପ୍ରାଚୀନ ବୈଭବ ଓ ସୌଭାଗ୍ୟର ଦ୍ୟୋତକ । ପୁରୁଷ ପୁରୁଷ ଧରି ଏଘରର କର୍ତ୍ତାମାନେ ଶାସ୍ତ୍ରଅଧ୍ୟୟନ, ଚର୍ଚ୍ଚା, ଅଧ୍ୟାପନା ଓ ରଚନା ମାଧ୍ୟମରେ ଯେଉଁ ଅପରାଜେୟ ପାଣ୍ଡିତ୍ୟର ଅଧିକାରୀ ହୋଇ ପାରିଥିଲେ ଏବଂ ତାହାରି ଆଧାରରେ ଯେଉଁ ରାଜାନୁରାଗ ଓ ବିଭୂତି ଲାଭ କରିଥିଲେ; ତାହାରି ସଂକେତ ହିଁ ବହନ କରିଥାଏ ଏହି ପ୍ରାସାଦ ଶ୍ରେଣୀ । ଏହି ଶ୍ରେଣୀରୁ ପ୍ରଥମ ଘରଟି ଆକାର ଓ ଆକୃତିରେ ସାମାନ୍ୟ ଭିନ୍ନ । ଘରଟିଏ ସମ୍ମୁଖରେ ଏକ ସୁଉଚ୍ଚ ମଣ୍ଡପ । ଯାଗଯଜ୍ଞାଦି ପବିତ୍ର କର୍ମପାଇଁ ଏହା ଉଦ୍ଦିଷ୍ଟ ଏବଂ ଏଥିରୁହିଁ ଗୃହକର୍ତ୍ତାର ଅଭିରୁଚି ଓ ଦୃଷ୍ଟିଭଙ୍ଗୀର ବେଶ୍ ପରିଚୟ ମିଳିଥାଏ । ଆମେ ଜାଣିଲାବେଳକୁ ଏହି ଗୃହର ସାର୍ବଭୌମ ଅଧିକାରୀ ଥିଲେ ପଣ୍ଡିତ ସାର୍ବଭୌମ, ଗୁଣୀ-ଜ୍ଞାନୀ, ଉଦାର ତଥା ଜ୍ୟୋତିର୍ମୟ ପୁରୁଷ - ପଣ୍ଡିତରାୟ ଯତିରାଜାଚାର୍ଯ୍ୟ ଶର୍ମା । ସେ ହିଁ ଥିଲେ ପରାଜୟମୁଖୀ ଆମଭଳି ଅସହାୟ କିଶୋର ମାନଙ୍କର ବ୍ରହ୍ମାସ୍ତ୍ର । ତାଙ୍କୁ ନେଇ ବିପକ୍ଷମାନଙ୍କ ଉପରେ ହୁଏ ଆକ୍ରମଣ । ସେମାନଙ୍କୁ ପ୍ରଶ୍ନ ହୁଏ - ତୁମ ଗାଁରେ ଆମ ଗାଁ ଯତିରାଜାଚାର୍ଯ୍ୟ ଭଳି ଜଣେ ପଣ୍ଡିତ ଅଛନ୍ତି ? ତାଙ୍କୁ ଛାଡି ତୁମ ଗାଁରେ ଯଜ୍ଞଟିଏ କରିପାରିବ ? କେବଳ ତୁମ ଗାଁ କାହିଁକି, ଏଇ ଶହେକୋଶ ଭିତରେ କିଏ ଯଜ୍ଞ କରିପାରିବ ? ତୁମ ଗାଁରେ ଅଥବା ଏ ଦକ୍ଷିଣ ଓଡିଶାରେ କିଏ ପୁଅ ଅଛି ତାଙ୍କୁ ଶାସ୍ତ୍ର ଚର୍ଚ୍ଚାରେ ପରାସ୍ତ କରିବା ପାଇଁ ?

ଏହି ଅସ୍ତ୍ରାଘାତରେ ଆମର ପ୍ରତିପକ୍ଷ ଜର୍ଜରିତ, ପରାସ୍ତ ଏବଂ ନୀରବ । ସେମାନଙ୍କୁ ଏଇ ମଉକାରେ ସଂପୂର୍ଣ୍ଣ ଭୂଲୁଣ୍ଠିତ କରିବା ପାଇଁ ଶେଷ ଅସ୍ତ୍ରଟି ଛାଡିଦିଆଯାଏ - ''ତୁମ ଗାଁ ରେ କେହି ଏମ୍.ଏ. ପଢ଼ିବା ଲୋକ ଅଛନ୍ତି ? ବାସ୍, ଏଥର ପରାସ୍ତ ପ୍ରତିପକ୍ଷଙ୍କର ଛତ୍ରଭଙ୍ଗ ଦେବାର ବେଳ । ଆମେ ତାଙ୍କୁ ବାଟବଣା କରିବା ପାଇଁ କହୁ - ଆମଗାଁରେ ଅଛନ୍ତି ଏ ଅଞ୍ଚଳର ପ୍ରଥମ ଏମ୍.ଏ. ପାଶ୍ କରିଥିବା ଯୁବକ ବିଜୟ ।

ସେଦିନ ଆମ କିଶୋର ଜୀବନରେ ବିଜୟର ବିଜୟାସ୍ତ୍ର 'ବିଜୟ' ହିଁ ଆଜିର ଓଡିଶାର ସ୍ୱନାମଧନ୍ୟ ସାହିତ୍ୟିକ, ପ୍ରଖ୍ୟାତ ସମାଲୋଚକ, ବିଦଗ୍ଧ ଗବେଷକ ତଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରତ୍‌ଥିତଯଶା ପ୍ରଫେସର, ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ । ଏହି ସୂତ୍ରରେ ହିଁ ସେ ମୋର ତଥା ମୋଭଳି ହଜାର ହଜାର ଛାତ୍ରଙ୍କର 'ସାର୍' । (ବର୍ତ୍ତମାନଠାରୁ ଏହି ସମ୍ବୋଧନ ହିଁ ବ୍ୟବହାର କରାଯିବ ।) ସୁରମ୍ୟ ସୁବର୍ଣ୍ଣପୁରର ପ୍ରସିଦ୍ଧ ଆଚାର୍ଯ୍ୟ ପରିବାରରେ ତାଙ୍କର ଜନ୍ମ । ଏ ପରିବାରର ଇତିହାସ ଯେତିକି ପ୍ରାଚୀନ, ସେତିକି ବିଖ୍ୟାତ ମଧ୍ୟ । ଯାଜପୁରରୁ

ପୁରୀ ବାଟଦେଇ ଦକ୍ଷିଣ ଓଡିଶାର ଚିକିଟି, ଆଠଗଡ, ଖେମୁଣ୍ଡି, ସୁରଙ୍ଗୀ, ମଞ୍ଜୁଷା ଇତ୍ୟାଦି ଗଡଜାତ ମାନଙ୍କରେ ଏ ବଂଶର ପୂର୍ବାଚାର୍ଯ୍ୟମାନେ ସ୍ୱପରାକାଷ୍ଠା ପ୍ରଦର୍ଶନ କରି ନାରାୟଣାଚାର୍ଯ୍ୟଙ୍କ ସମୟରୁ ଜରଡାର ସୁବର୍ଣ୍ଣପୁରରେ ସ୍ଥାୟୀଭାବେ ବାସକରୁଛନ୍ତି । ପ୍ରୋକ୍ତ ଗଡଜାତ ମାନଙ୍କରେ ପୂର୍ବସୂରୀମାନେ ସଭାପଣ୍ଡିତ, ରାଜକବି, ରାଜଗୁରୁ, ରାଜବୈଦ୍ୟ ତଥା ରାଜସଚିବ ଭାବେ କର୍ମନିର୍ବାହ କରିଥିଲେ । ଏ ବଂଶର ଚକ୍ରପାଣି ଧରଶର୍ମା ଜ୍ୟୋତିର୍ବିଦ୍ୟାରେ ପ୍ରବୀଣତ ହେତୁ ବଡଖେମୁଣ୍ଡି ରାଜାଙ୍କଠାରୁ ''ସିଦ୍ଧାନ୍ତ ଭୂଷଣ'' ଉପାଧିପାଇଥିଲେ । ଶ୍ରୀକର ଆଚାର୍ଯ୍ୟ ଜରଡାରାଜାଙ୍କ ଶିକ୍ଷାଗୁରୁ ଓ ସଭାଧକ୍ଷ ଥିଲେ । ଏକଦା ରାଜାଙ୍କ ସହିତ ତୀର୍ଥାଟନ କାଳରେ କାଶୀକ୍ଷେତ୍ରରେ ପଣ୍ଡିତମାନଙ୍କ ସହିତ ଶାସ୍ତ୍ରଆଲୋଚନାରେ ନିଜର ଦକ୍ଷତା ପ୍ରମାଣିତ କରି 'ଗଙ୍ଗାଦାନ' ନାମରେ ବହୁ ନିଷ୍କର ଭୂସଂପତ୍ତି ପାଇଥିଲେ । ବିଖ୍ୟାତ ପଣ୍ଡିତ ନାରାୟଣାଚାର୍ଯ୍ୟ 'ପଣ୍ଡିତ ରାୟ' ଉପାଧି ଭୂଷିତ ହୋଇଥିଲେ । ପଣ୍ଡିତ ପ୍ରବର ଯତିରାଜାଚାର୍ଯ୍ୟ ବହୁ ସଂସ୍କୃତ ଗ୍ରନ୍ଥ ପ୍ରଣୟନ କରି ସ୍ୱପାଣ୍ଡିତ୍ୟର ନିଦର୍ଶନ ରଖିଯାଇଛନ୍ତି । ତାଙ୍କର ପ୍ରସିଦ୍ଧ ମାଧବବିଳାସ ମହାକାବ୍ୟର ନବମ ସର୍ଗରେ ସ୍ୱପରିଚୟ ଦେବାକୁ ଯାଇ ପିତାମହ ନାରାୟଣାଚାର୍ଯ୍ୟଙ୍କୁ ''ଗୌତମ ଗୋତ୍ର ରୂପକ କ୍ଷୀର ସମୁଦ୍ରରେ ସୁନ୍ଦର ଓ ଦୋଳାୟମାନ ଚନ୍ଦ୍ର ସଦୃଶ୍ୟ (ଆସୀଦ୍ ଗୌତମ-ବଂଶ-ଦୁଗ୍ଧ-ଜଳଧେର୍ମୁଗ୍ଧେନ୍ଦୁ ଲୀଳାୟିତୋ ଶ୍ରୀ ନାରାୟଣ - ସୁରିରାୟ-) ବୋଲି ଉଲ୍ଲେଖ କରିଛନ୍ତି । ସେହି ଗୌତମ ଗୋତ୍ର ରୂପକ କ୍ଷୀର ସମୁଦ୍ରର ପରବର୍ତ୍ତୀ ଦୋଳାୟମାନ ଲୀଳାଚନ୍ଦ୍ର ହେଉଛନ୍ତି ପଣ୍ଡିତ ଯତିରାଜାଚାର୍ଯ୍ୟଙ୍କ ସୁପୁତ୍ର ଆଜିର ପ୍ରଜ୍ଞାପୁରୁଷ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ।

ମୋ ଜୀବନପାଇଁ ବାସ୍ତବରେ ଏଥିଲା ଏକ ପରମ ସୌଭାଗ୍ୟ । 'ସାର' ଯେଉଁ ଦାଣ୍ଡର ଧୂଳି ଖେଳି, ସେ ଧୂଳିକୁ ଏକ ଅନୁପମ ଆଭିଜାତ୍ୟ ପ୍ରଦାନ କରିଥିଲେ ପରବର୍ତ୍ତୀ କାଳରେ ସେ ବିଭୂତିକୁ ବୋଳିହେବାର ଅପୂର୍ବ ସୁଯୋଗ ଲାଭକରିଥିଲି । ତଥାପି 'ସାର'ଙ୍କ ସହିତ ମୋର ଯେ ପ୍ରଥମ ସାକ୍ଷାତ କେବେ ହୋଇଥିଲା ତାହା ସ୍ମରଣ କରିବାର ଉପାୟ ନାହିଁ । କେବଳ ଅନୁମାନ କରିବା କଥା । ହୁଏତ ପ୍ରଥମ ଦେଖା ହୋଇଥବ ମୋର ସ୍କୁଲ ଜୀବନର ଅନ୍ତରଂଗ ବନ୍ଧୁ ତଥା ସାରଙ୍କ ବଂଶଜ ଭାଇ ରାମାନୁଜାଚାର୍ଯ୍ୟ ସହିତ ଗାଁ ଦାଣ୍ଡରେ 'କାଚଗୁଲି' ନେଇ ଖେଳିବା ସମୟରେ । ନତୁବା ଦେଖା ହୋଇଥିବ ବହି-ବସ୍ତାନୀ ମୁଣିଟିକୁ ପିଠିରେ ଝୁଲାଇ ତା'ସହିତ ସ୍କୁଲ ଯିବା ରାସ୍ତାରେ । ନତୁବା ଦେଖା ହୋଇଥିବ, ବର୍ଷାଭିଜା ଗାଁ ଦାଣ୍ଡରେ ବୋହି ଯାଉଥିବା ପାଣିସୁଅକୁ ଅଟକାଇ ଘାଇ କରିବା ଅବସ୍ଥାରେ । ଯେତେବେଳେ ଦେଖା ହେଉନା କାହିଁକି ଏହି ସୌମ୍ୟ-କାନ୍ତ, ତେଜସ୍ୱୀ ସୁଦର୍ଶନ କିଶୋର ସୁଦର୍ଶନଙ୍କୁ ଦେଖି ନିଶ୍ଚୟ ବିସ୍ମୟ-ବିମୂଢ଼ ହୋଇଉଠିଥିବି । ମୋର ସେହି ବିସ୍ମୟ ଓ ବିମୂଢ଼ ଭାବ ସତେ ଯେପରି ମୋର ପ୍ରାଣ ଓ ଆତ୍ମା ସହିତ ଜଡିତ ହୋଇ ରହିଯାଇଛି; ଯାହା ଏବେ ମଧ କଟିନାହିଁ ।

କିନ୍ତୁ ସ୍ମରଣ ହେଉଛି ୧୯୬୧-୬୨ ସାଲର କଥା । ମୁଁ ସେତେବେଳକୁ ଜରଡା ହାଇସ୍କୁଲର ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥାଏ । ଯତିରାଜାଚାର୍ଯ୍ୟ ଥିଲେ ସେ ହାଇସ୍କୁଲର ପଣ୍ଡିତ । ଏହି ସୂତ୍ରରେ ଅନେକ ଥର 'ସାର'ଙ୍କ ଘରକୁ ଯିବା ଆସିବା । ଗାଁର ଅନ୍ୟାନ୍ୟ ପିଲାମାନଙ୍କ ଅପେକ୍ଷା ମୋ ଠାରେ ସେ କି ବିଶେଷତ୍ୱ ଦେଖିଥିଲେ କେଜାଣି, ମତେ ସସ୍ନେହରେ

ତାକି ଅଂକ ପଢ଼ାଇବା ଆରଂଭ କରିଥିଲେ । ମୋ ପାଖରେ କି ଆଶା ପୋଷଣ କରିଥିଲେ, ସେହି ଜାଣନ୍ତି । କିନ୍ତୁ ଏହା ନିଶ୍ଚିତ ଯେ ସେ ଆଶା ମୁଁ କେବେବି ପୂରଣ କରିପାରିନି । ସେ ସ୍ନେହର ଗଣ୍ଠିଧନ ଏବେବି ମୋ ଜୀବନଯାତ୍ରାର ପାଥେୟ ହୋଇରହିଛି ।

ପରବର୍ତ୍ତୀ ସଂପର୍କ ସ୍ଥାପନ ହୁଏ ଖଲ୍ଲିକୋଟ କଲେଜରେ । 'ସାର' ଥାନ୍ତି ଅଧ୍ୟାପକ ଏବଂ ମୁଁ କଲେଜର ପ୍ରଥମ ବର୍ଷରେ ନାମ ଲେଖାଇବା ପାଇଁ ଆସିଥାଏ । ମୋ ଅବଚେତନରେ ତାଙ୍କ ପ୍ରତି ଥିବା ଆକର୍ଷଣହିଁ ବୋଧହୁଏ ଓଡିଆକୁ ଏକ ଇଚ୍ଛାଧୀନ ବିଷୟ ଭାବେ ନେବା ପାଇଁ ମତେ ପ୍ରରଣା ଯୋଗାଇଥିଲା । ସେହି ପ୍ରେରଣାହିଁ ବି.ଏ ଶ୍ରେଣୀରେ ଓଡିଆ ପଢ଼ିବା ପାଇଁ ଏବଂ ଓଡିଆରେ ଏମ୍.ଏ. କରିବା ପାଇଁ ପ୍ରଚୋଦିତ କରିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଓଡିଆ ଭାଷା ଓ ସାହିତ୍ୟର ଅଧ୍ୟାପନା ଓ ଗବେଷଣା ମୂଳରେ ମଧ ରହିଥିଲା ସେହି ପ୍ରେରଣା । କଲେଜର ପ୍ରଥମ ବର୍ଷଠାରୁ ପି.ଏଚ୍.ଡି. ଡିଗ୍ରୀ ଲାଭ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ସାର୍‌କୁ ମୋର ଅଧ୍ୟାପକ ଓ ଦିଗ୍‌ଦ୍ରଷ୍ଟା ରୂପରେ ପାଇଛି । 'ସାର୍'ଙ୍କ ପଠନ କୌଶଳରେ ଏକ ଅନୁପମ ଚାତୁରୀ ଓ ବୈଚିତ୍ର୍ୟ ଥିଲା । ବଡ ବଡ ଶ୍ରେଣୀରେ ଯେତେବେଳେ ସେ ଏମ୍.ଆଇ.ଏଲ. ପଢ଼ାନ୍ତି ସେତେବେଳେ ସେ କହି ଯାଆନ୍ତି ଅନର୍ଗଳ । ସମଗ୍ର ଶ୍ରେଣୀ ସେତେବେଳକୁ ପ୍ରାୟତଃ ମଂତ୍ରମୁଗ୍ଧ । ଯଦିବା କେହି ପଛବେଂଚ ରେ ବସିଥିବା ଅବାଂଛିତ କିଛି ବିଶୃଂଖଳା ସୃଷ୍ଟି କରେ । ସେ ସେଥିପ୍ରତି ରହୁଥିଲେ ନିର୍ଲିପ୍ତ । କିନ୍ତୁ ସାରଙ୍କ ଏହି ବଡ ଜେନେରାଲ୍ କ୍ଲାସଗୁଡିକ ଅପେକ୍ଷା, ଅନର୍ସ ଓ ଏମ୍.ଏ. କ୍ଲାସ ଭଳି ଛୋଟ କ୍ଲାସଗୁହିକ ସର୍ବଦା ଉପଭୋଗ୍ୟ ଓ ଉପାଦେୟ । ପ୍ରତ୍ୟେକଟି କ୍ଲାସ ଭାବ ଓ ସାର ଗର୍ଭକ ଏବଂ ସାରଙ୍କ ଅତଳ ଜ୍ଞାନ, ବାଙ୍ଗ୍ମାନ ଓ ପାଣ୍ଡିତ୍ୟର ଦ୍ୟୋତକ । ପ୍ରତ୍ୟେକଟି କ୍ଲାସ ବହୁ ନୂତନ ତଥ୍ୟ ତତ୍ତ୍ୱରେ ବିକସିତ । ଛାତ୍ର-ଛାତ୍ରୀ ଯେକୌଣସି ବିଷୟରେ ଆଲୋଚନା ପାଇଁ ଅଥବା ନିଜ ନିଜର ସଂଦେହ ମୋଚନ ପାଇଁ ଆଗେଇ ଆସିଥାନ୍ତି । ପ୍ରତ୍ୟେକଟି ପ୍ରଶ୍ନର ଯଥାଯଥ ଓ ମାର୍ମିକ ଉତ୍ତର ଲାଭ କରିଥାନ୍ତି । ସେଥିରେ ପ୍ରାଚୀନ, ମଧ ଓ ଆଧୁନିକ ଯୁଗର ଭେଦ ନଥାଏ । ଅଥବା, କାବ୍ୟ, ନାଟକ, ଉପନ୍ୟାସ ଓ ଗଳ୍ପ ଆଦିର ମଧ ଭେଦ ନଥାଏ । ଯେକୌଣସି ମୁହୂର୍ତ୍ତରେ ଯେ କୌଣସି ପ୍ରଶ୍ନହେଉ ତାର ଉତ୍ତର ପାଇବା ସୁନିଶ୍ଚିତ । ସେଥିପାଇଁ ଛାତ୍ର ମହଲରେ ସେ ଏକ 'ଚଳନ୍ତି ଏନ୍‌ସାଥକ୍ଲୋ ପିଡିଆ' ଭାବରେ ପରିଚତ ଥିଲେ । ପ୍ରତ୍ୟେକଟି କ୍ଲାସ ମଧ ଚଟୁଳ ପରିହାସ ଓ ଲଘୁ ବ୍ୟଂଜନାରେ ବ୍ୟଂଜିତ । ସେ ପରିହାସରେ କିନ୍ତୁ କାହାକୁ ଆଘାତ କରିବା କିମ୍ବା କାହାରି ହୃଦୟରେ ବେଦନା ସୃଷ୍ଟିର ଅଭିପ୍ରାୟ ନଥାଏ । କ୍ଲାସ ଚାଲିଥିବା ସମୟରେ ଯଦିବା କୌଣସି ଛାତ୍ର ସଚେତନ ବା ଅଚେତନ ଭାବରେ ସାର୍‌କୁ କିଛି ଆଘାତ ଦିଏ ତେବେ, ତାପ୍ରତି ସାର୍‌ଙ୍କ ଠାରୁ କୌଣସି କ୍ରୋଧ ଓ ବିରକ୍ତି ପ୍ରକାଶ ପାଉନଥାଏ । କେବଳ ଏକ ଆହତ ଅଭିମାନରେ 'ସାର' ଫୁଲି ଉଠନ୍ତି ଏବଂ ମୁହଁର ରୂପଚିତ୍ରରେ ସାମାନ୍ୟ ପରିବର୍ତ୍ତନ ଦେଖାଦିଏ । ବାସ୍ ସେତିକି ଆମପାଇଁ ଯଥେଷ୍ଟ । ଜୀବନରେ ପୁଣି ସେହିଭଳି ଭୁଲ୍ ନକରିବାର ଏକ ପ୍ରତିଜ୍ଞା ସ୍ୱତଃ ମନକୁ ଆସିଯାଏ । ସାର ପିଲାଙ୍କ ସହିତ ମିଶନ୍ତି ଅବାଧରେ । ହସ-ଖୁସି, ହାସ-ପରିହାସରେ ସେ ଉନ୍ମୁକ୍ତ ତଥା ପ୍ରାଣଖୋଲା ଭାବରେ ଯୋଗ ଦିଅନ୍ତି । ଛାତ୍ରଙ୍କ ସହିତ ସଂପୂର୍ଣ୍ଣ ଏକାତ୍ମ ହୁଅନ୍ତି । ଏହାରି ଭିତରେ ହିଁ ଛାତ୍ରମାନଙ୍କ ହୃଦୟରେ ସଂଚିତ ହୋଇଯାଏ ତାଙ୍କ ପ୍ରତି ସ୍ନେହ, ସଂଭ୍ରମ ଓ ଅକପଟ ଗୁରୁଭକ୍ତି । ଏହାହିଁ ସାରଙ୍କ ବ୍ୟକ୍ତିତ୍ୱ ଓ ବ୍ୟକ୍ତିତ୍ୱର ସମ୍ମୋହନ ରୂପ । ଏହି ବ୍ୟକ୍ତିତ୍ୱର ବାହ୍ୟରୂପଟିରେ

ପ୍ରଶାନ୍ତ ମହାସାଗରର ଗଭୀରତା ଓ ଗାମ୍ଭୀର୍ଯ୍ୟର ଚେତନା ଥିଲେ ମଧ୍ୟ ଅନ୍ତଃସଲିଳା ଫଲ୍‌ଗୁଭଳି ଅନ୍ତର ଭିତରେ ସ୍ନେହ, ଶ୍ରଦ୍ଧା ଓ ମମତାର ଏକ ସ୍ୱଚ୍ଛଧାରା ହିଁ ସର୍ବଦା ପ୍ରବାହିତ ।

ମୋର କିଶୋର ଜୀବନରୁ ଏହି ବ୍ୟକ୍ତିତ୍ୱ ମତେ ଅନେକ ଭାବରେ ଆକୃଷ୍ଟ କରିଛି । ସେହି ଏକ ଅଦୃଶ୍ୟ ଆକର୍ଷଣ ମୋ ଜୀବନର ଦିଗ୍‌ନିର୍ଣ୍ଣୟକ କମ୍ପାସ ଯଂତ୍ର ହୋଇ ଏକୂଳରେ ଆଣି ଲଗାଇ ଦେଇଛି । ଆଜି ଏ କୂଳରେ ଛିଡା ହୋଇ ଆରକୂଳର ଦୈର୍ଘ୍ୟକୁ ଯେତେବେଳେ ଆକଳନ କରିବାକୁ ଚେଷ୍ଟାକରେ ସେତେବେଳେ ମୋର ମନେହୁଏ ଆଜିର ମୋର ଯେଉଁ ଯତ୍ ସାମନ୍ୟ ସାମାଜିକ ସ୍ୱୀକୃତି ତଥା ସାଧନା ଓ ସିଦ୍ଧି କେବଳ ଆମ ଗାଁରେ ''ଆଚାର୍ଯ୍ୟ ଥଲେ ବୋଲି '' ସମ୍ଭବ ହୋଇଛି ।

*ଡକ୍ଟର ଶରତ ଚନ୍ଦ୍ର ବିଷୋୟୀ*
*ପ୍ରାଧ୍ୟାପକ, ଓଡିଆ ବିଭାଗ,*
*ଖେମୁଣ୍ଡି ମହାବିଦ୍ୟାଳୟ, ଦିଗପହଣ୍ଡି,ଗଂଜାମ ।*

# ଚନ୍ଦନ ବୃକ୍ଷର ଅଂଗେ ଅଂଗେ ବାସ୍ନା

ଜଣେ ପାଠକ ଭାବରେ, ଧାଡିଏ କବିତା ପାଇଁ, ଜଣେ ଦ୍ରଷ୍ଟା ଭାବରେ ଟେନାଏ ସୌନ୍ଦର୍ଯ୍ୟ ପାଇଁ ମୋର ଥିଲା ଅନନ୍ତ ପ୍ରତୀକ୍ଷା । ଏ ପ୍ରତୀକ୍ଷା ଅନ୍ୟ କିଛି ପାଇଁ ନଥିଲା; ଥିଲା ଓଡିଆ କାବ୍ୟପରଂପରାର ସମୃଦ୍ଧ ମୂଲ୍ୟବୋଧର ଉଦ୍‌ଘାଟକ ତଥା ସଂଗ୍ରହ, ସଂପାଦନା, ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ସ୍ୱତଂତ୍ର ସ୍ୱାକ୍ଷର ଅଙ୍କନ କରିଥିବା ପରମ ପୂଜ୍ୟ ଗୁରୁଦେବ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ପବିତ୍ର ପାଦସ୍ପର୍ଶପାଇଁ ।

୧୯୯୦ ମସିହା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟରେ ଓଡିଆ ସମ୍ମାନ ନେଇ ପଢୁଥାଉ । ଆମ ଅନର୍ସ କ୍ଲାସରେ ଲାବଣ୍ୟବତୀ ପଢ଼ାଉଥାନ୍ତି ସାମନ୍ତ ସାର୍ । ସଂସ୍କୃତ କାବ୍ୟପରଂପରା ଏବଂ ଓଡିଆ କାବ୍ୟ ସାହିତ୍ୟର ଐତିହାସିକ ପୃଷ୍ଠଭୂମି ସଂପର୍କରେ ଆଲୋଚନା କଲାବେଳେ, ଲାବଣ୍ୟବତୀ ପ୍ରାଚୀ ସଂସ୍କରଣ ଠାରୁ ଆରମ୍ଭ କରି ପ୍ରକାଶିତ ବହୁ ଉପାଦେୟ ଗ୍ରନ୍ଥ ବିଷୟକ ଟୀକା ଟିପ୍‌ପଣି ପ୍ରଦାନ ଅବସରରେ ସାର୍‌ଙ୍କଠାରୁ 'ଓଡିଆ କାବ୍ୟ କୌଶଳ'ର ନାମ ଶୁଣିଥିଲି । ମନେରଖିଥିଲି-''ଓଡିଆ କାବ୍ୟ କୌଶଳକୁ ବାଦ୍‌ଦେଇ ମଧ୍ୟଯୁଗୀୟ ସାହିତ୍ୟ ଆଲୋଚନାର ରୂପରେଖ ଆଦୌ ଚିନ୍ତା କରାଯାଇପାରେନା''। ସେହିଦିନଠାରୁ ଓଡିଆ କାବ୍ୟକୌଶଳ ପଢ଼ିବା ପାଇଁ ଯେତିକି ଆଗ୍ରହୀ ହୋଇଛି, ତତୋଽଧିକ ଆଶା ପୋଷଣ କରିଛି ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀକକ୍ଷରେ କାବ୍ୟ କୌଶଳର ସ୍ରଷ୍ଟାଙ୍କର ପ୍ରତ୍ୟକ୍ଷ ଶିକ୍ଷାଦାନ ଲାଭକରିବାପାଇଁ । ସମୟ ସହଯୋଗ କଲା । ୧୯୯୩ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡିଆ ବିଭାଗରେ ଛାତ୍ରଭାବେ ଯୋଗଦେଲି । ତାରିଖ ଠିକ୍ ମନେ ପଡୁନି, ହେଲେ ନଭେମ୍ବର ପ୍ରଥମ ସପ୍ତାହର କୌଣସି ଏକ ଦିନ, ସମୟ ପ୍ରାୟ ୧୧ଟା ହେବ ଜଣେ ସୌମ୍ୟ, ଶାନ୍ତ, ଋଷିପ୍ରତିମ, ପରିପୂର୍ଣ୍ଣ ବ୍ୟକ୍ତିତ୍ୱର ମଣିଷଟିଏ, (ଯାହାଙ୍କ ସଂପର୍କରେ ଆଗରୁ କିଛି ନ ଜାଣିଥିଲେ ବି ପ୍ରଥମ ଦେଖାରେ ହିଁ ଭକ୍ତିରେ ମୁଣ୍ଡ ନଇଁଯିବ) ଆମ ଓଡିଆ ବିଭାଗର କାର୍ଯ୍ୟାଳୟ ଭିତରକୁ ପ୍ରବେଶ କଲେ । ଦେଖିଲି, ସମସ୍ତେ ସଂଭ୍ରମରେ ଦଣ୍ଡାୟମାନ ହେଲେ । ସେତେବେଳଯାଏଁ ମୁଁ ଜାଣିନଥାଏ - ସେ ହେଉଛନ୍ତି ପ୍ରଫେସର ଆଚାର୍ଯ୍ୟ । ଜଣେ ସିନିୟର ଛାତ୍ର ବଂଧୁଙ୍କୁ ପଚାରି ସାର୍‌ଙ୍କ ପରିଚୟ ସଂପର୍କରେ ନିଃସନ୍ଦେହ ହେଲି । ସ୍ୱଳ୍ପ ସମୟପରେ କାର୍ଯ୍ୟାଳୟ ଛାଡି ସାର୍ ତାଙ୍କ ପ୍ରକୋଷ୍ଠ ଭିତରକୁ ପ୍ରବେଶ କଲେ । ମୁଁ ବାହାରେ ଶଂକିତ ଏବଂ ନିଶବ୍ଦ ପଦପାତରେ ଏପଟ ସେପଟ ହୋଇ ପରଦା ଫାଙ୍କ ଦେଇ ସାର୍‌ଙ୍କୁ ଦେଖୁଥାଏ । ମନେ ହେଉଥାଏ, ସତେଯେମିତି ବହୁଦିନ ଧରି ଖୋଜୁଥିବା ମୂଲ୍ୟବାନ ରତ୍ନଟିଏ ଆଜି ପାଇଗଲି !

କିଛି ଦିନପରେ, ନଭେମ୍ବର ୨୩ ତାରିଖରେ ଆଚାର୍ଯ୍ୟ ସାର୍ ଆମ ପଞ୍ଚମ ବର୍ଷର ପ୍ରଥମ କ୍ଲାସ ନିଅନ୍ତି । ସଂସ୍କୃତ ଅଳଂକାର ଶାସ୍ତ୍ରର ବ୍ୟାଖ୍ୟା ଏବଂ ବୈଚିତ୍ର୍ୟ

ପ୍ରତିପାଦନରେ ପ୍ରଛାସିକ୍ତ ହୋଇଯାଏ ପିରିୟଡଟି । ଚାଲିଗଲା ବର୍ଷଟିଏ । ଆସିଲା ଷଷ୍ଠ ବର୍ଷ । ସ୍ୱତଂତ୍ର ପତ୍ରରୂପେ ମୁଁ ''ଉପେନ୍ଦ୍ର ଭଞ୍ଜ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟ''କୁ ପଢ଼ିବା ପାଇଁ ସ୍ଥିର କଲି । କାରଣ ଆଚାର୍ଯ୍ୟ ସାର୍‌ଙ୍କ ପଠନଶୈଳୀର ଆଙ୍ଗିକ ଏବଂ ଆତ୍ମିକ ଆକର୍ଷଣ ମୋ ପାଇଁ ଥିଲା ଦୁର୍ନିବାର ।

୧୯୯୫ ମସିହା ଫେବୃୟାରୀ ୨ କିମ୍ବା ୩ ତାରିଖ । ଆଚାର୍ଯ୍ୟ ସାର୍‌ଙ୍କ ସହିତ ଭେଟିବା ପାଇଁ ସେଦିନ ସାମନ୍ତ ସାର୍ ଆସିଥାନ୍ତି । ମୋ ଭିତରେ ଆଚାର୍ଯ୍ୟ ସାର୍‌ଙ୍କୁ ଖୁବ୍ ନିକଟରେ ପାଇବାର ଆଶାଟିଏ କ୍ରମଶଃ ବଳବତ୍ତର ହେଉଥାଏ । ହେଲେ ''ମୁଁ ମଧ୍ୟ ଆପଣଙ୍କ ସହିତ ଆଚାର୍ଯ୍ୟ ସାର୍‌ଙ୍କ ପାଖକୁ ଯିବି''- ଏକଥା ମୁହଁ ଖୋଲି ସାମନ୍ତ ସାର୍‌ଙ୍କୁ କହିପାରୁ ନଥାଏ । ସୌଭାଗ୍ୟକୁ ଆଚାର୍ଯ୍ୟ ସାର୍ ସେଦିନ ଛୁଟି ନେଇ ଥାଆନ୍ତି ଏବଂ ଆମ କ୍ଲାସ୍ ବି ଥାଏ ଆଚାର୍ଯ୍ୟ ସାର୍‌ଙ୍କର । ସାମନ୍ତ ସାର୍ କହିଲେ- ''ନାରଣ ଚାଲ ସାର୍‌ଙ୍କୁ ତାଙ୍କ ଘରେ ଟିକେ ଦେଖାକରି ଆସିବା ।'' ଏବାଣୀ ଭଗବତ୍ ସଂଦର୍ଶନ ନିମନ୍ତେ ମହିମା ଗୋସ୍ୱାମୀଙ୍କ ଭୀମଭୋଇଙ୍କ ପ୍ରତି ଦିବ୍ୟାଜ୍ଞାନ ପ୍ରଦାନ ପରି ମନେହେଲା ମତେ । ଉଭୟେ ଭଞ୍ଜବିହାରରୁ ଯାଇ କମାପଲ୍ଲୀ ଛକରେ ଓହ୍ଲାଇଲୁ ଏବଂ ଆଗରୁ ମୋ ପାଇଁ ସମ୍ପୂର୍ଣ୍ଣ ଭକ୍ତର ଏ ଯେମିତି ଦେବାଳୟ ଯାତ୍ରା । ଆଗ୍ରହ ଏବଂ ଆବେଗ-ଦେବତା ଏବଂ ଦେବାଳୟ, ଉଭୟଙ୍କୁ ନେଇ । ଘରେ ପହଞ୍ଚି ଶୁଣିଲୁ, ସାର୍ ଅଛନ୍ତି ତାଙ୍କର 'ସୁଦର୍ଶନ ଗ୍ରନ୍ଥାଗାର'ରେ । ସାର୍‌ଙ୍କ ଝିଅ ଆମକୁ ବସିବା ପାଇଁ କହି ସାମନ୍ତ ସାର୍ ଆସିଥିବା ଖବର ସାର୍‌ଙ୍କୁ ଜଣାଇଦେଲେ । ସାମନ୍ତ ସାର୍ ସେ ଘର ପାଇଁ ନୂଆ ନୁହନ୍ତି; ନୂଆ କେବଳ ମୁଁ । ସେଥିପାଇଁ ଅସୁବିଧାଟା ମୋ ଭିତରେ ଉଠପଡ ହେଉଥାଏ । କିଛି ସମୟପରେ ସାର୍ ଆସିଲେ । ମୋର ବହୁ ପ୍ରତୀକ୍ଷିତ ଆଶା ଚରିତାର୍ଥ ହେଲା । ମୁଁ ମନେ ମନେ ସାମନ୍ତ ସାର୍‌ଙ୍କୁ ଅଜସ୍ର ସାଧୁବାଦ ଜଣାଉଥାଏ । ସେ ଦୁହିଁଙ୍କ ଭିତରେ ସୌଜନ୍ୟ ଆଳାପ ଓ ଆଲୋଚନା ଚାଲିଥାଏ । ସାରଙ୍କର ଗ୍ରହଣୀୟତା ଯେତିକି ଉଦାର, ଉପସ୍ଥାପନା ସେତିକି ସ୍ୱଚ୍ଛ । କି ପ୍ରଚଣ୍ଡ ଜ୍ଞାନ ! ଅଥଚ ଏତେ ନମ୍ର, ଏତେ ବାକ୍ ସଂଯମ । ଜୀବନରେ ଥରେଅଧେ ଏମିତି ମଣିଷଙ୍କ ସାନ୍ନିଧ ପାଇଗଲେ ସାଧାରଣ ମଣିଷର ମାନସିକ ଦୌର୍ବଲ୍ୟ ସତେ ଯେମିତି ଚିରଦିନ ପାଇଁ ଧୋଇ ହୋଇଯିବ ।

ଆମ ଷଷ୍ଠ ବର୍ଷରେ ସାର୍ ନିୟମିତ କ୍ଲାସ ନିଅନ୍ତି, ସ୍ୱତଂତ୍ର ପତ୍ର ବୁଝିବା ପାଇଁ ସହପାଠୀ ଅରୁଣ ପରିଡାଙ୍କ ସହ ବହୁଥର ସାର୍‌ଙ୍କ ଘରକୁ ଯାଇଛି । ପରିପୂର୍ଣ୍ଣ ତୃପ୍ତି ନେଇ ଫେରିଛି ବି । ଥରେ ଭଞ୍ଜବିହାରରେ ସାର୍‌ଙ୍କ ପ୍ରକୋଷ୍ଠରେ ଆମେ ଉଷାଭିଳାଷ ସଂପର୍କରେ ସାର୍‌ଙ୍କୁ ପଚାରିଲୁ । ବାହାରେ ପ୍ରବଳ ବର୍ଷା । ସାରଙ୍କ ଚାଲିଥାଏ ତାତ୍ତ୍ୱିକ ବିଶ୍ଳେଷଣ-''ଶୈବ ମତବାଦ ଏବଂ ବୈଷ୍ଣବ ମତବାଦର ଏକ ସମନ୍ୱୟ ବାଦୀ କାବ୍ୟ ଉଷାଭିଳାଷ, ଉଷା ଶୈବ କନ୍ୟା, ଅନିରୁଦ୍ଧ ବୈଷ୍ଣବ ପୁତ୍ର । ଦ୍ରାବିଡ (ଶୋଣିତ ପୁର) ଏବଂ ଆର୍ଯ୍ୟ (ଦ୍ୱାରକା) ଏ ଉଭୟର ସମନ୍ୱୟ ଉଷାଭିଳାଷରେ ଦେଖିବାକୁ ମିଳେ । ତତ୍‌କାଳୀନ ସାମଜରେ ଶୈବ ଧର୍ମ ଉପରେ ବୈଷ୍ଣବ ଧର୍ମର ପ୍ରତିପତ୍ତି ଏବଂ ଶୈବଗଣ, ବୈଷ୍ଣବ ଗଣଙ୍କ ଦ୍ୱାରା କିପରି ପରାଜିତ ହୋଇଛନ୍ତି, କବି ଶିଶୁ ଶଙ୍କର ଆମକୁ ସୂଚାଇ ଦିଅନ୍ତି''- ଇତ୍ୟାଦି କେତେ କ'ଣ ।

ସାର୍‌ଙ୍କ ପାଣ୍ଡିତ୍ୟର ଆକଳନ ପ୍ରକାଶ୍ୟରେ ନୁହେଁ, ନୀରବ ଅନୁଭବରେ ହିଁ ଜାଣିହେବ । ତାଙ୍କର ସାହିତ୍ୟିକ ଜୀବନର ଗଭୀରତା ମାପିବା ମୋ ଭଳି ନିର୍ବୋଧମାନଙ୍କ ପକ୍ଷେ ସଂପୂର୍ଣ୍ଣ ସାଧ୍ୟାତୀତ । ଚନ୍ଦନ ଗଛର ତ ଅଂଗେ ଅଂଗେ ବାସ୍ନା । ତେଣୁ ସେ ଧୃଷ୍ଟତା ମୋର ନାହିଁ । କେବଳ ସେହି ପୁଣ୍ୟଶ୍ଳୋକ ପରମାରାଧ୍ୟ ଗୁରୁଦେବ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ପାଦପଦ୍ମରେ ଭକ୍ତି ଅର୍ଘ୍ୟ ନିବେଦନ କରୁଛି ମାତ୍ର ।

ଅଧ୍ୟାପକ ନାରାୟଣ ପ୍ରଧାନ,
ଓଡ଼ିଆ ବିଭାଗ, ପଞ୍ଚାୟତ କଲେଜ,
ଲାଠୋର, ବଲାଙ୍ଗିର ।

# ଆଚାର୍ଯ୍ୟ ପ୍ରବର

ମୋପରି ଜଣେ ସାଧାରଣ ବ୍ୟକ୍ତି ପକ୍ଷେ ଏହିପରି ଜଣେ ବିଶିଷ୍ଟ ଶିକ୍ଷାବିତ୍, ଓଡିଆ ଭାଷା ସାହିତ୍ୟ ପ୍ରେମୀ, ପ୍ରବୀଣ ଆଦର୍ଶ ଶିକ୍ଷାଗୁରୁ, ପ୍ରଚଣ୍ଡ ଭଗବତ୍ ବିଶ୍ୱାସୀ, ବହୁ ପ୍ରତିଭାର ଅଧିକାରୀ, ନିରଳସ ଜୀବନାଦର୍ଶବ୍ରତୀ, ନୀତି ନିପୁଣ, ବାକ୍‌ପଟୁ ଛାତ୍ର ବତ୍ସଳ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସଂପର୍କରେ ଲେଖିବା ଅସମ୍ଭବ ହେଲେ ମଧ ତାଙ୍କର ସ୍ନେହ, ଶ୍ରଦ୍ଧା, ଶିକ୍ଷାଦି ମୋର ହୃଦୟକୁ ଯେପରି ଭାବେ ଉଦ୍‌ବେଳିତ କରିଛି, ସେଇ ଅନୁଭୂତିରୁ ଦୁଇପଦ ଲେଖିବା ପାଇଁ ପ୍ରୟାସୀ ହୋଇଛି ।

ମ ୧୯୬୯ରୁ ଗଂଜାମ ମହାବିଦ୍ୟାଳୟରେ ଓଡିଆ ବିଭାଗରେ ଅଧ୍ୟାପକ ଭାବେ କାର୍ଯ୍ୟ କରିବାର ପ୍ରାୟ ଦଶବର୍ଷପରେ ଏହି ମହାଶୟଙ୍କ ସହ ପରିଚୟ ହୁଏ ଭଂଜବିହାରରେ ମୋର ପୂଜ୍ୟ ଗୁରୁଦେବ ଡଃ କାହ୍ନୁଚରଣ ମିଶ୍ରଙ୍କ ମାଧମରେ । ତାପରେ ବହୁବାର ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗରେ ତାଙ୍କ କୋଠରୀରେ ବସି ଆଳାପ ଆଲୋଚନା କରିବାର ସୁଯୋଗ ପାଇଥିଲି । ମ ୧୯୮୩ରେ ଶିକ୍ଷା ନିର୍ଦ୍ଦେଶକ ଏମ.ଫିଲ୍, ପିଏଚ.ଡି ନକଲେ ବାର୍ଷିକଭରା ମିଳିବ ନାହିଁ, ନିର୍ଦ୍ଦେଶ ଦେବାରୁ ବାଧ ହୋଇ ବୁଢ଼ା ବୟସରେ ମୋର ଛାତ୍ର ଅଶୋକ ପଟ୍ଟନାୟକ ଓ ଅନ୍ୟାନ୍ୟ ମାନଙ୍କ ସହିତ ମୋତେ ଏମ୍.ଫିଲ୍ ଶ୍ରେଣୀରେ ପାଠ ପଢ଼ିବାକୁ ପଡିଲା । ଡଃ. ଆଚାର୍ଯ୍ୟ ଶ୍ରେଣୀଗୃହରେ ପାଠ୍ୟଦାନ ଦେଉଥିବା ସମୟରେ ମୁଁ ମନେ ମନେ ନିଜକୁ ଲଜ୍ଜିତ ମନେ କରୁଥିଲି । ବଂଧୁ ଭାବରେ ଯାହାଙ୍କ ସହିତ ବସି ଚା' ପିଉଥିଲି, ତାଙ୍କ ସାମନାରେ ଛାତ୍ର ଭାବରେ କ୍ଲାସରେ ବସିଛି । ଚାକିରୀ ବଞ୍ଚାଇ ରଖିବା ଅଭିପ୍ରାୟରେ ଏହା ଏକାନ୍ତ ଆବଶ୍ୟକ ଏହିପରି ଭାବି ମନକୁ ସାନ୍ତ୍ୱନା ଦେଇ ଦିନ ଗଣୁଥାଏ, କେଉଁ ଦିନ ଏହି କାର୍ଯ୍ୟକ୍ରମ ଶେଷ ହେବ । ସମୟ ବଡବଳବାନ । ଏହିପରି ଭାବୁ ଭାବୁ ବର୍ଷ ଶେଷ ହୋଇଛି । ଡଃ. ଆଚାର୍ଯ୍ୟଙ୍କ ନିର୍ଦ୍ଦେଶନାରେ ମୁଁ ଏମ୍.ଫିଲ୍‌ରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି । ଏହାପରେ ଡଃ. ଆଚାର୍ଯ୍ୟ ମୋତେ ପିଏଚ.ଡି କରିବା ପାଇଁ ବହୁବାର ବୁଝାଇଛନ୍ତି । ଏପରିକି ନିଜ କୋଠରୀକୁ ଡାକି ବଂଧୁ ସୁଲଭ ବ୍ୟବହାରରେ କରିଥିବା ଅନୁରୋଧ ''ପୂର୍ଣ୍ଣବାବୁ , ତୁମେ ପିଏଚ.ଡି କରିବା ଏକାନ୍ତ ଆବଶ୍ୟକ । ତୁମେ ଯଦି ଗବେଷଣା ନକର ପିଲାମାନଙ୍କୁ ତୁମର କି ଶିକ୍ଷା ଦେବ ?'' ଜୀବନରେ ଭୁଲିହେବ ନାହିଁ । ତାପରେ ମୁଁ ତାଙ୍କର ନିର୍ଦ୍ଦେଶରେ ପିଏଚ.ଡି ଲାଗି ନାମ ପଞ୍ଜିକରଣ କଲି ସତ, କିନ୍ତୁ ତା ପରେ ପରେ ମୋର ବଦଳିନିର୍ଦ୍ଦେଶ ଆସିଲା । ଗଂଜାମ କଲେଜରୁ ବିଦାୟ ନେବା ପୂର୍ବରୁ ଡଃ.ଆଚାର୍ଯ୍ୟଙ୍କୁ ବ୍ରହ୍ମପୁର ଯାଇ ତାଙ୍କ ବାସଭବନରେ ଦେଖାକରି କହିଥିଲି, ''ସାର୍ ମୋର ଗବେଷଣାରେ ଏଇଠି ଡୋରି ବନ୍ଧା ହେଲା, ମୋର ବଦଳି ହୋଇଛି, ମୁଁ ଜଗତ୍‌ସିଂହପୁର ଯାଉଛି, କେବଳ ଆପଣଙ୍କୁ ଦେଖାକରିବାକୁ ଆସିଥିଲି '' ସେଦିନ ମଧ ସେ ମହାଶୟ ମୋତେ ସହାସ୍ୟ ବଦନରେ କହିଥିଲେ, ପୂର୍ଣ୍ଣବାବୁ, ଭଗବାନଙ୍କର ଇଚ୍ଛା ଆପଣ ମୋ ପାଖରେ ଏ କାର୍ଯ୍ୟ କରିପାରିବେନାହିଁ, କିନ୍ତୁ ଆପଣ ନିଶ୍ଚୟ ପିଏଚ୍.ଡି କରିବେ'' ।

ଦୁଇଶହ ପଚାଶ କିଲୋମିଟର ଦୂର ଜଗତ୍‌ସିଂହପୁରରେ ରହି ଦୀର୍ଘ ସାତବର୍ଷକାଳ ଡଃ. ଆଚାର୍ଯ୍ୟ ମହାଶୟଙ୍କ ସହ ଯୋଗାଯୋଗ ରକ୍ଷାକରି ଓ ବହୁବାର ବ୍ରହ୍ମପୁର ଯିବା ଆସିବାକରି ଖର୍ଚ୍ଚାନ୍ତ ହେବାପରେ ମନରେ ବିରକ୍ତି ଆସିଛି । ତିନିଥର ଲେଖା କଟାକଟି ହୋଇ ଚତୁର୍ଥ ଥରରେ ପଡିଛି । ମନରେ ଅତିଶୟ ଦୁଃଖ ହେବାରୁ ରାଗରେ ଡଃ.ଆଚାର୍ଯ୍ୟଙ୍କ ନିକଟକୁ ପତ୍ରଟିଏ ଲେଖିଛି - ''ସାର୍, ପ୍ରଣାମ ଗ୍ରହଣ କରିବେ । ମୋର ପିଏଚ.ଡି କରିବା ଦରକାର ନାହିଁ । ବହୁବାର ବ୍ରହ୍ମପୁର ଯାଇ ବହୁତ ଖର୍ଚ୍ଚାନ୍ତ ହେଲିଣି, ବହୁଛୁଟି ମଧ୍ୟ ନେଇଛି । ମୁଁ ତ ପ୍ରାଧ୍ୟାପକ ହୋଇ ସାରିଛି । ଆଉ ଏତେ ପରିଶ୍ରମ ଓ ଖର୍ଚ୍ଚାନ୍ତ ହୋଇ ପିଏଚ୍.ଡି ପାଇଲେ କ'ଣ ପ୍ରଫେସର ହୋଇଯିବି ? ମୋତେ କ୍ଷମା କରିବେ - ଆଉ ଲେଖିବାକୁ ମୋର ଧୈର୍ଯ୍ୟନାହିଁ ।

ଇତି

ଆପଣଙ୍କର ସ୍ନେହାଧୀନ ପୂର୍ଣ୍ଣ ''

ମୁଁ ଚିଠି ଦେବାର ଠିକ୍ ପାଞ୍ଚଦିନ ପରେ ଡଃ.ଆଚାର୍ଯ୍ୟଙ୍କର ହସ୍ତଲେଖା ଗୋଟିଏ ପୋଷ୍ଟକାର୍ଡ ଚିଠି ମୋତେ ଡାକ ପିଅନ ଦେଲା । ସେ ଚିଠିଟିକୁ ଅଦ୍ୟାପି ମୁଁ ସାଇତି ରଖିଛି । ସେଥିରେ ନିମ୍ନୋକ୍ତ ଭାବେ ଲେଖାହୋଇଥିଲା ।-

''ପ୍ରିୟ ପୂର୍ଣ୍ଣବାବୁ,

ଆଶାକରେ ପ୍ରଭୁଙ୍କ ଦୟାରୁ ସପରିବାରେ କୁଶଳରେ ଥିବେ । ଆପଣଙ୍କର ଚିଠିଟି ପାଇ ବିଶେଷ ମର୍ମାହତ ହେଲି । ଆପଣ ଯାହା ଲେଖିଛନ୍ତି, ତାହା ଠିକ୍ । ବହୁତ ଖର୍ଚ୍ଚାନ୍ତ ହେଲେଣି, ସମୟ ନଷ୍ଟ କଲେଣି - କିଛି ଲାଭ ନାହିଁ । କିନ୍ତୁ ଆପଣ ଉପର ଠାଉରିଆ ଭାବେ ପିଏଚ୍.ଡି ଡିଗ୍ରୀ ପାଇଗଲେ ମୋର ଯେଉଁ ଅଶେଷ କ୍ଷତି ହେବ ତାହା ଚିନ୍ତା କରିଛନ୍ତି କି ? ଆପଣ ମୋର ଜଣେ ସମବୟସ୍କ ବଂଧୁ - ଆଉ ଅଧିକ କ'ଣ ଲେଖିବି ।

ଇତି

ଶୁଭାକାଂକ୍ଷୀ ସୁଦର୍ଶନ

ଏହି ଚିଠିଟିହିଁ ମୋ ଜୀବନରେ ଅମୂଲ୍ୟସମ୍ପଦରୂପେ ଏବେ ମଧ୍ୟ ମୁଁ ତାକୁ ସାଇତି ରଖିଛି । ଉକ୍ତ ଚିଠି ମୋ ଜୀବନରେ ଯେଉଁ ପଥ ପ୍ରଦର୍ଶନ କରିବାରେ ସହାୟକ ହୋଇଛି ତାହା ଏଠାରେ ପ୍ରକାଶ କରିବା ସମ୍ଭବ ନୁହେଁ । ଏହାପରେ ବ୍ରହ୍ମପୁର ଯାଇ ଡଃ.ଆଚାର୍ଯ୍ୟଙ୍କୁ କ୍ଷମା ମାଗିଛି । ଉତ୍ତରରେ ସେ କହିଥିଲେ ପୂର୍ଣ୍ଣବାବୁ, ଆପଣତ ଏତିକି ଲେଖିଥିଲେ, ଏଥିରେ ବା ଦୋଷ କ'ଣ । ତତ୍ତ୍ୱାବଧାରକ ହେଲେ କେତେ ଯେ କଥା ସହିବାକୁ ହୁଏ ଏହା ମୋର ପୂଜ୍ୟ ଗୁରୁଦେବ ଡଃ.କୁଞ୍ଜବିହାରୀ ତ୍ରିପାଠୀ ମୋତେ ବହୁବାର ବୁଝାଇଛନ୍ତି - ତାକୁହିଁ ମୁଁ ଆପଣଙ୍କୁ ସୂଚାଇଥିଲି ।

ସେ ମହାଶୟଙ୍କ ଅଶେଷ କୃପାରୁ ମୁଁ ଆଜି ଏହି ପିଏଚ.ଡି ପଦବୀ ପାଇ କର୍ମମୟ କ୍ଷେତ୍ରରେ ମୋ ବିଭାଗରେ ଗୁଣ୍ଡୁଚି ମୂଷାଭଳି ସେହି ପରମ ପୂଜ୍ୟ ଗୁରୁଦେବଙ୍କ ଓଡିଆ ଭାଷା ସାହିତ୍ୟର ସେତୁବନ୍ଧରେ ବାଲି ଝାଡିବାର ସୁଯୋଗ ପାଇଥିବାରୁ ଜୀବନକୁ ଧନ୍ୟ

ମନେକରୁଛି । ଯେଉଁ ଶୁଭେଚ୍ଛୁ ବଂଧୁଗଣ ପୂଜ୍ୟ ପୂଜନ ଏବଂ ବିଜ୍ଞତା ପ୍ରତି ଶ୍ରଦ୍ଧା ନିବେଦନ ସ୍ୱରୂପ ଏହି କାର୍ଯ୍ୟକ୍ରମରେ ବ୍ରତୀ ହୋଇଛନ୍ତି ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ସଂସ୍କୃତ ବିଦ୍ୟାରେ ଧୂରୀଣ, ନିଷ୍କଳଙ୍କ ବ୍ୟକ୍ତିତ୍ୱ ସମ୍ପନ୍ନ, ଆଚାର୍ଯ୍ୟ ପ୍ରବର, ଓଡିଆ ଭାଷା ସାହିତ୍ୟର ବରପୁତ୍ର, ଛାତ୍ରବତ୍ସଳ ପୂଜ୍ୟ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କୁ ପ୍ରଭୁ ଶତାୟୁ କରି ଏହି ଜାତିର ଭାଷା ଓ ସାହିତ୍ୟର ଅଭିବୃଦ୍ଧିରେ ସହାୟକ ହୁଅନ୍ତୁ - ଏତିକିହିଁ ଆଜିର ପବିତ୍ର ତିଥିରେ ମୋର ପ୍ରଭୁ ଚକାଡୋଳାଙ୍କ ନିକଟରେ ପ୍ରାର୍ଥନା । କିମଧିକମ୍ ।

*ଡଃ. ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ*

*ଅଧକ୍ଷ ,*

*ଇନ୍ଦିରାଗାନ୍ଧୀ ମହିଳା ମହାବିଦ୍ୟାଳୟ, କଟକ ।*

# ଚକ୍ଷୁରୁନ୍ମୀଳତଂ ଯେନ -

ହେ ଗୁରୁପ୍ରବର !

ଆପଣ ଏକାଧାରରେ ସର୍ବଗୁଣାକର, ଶୋଭନ ମନ୍ଦିର, ଉଦାରଚେତା, ଦୟାର୍ଦ୍ର ହୃଦୟ, ଅପର ବେଦନାଜ୍ଞ, ସଂଶୟଛିନ୍ନ କର୍ତ୍ତା, ସହୃଦୟ, ମୌନବ୍ୟାଖ୍ୟାକାର; ଅତଏବ ବନ୍ଦନୀୟ ।

ହେ ମହାନୁଭବ ! ଆପଣ ଅନିବନ୍ଧନ ବାନ୍ଧବ ଭାବେ କୃତଜ୍ଞ ଉଦାର ଚରିତର ପରିଚୟ ପ୍ରଦାନ ପୂର୍ବକ ଯେଉଁ ମହତୀ କୀର୍ତ୍ତିର ଅଧିକାରୀ ହୋଇଛନ୍ତି ତାହା ବାସ୍ତବରେ ଅଭିନନ୍ଦନୀୟ । ହେ ଯୁଗପୁରୁଷ ! ଆପଣଙ୍କ ପରମ୍ପରାପୁଷ୍ଟ ସହଜାତ ସ୍ମୃତି, ମତି, ବୁଦ୍ଧି ଓ ପ୍ରଜ୍ଞାର ସମନ୍ୱୟରେ ଯେଉଁ ପ୍ରୋଜ୍ଜ୍ୱଳ ପ୍ରତିଭା ଉଦ୍‌ଭାସିତ, ତାହାର ଶାଶ୍ୱତ ମୂଲ୍ୟ ଅକଳନୀୟ । ଇଁରାଜୀ, ସଂସ୍କୃତ, ଓଡିଆ, ହିନ୍ଦୀ, ବଂଗଳା ଆଦି ଭାଷାରେ ସମାନ ଅଧିକାର ରକ୍ଷାକରି ଆପଣ ଜଣେ ବହୁଭାଷା ବିଶାରଦ ରୂପେ ସୁବିଦିତ । ଅଧ୍ୟୟନର ସବିଶେଷ ବ୍ୟାପ୍ତି, ପ୍ରକାଶନର ନିଜସ୍ୱ ପରିପାଟୀ, ବିଷୟ ବିନ୍ୟାସରେ ଗାମ୍ଭୀର୍ଯ୍ୟମୟ ମୌଳିକତା ଆପଣଙ୍କୁ ଯଶଃ ଶରୀରରେ ସୁପ୍ରତିଷ୍ଠିତ ଓ ସୁପରିଚିତ କରାଇ ପାରିଛି । ସୌମ୍ୟ-ସୁଦୀର୍ଘ ଶରୀର ଏବଂ ସୁପ୍ରସନ୍ନ ମନୋଜ୍ଞବଦନ ଆପଣଙ୍କୁ ସାର୍ଥକନାମାର ସୌଭାଗ୍ୟ ପ୍ରଦାନ କରିଛି । ଦୀର୍ଘଦିନ ଧରି ଶିକ୍ଷାକ୍ଷେତ୍ରରେ କାଳଯାପନ ପୂର୍ବକ ଆପଣ ଯେଉଁ ଜ୍ଞାନାଲୋକ ବିଚ୍ଛୁରଣ କରିଛନ୍ତି ତାହା ସହସ୍ରାଧିକ ଛାତ୍ରଛାତ୍ରୀଙ୍କ ଅଜ୍ଞାନାନ୍ଧକାର ଦୂରୀକରଣରେ ସହାୟକ ହୋଇଅଛି । ସର୍ଜନା ପରିସରରେ ଆପଣଙ୍କ ସହଯୋଗ ତଥା ଅବଦାନ ଚିରଭାସ୍ୱର । ଗବେଷଣାକ୍ଷେତ୍ରରେ ବିଶେଷକରି ଓଡିଶାର ଲୁପ୍ତ, ଅଜ୍ଞାତ, ସର୍ବସାଧାରଣରେ ଅପରିଚିତ ପ୍ରତିଭାଧରଙ୍କ ସୃଷ୍ଟିସମଗ୍ରର ନିର୍ଣ୍ଣାୟକର ଭୂମିକା ଗ୍ରହଣ କରି ଯେଉଁ ସାଧନା ଓ ସିଦ୍ଧିର ଅଧିକାରୀ ହୋଇଛନ୍ତି ତାହା ଅବିସ୍ମରଣୀୟ । ପାରିବାରିକ ଜଞ୍ଜାଳ, ବିଦୂଷକଙ୍କ କଟାକ୍ଷାକ୍ଷେପ, ଜାଗତିକ ଅଭାବବୋଧ ଏବଂ ସମ୍ମୁଖ ପ୍ରଶଂସକଙ୍କ କୁଟିଳାଭକ୍ତି ବିଶେଷ ଆପଣଙ୍କୁ ସାଧନା ସରଣୀରୁ ବିଚଳିତ କରିପାରିନାହିଁ ।

ଶରୀରଂ ବା ପାତୟେତ୍, କାର୍ଯ୍ୟଂ ବା ସାଧୟେତ୍' ଏହିନୀତିକୁ ଦୃଢ଼ମନ୍ତ୍ର କରି ଆପଣ ଆଗେଇ ଚାଲିଛନ୍ତି । ଜଗଦୀଶ୍ୱରଙ୍କ ଅପାର କୃପାର ଆପଣ ଯଥାର୍ଥ ଅଧିକାରୀ ।

ବ୍ୟକ୍ତିଗତ ଭାବେ ଆପଣଙ୍କ ଏସମସ୍ତ ଚାରିତ୍ରିକ ବୈଶିଷ୍ଟ୍ୟ ମୁଁ ଉପଲବ୍‌ଧି କରିଅଛି । ମୋର ଗବେଷଣା କ୍ଷେତ୍ରରେ ଆପଣ ପଦେ ପଦେ ଯେଉଁ ସମୁଚିତ ନିର୍ଦ୍ଦେଶ, ସାର୍ଥକ ସାହାଯ୍ୟ, ଗ୍ରନ୍ଥଗ୍ରନ୍ଥି ବିମୋଚନରେ ଅଯାଚିତ ସହଯୋଗ, ଦୁରୂହ କର୍ମରେ ସହାନୁଭୂତି ସମ୍ପନ୍ନ ସଦୁପଦେଶ ଦେଇଛନ୍ତି ତାହା ମୋପାଇଁ ଏକ ଅଭୁଲାସ୍ମୃତି ।

ଆଜି ଆପଣଙ୍କ ଶୁଭଷଷ୍ଠିପୂର୍ତ୍ତି ସମୟ ଉପସ୍ଥିତ । ଏହି ମହାର୍ଘ ଅବସରରେ ଆପଣଙ୍କ ଶ୍ରୀଚରଣ ପଙ୍କଜରେ ମୋର ଭକ୍ତିପୂତ ପ୍ରଣତି ସହିତ ହାର୍ଦ୍ଦିକ ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି । ଆପଣ ନିକଟରେ କର୍ମକ୍ଷେତ୍ରରୁ ଅବସର ନେବେ ସତ; କିନ୍ତୁ ଏହି ଅବସର ଶିକ୍ଷା ଓ ସୃଷ୍ଟିକ୍ଷେତ୍ରରେ ସମଧିକ କର୍ମ ପ୍ରବଣ ସମୟ ପ୍ରଦାନ ପୂର୍ବକ ମହନୀୟ ହେବ ଏଥିରେ ସଂଦେହ ନାହିଁ । ଜାଗତିକ ବସ୍ତୁ ସଂଗ୍ରହ ମୋହରେ ଆପଣ କେବେ ମୁହ୍ୟମାନ ହୋଇଥିବା ଏହି ଶିଷ୍ୟଲକ୍ଷ୍ୟ କରିନାହିଁ । ସାରସ୍ୱତ ଆରାଧନାହିଁ ଆପଣଙ୍କ ଜୀବନର ବ୍ରତ ଓ ଆଦର୍ଶ । ସେହି ସୁମହତ ଆଦର୍ଶ ଅନ୍ୟନିମିତ୍ତ ଅନୁକରଣୀୟ ତଥା ପ୍ରେରଣାପ୍ରଦ ହେଉ । ଇତି ।

ଭବଦୀୟ ବଶମ୍ବଦ,
କାଳୀଚରଣ

ଡଃ. କାଳୀଚରଣ ରଥ
ପ୍ରାଧ୍ୟାପକ ଓଡ଼ିଆ ବିଭାଗ- ମୁଖ୍ୟ,
ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟ, ବ୍ରହ୍ମପୁର ।

# ମାଟି ଦ୍ରୋଣ

ଚାରିବର୍ଷ ତଳର କଥା, ମୁଁ ସେତେବେଳେ ଘରୋଇ ଭାବେ ଓଡିଆରେ ଏମ୍.ଏ. ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହେଉଥାଏ । ମୋର ଜଣେ ସହପାଠିନୀ ବିଶ୍ୱବିଦ୍ୟାଳୟରେ ନିୟମିତ ଛାତ୍ରୀଭାବେ ପଢୁଥାଆନ୍ତି । ତାଙ୍କର ଆମନ୍ତ୍ରଣ କ୍ରମେ ମୁଁ ଯାଇଥାଏ ଭଞ୍ଜବିହାର । ଓଡିଆ ବିଭାଗଟି ସେଦିନ ଛାତ୍ର-ଛାତ୍ରୀ ଓ ଅଧ୍ୟାପକଙ୍କ ମେଳରେ ଚଳଚଞ୍ଚଳ । ମତେ ଟିକିଏ ସଂକୋଚ ଲାଗୁଥାଏ ।

ଏତିକିବେଳେ କ୍ଲାସ ବେଲ୍ ବାଜିଲା । କେତେଜଣ ଚଞ୍ଚଳ ହୋଇଉଠିଲେ ଶ୍ରେଣୀ ପ୍ରକୋଷ୍ଠକୁ ଯିବାପାଇଁ - ''ଆଚାର୍ଯ୍ୟ ସାର୍‌ଙ୍କ କ୍ଲାସ'' । ମତେ ବି ଡାକିଲେ କ୍ଲାସରେ ସେମାନଙ୍କ ସାଙ୍ଗରେ ବସିବା ପାଇଁ । ଯିବି କି ନାହିଁ ଭାବୁ ଭାବୁ ମୁଁ ଯାଇ ଭିତରେ ବସିସାରିଥିଲି । ଶ୍ରେଣୀଭିତରେ ଅନଧିକାର ପ୍ରବେଶ ହେତୁ ମୋ ଭିତରେ ନାନା ସମ୍ଭାବନାର ଆଲୋଡନ । କିଏ କ'ଣ କହିବେ - ସାର କିଛି ପଚାରିବେ -- ?

ନା, ସେମିତି କିଛି ହେଲାନି ।

ସାର ତାଙ୍କ ପଢ଼ା ଆରମ୍ଭ କଲେ । ନୋଟ୍ ଖାତା ଉପରେ ସମସ୍ତଙ୍କ କଲମ ଚଞ୍ଚଳ ହୋଇ ଉଠିଲା । ବିଷୟ ଥିଲା ରସତତ୍ତ୍ୱ । ଶ୍ରେଣୀ ଭିତରେ ସାରଙ୍କ ପ୍ରବେଶ ପୂର୍ବ ମୁହୂର୍ତ୍ତରୁ ଅଖଣ୍ଡ ନୀରବତା । ସମସ୍ତେ ଯେମିତି ଆଚାର୍ଯ ସାର୍‌ଙ୍କ ଉଚ୍ଚାରିତ ପ୍ରତିଟି ଶବ୍ଦକୁ ଗ୍ରହଣ କରିନେବା ପାଇଁ ସଂପୂର୍ଣ୍ଣ ମାନସିକ ପ୍ରସ୍ତୁତି ନେଇ ଆସିଥାନ୍ତି । ତେଣୁ ବିନା ଟ୍ରେଲରରେ ସେ ବିଷୟ ଆରମ୍ଭ କରିଦେଲେ ।

କଲେଜରେ ଆମ କ୍ଲାସରେ 'ଲାବଣ୍ୟବତୀ' ପଢ଼ାହେବା ବେଳେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସଂପର୍କରେ ବାରମ୍ବାର ଶୁଣିଥାଏ । ସାର୍‌ଙ୍କର ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, ଓଡିଆ କାବ୍ୟ କୌଶଳ, ରାମଚନ୍ଦ୍ର ଗ୍ରନ୍ଥାବଳୀ, ଇନ୍ଦ୍ରଧନୁ ଇତ୍ୟାଦି ବହିଗୁଡିକ ମୁଁ ସାମନ୍ତସାରଙ୍କ ପାଖରୁ ଦେଖିଥାଏ । ତାଙ୍କର ଅନେକ କଉତୁକିଆ ମନ୍ତବ୍ୟ ସଂପର୍କରେ ମଧ ଆମେ ଶୁଣିଥାଏ । ଏବେ ମୋ ସାମ୍ନାରେ ସେଇ ପ୍ରବାଦ ପୁରୁଷ ଆଚାର୍ଯ୍ୟ ସାର୍ । ତାଙ୍କର ପ୍ରତିଟି ବାକ୍ୟ ମତେ ପ୍ରଥମ କରି ଶୁଣିଲା ଭଳି ଲାଗୁଥାଏ । ସମଗ୍ର ଶ୍ରେଣୀଟି ସମ୍ମୋହିତ, ଶବ୍ଦର ପୁଣି ଏତେ ଶକ୍ତି !

କ୍ଲାସରୁ ଯିବାପାଇଁ ସାର୍ ଚଉକିରୁ ଉଠିଲେ । ସମସ୍ତେ ସସଂଭ୍ରମେ ଠିଆ ହୋଇ ବିଦାୟ ଜଣାଇଲେ । ବିଶ୍ୱବିଦ୍ୟାଳୟରେ ଅଧ୍ୟୟନର ସୁଯୋଗକୁ ଉପଯୋଗ କରିନଥିବା ହେତୁ ମୋ ଭିତରେ ଅସୀମ ଅବଶୋଷର ଆଲୋଡନ । ତାହାହିଁ ମତେ ଅନୁପ୍ରେରିତ କଲା ପ୍ରଚୁର ଅଧ୍ୟୟନ ପାଇଁ । ଏବଂ ଏମ୍.ଏ. ଘରୋଇ ପରୀକ୍ଷାରେ ମୁଁ ବେଶ୍ ଭଲ କରିପାରିଲି । ଷଷ୍ଠି ପୂର୍ତ୍ତିର ଶୁଭ ଅବକାଶରେ ସାର୍‌ଙ୍କ ପାଦତଳେ ମୁଁ ଭକ୍ତିପୂତ ପ୍ରଣାମ ଢ଼ାଳି, ଆଶୀର୍ବାଦ କାମନା କରୁଛି ।

ଅର୍ଚ୍ଚନା ରଥ
ଲଣ୍ଡେଇ ସାହି, ଭଂଜନଗର,
ଗଂଜାମ - ୭୬୧୧୨୬ ।

# ପେଶା ଓ ନିଶାର ସେତୁବଂଧ

ପିଲାଦିନେ ମୋ ନନାଙ୍କଠାରୁ ମୋର ପୂଜ୍ୟ ଗୁରୁଦେବ ପ୍ରଫେସର ଆଚାର୍ଯ୍ୟଙ୍କ ପିତା ପଣ୍ଡିତ ଯତିରାଜ ଆଚାର୍ଯ୍ୟ ଜଣେ ପ୍ରଖ୍ୟାତ ସଂସ୍କୃତ ପଣ୍ଡିତ ଓ ବିଦ୍ୱାନ ବୋଲି ଶୁଣିଥିଲି । ତାଙ୍କ ରଚିତ କାବ୍ୟ, ବ୍ୟାକରଣ, ଜ୍ୟୋତିଷଶାସ୍ତ୍ର, ବ୍ରତୋପନୟନ ପଦ୍ଧତି, କର୍ମକାଣ୍ଡ ସଂପର୍କୀୟ ସଂସ୍କୃତ ଗ୍ରନ୍ଥରାଜି ଗୋଟିଏ ଗୋଟିଏ ଅମୂଲ୍ୟ ଗ୍ରନ୍ଥ । ସେ ଥିଲେ ଏକାଧାରରେ ଜଣେ ଛାତ୍ରବତ୍ସଳ ପଣ୍ଡିତ, ପରୋପକାରୀ ଓ ଗଂଜାମର ଜଣାଶୁଣା ବ୍ୟକ୍ତି । ତାଙ୍କ ସହାୟତାରେ ବହୁ ଗରିବ ମେଧାବୀ ଛାତ୍ର ପାଠପଢ଼ି ଆଜି ସମାଜରେ ପ୍ରତିଷ୍ଠା ଲାଭ କରିଛନ୍ତି । ମୋ ଜକା ଶ୍ରୀଯୁକ୍ତ ନାରାୟଣ ପାଢ଼ୀ ତାଙ୍କ ଶୈଶବର ସ୍ମୃତିଚାରଣ କରି ସେ କିପରି ଶିକ୍ଷାଲାଭ କରିଥିଲେ ଓ ପଣ୍ଡିତ ଆଚାର୍ଯ୍ୟଙ୍କ ସାହାଯ୍ୟ ସହଯୋଗରେ ବହୁ ଛାତ୍ରଛାତ୍ରୀ ନିଜ ଜୀବନକୁ ଗଢ଼ିପାରିଥିବା କଥା କହିଛନ୍ତି । ପଣ୍ଡିତ ଯତିରାଜ ଆଚାର୍ଯ୍ୟଙ୍କ ସୁଯୋଗ୍ୟ ସନ୍ତାନ ହେଉଛନ୍ତି ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ । ପ୍ରବୀଣ ପଣ୍ଡିତ ପିତାଙ୍କ ଉତ୍ତରାଧିକାରୀ ଭାବେ ପ୍ରଫେସର ଆଚାର୍ଯ୍ୟ ମଧ ଅନେକ ଗରିବ ଓ ମେଧାବୀ ଛାତ୍ରଛାତ୍ରୀଙ୍କୁ ସାହାଯ୍ୟ ଓ ସହଯୋଗ ଦେଇ ମଣିଷ କରିଛନ୍ତି । ତାଙ୍କ ପାଣ୍ଡିତ୍ୟ, ବିଦ୍‌ବତ୍ତା, ବନ୍ଧୁବତ୍ସଳତା, ପରୋପକାର ଇତ୍ୟାଦି ସହିତ ପ୍ରଖ୍ୟାତ ସାହିତ୍ୟିକ ଭାବେ ଓଡିଶା ଓ ଓଡିଶା ବାହାରେ ସେ ବେଶ ପରିଚିତ ।

କୌଣସି କାର୍ଯ୍ୟରେ ଯେ କେହି ତାଙ୍କ ନିକଟକୁ ଯାଇଛି, କେହି ରିକ୍ତହସ୍ତରେ ଫେରିନାହିଁ । ବିଶ୍ୱବିଦ୍ୟାଳୟର ତାଙ୍କ ପ୍ରକୋଷ୍ଠରେ ସବୁବେଳେ ଛାତ୍ର, ଗବେଷକଙ୍କ ଗହଳି ଲାଗିଥାଏ । ପୁସ୍ତକ ସଂପାଦନା, ତାଳପତ୍ର ପୋଥି ସଂଗ୍ରହ ଓ ସଂପାଦନା, ଗବେଷଣା ପାଇଁ ଦିଗ୍‌ଦର୍ଶନ, ଅବହେଳିତ ଓ ଅନାଲୋଚିତ ପ୍ରତିଭାଙ୍କ ସନ୍ଧାନ, ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଚର୍ଚ୍ଚା ଓ ଆଲୋଚନାରେ ସେ ସର୍ବଦା ବ୍ୟସ୍ତ ଥାଆନ୍ତି । ତାଙ୍କ ଅଶୋକନଗର ସ୍ଥିତ ବାସଗୃହ ଏକ ବୃହତ୍ ଗବେଷଣା ପ୍ରତିଷ୍ଠାନ । ରାଶିରାଶି ଗ୍ରନ୍ଥର ଏକ ଗ୍ରନ୍ଥାଗାର ଓ ଛାତ୍ର, ଗବେଷକ, ଅଧ୍ୟାପକ ଓ ବିଭିନ୍ନ ଶ୍ରେଣୀର ବ୍ୟକ୍ତି ବିଶେଷଙ୍କ ସହ ଆଲୋଚନା ଓ ପରାମର୍ଶରେ ସବୁବେଳେ ମୁଖରିତ । ଏତେ ବ୍ୟସ୍ତତା ସତ୍ତ୍ୱେ ବି ଟିକେ ହେଲେ କେହି କେବେ ତାଙ୍କରି ମୁହଁରେ କ୍ଳାନ୍ତ ଓ ବିରକ୍ତିର ଚିହ୍ନ ଦେଖିନାହିଁ । ତାଙ୍କ ଅସୁସ୍ଥତା ସତ୍ତ୍ୱେ ବି ସେ କାହାରିକି ଫେରାଇ ଦେଇନାହାଁନ୍ତି।

ମୁଁ ଓଡିଆ ଏମ୍.ଏ ଅଧ୍ୟୟନ କାଳରେ ତାଙ୍କ ଶ୍ରେଷ୍ଠ ନିବନ୍ଧ ''ଓଡିଆ କାବ୍ୟ କୌଶଳ'' ଗ୍ରନ୍ଥଟି ପଢ଼ିଥିଲି । ଏହା ଦୀର୍ଘ ଚଉଦବର୍ଷର ସାଧନାର ଫଳଶ୍ରୁତି ବୋଲି ସାର୍‌ଙ୍କଠାରୁ ଶୁଣିଛି । ସେ ବହୁ ପ୍ରାଚୀନକବିଙ୍କୁ ବିସ୍ମୃତିଗର୍ଭରୁ ଉଦ୍ଧାର କରି ଲୋକ ଲୋଚନକୁ ଆଣିଛନ୍ତି । କୋଣାର୍କ-୧ମ ବର୍ଷ/୧ମ ସଂଖ୍ୟା - ୧୯୫୮ରେ ପ୍ରକାଶିତ ତାଙ୍କ ନିବନ୍ଧ 'ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ', ତା' ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶିତ 'ଜାନକୀଶ ବିଳାସ କାବ୍ୟ' ଓ

ତାଳପତ୍ର ପୋଥିରୁ ସଂଗୃହୀତ ବିଭିନ୍ନ କାବ୍ୟ ସଂପର୍କୀୟ ଆଲୋଚନାସବୁ ତାଙ୍କୁ ଉକ୍ତ କାବ୍ୟଗୁଡ଼ିକର ଆବିଷ୍କାରକ ଓ ପ୍ରଥମ ଆଲୋଚକର ଗୌରବ ପ୍ରଦାନ କରିପାରିଛି । ତାଙ୍କ ପେଶା ହେଉଛି ଅଧ୍ୟାପନା ଓ ଲୁପ୍ତପ୍ରାୟ ପ୍ରାଚୀନ ତାଳପତ୍ର ପୋଥି ଓ ଲୋକସଂସ୍କୃତିର ଉପାଦାନ ଉଦ୍ଧାର କରିବା ହେଉଛି ତାଙ୍କରି ନିଶା । ପେଶା ଓ ନିଶା ମଧ୍ୟରେ ସମନ୍ୱୟିକ ସେତୁବଂଧର ବିରଳ ଉଦାହରଣ ହେଉଛନ୍ତି ପ୍ରଫେସର୍ ଆଚାର୍ଯ୍ୟ ।

୧୯୮୯ର ଏକ ଶୁଭ ମୁହୂର୍ତ୍ତରେ ମୋ ବାବାଙ୍କ ସହ ସାର୍‌ଙ୍କୁ ଭେଟି ମୋର ଗବେଷଣା ପାଇଁ ଥିବା ଆଗ୍ରହ ଓ ଅଭିଳାଷ କଥା କହିଲି । ସେ ମୋତେ ଚିହ୍ନିପାରିଲେ ଓ ଚିହ୍ନାଇ ଦେଇ କହିଲେ ଯେ, ''ତୋର ଦୀର୍ଘ ୧୫ ବର୍ଷର କର୍ମକ୍ଷେତ୍ର କୋରାପୁଟ, ଆଦିବାସୀ ଲୋକସଂସ୍କୃତିର ଗନ୍ତାଘର, ଚର୍ଚ୍ଚା ଓ ଗବେଷଣା ଅଭାବରୁ ସେ ସବୁ ଲୁପ୍ତ ହେବାରେ ଲାଗିଛି , ଏଣୁ କୋରାପୁଟର ଆଦିବାସୀମାନଙ୍କ ସଂଗୀତ ଓ ବାଦ୍ୟ ସଂପର୍କରେ କିଛି କାମ କର'' । ତାଙ୍କଠାରୁ ସାହସ ଓ ପରାମର୍ଶ ପାଇ ମୁଁ ଗବେଷଣାରେ ମନଦେଲି । ଲୋକସଂସ୍କୃତିର ଗବେଷଣା ଓ ପଦ୍ଧତି ସଂପର୍କରେ ମୋର ଧାରଣା ନଥିଲା । ତାଙ୍କଠାରୁ ଆକୁଣ୍ଠ ସାହାଯ୍ୟ, ସହଯୋଗ ଓ ପରାମର୍ଶ ପାଇ ଏକ କଷ୍ଟସାଧ୍ୟ ବିଷୟର ଗବେଷଣା କାର୍ଯ୍ୟ ସଂପାଦନ କରିପାରିଛି । କୋରାପୁଟର ଆଦିବାସୀ ସଂସ୍କୃତିକୁ ତାଙ୍କର ବହୁତ ଆଦର । ଏହାର ଅନ୍ତର୍ନିହିତ ଭାବସଂପଦକୁ ସେ ତନ୍ନ ତନ୍ନ କରି ଦେଖିଛନ୍ତି । ଆଦିବାସୀ ସଂଗୀତର କଳାତ୍ମକ ସୌନ୍ଦର୍ଯ୍ୟକୁ ଉପଲବ୍ଧିକରି ସେ ଆତ୍ମହରା ହୋଇଛନ୍ତି । ସେ ବହୁବାର ଅବିଭକ୍ତ କୋରାପୁଟର ବିଭିନ୍ନ ଅଞ୍ଚଳ ବୁଲି ଆଦିବାସୀ ସଂସ୍କୃତିକୁ ଅନୁଶୀଳନ କରିଛନ୍ତି । ଆଦିବାସୀ ଲୋକସଂଗୀତର ଆଲୋଚନା ସମୟରେ ସଂସ୍କୃତ ଓ ପ୍ରାଚୀନ ଓଡ଼ିଆକାବ୍ୟର ଦୃଷ୍ଟାନ୍ତ ଦେଇପାରିନଥାନ୍ତି । ତାଙ୍କ ସାହାଯ୍ୟ ଓ ପ୍ରେରଣା ବିନା ମୁଁ ଗବେଷଣା କରିପାରିନଥାନ୍ତି । ତାଙ୍କ ଆଦରସ୍ନେହ ଓ ସାହାଯ୍ୟ ସହାନୁଭୂତି ନିକଟରେ ମୁଁ ଚିରଋଣୀ । ମୋ ପରି ଅନେକ ତାଙ୍କଠାରୁ ଅକୁଣ୍ଠ ସାହାଯ୍ୟ ଓ ସହାନୁଭୂତି ପାଇଁ ମଣିଷ ହୋଇଛନ୍ତି ।

ତାଙ୍କ ନିରଳସ ବ୍ୟକ୍ତିତ୍ୱ, ପ୍ରଚଣ୍ଡ ପ୍ରତିଭା, ଛାତ୍ର ବତ୍ସଳତା, ଉଦାରତା ପାଇଁ ସେ ସମସ୍ତଙ୍କ ପ୍ରିୟ ଓ ସମ୍ମାନର ଆଚାର୍ଯ୍ୟ ସାର୍ । ପ୍ରାଚୀନ ସାହିତ୍ୟଠାରୁ ଅତ୍ୟାଧୁନିକ ସାହିତ୍ୟର ସାଧନା ଓ ସିଦ୍ଧି ପାଇଁ ସେ ଏଜାତିର ଚିର ନମସ୍ୟ । ତାଙ୍କ ଷଷ୍ଠିପୂର୍ତ୍ତି ପାଳନ ଅବସରରେ ଶ୍ରୀ ଜଗନ୍ନାଥଙ୍କ ଚରଣାବିନ୍ଦରେ ଏତିକି ପ୍ରାର୍ଥନା ଯେ, ପୂଜ୍ୟ ଆଚାର୍ଯ୍ୟ ସାର୍ ସୁସ୍ଥ ଓ ନିରାମୟ ରହି ଆମକୁ ଆଶିଷ ଓ ପ୍ରେରଣା ପ୍ରଦାନ କରୁଥାନ୍ତୁ ।

*ଅଧ୍ୟାପକ ରାଜେନ୍ଦ୍ର ପାଢ଼ୀ*
*ବିଜୁ ପଟ୍ଟନାୟକ ମହାବିଦ୍ୟାଳୟ,*
*କୁନ୍ଦ୍ରା, କୋରାପୁଟ ।*

# ସ୍ୱପ୍ନତୀର୍ଥର ତପସ୍ୱୀ



ଜୀବନ ଚାଲିଛି ନାନା ରୂପାନ୍ତର ମଧ୍ୟରେ । ତାହାରି ଭିତରେ କେତେବେଳେ ବିତିଯାଇଛି ଛାତ୍ର ଜୀବନ । ଅତୀତର ସେଇ ସବୁକଥା ଆଜି ଭାବିଲା ବେଳକୁ ମନରେ ଅନେକ ଆନନ୍ଦ ଆସୁଛି । ଛାତ୍ର ଜୀବନର ଶେଷ ପର୍ଯ୍ୟାୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ମୋ ପାଇଁ ଥିଲା ଜ୍ଞାନର ମାନମନ୍ଦିର ତଥା ଅନେକ ଆଶା ଓ ସ୍ୱପ୍ନର ତୀର୍ଥକ୍ଷେତ୍ର । ସେତେବେଳେ ଜ୍ଞାନର ସେହି ମହିମାମୟ ପୀଠରେ ମତେ ବିଶେଷଭାବେ ମୁଗ୍ଧ ତଥା ଅନୁପ୍ରାଣିତ କରିଥିବା ଅଧ୍ୟାପକ ଜଣଙ୍କ ହେଉଛନ୍ତି ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ । ଓଡ଼ିଆ ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ ପୂର୍ବରୁ ପ୍ରଫେସର ଆଚାର୍ଯ୍ୟଙ୍କ ସହିତ ବ୍ୟକ୍ତିଗତ ପରିଚୟ ହେବାର ସୁଯୋଗ ମୋର ହୋଇନଥିଲା । ସେ ସୁଯୋଗ ମତେ ମିଳିଲା ୧୯୭୨ ମସିହାରେ, ଏମ.ଏ ଶ୍ରେଣୀରେ ଅଧ୍ୟୟନ କାଳରେ । ଆମ ସମୟର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଥିଲା ଗୋଟିଏ ପରିବାର ଭଳି । ବିଭାଗର ଛାତ୍ରଛାତ୍ରୀମାନଙ୍କ ପ୍ରତି ଅଧ୍ୟାପକମାନଙ୍କର ଥିଲା ଅତ୍ୟନ୍ତ ଶ୍ରଦ୍ଧା ଓ ଆନ୍ତରିକତା । ଅଧ୍ୟାପକମାନଙ୍କ ମଧ୍ୟରେ ଥାଆନ୍ତି ସୁଦର୍ଶନ ଆଚାର୍ଯ୍ୟ । ଯଥାର୍ଥରେ ସୁଦର୍ଶନ ଏବଂ ଦୃଷ୍ଟି ଆକର୍ଷଣକାରୀ ବ୍ୟକ୍ତିତ୍ୱ । କର୍ତ୍ତବ୍ୟନିଷ୍ଠ, ଗମ୍ଭୀର ଅଥଚ ସ୍ନେହ, ଶ୍ରଦ୍ଧା ଓ ଛାତ୍ର ବତ୍ସଳତାର ମୂର୍ତ୍ତିମନ୍ତ ବିଗ୍ରହ ।

ଅଧ୍ୟାପକ ଆଚାର୍ଯ୍ୟଙ୍କ ଅଧ୍ୟାପନାରେ ଥିଲା ମୌଳିକତା ଏବଂ ବୈଶିଷ୍ଟ୍ୟ । ବିଶେଷତଃ କାବ୍ୟ-ସାହିତ୍ୟ ଅଧ୍ୟାପନାରେ ତାଙ୍କର ବିଜ୍ଞାନୀ ଦୃଷ୍ଟି ଓ ମନନଶୀଳତା ବିସ୍ମରଣ ହେବାର ନୁହେଁ । ସ୍ନାତକୋତ୍ତର ଶ୍ରେଣୀରେ ସ୍ୱତନ୍ତ୍ରପତ୍ର ଭାବରେ ଉପେନ୍ଦ୍ର କାବ୍ୟ-ସାହିତ୍ୟ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ-ସାହିତ୍ୟ ଅଧ୍ୟୟନ କାଳରେ ତାଙ୍କର ପ୍ରତ୍ୟେକ ଛାତ୍ରଛାତ୍ରୀ ନିଶ୍ଚିତଭାବେ ତାଙ୍କ ଅଧ୍ୟାପନାର ଶ୍ରେଷ୍ଠ ପରିଚୟ ଲାଭ କରିଥିବେ । କେବଳ କାବ୍ୟ ନୁହେଁ, ସାହିତ୍ୟର ଅନ୍ୟାନ୍ୟ ବିଭାଗର ଆଲୋଚନାରେ ମଧ୍ୟ ତାଙ୍କର ସମାନ ଓ ସ୍ୱଚ୍ଛନ୍ଦ ବିଚରଣ ଥିଲା ।

ଡକ୍ଟର ଆଚାର୍ଯ୍ୟ ଜଣେ ପ୍ରତିଭାଶାଳୀ ବିଦ୍ୱାନ ଏବଂ ସତ୍ୟସଂଧାନୀ ସାହିତ୍ୟ-ସମାଲୋଚକ । ତାଙ୍କ ପଣ୍ଡିତ ପିତାଙ୍କର ସେ ସୁଯୋଗ୍ୟ ସନ୍ତାନ । ତାଙ୍କର ବିଦ୍ୱାନ ପିତା ବୃଦ୍ଧାବସ୍ଥାରେ କୋଳରେ ନାତିକୁ ଧରି ଅନର୍ଗଳ ଭାବରେ ଅମରକୋଷ ଆବୃତ୍ତି କରି ଶୁଣାଉଥିବାର ଦୃଶ୍ୟ ଏ ଲେଖକ ଦେଖିଛି । ପରିଣତ ବୟସରେ ଜଣେ ଯେ ଏପରି ପ୍ରବଳ ସ୍ମୃତିଧର ହୋଇପାରେ ତାହା ନ ଦେଖିଲେ କେହି ବିଶ୍ୱାସ କରିବେ ନାହିଁ । ପ୍ରଫେସର ଆଚାର୍ଯ୍ୟଙ୍କର ପାରିବାରିକ ସଂସ୍କାର ଓ ପଠନ ସ୍ପୃହା ତାଙ୍କୁ କ୍ରମେ ସାହିତ୍ୟ ସମାଲୋଚନାରେ ପ୍ରବୃତ୍ତ କରାଇଛି । ଫଳରେ 'ସାହିତ୍ୟ ଓ ସାହିତ୍ୟିକ', 'ସ୍ରଷ୍ଟା ଓ ସୃଷ୍ଟି', 'ଓଡ଼ିଆ କାବ୍ୟ କୌଶଳ' ପରି ତାଙ୍କର ପ୍ରଜ୍ଞାଦୀପ୍ତ ସାରସ୍ୱତ ସୃଷ୍ଟିସଂପଦ ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଗବେଷଣା

କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ବିଶେଷତଃ ତାଙ୍କର 'ଓଡ଼ିଆ କାବ୍ୟ କୌଶଳ' ପୁସ୍ତକଟି ଏ ଯାବତ୍ ଓଡ଼ିଆ କାବ୍ୟ ସଂପର୍କୀୟ ଗବେଷଣା-ପ୍ରସୂତ ଏକମାତ୍ର ନିର୍ଭରଯୋଗ୍ୟ ଗ୍ରନ୍ଥ ହୋଇରହିଛି । ଉକ୍ତ ଗ୍ରନ୍ଥରେ ତାଙ୍କର ମୌଳିକ ଚିନ୍ତାର ବୌଦ୍ଧିକ ସ୍ୱାକ୍ଷର ଅତ୍ୟନ୍ତ ପ୍ରଶଂସନୀୟ । ସାହିତ୍ୟ ସମୀକ୍ଷା କ୍ଷେତ୍ରରେ ତାଙ୍କର ପୂଜ୍ୟଗୁରୁ ଡକ୍ଟର ନଟବର ସାମନ୍ତରାୟଙ୍କ ପରି ସେ ମଧ୍ୟ ସମୀକ୍ଷକର ସଂଯତ-ନିରପେକ୍ଷ ଦୃଷ୍ଟି ଓ ଐତିହାସିକର ସତ୍ୟାନୁସଂଧାନ ମନୋବୃତ୍ତିକୁ ଅକ୍ଷୁର୍ଣ୍ଣ ରଖିଛନ୍ତି ।

ପ୍ରଫେସର ଆଚାର୍ଯ୍ୟ ଯଥାର୍ଥରେ ଜଣେ ଜ୍ଞାନଦୀପ୍ତ ଆଚାର୍ଯ୍ୟ । ପ୍ରାଚୀନ ଯୁଗର ଆଚାର୍ଯ୍ୟଙ୍କ ଭଳି ସେ ଜ୍ଞାନର ଆହରଣ ଓ ବିତରଣରେ ବିଶ୍ୱାସୀ । ଓଡ଼ିଆ କାବ୍ୟ-ସାହିତ୍ୟର ସଂଗ୍ରହ ଓ ସମୀକ୍ଷା ତାଙ୍କ ଜୀବନର ତପସ୍ୟା । ଏହି ଜ୍ଞାନ-ତପସ୍ୱୀଙ୍କର ଆଗାମୀ ଦିନର ସୃଷ୍ଟି ସମ୍ଭାର ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରୁ ଏବଂ ତାଙ୍କ ସମୀକ୍ଷକ ସତ୍ତାର ବଳିଷ୍ଠ ସ୍ପର୍ଶରେ ଓଡ଼ିଆ ସାହିତ୍ୟ ସମୀକ୍ଷଣ ଅଧିକରୁ ଅଧିକ ହେଉ ଏତିକି କାମନା ।

*ଡକ୍ଟର କୃଷ୍ଣ କୁମାର ପଟ୍ଟନାୟକ*
*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*
*ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ ।*

# ପ୍ରଶାଂତ ପୁଲିନ - ପରିବ୍ୟାପ୍ତ ପରିଧି

ନୀଳ ଆକାଶର ଛାୟାପଥରେ ଅଗଣିତ ତାରା ଓ ନକ୍ଷେତ୍ରର ସମ୍ଭାର, ଉଜ୍ଜ୍ୱଳ ଉଜ୍ଜ୍ୱଳତର ଓ ଉଜ୍ଜ୍ୱଳତମ । ସବୁର ସମୀକ୍ଷଣ କରାଯାଏନି କି କରାଯିବା ବି ସମ୍ଭବ ନୁହେଁ । ମାତ୍ର ଯେଉଁ କେତୋଟି ନକ୍ଷତ୍ର ଆପଣାର ସ୍ୱକୀୟ ଆଲୋକପ୍ରଭାରେ ସେହି ଛାୟାପଥକୁ ଆଲୋକିତ କରିଥାନ୍ତି, ସେହିମାନଙ୍କୁ କିନ୍ତୁ ବିଚରା ସମୀକ୍ଷକ ସମୀକ୍ଷାର ବିଷୟବସ୍ତୁ କରି ନିଜେ କୃତକୃତ୍ୟ ହୋଇଯାଏ । ମୋ ଦୃଷ୍ଟିରେ ପ୍ରଫେସର ଆଚାର୍ଯ୍ୟ ଓଡିଆ ସାହିତ୍ୟର ଛାୟାପଥରେ ସେହିଭଳି ଜଣେ ଜ୍ୟୋତିଷ୍ମାନ୍ ନକ୍ଷତ୍ର । ତାଙ୍କୁ ସମୀକ୍ଷା କରିବାର ଏ ଅବକାଶ ମୋତେ କୃତକୃତ୍ୟ କରିଦେଉଛି ।

ବତଧୀମାନ ବ୍ୟକ୍ତିତ୍ୱ ଆଉ ଧୀରୋଦାତ୍ତ ବ୍ୟକ୍ତି ମୋ ସାର୍ । ସେ କେବେ ଖ୍ୟାତିର ପାଟମୁକୁଟ ପଛରେ ଦୌଡି ନାହାନ୍ତି କି ବଧିର ଜନତାର ଟହଟହ ତାଳିମାତକୁ ଅପେକ୍ଷା କରିନାହାନ୍ତି । ବରଂ ଆଜିର ଏ ବିଜ୍ଞାପନ କାଂଗାଳ ଯୁଗରେ ସେ ତାଙ୍କ ସାଧନାର ସ୍ନିଗ୍ଧ ତପୋବନରେ ନିତ୍ୟ ସାଧନାରତ ଜଣେ ନୀତ୍ୟ ତପସ୍ୱୀର ଜୀବନ ବିତାଇଚାଲିଛନ୍ତି । ଦେଖିବାକୁ ସୌମ୍ୟ ଦର୍ଶନ - 'ସୁଦର୍ଶନ' ଆଉ 'ଆଚାର୍ଯ୍ୟ' ତାହାବି ନିଜ ସଂଜ୍ଞାରେ ସଂଜ୍ଞାୟିତ । ଯେପରି ବିଧିପ୍ରଦତ୍ତ ଭାବେ ତାଙ୍କ ନାମ ଓ ସଂଜ୍ଞାର ଏ ମଧୁର ମହାମିଳନ ଘଟି, ହୋଇଛି - 'ସୁର୍ଦଶନ ଆଚାର୍ଯ୍ୟ' । ଦେଖିବାକୁ ସୁନ୍ଦର, ସୌମ୍ୟରୂପ ଆଉ ବୃତ୍ତିବି ଆଚାର୍ଯ୍ୟର ବୃତ୍ତି । ଏକଦା ଗୁରୁକୁଳାଶ୍ରମର ଶିକ୍ଷାଗୁରୁମାନଙ୍କୁ 'ଆଚାର୍ଯ୍ୟ' କୁହାଯାଉଥିଲା ଏବଂ ଯଜ୍ଞାଦି ଦେବୋପାସନାମୂଳକ ପବିତ୍ର କାର୍ଯ୍ୟ କରୁଥିବା ବ୍ରାହ୍ମଣ ତଥା ପୁରୋହିତ ମାନଙ୍କୁ 'ଆଚାର୍ଯ୍ୟ' କୁହାଯାଉଥିଲା । ଭାବିଲେ ଯେତିକି ଆଶ୍ଚର୍ଯ୍ୟ ଲାଗେ, ସେତିକି ଅଭିଭୂତ ହେବାକୁ ପଡେ ଯେ, ପ୍ରଫେସର ଆଚାର୍ଯ୍ୟଙ୍କ ଜନ୍ମ ସେହିଭଳି ଏକ ଅଭିଜାତ ପଣ୍ଡିତ ପୁରୋହିତ ପରିବାରରେ ଏବଂ ସ୍ୱୟଂ ବି ଯଜମାନୀ ବ୍ରାହ୍ମଣର ସବୁ ନୀତି ଓ ନିୟମରେ ଧୁରୀଣ ଏବଂ ଅପର 'ଆଚାର୍ଯ୍ୟ' ଦୃଷ୍ଟିରୁ ବୃତ୍ତି ତାଙ୍କର ଅଧ୍ୟାପନା, ଅତଏବ ଶିକ୍ଷାଗୁରୁ । ବାସ୍ତବରେ ନାମ ଆଉ କର୍ମର ଏହିଭଳି ଜଣେ କ୍ୱଚିତ୍ ସାର୍ଥକ ବ୍ୟକ୍ତିତ୍ୱ ଭିତରେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ହେଉଛନ୍ତି ମୋର ପ୍ରଣମ୍ୟ ଗୁରୁଦେବ, ଜଣେ ଅନହଂକାରୀ ପ୍ରଚଂଡ ସ୍ୱାଭିମାନୀ ସାରସ୍ୱତ ବ୍ୟକ୍ତିତ୍ୱ ।

ଆଜି ତାଙ୍କର ଷଷ୍ଠିପୂର୍ତ୍ତି ଦିବସ । ବୟସର ଶତାୟୁ କୃଷ୍ଣଚୂଡାରୁ ଷାଠିଏଟି କୃଷ୍ଣଚୂଡା କେତେବେଳେ କେତେ ଅଲକ୍ଷିତ ଭାବରେ ଝଡିଗଲେଣି ଅଥଚ ଅବଶିଷ୍ଟ କୃଷ୍ଣଚୂଡା ଫୁଲରେ ଗନ୍ଧ ଏମିତି ଭର୍ତ୍ତିଭର୍ତ୍ତି ଲାଗୁଛି ଯେ, ମନେ ହେଉଛି ଗୋଟିଏ ବି କୃଷ୍ଣଚୂଡା ଫୁଲ

ଝଡିନି କି ରଂଗ ବି ଟିକିଏ ମଉଳି ନାହିଁ । ସବୁ ସତେଜ, ସବୁ ବୃନ୍ତାୟର । ତେଣୁ ଏହିଭଳି ଏକ ସବୁଜ ଶ୍ୟାମଳ,ଫୁଲ-ଫଳରେ ଭରି ଏକ ପଲ୍ଲବିତ ବିଶାଳ କୃଷ୍ଣଚୂଡା ହେଉଛନ୍ତି ମୋ ସାର୍ । ତାଙ୍କ ସଂପର୍କରେ କ'ଣ ଲେଖିବି ବୋଲି ଭାବିଲେ ମୂକ ଲେଖନୀ ବାଚାଳ ହୋଇଉଠୁଛି ଏବଂ ନୀରବ ଓଠ ଶବ୍ଦମୁଖର ହୋଇଉଠୁଛି । ମାତ୍ର ଲେଖନୀ ଧରିବା ମାତ୍ରକେ ହାତ ଅଚଳ ହୋଇଯାଉଛି ଆଉ ଶବ୍ଦ ସବୁ ଅପୂର୍ଣ୍ଣ ମନେ ହେଉଛନ୍ତି । ଗୋଟିଏ ଅନୁଭୂତିକୁ ମନେପକାଇଲେ ଆଉ ଗୋଟିଏ ଅନୁଭୂତିର ସ୍ମୃତି ପ୍ରାଣକୁ ମେଦୁର କରିପକାଉଛି । ତେଣୁ କୋଉଠି ଆରମ୍ଭ କରିବି, କେମିତି ଆରମ୍ଭ କରିବି ଏବଂ କ'ଣ ଆରମ୍ଭ କରିବି ଭାବିଲେ ମତେ ଲାଗୁଛି, ମୁଁ ଏକ ସ୍ରୋତସ୍ୱତୀର ଢେଉ ଉପରେ ପହଁରୁଛି ଅଥଚ କୂଳକୁ ଆସିବାର ତରିକା ଜାଣିନାହିଁ । ଖାଲି ଯାହା ଦେଖଣାହାରୀଙ୍କ ବାହାବା ପାଇବାପାଇଁ ନଦୀ ଭିତରକୁ ଡେଇଁ ପଡିଛି । ଡେଇଁ ପଡିଛି ସତ, ହେଲେ ବୁଡିଯିବାର ଭୟ ମୋର ନାହିଁ କି କୂଳକୁ ଆସିନପାରିବାର ଅକ୍ଷମତା ଜନିତ ଗ୍ଲାନି ଅଥବା ଲଜ୍ୟା ବି ନାହିଁ । ବରଂ ଏକ ଅନୁଦ୍‌ଘାଟିତ ବିଜୟର ଆନନ୍ଦବୋଧ ଭିତରେ ହାତ-ଗୋଡ ଛାଟିପିଟି ନିରୁଦ୍ଦେଶ୍ୟ ପହଁରିଚାଲିଛି । ହୋଇପାରେ ଏ ପହଁରିବାରେ କିଛି ଅର୍ଥନାହିଁ, କୃତିତ୍ୱ ନାହିଁ କି ସଫଳତା ନାହିଁ । କିନ୍ତୁ ମୋର କାହିଁକି ହୃଦ୍‌ବୋଧ ହେଉଛି, ଏ ନଈରେ ମୁଁ ପହଁରା ଶିଖିଛି, ଏ ନଈର କୂଳରେ ମୋର ସଂଜସକାଳ କଟୁଛି, ଆଉ ତା'ର ଏକଟଣା ମଧୁର ସଂଗୀତର ଧ୍ୱନି ମତେ ପରଦିନର ସାମ୍ନାବ୍ୟ ସକାଳଟିଏ ପାଇଁ ପ୍ରେରଣା ଦେଉଛି । ତେଣୁ ଆଜି ଯେତେବେଳେ ମୁଁ ମୋର ପ୍ରିୟ ପରିଚିତ ନଈର ନକ୍‌ସା ଆଙ୍କିବାକୁ ଗଭୀରତା ନଜାଣି ଗଣ୍ଡ ଭିତରକୁ ପଶିଆସିଛି; ସେତେବେଳେ କୂଳକୁ ଫେରି ଆସିବାର ଚିନ୍ତା ମୋତେ ଯେତିକି ବିବ୍ରତ କରୁନି; ତା'ଠାରୁ ଅଧିକ ବିସ୍ମିତ କରୁଛି ନଈର ଐଶ୍ୱର୍ଯ୍ୟ ।

ଅସଂଖ୍ୟ ତରଙ୍ଗ ଆଉ ଅଗଣିତ ଢେଉର ସୁଅ କାଟି କାଟି ଖରସ୍ରୋତା ନଈ ଘୋଘୋ ଗର୍ଜନ କରି ମାଡିଚାଲିଛି ଆଗକୁ....ଆଗକୁ । କାଗଜଡଙ୍ଗା ଭଳି ଭାସିଆସୁଛି ପ୍ରକାଣ୍ଡ ଶାଳ-ପିଆଶାଳ ଭଳି ବିରାଟ ବିରାଟ ବୃକ୍ଷଲତା । ଭୟ ଆଉ ବିସ୍ମୟରେ ଦେହ ରୋମାଂଚିତ ହୋଇଯାଉଛି । ନା ଆଉ ବର୍ଣ୍ଣିହେବନାହିଁ । ଏଇ କ'ଣ ତାହାହେଲେ ମୋର ପ୍ରିୟ ପରିଚିତ ନଈ ! କେତେ ଶାନ୍ତ, କେତେ କମନୀୟ ତା'ର ତଟଭୂଇଁ ଅଥଚ ଗଣ୍ଡରେ ଅକାତକାତଖପାଣି । ଆଖିପାଉନି କି କୂଳ ବି ଦିଶୁନି । ଯୁଆଡେ ଚାହିଁବ ଖାଲି ପାଣି ଆଉ ପାଣି । ଗୋଡହାତ ଆଉ ଚଳିନି । କୁଆଡେ ପହଁରିବି ? ସ୍ରୋତ ସୁଅରେ ଭାସିବା ଛଡା ଆଉ ଗତ୍ୟନ୍ତର ନାହିଁ । ଏଥର ନଈ ପାଖରେ ସମର୍ପଣ କରିଦେଲେ ତେଣିକି ଯାହା, ଭାଗ୍ୟ ଆଉ ଭବିତବ୍ୟର କଥା । ସୁତରାଂ, ନଈ ପହଁରିବାର ଆସ୍ଫାଳନ କି ନଈକୁ ଅତିକ୍ରମ କରିଯିବାର ଦୁର୍ବାରତା ଏବେ କୁଆଡେ ଉଭେଇ ଗଲେଣି । ବିସ୍ମୟ ବିସ୍ଫାରିତ ଆଖି ସାମ୍ନାରେ ନଈର ଭୀମ-ସୁନ୍ଦର ରୂପକୁ ଦେଖି ପ୍ରାଣ ଯୋଡହସ୍ତ ହୋଇଯାଉଛି । ତେଣୁ ଏବେ ନଈର ନକ୍‌ସା ଆଙ୍କିବା ଛାଡି, ନଈକୁ ପ୍ରଣାମ କରି ଆଖିବୁଜି ଦେଲେ ଅଦୃଶ୍ୟଦୃଶ୍ୟରେ ସବୁ ପ୍ରତିଭାତ ହୋଇଯିବ, ପ୍ରାଣ ପୁଲକିତ ହୋଇଯିବ, ଆଉ ନଈ ବି ଆପଣା ପଣରେ ଆପେ କୂଳ ପାଖରେ ପହଞ୍ଚାଇ ଦେବ । ଗୀତାର ଦର୍ଶନ ମନେପଡିଯାଉଛି । ପ୍ରିୟଭକ୍ତ ତୁ ଭଗବାନଙ୍କ ପାଖରେ ନିଜକୁ ସମର୍ପଣ କରିଦିଅ, ଦେଖିବୁ ପ୍ରାଣ ଆଶ୍ୱସ୍ତ ହୋଇଉଠିବ । ତୋପାଇଁ ଭଗବାନ କିଏ ? ସେ କ'ଣ କରନ୍ତି ? କେଉଁଠି ରହନ୍ତି ? ଇତ୍ୟାଦି ଯାବତୀୟ ପ୍ରଶ୍ନର କୌଣସି ହେତୁ ନାହିଁ । ତାହାହେଲେ ମୋ ପାଇଁ ଏ ନଈର ନକ୍‌ସା

ଆଙ୍କିବାର କି ପ୍ରୟୋଜନ ଅଛି ? କି ପ୍ରୟୋଜନ ଅଛି ତାର ଗଭୀରତା, ପ୍ରଶସ୍ତି ଓ ବ୍ୟାପ୍ତି ମାପିବାର ? କିଛି ନାହିଁ । ଆବଶ୍ୟକ ବି ନାହିଁ । ମୋ ଦୃଷ୍ଟିରେ କେବଳ ନଈ, କେବଳ ହିଁ ନଈ । ଚିର ସ୍ରୋତସ୍ୱତୀ ଆଉ ଚିର ପୂର୍ଣ୍ଣଗର୍ଭା । ପ୍ରଶାଂତ ତା'ର ପୁଳିନ-ଆଉ ପରିବ୍ୟାପ୍ତ ତା'ର ପରିଧି ଏବଂ କଳାପୂର୍ଣ୍ଣ ତାର ଭୂଗୋଳ ଆଉ କୀର୍ତ୍ତିମାନ୍ ତାହାର ଇତିହାସ । ହେ ପ୍ରଣମ୍ୟ ନଈ ! ମୁଁ ଅଧମ ତୁମର ଲଳିତ ତଟଦେଶକୁ ଛାଡି ବାଚାଳବତ୍ ଗର୍ଭଭିତରକୁ ପଶି ଆସିଲି । ଏବେ ଥଳକୂଳ ମିଳୁନି । ମତେ ତୁମ ଉଦାର ଗୁଣରେ କ୍ଷମାକରି କୂଳରେ ଲଗାଇ ଦିଅ ନଚେତ୍ ଭସାଇନିଅ; ଯାହା ତୁମର ଇଚ୍ଛା - ତାହାହିଁ ମୋର ପ୍ରତ୍ୟାଶା ।

ମୋ ଦୃଷ୍ଟିରେ ପ୍ରଫେସର୍ ଆଚାର୍ଯ୍ୟ ହେଉଛନ୍ତି ଜ୍ଞାନ ଓ ବିଦ୍‌ବତ୍ତାର ଏକ ପୂର୍ଣ୍ଣଗର୍ଭା ନଈ । ଯାହାଙ୍କର ପୁଳିନ ସଦା ପ୍ରଶାଂତମୟ ଅଥଚ ପରିଧି ଏତେ ପରିବ୍ୟାପ୍ତ ଯେ ଦେଖିଲେ ଆଖିପାଏନି । ବୁଦ୍ଧି ଓ ବିଦ୍ୟାର ଅସଂଖ୍ୟ ତରଙ୍ଗରେ ନିତ୍ୟ ଲୀଳାୟିତ ତାଙ୍କର ପରିବ୍ୟାପ୍ତ ଗର୍ଭରୁ ଆମେ ପାଇଛୁ ପ୍ରେରଣା ଓ ପ୍ରଜ୍ଞାର ଦୁର୍ଲ୍ଲଭ ରତ୍ନରାଜି । ବଡ ଉଦାର ବ୍ୟକ୍ତିତ୍ୱ ଆଉ ବଡ ସମ୍ବେଦନଶୀଳ ବ୍ୟକ୍ତି ହେଉଛନ୍ତି ମୋ ସାର୍ । ସାମ୍ନାରେ ଦେଖିଦେଲେ ମଥା ଭକ୍ତିରେ ନଇଁଯାଏ, ଓଠଫାଙ୍କରୁ ପଦ ଅପସରିଯାଏ । 'ନମ୍ରନ୍ତି ଫଳିନୋ ବୃକ୍ଷାଃ, ନମ୍ରନ୍ତି ଗୁଣୀନୋ ଜନାଃ' ପ୍ରବାଦଟିକୁ ଏଇଠି ସ୍ମରଣ କରି କହିଲେ 'ପ୍ରଫେସର ଆଚାର୍ଯ୍ୟଙ୍କ ବ୍ୟକ୍ତିତ୍ୱ ହେଉଛି ବଡ ଧୀମାନ୍ ଆଉ ସେ ଜଣେ ଧିରୋଦାତ୍ତ ବ୍ୟକ୍ତି । ମୋ ଦୃଷ୍ଟିରେ ସେ ମୋର କେବଳ ଶିକ୍ଷାଗୁରୁ କି ଦୀକ୍ଷାଗୁରୁ ନୁହନ୍ତି; ସେ ମୋର ପ୍ରେରଣାର ଗୁପ୍ତ ଗଙ୍ଗୋତ୍ରୀ, ମୋର ପରମ ଉପାସ୍ୟ । ସାର୍‌ଙ୍କ ସହିତ ମୋର ସଂପର୍କ ଏହି ମାତ୍ର ଗୋଟିଏ ଦଶନ୍ଧିର କଥା । ମାତ୍ର ଏହି ଗୋଟିଏ ଦଶନ୍ଧି ମତେ ଦଶଟି ଦିନଭଳି ହିଁ ବୋଧହେଉଛି । କାରଣ ସେଦିନର ଉପାଧ୍ୟାୟ ଶ୍ରେଣୀର ଛାତ୍ର ଆଉ ଆଜିର ଅଧ୍ୟାପକ ଜୀବନ ଭିତରେ ମୁଁ କିଛି ବି ବ୍ୟତିକ୍ରମ ଦେଖୁନାହିଁ । ସେଦିନ ସେତେବେଳେ ସାର୍ ମୋ ପାଇଁ ଯେପରିଥିଲେ, ଆଜି ବି ଠିକ୍ ସେହିଭଳି ହିଁ ଅଛନ୍ତି । ସେହି ପ୍ରଶାନ୍ତ-ଗମ୍ଭୀର ସୁଦର୍ଶନ ମୁଖମଣ୍ଡଳ, ଅଚ୍ଛୋନ୍ନୁକ୍ତ ଓଠ ଫାଙ୍କରେ ମୃଦୁମୃଦୁ ହସ ଆଉ ଅଙ୍କକଷିଲାଭଳି ମପାଚୁପା ଶବ୍ଦ ସବୁ ଠିକ୍ ପୂର୍ବବତ୍ । ଗୋଟିଏ ଦଶନ୍ଧି ବିତିଯାଇଛି ସିନା ହେଲେ ସାର୍‌ଙ୍କ ଆଚାର ଓ ଆଚରଣରେ କିଛି ବି ପରିବର୍ତ୍ତନ ନାହିଁ । କର୍ମଯୋଗୀ ଭଳି ସେ ତାଙ୍କ ସାଧନାର ତପୋବନରେ ସାଧନାରତ ଜଣେ ଧ୍ୟାନଗମ୍ଭୀର ତପସ୍ୱୀ । ଗ୍ରନ୍ଥତାଙ୍କର ଈଶ୍ୱର (ତପସ୍ୟାର ବସ୍ତୁ), ତପୋବନ ହେଉଛି ତାଙ୍କର ପାଠାଗାର (ତପସ୍ୟାର କ୍ଷେତ୍ର) ଆଉ ସୃଜନୀ ହେଉଛି ତାଙ୍କର ମନ୍ତ୍ର । ମୋର ସୌଭାଗ୍ୟ ମୁଁ ତାଙ୍କୁ ଗୁରୁରୂପରେ ପାଇଛି; କିନ୍ତୁ ସାର୍‌ଙ୍କର ଦୁର୍ଭାଗ୍ୟ ସେ ମୋ ଭଳି ଜଣେ ଅସ୍ଥିର-ଚଂଚଳ ମନା ଛାତ୍ରଟିଏ ପାଇଛନ୍ତି । ଏଥିପାଇଁ ସାର୍ ଦୁର୍ଭାଗ୍ୟ ନିଅନ୍ତୁ ହେଲେ ମୁଁ କିନ୍ତୁ ଭାଗ୍ୟବାନ ହୋଇପାରିଛି । ଛାତିକୁ ସ୍ଫୀତ କରି ଅହଂକାରରେ ତ କହିପାରୁଛି 'ମୁଁ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟଙ୍କ ସ୍କଲାର୍ ।' ଏହି ଅହଂକାର ଟିକକ ହିଁ ମୋର ଆତ୍ମପରିଚୟ, ମୋର ପ୍ରେରଣା, ମୋର ସର୍ବସ୍ୱ ।

ଆଜି ସାର୍‌ଙ୍କୁ ଷାଠିଏ ପୂରୁଛି । ମୋ ଦୃଷ୍ଟିରେ ସେ ଚିର ତପସ୍ୱୀ - ପ୍ରବୁଦ୍ଧ ବ୍ୟକ୍ତିତ୍ୱ । ତାଙ୍କ ସାଧନାର ତପୋବନ ଚିର ମହକିତ ହୋଇରହିବ ତାଙ୍କ ସୃଜନୀରେ,

ସୌରଭରେ; ଆଉ ତାଙ୍କ ଜ୍ଞାନର ତଟଭୂଇଁ ଆମପାଇଁ ହୋଇରହିଥିବ ଆମ ଶିକ୍ଷା ଓ ଦୀକ୍ଷାର ନିତ୍ୟ ଲୀଳାଭୂମି । ଆମେ ଆମ ଅଜ୍ଞାନତାର ପୂଜା-ଫୁଲ ନେଇ ତାଙ୍କୁ ନିରାଜନା କରୁଥିବୁ - ଭକ୍ତିରେ; ଆଉ ଆମ ଅସ୍ଥିର-ଚଂଚଳ କ୍ରାନ୍ତାକ୍ଳାଂତ ଦେହ ଓ ମନକୁ ଧୋଇଦେଉଥିବୁ - ତାଙ୍କ ପ୍ରେରଣାର ପୂଣ୍ୟ ଜଳରେ, ପ୍ରଶାଂତ ପୁଳିନରେ - ସ୍ନେହରେ । ଏହି ପ୍ରତ୍ୟାଶା ସହିତ ସାର୍‌ଙ୍କ ଦୀର୍ଘ ଓ ନିରାମୟ ଜୀବନ କାମନା କରି ତାଙ୍କୁ ମୁଁ ମୋର ପ୍ରାଣର ଗଭୀର ଭକ୍ତି ସମର୍ପିତ କରୁଅଛି ।

*ଅଧ୍ୟାପକ ହୃଷୀକେଶ ପଣ୍ଡା*
*କ୍ଷେତ୍ରମୋହନ ବିଜ୍ଞାନ ବିଦ୍ୟାଳୟ*
*ନରେନ୍ଦ୍ରପୁର, ଗଂଜାମ ।*

# ବିନମ୍ର କୃତଜ୍ଞତା

ଚଳିତ ଶତାବ୍ଦୀର କୃତି ସାହିତ୍ୟିକ ମାନଙ୍କ ମଧ୍ୟରୁ ଡଃ.ସୁଦର୍ଶନ ଆଚାର୍ଯ୍ୟ ଅନ୍ୟତମ । ଆପଣାର ନିରଳସ ସାଧନା ତଥା ନିଷ୍ଠା ବଳରେ ସେ ଯେପରି ଖ୍ୟାତି ଅର୍ଜନ କରିଛନ୍ତି ତାହା ଅତୁଳନୀୟ, ଅନନ୍ୟ ସାଧାରଣ । ତାଙ୍କପରି ସଂଯମୀ, ସୁଶୃଙ୍ଖଳିତ ନିରହଂକାର, କର୍ତ୍ତବ୍ୟପରାୟଣ, ଉଦାର ଓ ସଚ୍ଚୋଟ ବ୍ୟକ୍ତି ଆଜିକାଲି କ୍ୱଚିତ୍ ଦେଖାଯାନ୍ତି ।

ସାର୍‌ଙ୍କ ସହିତ ମୋର ପାରିବାରିକ ସମ୍ବନ୍ଧ । କିନ୍ତୁ ଛାତ୍ରୀ ଭାବେ ପରିଚୟ ହୁଏ ୧୯୭୫ ମସିହାରୁ - ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଏମ୍.ଏ.ଶ୍ରେଣୀରେ । ସେହିଦିନ ଠାରୁ ସେ ମୋର ବନ୍ଧୁ, ଶିକ୍ଷକ, ଶୁଭାକାଂକ୍ଷୀ । ଯୋଗକୁ ସେ ହେଲେ ମୋର ପିଏଚ.ଡି.ର ତତ୍ତ୍ୱାବଧାରକ ଏବଂ ଗୁରୁ । ଗୁରୁଙ୍କ ଅଧିକାର ଦେଇ ଶାସନ କରିଛନ୍ତି - ଉପଦେଶ ଦେଇଛନ୍ତି - ଭୁଲ ସଂଶୋଧନ କରିଛନ୍ତି, ବୁଝେଇଛନ୍ତି । ସଂପର୍କ ସ୍ନେହଭରା-ଛଳନାର ସ୍ଥାନ ନଥିଲା ସେଥିରେ । ସେ ଦିନଠାରୁ ଆଜିଯାଏ ପବିତ୍ର ସଂପର୍କ । କେତେ ଘାତ ପ୍ରତିଘାତ ମୋ ଜୀବନରେ ଆସିଛି - ସାର୍ ଧୈର୍ଯ୍ୟ ଦେଇଛନ୍ତି ଆଶାତୀତ ଭାବେ । କାରଣ ଅନ୍ୟକୁ ଆନନ୍ଦିତ ହେବା ଦେଖିଲେ ବୋଧେ ସାର୍ ସବୁଠୁ ବେଶୀ ଆନନ୍ଦିତ ହୁଅନ୍ତି - ଏହାମୋର ଅନ୍ତରଙ୍ଗ ଅନୁଭବର କଥା । ସାର୍‌ଙ୍କ ହୃଦୟର ବିଶାଳତା ତଥା ମହାନୁଭବତା ତାଙ୍କର ବିଚାରଧାରା ଏବଂ ବ୍ୟକ୍ତିତ୍ୱ ଉତ୍ତରପୀଢ଼ିଙ୍କ ପାଇଁ ଏକ ମହତ୍ତର ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ ।

ଅନେକ ଅଭୁଲା ସ୍ମୃତି ମନରେ ଉଙ୍କିମାରୁଛି-ସବୁ ବିସ୍ତୃତ ଭାବେ ବ୍ୟକ୍ତ କରିବା ସହଜ ନୁହେଁ । ଜୀବନର ପ୍ରତିଟି କ୍ଷଣକୁ ମାପିଚୁପି ଚାଲିବାର ପ୍ରେରଣାଦେଇ ସତେଯେପରି ମୋ ଭିତରେ ଏକ ପ୍ରଗତିଶୀଳ ଜୀବନ ଭରିଦେଇଛନ୍ତି । ଦୀର୍ଘଦିନ ସାର୍‌ଙ୍କ ସଂସ୍ପର୍ଶରେ ଆସି କେବେବି ଶୁଣିନି ସାର୍‌ଙ୍କ ଆତ୍ମବଡିମା କିମ୍ୱା ଆତ୍ମପ୍ରଶଂସା । କେବେ ଦିନେ ବି ଶୁଣିନି ତାଙ୍କ ମୁହଁରୁ ତିରସ୍କାର କଥା । ଗବେଷଣା କରିବା ସମୟରେ ଦୀର୍ଘ ସମୟଧରି ସଂଶୋଧନ କରିଚାଲିଛନ୍ତି- ଟିକିଏ ବି ବିରକ୍ତି ନାହିଁ । ଭୁଲ ଦେଖିଲେ ଆଉଟିକିଏ ଭଲ ଲେଖିବାକୁ ଚେଷ୍ଟାକର କହି- ସୁଧାରି ଦିଅନ୍ତି ନିଜେ ନିଜେ । ମୋତେ ପି.ଏଚ.ଡି. କରାଇବାର କଷ୍ଟକୁ ହସି ହସି ବରଣ କରିନେଇଛନ୍ତି ଅଯାଚିତ ଭାବେ । ଆଜି ସେ ଅତୀତ କଥା ମନେ ପଡିଲେ କୃତଜ୍ଞତାରେ ମସ୍ତକ ଅବନତ ହୋଇଯାଉଛି । ଈଶ୍ୱରଙ୍କ ଠାରେ ଏତିକି ପ୍ରାର୍ଥନା- ସାର୍‌ଙ୍କୁ ଦୀର୍ଘଜୀବୀ କରନ୍ତୁ ଏବଂ ତାଙ୍କ ଆଶିଷ ଆମ ଉପରେ ସର୍ବଦା ରହିଥାଉ ।

*ଡଃ. ସୂଚନା ପାଢ଼ୀ*
*ସରକାରୀ ମାଧମିକ ଓ ପ୍ରଶିକ୍ଷଣ ବାଳିକା ବିଦ୍ୟାଳୟ*
*ଗିରିରୋଡ, ବ୍ରହ୍ମପୁର - ୭୬୦୦୦୫ ।*

# ନୀରବ ସାଧକ

ଶିଶୁ ସାହିତ୍ୟ ସଂପର୍କରେ ଆଲୋଚନା ଉଦ୍ଦେଶ୍ୟରେ ଆଚାର୍ଯ୍ୟ ସାର୍‌ଙ୍କ ବାସଭବନକୁ ଅନେକଥର ଯିବାର ସୁଯୋଗ ମିଳିଛି । ବୈଠକ କୋଠରୀରେ ସାମାନ୍ୟ ପ୍ରତୀକ୍ଷା- ଗମ୍ଭୀର ଭାବମୂର୍ତ୍ତିର ପ୍ରତୀକ ଆଚାର୍ଯ୍ୟ ସାର୍ ଆସି, ବଦନରେ ସ୍ମିତହାସ ଫୁଟାଇ, ସ୍ୱଭାବ ସୁଲଭ ଶାନ୍ତ, ନମ୍ର ସ୍ୱରରେ ପଚାରନ୍ତି - ''କ'ଣ ସାମନ୍ତରାୟ ବାବୁ, କାମ ଅଛିକି ?''

ଶିଶୁ ସାହିତ୍ୟ ବିଭାବରେ ବିଶେଷ ଲେଖି ନଥିଲେ ମଧ୍ୟ ଏହା ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଅଛି । ତାଙ୍କରି ପ୍ରଚେଷ୍ଟାରେ ସୁସାହିତ୍ୟିକ, ବିଶେଷକରି ଶିଶୁ ସାହିତ୍ୟିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଲୁପ୍ତପ୍ରାୟ ପ୍ରତିଭା ଲୋକଲୋଚନକୁ ଆସିପାରିଛି । ତାଙ୍କ ସଂପାଦିତ ରାମଚନ୍ଦ୍ର ଆଚାର୍ଯ୍ୟ ଗ୍ରନ୍ଥାବଳୀର ପ୍ରଥମ ଓ ଦ୍ୱିତୀୟଭାଗ ବିଦଗ୍ଧଙ୍କ ପାଇଁ । କିନ୍ତୁ ତୃତୀୟଭାଗଟି ଶିଶୁ ସାହିତ୍ୟକୁ ନେଇ ସମୃଦ୍ଧ । ଶିଶୁ ସାହିତ୍ୟ ପାଇଁ ତାଙ୍କର ରୁଚି, ଗବେଷଣା ଓ ସଂପାଦନା ତଥା ସଦିଚ୍ଛା ନିମନ୍ତେ ରାଜ୍ୟସ୍ତରର ''ରାମଚନ୍ଦ୍ର ଆଚାର୍ଯ୍ୟ ସ୍ମୃତି ସମ୍ମାନ'' ତାଙ୍କୁ ସମ୍ମାନିତ କରି ଶିଶୁ ସାହିତ୍ୟ ସଂସଦ ଗୌରବାନ୍ୱିତ ଓ ଧନ୍ୟ ହୋଇପାରିଛି ।

ଏହି ନୀରବ ସାଧକଙ୍କର ସାରସ୍ୱତ ପ୍ରତିଭାପ୍ରତି ସମ୍ମାନ ଜଣାଇ ତାଙ୍କର ଜୀବନାଲୋକ ଅଧିକ ଦୀପ୍ତିମୟ ହେଉ ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରେ ।

*ସୂର୍ଯ୍ୟମଣି ସାମନ୍ତରାୟ*
*ସଭାପତି,*
*ଶିଶୁ ସାହିତ୍ୟ ସଂସଦ, ବ୍ରହ୍ମପୁର - ୪ ।*



